# ଭକ୍ତକବି ମଧୁସୂଦନ ରାଓ
# ଓ
# ଉତ୍କଳରେ ନବଯୁଗ

ଲେଖିକା : ଶ୍ରୀମତୀ ଅବନ୍ତୀ ଦେବୀ
ଭାଷାନ୍ତର : ଶ୍ରୀମତୀ ସୁଶୀଳା ମିତ୍ର

# ଭକ୍ତକବି ମଧୁସୂଦନ ରାଓ
# ଓ
# ଉତ୍କଳରେ ନବଯୁଗ

ମୂଳ ରଚନା :
ଶ୍ରୀମତୀ ଅବନ୍ତୀ ଦେବୀ

ଭାଷାନ୍ତର :
ଶ୍ରୀମତୀ ସୁଶୀଳା ମିତ୍ର

# ଭକ୍ତକବି ମଧୁସୂଦନ ରାଓ ଓ ଉତ୍କଳରେ ନବଯୁଗ


ମୂଳ : ବଙ୍ଗଳା

ଶ୍ରୀମତୀ ଅବନ୍ତୀ ଦେବୀ

ଭାଷାନ୍ତର :

ଶ୍ରୀମତୀ ସୁଶୀଳା ମିତ୍ର

ପ୍ରକାଶକ :

ବିଶ୍ୱନାଥ ମିଶ୍ର

ଅବସରପ୍ରାପ୍ତ ମୁଖ୍ୟଯନ୍ତ୍ରୀ (ଜନସ୍ୱାସ୍ଥ୍ୟ), ଭୁବନେଶ୍ୱର

୧୭୩, କଟକ ରୋଡ, ଭୁବନେଶ୍ୱର - ୭୫୧୦୦୬

ପ୍ରଥମ ସଂସ୍କରଣ - ଏପ୍ରିଲ୍, ୧୯୯୫

ଦ୍ୱିତୀୟ ସଂସ୍କରଣ - ମାର୍ଚ୍ଚ ୨୦୦୧





ମୁଦ୍ରାକର - ବିଦ୍ୟାରତ୍ନ ପ୍ରେସ୍

୬୩, ଖାରବେଳ ନଗର, ଭୁବନେଶ୍ୱର - ୭୫୧୦୦୧

ମୂଲ୍ୟ : ଟ ୧୨୦/-


**BHAKTA KABI MADHUSUDAN RAO**
**O UTKALARE NABAYUG**


Written by Smt. Abanty Devi

Translator - Smt Sushila Mitra

Publisher - Biswanath Misra

Retd. Chief Engineer (P.H.)

173 Cuttack Road

Bhubaneswar - 751006

First edition April 1995

Second edition March 2001





Printer : Vidyaratna Press

63, Kharavel Nagar, Bhubaneswar - 751 001

Price Rs.120/-

# ଉତ୍ସର୍ଗ

ପ୍ରାକ୍ତନ ଟାଉନ୍ ଭିକ୍ଟୋରିଆ ହାଇସ୍କୁଲର ଛାତ୍ର (୧୯୨୧ ଖ୍ରୀଷ୍ଟାବ୍ଦ) ମୋର ଅଗ୍ରଜ ସ୍ୱର୍ଗୀୟ ହରିହର ମିଶ୍ର (Ex-Joint D.P.I Orissa) ଙ୍କର ସ୍ମୃତି ଉଦ୍ଦେଶ୍ୟରେ ଅର୍ପଣ କଲି ।

*ବିଶ୍ୱନାଥ ମିଶ୍ର*

# ଅଭିମତ

ପ୍ରଖ୍ୟାତ ସାହିତ୍ୟିକ ଶ୍ରୀଯୁକ୍ତ ଅନ୍ନଦାଶଙ୍କର ରାୟ ବହିଟି ପଢ଼ି ଲେଖିଛନ୍ତି :- "ଶ୍ରୀମତୀ ସୁଶୀଳା ମିତ୍ର ଗୋଟିଏ ଅତ୍ୟନ୍ତ ପ୍ରୟୋଜନୀୟ କାମ କରିଛନ୍ତି, ଲୋକେ ଆମ ଇତିହାସର ଗୋଟିଏ ଅଧ୍ୟାୟ ଭୁଲି ଯାଇଛନ୍ତି, ଏହି ବହି ପଢ଼ି ଜାଣିବେ । ତୁମେ ଏ ବହି ପ୍ରକାଶ କରି ଗୋଟିଏ ଭଲ କାମ କରିଛ । ମୋର ଆନ୍ତରିକ ଧନ୍ୟବାଦ ଜାଣିବ " ।

# ପ୍ରକାଶକଙ୍କର ପଦେ

ପ୍ରାୟ ଛଅବର୍ଷ ତଳେ ବନ୍ଧୁ ଶ୍ରୀ ଜ୍ୟୋତିରିନ୍ଦ୍ରମୋହନ ଜୋଆରଦାର ବଙ୍ଗଳା ଭାଷାରେ ଲିଖିତ ଶ୍ରୀମତୀ ଅବନ୍ତୀ ଦେବୀଙ୍କର "ଭକ୍ତକବି ମଧୁସୂଦନ ଓ ଉତ୍କଳେ ନବଯୁଗ" ବହିଟି ପଢିବାକୁ ଦେଇଥିଲେ । ବହିଟି ୨୮-୧-୬୪ରେ ଜୋଆରଦାର ମହାଶୟଙ୍କର ମାତା ଶ୍ରୀମତୀ ରମଳା ଦେବୀଙ୍କୁ ଶ୍ରୀମତୀ ଅବନ୍ତୀ ଦେବୀ ଉପହାର ସ୍ୱରୂପ ଦେଇଥିଲେ ।

ବହିଟି ମତେ ଖୁବ୍ ଉପାଦେୟ ଲାଗିଲା । ଭକ୍ତକବିଙ୍କ ସମୟର ଓଡିଶାରେ ଶିକ୍ଷା, ସାହିତ୍ୟ, ସମାଜ ଓ ପ୍ରଚଳିତ ରାଜତନ୍ତ୍ରର ବିଶଦ ଚିତ୍ରଣ ବହିଟିରେ ଦେଖିବାକୁ ମିଳେ । ବଙ୍ଗଳା ଭାଷା ଜାଣିନଥିବା ବହୁ ଓଡିଆ ଛାତ୍ରଛାତ୍ରୀ ଏ ପୁସ୍ତକଟି ପଢିବାରୁ ବଞ୍ଚିତ ହେବା ଦୁର୍ଭାଗ୍ୟ ବୋଲି ମୋର ମନେ ହେଲା । ବହିଟିକୁ ଓଡିଆରେ ଅନୁବାଦ କରି ଛପାଇବାକୁ ଆଗ୍ରହୀ ହେଲି ।

ତଦନୁସାରେ ଶ୍ରୀମତୀ ଅବନ୍ତୀ ଦେବୀଙ୍କ ପୁତ୍ର ଶ୍ରୀ ଅମରନାଥ ଭଟ୍ଟାଚାର୍ଯ୍ୟଙ୍କୁ ପତ୍ର ଲେଖିଲି । ଓଡିଆରେ ଅନୁବାଦ କରି ନିଜ ଖର୍ଚ୍ଚରେ ଛପାଇବାର ଅଭିପ୍ରାୟ ଜଣାଇଲି । ଅମରନାଥବାବୁ ଉତ୍ତରରେ ଲେଖିଲେ ଯେ ବହିଟିର ଓଡିଆ ଅନବାଦ ଶ୍ରୀମତୀ ସୁଶୀଳା ମିତ୍ର କରିଛନ୍ତି ଏବଂ ତାହାର ପାଣ୍ଡୁଲିପି ଭକ୍ତମଧୁ ବିଦ୍ୟାପୀଠକୁ ଛାପିବାକୁ ଅନୁମତି ଦିଆସରିଛି । ଯଦି ଭକ୍ତମଧୁ ବିଦ୍ୟାପୀଠ ସ୍ୱତ୍ତ୍ୱ ପ୍ରତ୍ୟର୍ପଣ (rights surrender) କରନ୍ତି ତେବେ ମୁଁ ତାହାକୁ ଛପାଇପାରେ ।

ଭକ୍ତମଧୁ ବିଦ୍ୟାପୀଠର ପ୍ରଧାନଶିକ୍ଷକଙ୍କୁ ମୋର ଆଗ୍ରହ କଥା ଲେଖିଲି । ସେ ମହାଶୟ ଗଭର୍ଣ୍ଣି ବଡିରେ ଏ ବିଷୟ ଉତ୍‌ଥାପନ କଲେ । କିନ୍ତୁ ଜନୈକ ସଦସ୍ୟ ଜିଦ୍ କଲେ ବହିଟି ବିଦ୍ୟାଳୟ ଛପାଉ । ବିଦ୍ୟାଳୟ ବହିଟି ଛପାଇ ପାରିଲା ନାହିଁ । ଗୋପବନ୍ଧୁ ସାହିତ୍ୟ ମନ୍ଦିରକୁ ବିଦ୍ୟାଳୟ କୁଆଡେ ପୁସ୍ତକର ପ୍ରକାଶନ ପାଇଁ ଅନୁରୋଧ କରିଥିଲା । କିନ୍ତୁ ସେଠି ସଫଳତା ଲାଭ କରିପାରିଲା ନାହିଁ ।

ଯା ଭିତରେ ମୋର ଆଗ୍ରହ ବହୁ ପରିମାଣରେ କମି ଯାଇଥିଲା । ପୁଣି ମନ ସ୍ଥିର କରି ଏଭଳି ଉପାଦେୟ ବହିଟି ଓଡିଆ ଛାତ୍ରଛାତ୍ରୀ ପଢିବାର ସୁଯୋଗ ପାଇବେ ନାହିଁ ଭାବି ଶ୍ରୀମତୀ ସଜନୀ ମିତ୍ରଙ୍କର ଅନୁବାଦ ଛାପିବାକୁ ମନସ୍ଥିର

କଲି । ମୋର ଏକାନ୍ତ ଆଗ୍ରହ ଦେଖି ବିଦ୍ୟାଳୟର ବର୍ତ୍ତମାନ ପ୍ରଧାନଶିକ୍ଷକ ଶ୍ରୀ କୁଳମଣି ଦାଶ ସମସ୍ତ ପାଣ୍ଡୁଲିପି ମୋ ପାଖକୁ ପଠାଇ ଦେଲେ ।

ମୂଳ ପାଣ୍ଡୁଲିପିଟିକୁ ଶ୍ରୀ ରଙ୍ଗାଧର ଷଡଙ୍ଗୀ ଅନେକ ସ୍ଥଳରେ ସଂଶୋଧନ କରିଦେଇଥିଲେ । କିନ୍ତୁ ନକଲ କରିବା ସମୟରେ ଅନଭିଜ୍ଞ ଛାତ୍ରଛାତ୍ରୀ ବହୁ ଭୁଲ କରିଦେଇଛନ୍ତି । ସେସବୁକୁ ସଂଶୋଧନ କରିବାକୁ ଅନେକ ପରିଶ୍ରମ କରିବାକୁ ପଡିଲା ।

ବହିଟିର ପ୍ରକାଶନ ଶ୍ରୀ କୋଆରଦାରଙ୍କର ପ୍ରେରଣା ଓ ସହଯୋଗର ଫଳ । ତାଙ୍କୁ ଆନ୍ତରିକ ଧନ୍ୟବାଦ ଜଣାଉଛି । ଦିବଂଗତ ଅମରନାଥ ଭଟ୍ଟାଚାର୍ଯ୍ୟ ପରୋକ୍ଷ ଭାବରେ ଅନୁମତି ପ୍ରଦାନ କରିଥିବାରୁ ତାଙ୍କଠାରେ କୃତଜ୍ଞତା ପ୍ରକାଶ କରୁଛି ।

ଶ୍ରୀମତୀ କଲ୍ୟାଣୀ ମିଶ୍ର ଏମ୍. ଏ ବହିଟିର ପ୍ରୁଫ୍ ସଂଶୋଧନ ଓ ଛାପା ଇତ୍ୟାଦିର ସମ୍ପୂର୍ଣ୍ଣ ଦାୟିତ୍ୱ ଗ୍ରହଣ କରିଥିବାରୁ ଧନ୍ୟାବାଦାର୍ହ ।

ଓଡିଆରେ ନିର୍ଭୁଲ ଛାପା ପ୍ରାୟ ସମ୍ଭବ ହେଉନାହିଁ । ତେଣୁ 'ମୁନୀନାଞ୍ଚ ମତିଭ୍ରମ' ଛଳରେ ଏହି ପ୍ରକାଶନରେ ଦୋଷ ତ୍ରୁଟି ପାଇଁ କ୍ଷମା ପ୍ରାର୍ଥନା କରୁଛି ।

ବିଶ୍ୱନାଥ ମିଶ୍ର

# ଉତ୍ସର୍ଗ ପତ୍ର

ପାର୍ଥିବ ଗଣନାରେ ଦୀର୍ଘ ଅର୍ଦ୍ଧଶତାବ୍ଦୀ ଅତୀତ ହୋଇଥିଲେ ମଧ୍ୟ ଯାହାଙ୍କ ଅମର ସ୍ମୃତି ମୋତେ ସର୍ବଦା ବେଷ୍ଟନ କରି ରହିଅଛି; ଯାହାଙ୍କର ଅମୂଲ୍ୟ ଜୀବନର ମହତ୍ତ୍ୱ ଦୃଷ୍ଟାନ୍ତ ଜନ୍ମଭୂମି ଉତ୍କଳରେ ନବଯୁଗ ଆଣିବାରେ ବିଶେଷ କାର୍ଯ୍ୟକର ହୋଇଥିଲା; ଯାହାଙ୍କ ଜୀବନରେ ଭଗବନ୍ତ ଭକ୍ତିର ଅପୂର୍ବ ବିକାଶ ଦେଖି ଉତ୍କଳବାସୀ ଯାହାଙ୍କୁ ଏକବାକ୍ୟରେ 'ଭକ୍ତକବି' ନାମରେ ଆଖ୍ୟାତ କରିଅଛନ୍ତି; ଯାହାଙ୍କ ବାଣୀରେ, ଆଚରଣରେ ଓ ସମଗ୍ର ଜୀବନରେ ଭୂମା ଭୁବନେଶ୍ୱରଙ୍କ ଅପୂର୍ବ ମହିମା ଉଜ୍ଜ୍ୱଳ ରୂପେ ପ୍ରକାଶିତ—

ସେହି ସ୍ୱର୍ଗତ ପରମାରାଧ୍ୟ ପିତୃଦେବଙ୍କ ଶ୍ରୀଚରଣରେ ତାଙ୍କ ଅଯୋଗ୍ୟା କନ୍ୟାର ଏହି ଭକ୍ତି-ଅର୍ଘ୍ୟ ଉତ୍ସର୍ଗୀକୃତ ହେଲା ।

ଶ୍ରୀଅବନ୍ତୀ ଦେବୀ

# ଭୂମିକା

## ଭକ୍ତକବି ମଧୁସୂଦନ ରାଓ

ମଧୁସୂଦନ କହିଲେ ବଙ୍ଗ ଦେଶରେ ଯେପରି ଜଣକୁ ବୁଝାଏ, ଓଡ଼ିଶାରେ ସେପରି ଦୁଇଜଣଙ୍କୁ ବୁଝାଏ । ସେ ଦୁହିଁଙ୍କ ଭିତରେ କେହି କାହାରିଠାରୁ କମ୍ ପ୍ରସିଦ୍ଧ ନୁହନ୍ତି । ଦୁଇଜଣଯାକ ଅମର । ଯିଏ ସାହିତ୍ୟ କ୍ଷେତ୍ରରେ ଅମର ତାଙ୍କୁ ବଙ୍ଗଦେଶର ଲୋକ ଚିହ୍ନନ୍ତି । ମଧୁସୂଦନ ଦାସ ଥିଲେ ସାର୍ ଆଶୁତୋଷ ମୁଖୋପାଧ୍ୟାୟଙ୍କ ଶିକ୍ଷକ । ଆଜି ସାହିତ୍ୟରେ ଅମର ଯିଏ ତାଙ୍କର 'ଋଷିପ୍ରାଣେ ଦେବାବତରଣ' ଏକ ସମୟରେ ବଙ୍ଗଳାରେ ଅନୂଦିତ ହୋଇ କବିଗୁରୁ ରବୀନ୍ଦ୍ରନାଥଙ୍କ 'ସାଧନା'ରେ କବି କଣ୍ଠର ମାଳା ହୋଇପାରିଥିଲା । କିନ୍ତୁ ସେସବୁ କଥା କାହାର ମନେନାହିଁ । ତେବେ ବ୍ରାହ୍ମସମାଜର ଭିନ୍ନ ଶାଖାରେ ସେ ସୁପରିଚିତ ଓ ଶ୍ରଦ୍ଧେୟ ଥିଲେ । ଏବେ ମଧ୍ୟ ରାଓ ପରିବାର ସହିତ ଏମାନଙ୍କର ଯୋଗାଯୋଗ ରହିଛି ଓ ଏମାନେ ଏବେ ମଧ୍ୟ ଶ୍ରଦ୍ଧା ସହିତ ମଧୁସୂଦନଙ୍କୁ ସ୍ମରଣ କରନ୍ତି । ମଧୁସୂଦନ ରାଓ ଥିଲେ କବି ତଥା ଭକ୍ତ । ସେଥିପାଇଁ ତାଙ୍କ ପ୍ରଦେଶର ଲୋକେ ତାଙ୍କୁ "ଭକ୍ତକବି ମଧୁସୂଦନ" ବୋଲି ନିତ୍ୟ ସ୍ମରଣ କରନ୍ତି ।

ପିଲାଦିନେ ମୁଁ ଯେଉଁ ଇଂରାଜୀ ବିଦ୍ୟାଳୟରେ ପଢ଼ାଶୁଣା କରିଥିଲି ତା'ର ଦ୍ୱିତୀୟ ଭାଷା ଥିଲି ଓଡ଼ିଆ । ସାହିତ୍ୟ ପାଠ୍ୟପୁସ୍ତକ ଥିଲି ମଧୁସୂଦନ ରାଓ ମହାଶୟଙ୍କର ରଚନା । ସେସବୁ ପାଠ୍ୟପୁସ୍ତକର ଗଦ୍ୟ ରଚନା ମନେ ରଖିବା ଭଲ ନୁହେଁ । କିନ୍ତୁ ପଦ୍ୟ ଅଂଶ ମଧୁସୂଦନଙ୍କର ସ୍ୱରଚିତ ଓ ସୁରଚିତ କବିତା । ପାଠ୍ୟପୁସ୍ତକ ପାଇଁ ହିଁ ସେ ସେହି କବିତାଗୁଡ଼ିକ ଲେଖିଥିଲେ ତା' ନୁହେଁ । ସେ ଲେଖିଥିଲେ ଅନ୍ତରର ପ୍ରେରଣାରେ, ପରେ ଯୋଡ଼ି-ଦେଇଥିଲେ ପାଠ୍ୟପୁସ୍ତକରେ । ସେ କବିତା ସବୁ ପଢ଼ିଲେ ସହଜରେ ଛନ୍ଦ ପାଇଁ କାନ ପ୍ରସ୍ତୁତ ହୋଇଯାଏ, ଚିତ୍ତ ସାହିତ୍ୟ ଆସ୍ୱାଦନରେ ଅଭ୍ୟସ୍ତ ହୁଏ । ତାଙ୍କର ସବୁ କବିତା ଯେ ଭକ୍ତିମୂଳକ ତା' ନୁହଁ, ବରଂ ପ୍ରକୃତି

ବର୍ଣ୍ଣନା ହିଁ ବେଶୀ । ତେବେ ତା' ସାଙ୍ଗରେ କିଛି ଦାର୍ଶନିକତା ମଧ୍ୟ ରହିଛି । କିମ୍ବା ମାତ୍ରରେ ଅନୁଶାସନ । ମଧୁସୂଦନ ଦାସ କେବଳ ସାର୍ ଆଶୁତୋଷଙ୍କ ଶିକ୍ଷକ ଥିଲେ, କିନ୍ତୁ ମଧୁସୂଦନ ରାଓ ଥିଲେ ମୋ ପରି ବହୁ ଅବୋଧ ବାଳକଙ୍କର ଶିକ୍ଷା ନିମିତ୍ତ ସମର୍ପିତ ପ୍ରାଣ । ଶିକ୍ଷା ବିଭାଗରେ ସେ କାର୍ଯ୍ୟ କରୁଥିଲେ । ତେବେ ମୁଁ ଯେତେବେଳେ ସ୍କୁଲରେ ଛାତ୍ର, ସେତେବେଳେ ସେ ପରଲୋକ ଗମନ କରିଥିଲେ ।

ରାଓ କବିଙ୍କୁ ମୁଁ ଆଖିରେ ଦେଖିନି । ତାଙ୍କ ମୃତ୍ୟୁ ପରେ 'ଉତ୍କଳ ସାହିତ୍ୟ' ପତ୍ରିକାରେ ତାଙ୍କର ଜୀବନକଥା ପ୍ରକାଶିତ ହୁଏ । ଲେଖିଥିଲେ ପଣ୍ଡିତ ମୃତ୍ୟୁଞ୍ଜୟ ରଥ । ଆଉ ଟିକିଏ ବେଶୀ ବୟସରେ ଗୋଟିଏ ପୁରୁଣା 'ଉତ୍କଳ ସାହିତ୍ୟ' ମୋ ହାତରେ ପଡ଼େ । ତନ୍ମୟ ହୋଇ କବିଙ୍କ ଜୀବନ ଚରିତ 'ବ୍ରହ୍ମର୍ଷି ମଧୁସୂଦନ' ପଢ଼େ । କବିଙ୍କର ମୃତ୍ୟୁକାଳୀନ ଗୋଟିଏ ଉକ୍ତି ମୋର ଚଉରାଳିଶ ବର୍ଷ ପରେ ମଧ୍ୟ ମନେଅଛି । କବିଙ୍କୁ ଯେତେବେଳେ ଏନିମା ଦିଆହୁଏ ସେ କାତର କଣ୍ଠରେ କହିଥିଲେ 'ଏନିମା ଜାଣିନି, ଜାଣେ ସେହି ଶନମା'— ତନ୍ମୟୀ ମା ।

କଲେଜରେ ପଢ଼ିବା ସମୟରେ ଗୋଟିଏ ପୁରସ୍କାର ଘୋଷିତ ହୋଇଥିଲା । ମୁଁ ସେହି ପୁରସ୍କାରଟି ପାଇଥିଲି । ରାଓ କବିଙ୍କର 'ବସନ୍ତଗାଥା' କବିତାବଳୀର ସମାଲୋଚନା ଲେଖି ।

"ବସନ୍ତଗାଥା"ର ଗୋଟିଏ କବିତାରୁ କିଛି ଉଦ୍ଧୃତ କରୁଛି । ଏଇଟି କବିଙ୍କର ଏକ ବନ୍ଧୁ ପତ୍ନୀଙ୍କର ବିୟୋଗ ଲକ୍ଷ୍ୟ କରି ଲିଖିତ ।

ହଜିନାହିଁ କେବେଁ ଯାର କିଛି ହିଁ ରତନ
ଏ ମର୍ତ୍ତ୍ୟ ସଂସାରେ ସେହି ଧନ ଅକିଞ୍ଚନ ।

ସେ ପୁଣି ଦରିଦ୍ରତର, ହରାଇ ରତନ
ଏ ଭବ ଭବନେ ତାହା ପାସୋରେ ଯେ ଜନ ।

ସେ ପୁଣି ଦରିଦ୍ରତମ କୃପା ପାତ୍ର ଅତି
ହରାଇ ପାସୋରିବାକୁ ବଳେ ଯାର ମତି ।

ଆଉ ଗୋଟିଏ କବିତା କୌଣସି ଏକ ପତିତା ରମଣୀର ଦଶା ଦେଖି ଲେଖା । ସେଥିରେ ଅଛି – "ଯେ ସୁଖୀବ ସୁସ୍ଥଁ ତୋତେ ଗର୍ବ ଅବଜ୍ଞାରେ, କିନ୍ତୁ ଲୋ ଭଗିନୀ ମୁହିଁ ତୋ ଦୁଃଖେ କାତର । ଆହତ ମୋ ପ୍ରାଣ ତୋର ମର୍ମ ହାହାକାରେ କାନ୍ଦଇ ସକଳେ ମୋର ବ୍ୟଥିତ ଅନ୍ତର ।"

ସେ ସମୟର ଜଣେ ମହିଳା କବି ଏହାର ଅନୁବାଦ କରନ୍ତି । ନଗେନ୍ଦ୍ରବାଳା ସରସ୍ୱତୀଙ୍କ ବଙ୍ଗାନୁବାଦ ଉଦ୍ଧୃତ କରୁଛି ।

"ଯେ ସୁଖେ ଗୃହସ୍ଥଁକ ତୋରେ ଗର୍ବ ଅବଜ୍ଞାୟ, ତୋର ଦୁଃଖେ ଲୋ ଭଗିନୀ, ଏ ପ୍ରାଣ କାତର, ଆହତ ଏ ପ୍ରାଣ ତୋର ମରମ ବ୍ୟଥାୟ, କାନ୍ଦଇ ଆକୁଳେ ମୋର ବ୍ୟଥିତ ଅନ୍ତର ।"

ତା'ପରେ କବି ପତିତପାବନଙ୍କ ମୁହଁରେ କୁହାଇଛନ୍ତି —

"ପତିତା ହେଲେହେଁ ନାରୀ ମୋହର ତନୟା,
ସନ୍ତାଉ, ଦେଖାଉ ତାର ଲଲାଟେ ଲିଖିତ,
କେ ତାକୁ ସେଥିରୁ ହସ୍ତେ କରିବ ବଞ୍ଚିତ !"

ଏହି କେତୋଟି ନମୁନାରୁ ମନେ ହୋଇପାରେ କବି ଖାଲି ବୌଦ୍ଧ ଶାସ୍ତ୍ରର ଛନ୍ଦ ଜାଣୁଥିଲେ । ତାହାନୁହେଁ, ଛନ୍ଦ ସମ୍ପଦରେ ଓଡ଼ିଆ ଅସାଧାରଣ ଧନୀ । ଆଧୁନିକ ଯୁଗର ପୂର୍ବରେ ତା'ର ଭଣ୍ଡାରରେ ବିଚିତ୍ର ରାଗରାଗିଣୀ ସହଯୋଗରେ ରଚିତ ଅସଂଖ୍ୟ 'ଛାନ୍ଦ' ଜମି ଥିଲା । କିନ୍ତୁ ସମସାମୟିକ ରୁଚିରେ ସେଗୁଡ଼ିକ ଆଉ ରସାତ୍ମକ ବୋଲି ଏ କାଳର କବିମାନେ ସେ ଧରଣର ନୂଆ କବିତା ଲେଖା ଏକପ୍ରକାର ବନ୍ଦ କରିଦେଲେ । ଭକ୍ତକବି ମଧ୍ୟ ଜଣେ ଭିକ୍ଟୋରିଆନ୍ । ଅଶ୍ଳୀଳତା ବିରୁଦ୍ଧରେ ସେ ଅଭିଯାନ ଚଳେଇଥିଲେ । ଅଥଚ ପ୍ରାଚୀନ 'ଛାନ୍ଦ' ତାଙ୍କର ଶ୍ରୁତି ହରଣ କରିଥିଲା । ପ୍ରାୟ ବଙ୍ଗଭାଷାର ଭାନୁସିଂହ ଠାକୁରଙ୍କ ଭଳି । ଭାନୁସିଂହଙ୍କ ସହିତ ତାଙ୍କର ତଫାତ୍ ଏହା ଯେ, ସେ ନାୟକ ନାୟିକାଙ୍କୁ ବର୍ଜନ କରି 'ଛାନ୍ଦ' ବାନ୍ଧିଲେ ପ୍ରାକୃତିକ ବିଷୟ ନେଇ । ଏଇଭଳି ଗୋଟିଏ କବିତାର ନାମ 'ପଦ୍ମ' । ସ୍ୱର ସ୍ୱର କରି ପଢ଼ିବାକୁ ହୁଏ ।

'ପଦ୍ମ'କୁ ଉଦ୍ଦେଶ୍ୟ କରି କବି ଯାହା ଲେଖିଛନ୍ତି ସେଥିରେ ମଧ୍ୟ ବିଧାତାଙ୍କ ଗୁଣଗାନ କରିଛନ୍ତି । ସେ ବିଧାତା ମଧ୍ୟ ବ୍ରାହ୍ମସମାଜର ନିରାକାର ଈଶ୍ୱର । ମଧୁସୂଦନ ଭକ୍ତକବି ହେଲେ ମଧ୍ୟ ରାମ କିମ୍ବା କୃଷ୍ଣ, ଜଗନ୍ନାଥ କିମ୍ବା ଲୋକନାଥ, ଚଣ୍ଡୀ କିମ୍ବା ସାରଳାଙ୍କ ନାଆଁ ମୁହଁରେ ଧରିବେନି । ତାହେଲେ କେମିତି ଜନପ୍ରିୟ ହେବେ ? ପାଠ୍ୟପୁସ୍ତକର ବାହାରେ ତାଙ୍କର ଯେଉଁସବୁ ବହି ସେଗୁଡ଼ିକ ଲୋକେ ପଇସା ଖର୍ଚ୍ଚ କରି କିଣିବେ କାହିଁକି ? ଏବେ ମଧୁସୂଦନ ଗ୍ରନ୍ଥାବଳୀ ଦୁଷ୍ପ୍ରାପ୍ୟ ।

ଅନ୍ୟ ଦିଗରେ ଭକ୍ତକବିଙ୍କର ଶତବାର୍ଷିକୀ ମଧ୍ୟ କରିବା ସମ୍ଭବ ହେଲାନାହିଁ—ଟଙ୍କା ଯୋଗାଡ଼ ହୋଇପାରିଲା ନାହିଁ । ଉତ୍ସାହୀ କର୍ମୀଙ୍କର ମଧ୍ୟ ଅଭାବ । ଏହି କବିଙ୍କ ପାଖରେ ଉତ୍କଳ କଏ ଋଣୀ ନୁହେଁ ! ଲକ୍ଷଲକ୍ଷ ଛାତ୍ର ପିଲାବେଳେ ଯାଙ୍କର ଲେଖା ପଢ଼ି ମଣିଷ ହୋଇପାରିଛନ୍ତି । 'ବର୍ଣ୍ଣବୋଧ' ପଢ଼ି ଅକ୍ଷର ପରିଚୟ ହୋଇଛି କୋଟି କୋଟି ଉତ୍କଳ ସନ୍ତାନଙ୍କର ।

ତାଙ୍କର ଦ୍ୱିତୀୟା କନ୍ୟା ଓ ଆଚାର୍ଯ୍ୟ ଶିବନାଥ ଶାସ୍ତ୍ରୀ ମହାଶୟଙ୍କର ପୁତ୍ରବଧୂ ପୂଜନୀୟା ଶ୍ରୀଯୁକ୍ତା ଅବନ୍ତୀ ଦେବୀ ପିତାଙ୍କର ଜୀବନ କାହାଣୀ 'ଭକ୍ତକବି ମଧୁସୂଦନ ଓ ଉତ୍କଳରେ ନବଯୁଗ' ନାଁ ଦେଇ ବଙ୍ଗ ଭାଷାରେ ଲେଖିଛନ୍ତି । ତାଙ୍କର ଶ୍ୱଶୁରଙ୍କ ପ୍ରଣୀତ "ରାମତନୁ ଲାହିଡ଼ୀ ତତ୍କାଳୀନ ବଙ୍ଗସମାଜ" ତାଙ୍କର ଆଦର୍ଶ । ପୂଜନୀୟା ଶ୍ରୀଯୁକ୍ତା ଅବନ୍ତୀ ଦେବୀଙ୍କର ବୟସ ବୟାଅଶୀ (୮୨) ବର୍ଷ ପୂର୍ଣ୍ଣ ହୋଇଛି । ତତ୍କାଳୀନ ଉତ୍କଳ ସମାଜ ସହିତ ପରିଚୟ ତାଙ୍କଭଳି କେତେ ଜଣଙ୍କର ବା ଅଛି ? ଏ କାର୍ଯ୍ୟଟି ସେ ନ କରିଥିଲେ ଆଉ କଏ ବା କରିପାରିଥାନ୍ତେ ? ତତ୍କାଳୀନ ଉତ୍କଳ ସମାଜ ସହିତ ସମସାମୟିକ ବ୍ରାହ୍ମସମାଜ ମଧ୍ୟ ଯୁକ୍ତ ଥିଲା । ବହୁ ବିଶିଷ୍ଟ ବଙ୍ଗାଳୀ ସେ ସମୟରେ ଓଡ଼ିଶାରେ ଅବସ୍ଥାନ କରୁଥିଲେ, ତଥା ବ୍ରାହ୍ମ-ସମାଜର ଗୋଟିଏ କେନ୍ଦ୍ର ମଧ୍ୟ ଥିଲା ସେଠି । ଏହି ଗ୍ରନ୍ଥରେ ବଙ୍ଗସମାଜର ଗୋଟିଏ ଦିଗ ଆଲୋଚିତ ହୋଇଛି ।

ଆଧୁନିକ ଉତ୍କଳ ସାହିତ୍ୟର ତ୍ରିରତ୍ନ ରାଧାନାଥ ରାୟ, ମଧୁସୂଦନ ରାଓ ଏବଂ ଫକୀର ମୋହନ ସେନାପତି । ଗଳ୍ପ ଉପନ୍ୟାସରେ ଫକୀରମୋହନ ଅଦ୍ୱିତୀୟ । କାବ୍ୟରେ ରାଧାନାଥଙ୍କ ଶିରରେ ଶିରୋପା । ମଧୁସୂଦନଙ୍କର

ଗୌରବ ତାହାହେଲେ କେଉଁଠି ? ମଧୁସୂଦନ ଥିଲେ ଋଷି ଦେବ । ମୃତ୍ୟୁଞ୍ଜୟ ରଥ ମହାଶୟଙ୍କ ଭାଷାରେ 'ବ୍ରହ୍ମଜ୍ଞ ମଧୁସୂଦନ' । ତାଙ୍କର ଜୀବନ ହିଁ ତାଙ୍କର ବାଣୀ ।

ସାଧାରଣତଃ ଦେଖାଯାଏ, ସାହିତ୍ୟରେ ଜଣେ ବଡ଼ ହେଲେ ଆଉ ଜଣେ ତାଙ୍କ ପ୍ରତି ହିଂସାରେ ଜର୍ଜରିତ ହୁଅନ୍ତି । ବନ୍ଧୁ ହୋଇଥିଲେ ବନ୍ଧୁତା ଭାଙ୍ଗିବା ଆରମ୍ଭ ହୁଏ । ଏହା ଏକ ଆଶ୍ଚର୍ଯ୍ୟ ଘଟଣା ଯେ ମଧୁସୂଦନ ଥିଲେ, ରାଧାନାଥ ଓ ଫକୀର ମୋହନ ଉଭୟଙ୍କର ପରମପ୍ରିୟ । ରାଧାନାଥଙ୍କର ପୁତ୍ର ସୁଲେଖକ ଶଶୀଭୂଷଣଙ୍କର ଡାକ ନାଆଁ ଥିଲା ମଧୁ । ଏଇ ସାହିତ୍ୟିକ ସୌହାର୍ଦ୍ଦ୍ୟ ବ୍ୟକ୍ତିଗତ ମାଧୁର୍ଯ୍ୟ ଉପରେ ପ୍ରତିଷ୍ଠିତ ଥିଲା । ମଧୁସୂଦନ ଥିଲେ ମଧୁର ସ୍ୱଭାବର ମଣିଷ ।

ଓଡ଼ିଶା ଯଦିଓ ପ୍ରତିବେଶୀ ରାଜ୍ୟ, ତାହେଲେ ମଧ୍ୟ ତାର ଇତିହାସ ସାଧାରଣ ବଙ୍ଗାଳୀ ପାଠକ ପାଖରେ ସୁବିଦିତ ନୁହେଁ । ଐତିହାସିକ ପୃଷ୍ଠଭୂମିକା ରଚନାର ଭାର ଶ୍ରୀଯୁକ୍ତା ଅବନ୍ତୀ ଦେବୀ ଅର୍ପଣ କରିଛନ୍ତି, ଶ୍ରୀମାନ୍ ଦିଲୀପ କୁମାର ବିଶ୍ୱାସଙ୍କ ଉପରେ । ଏହି ଯୁବକ ଅଧ୍ୟାପକ ସ୍କୁ' ଭିତରେ ଗବେଷଣା କାର୍ଯ୍ୟରେ ସୁନାମ ଅର୍ଜନ କରିଛନ୍ତି । ଏହାଙ୍କର ମାତାମହ ଥିଲେ ସୁପ୍ରସିଦ୍ଧ "ଉତ୍କଳ ସାହିତ୍ୟ" ପତ୍ରିକାର ସର୍ବଜନ ଶ୍ରଦ୍ଧେୟ ସମ୍ପାଦକ, ଓଡ଼ିଆ ସାହିତ୍ୟର ଅନ୍ୟତମ ଦିକ୍‌ପାଳ, ସାଧାରଣ ବ୍ରାହ୍ମସମାଜର ନେତା ସ୍ୱର୍ଗୀୟ ବିଶ୍ୱନାଥ କର ମହାଶୟ । ତାଙ୍କ ପାଖରେ ମୋର ଋଣ ଅପରିଶୋଧ୍ୟ ।

ଶ୍ରୀମାନ୍ ଦିଲୀପ କୁମାର ଯାହା ଲେଖିଛନ୍ତି ତା' ଉପରେ ମୁଁ ଏଇ ଟିକିଏ ଯୋଡ଼ି ଦେବାକୁ ଚାହେଁ ଯେ, ମୋର ଜନ୍ମସ୍ଥାନ ଢେଙ୍କାନାଳରେ ମଧ୍ୟ ଗୋଟିଏ ବ୍ରାହ୍ମ ଉପାସନା ଗୃହ ପ୍ରତିଷ୍ଠିତ ହୋଇଥିଲା । ସେଠି ମଧ୍ୟ ଗୋଟିଏ ଉପାସକ ମଣ୍ଡଳୀ ଥିଲା । ଏଇଭଳି ଅନେକ ଜାଗାରେ ପରେ ବ୍ରାହ୍ମମାନଙ୍କର ସଂଖ୍ୟା ଓ ପ୍ରଭାବ କମିଯାଏ । ତେଣୁ ମୋ ଜନ୍ମସ୍ଥାନର ବ୍ରାହ୍ମ ଉପାସନା ଗୃହ ହୁଏ ସଙ୍କୁଚିତ ହେଲା ।

ଢେଙ୍କାନାଳରେ ମୋ ପିଲାଦିନେ ମୋର ପିତୃବନ୍ଧୁ ସ୍ୱର୍ଗୀୟ କୁମୁଦ-ବନ୍ଧୁ ସେନ ମହାଶୟଙ୍କୁ ଦେଖିଛି । ତାଙ୍କ ସାଙ୍ଗରେ ମୋର ପିତୃବନ୍ଧୁ ସ୍ୱର୍ଗୀୟ ପ୍ରଫୁଲ୍ଲ କୁମାର ସରକାର ମହାଶୟଙ୍କର ସାହିତ୍ୟାଲାପ ଅନେକ ରାତିରେ ଶୁଣିଛି; କପିଳାସ ପାହାଡରେ ରାଜାଙ୍କର ବଙ୍ଗଳାରେ ପ୍ରଶସ୍ତ ଗଦି ବିଛଣାରେ ଶୋଇ । କୁମୁଦବାବୁଙ୍କର ଭ୍ରାତା ସ୍ୱନାମଧନ୍ୟ ଶ୍ରୀ ପ୍ରିୟରଞ୍ଜନ ସେନ ସେତେବେଳେ କଟକରେ ପଢୁଥିଲେ । ପ୍ରିୟରଞ୍ଜନଦା ଏହି ଗ୍ରନ୍ଥରେ ଅଂଶ ନେଇଛନ୍ତି ଏହା ମୋ ପକ୍ଷରେ ବିଶେଷ ଆନନ୍ଦର ବିଷୟ ।

ଅନ୍ନଦାଶଙ୍କର ରାୟ

# ନିବେଦନ

ମୋର ଭକ୍ତିଭାଜନ ପିତୃଦେବଙ୍କର ଖଣ୍ଡିଏ ଉଲ୍ଲେଖଯୋଗ୍ୟ ଜୀବନୀ ପ୍ରକାଶିତ ହେଉ, ଏହାହିଁ ମୋର ଚିରକାଳର ଆକାଂକ୍ଷା । ମୋର ଭକ୍ତିଭାଜନ ଶ୍ୱଶୁର ଦେବ ପଣ୍ଡିତ ଶିବନାଥ ଶାସ୍ତ୍ରୀ ମହାଶୟଙ୍କ ରଚିତ "ରାମତନୁ ଲାହିଡ଼ୀ ଓ ତତ୍କାଳୀନ ବଙ୍ଗସମାଜ" ଗ୍ରନ୍ଥରେ ଯେଉଁ ଭାବରେ ବଙ୍ଗ ଦେଶର ତତ୍କାଲୀନ ଅବସ୍ଥା, ଶିକ୍ଷା, ଧର୍ମ, ସମାଜ ପ୍ରଭୃତି ଦେଶର ସମସ୍ତ ବିଷୟର ସଂସ୍କାର ଓ ଅଗ୍ରଗତି ମଧ୍ୟ ଦେଇ ତତ୍କାଲୀନ ନେତୃବର୍ଗଙ୍କ ଜୀବନ ଚରିତ ଓ ଅବଦାନର ବିବରଣୀ ପ୍ରଦତ୍ତ ହୋଇଅଛି, ମୋର ଏକାନ୍ତ ଇଚ୍ଛାଥିଲା ଯେ, ସେହି ଆଦର୍ଶରେ ଭକ୍ତକବି ମଧୁସୂଦନଙ୍କୁ କେନ୍ଦ୍ର କରି ଉତ୍କଳର ତତ୍କାଳୀନ ଅବସ୍ଥାର ପ୍ରକୃତ ଇତିହାସ ଲିପିବଦ୍ଧ ହେଉ ।

ଓଡ଼ିଶାର ତତ୍କାଳୀନ ନେତୃବର୍ଗଙ୍କ ଅବଦାନର ପ୍ରକୃତ ବିବରଣୀ ଲିଖିତ ହୋଇଥିଲେ ତାହା ବାସ୍ତବରେ ଦେଶର ଗୋଟିଏ ଅମୂଲ୍ୟ ସମ୍ପଦ ହୋଇଥାନ୍ତା । "ଉତ୍କଳ ସାହିତ୍ୟ" ପତ୍ରିକାର ସମ୍ପାଦକ, ଭକ୍ତକବିଙ୍କ ଶିଷ୍ୟ, ଆମ୍ଭମାନଙ୍କର ଭକ୍ତିଭାଜନ ବିଶ୍ୱନାଥ କରଙ୍କୁ ମୁଁ ଏ ବିଷୟରେ କେତେଥର ଅନୁରୋଧ କରିଥିଲି; ସେ ମଧ୍ୟ ଏହାର ପ୍ରୟୋଜନୀୟତା ସ୍ୱୀକାର କରି ଲେଖିବାକୁ ଚେଷ୍ଟା କରିବେ ବୋଲି କହିଥିଲେ, କିନ୍ତୁ ଆମ୍ଭମାନଙ୍କର ଦୁର୍ଭାଗ୍ୟବଶତଃ ସେ ନାନା ପ୍ରକାର ସଂଗ୍ରାମରେ ବ୍ୟସ୍ତ ହୋଇପଡିବାରୁ ଓ ଅକସ୍ମାତ୍ ପରଲୋକ ଗମନ କରିବାରୁ ଏହା କାର୍ଯ୍ୟରେ ପରିଣତ ହେଲାନାହିଁ ।

ପିତୃଦେବଙ୍କ ସୁଯୋଗ୍ୟ ପୁତ୍ର, ଓଡ଼ିଶାର ଉଦୀୟମାନ ବିଶିଷ୍ଟ ଲେଖକ ପଣ୍ଡିତ ମୃତ୍ୟୁଞ୍ଜୟ ରଥ ମଧ୍ୟ ଭକ୍ତକବିଙ୍କ ଜୀବନୀ ଲେଖିବା ପାଇଁ ଉଦ୍‌ବୁଦ୍ଧ ହୋଇ, ଭକ୍ତକବିଙ୍କ ଜୀବିତାବସ୍ଥାରେ ତାହାଙ୍କ ସହିତ କଥା ପ୍ରସଙ୍ଗରେ ଅନେକ ବିଷୟ ଜାଣିଥିଲେ । ଅବଶେଷରେ ଭକ୍ତକବିଙ୍କ ମୃତ୍ୟୁ ପରେ ତାଙ୍କ ଆତ୍ମୀୟଗଣଙ୍କ ନିକଟରୁ ଡ଼ାଏରି ଓ ଅନେକ ପ୍ରୟୋଜନୀୟ ଚିଠିପତ୍ର

ସଂଗ୍ରହ କରି ସେହି ସମସ୍ତ ଅବଲମ୍ବନରେ "ବ୍ରହ୍ମଜ୍ଞ ମଧୁସୂଦନ" ନାମରେ ଗୋଟିଏ ଜୀବନୀ ଧାରାବାହିକ ଭାବରେ "ଉତ୍କଳ ସାହିତ୍ୟ"ର ୧୯ଟି ସଂଖ୍ୟାରେ ସେ ପ୍ରକାଶ କରିଥିଲେ। ପରେ ଏହି ଲେଖାକୁ ସୁସଂସ୍କୃତ କରି ଓ ପ୍ରୟୋଜନ ମୁତାବକ ପରିବର୍ତ୍ତନ ଓ ପରିବର୍ଦ୍ଧନ କରି ଗ୍ରନ୍ଥାକାରରେ ପ୍ରକାଶ କରିବେ—ଏହି ସଂକଳ୍ପ ତାଙ୍କର ଥିଲା। କିନ୍ତୁ ତାଙ୍କର ନିଜ ଗ୍ରାମରେ ଅବସ୍ଥାନ କାଳରେ ସେ ହଠାତ୍ ହୃଦ୍‌ରୋଗରେ ଆକ୍ରାନ୍ତ ହୋଇ ପରଲୋକ ଗମନ କରିବାରୁ ଏହି ଜୀବନଚରିତ ଆଉ ପୁସ୍ତକାକାରରେ ପ୍ରକାଶିତ ହୋଇନାହିଁ। ମଧୁସୂଦନଙ୍କ ଡାଏରୀ ଓ ଚିଠିପତ୍ର ମୃତ୍ୟୁଞ୍ଜୟଙ୍କ ଗ୍ରାମ ବାସଗୃହରୁ ସେତେବେଳେ ଉଦ୍ଧାର କରାଯାଇନାହିଁ। ଅନବଧାନତା ବଶତଃ ସେଗୁଡିକ ହଜିଯାଇଛି ବୋଲି ଶୁଣିଛି।

ମୋର ଭକ୍ତିଭାଜନ ଶ୍ରେଷ୍ଠ କକା ରାୟସାହେବ ରଘୁନାଥ ରାଓ—ଯାହାଙ୍କର ଅସାଧାରଣ ଭ୍ରାତୃଭକ୍ତି ସର୍ବଦା ତାଙ୍କୁ ତଦୀୟ ଜ୍ୟେଷ୍ଠଭ୍ରାତାଙ୍କ ପଦାଙ୍କ ଅନୁସରଣରେ ବ୍ରତୀ କରୁଥିଲା, ଅର୍ଦ୍ଧଶତାବ୍ଦୀ କାଳ ଯେ ଉତ୍କଳର ସର୍ବବିଧ ଉନ୍ନତିଜନକ କାର୍ଯ୍ୟରେ ସହଯୋଗୀତା କରି ଆସିଥିଲେ, ପରିବାର ଓ ଦେଶର ବହୁ ଘଟଣା ଯାହାଙ୍କୁ ଜଣାଥିଲା—ସେ ମଧ୍ୟ ୨୩-୩-୫୨ରେ ସ୍ୱର୍ଗାରୋହଣ କଲେ।

କବି ରାଧାନାଥ ରାୟଙ୍କ ଆତ୍ମଜ ଓଡ଼ିଆ ଭାଷାର ସୁଲେଖକ ଶଶୀଭୂଷଣ ରାୟ, ଯେ ମଧୁସୂଦନଙ୍କୁ ଜ୍ୟେଷ୍ଠ ଭ୍ରାତାତୁଲ୍ୟ ଶ୍ରଦ୍ଧା, ଭକ୍ତି କରୁଥିଲେ ଓ ତାହାଙ୍କୁ ସ୍ମରଣ କରି ଉତ୍କଳ ସାହିତ୍ୟରେ ବହୁବାର ଲେଖିଥିଲେ, ସେ ମଧ୍ୟ କେତେ ବର୍ଷ ହେଲା ପରଲୋକ ଗମନ କରିଅଛନ୍ତି।

ବାପାଙ୍କ ଜୀବନ କଥା ଭଲ ଭାବରେ ଜାଣିବା ପାଇଁ ମୁଁ ଆଗ୍ରହ ପ୍ରକାଶ କରିବାରୁ ମୃତ୍ୟୁର ବର୍ଷକ ପୂର୍ବରୁ ବାପା ମୋତେ କହିଥିଲେ, "ଅନେକଙ୍କର ଅଜ୍ଞାତ ଅଥଚ ଜ୍ଞେୟ କଥା ତୋତେ କହିବି" ତାହା ମଧ୍ୟ ହୋଇନାହିଁ।

ମଧୁସୂଦନଙ୍କ ମୃତ୍ୟୁପରେ ଅର୍ଦ୍ଧଶତାବ୍ଦୀ ପୂର୍ଣ୍ଣ ହେଲା । ମୁଁ ପିତୃଦେବଙ୍କ ଉଲ୍ଲେଖଯୋଗ୍ୟ ଜୀବନୀର ଅଭାବ ସର୍ବଦା ଅନୁଭବ କରିଅଛି, କିନ୍ତୁ ନିଜର ଅଯୋଗ୍ୟତା ଓ ଅକ୍ଷମତା କଥା ସ୍ମରଣ କରି ଏ କାର୍ଯ୍ୟରେ ହସ୍ତକ୍ଷେପ କରିବାକୁ ସଙ୍କୁଚିତ ହୋଇଥିଲି । ୧୯୫୪ ଖ୍ରୀଷ୍ଟାବ୍ଦରେ କଟକରେ ମଧୁସୂଦନଙ୍କ ଜନ୍ମଶତବାର୍ଷିକୀ ଉତ୍ସବ, ତାଙ୍କ ପରିବାର ଓ ଉତ୍କଳ ବ୍ରାହ୍ମସମାଜ କର୍ତ୍ତୃକ ପାଳିତ ହେଲା । ସାଧାରଣ ବ୍ରାହ୍ମସମାଜର ଆଚାର୍ଯ୍ୟ ଶ୍ରୀଯୁକ୍ତ ନନ୍ଦିଭୂଷଣ ଦାସଗୁପ୍ତ ଏହି ଉପଲକ୍ଷ୍ୟେ କଟକ ଯାଇ ତତ୍ରତ୍ୟ ବ୍ରହ୍ମମନ୍ଦିରରେ ଓ ମଧୁସୂଦନଙ୍କ ପରିବାରରେ ଉପାସନା ଓ କବିଙ୍କ ଜୀବନ ପ୍ରସଙ୍ଗ ଆଲୋଚନା କଲେ । ମୁଁ ମଧ୍ୟ ଏହି ଉପଲକ୍ଷ୍ୟେ କଟକ ଯାଇ ମଧୁସୂଦନଙ୍କ ସମାଧି କ୍ଷେତ୍ରରେ ଓ କୌଣସି କୌଣସି ବ୍ରାହ୍ମ ଏବଂ ଆତ୍ମୀୟସ୍ୱ-ମାନଙ୍କ ଗୃହରେ ଉପାସନା ଓ ଭକ୍ତକବିଙ୍କ ଜୀବନପ୍ରସଙ୍ଗ ଆଲୋଚନା କଲି ।

ଓଡ଼ିଶାର ଜନସାଧାରଣଙ୍କ କର୍ତ୍ତୃକ ଏହି ଶତବାର୍ଷିକୀ ଉତ୍ସବର ଆୟୋଜନ ଚାଲିଥାଏ; ଏବଂ ସଭାରେ ପିତୃ ସ୍ମୃତି ପାଠ କରିବା ପାଇଁ ମୋ ନିକଟକୁ ଅନୁରୋଧ ପତ୍ର ଆସିଲା । ମୁଁ ଗୋଟିଏ ରଚନା ଓଡ଼ିଆ ଭାଷାରେ ଲେଖି ଯଥା ସମୟରେ ପଠାଇ ଦେଲି । କିନ୍ତୁ ଦୁଃଖରେ ବିଷୟ, ଏହି ସଭା ଆହୂତ ହେଲା ନାହିଁ । କେତେ ମାସ ପରେ ମୁଁ ସେହି ଓଡ଼ିଆ ଲେଖାଟି ଫେରାଇ ଆଣିଲି । ତା'ପରେ ଥରେ "କଥାଶିଳ୍ପ" ପତ୍ରିକାର ସମ୍ପାଦିକା ଶ୍ରୀମତୀ ବାଣୀ ଚକ୍ରବର୍ତ୍ତୀଙ୍କ ଅନୁରୋଧରେ ମୋର ଲେଖା ଓଡ଼ିଆ ପିତୃସ୍ମୃତିର ବଙ୍ଗାନୁବାଦ କଲି ଓ ତାହା ୧୩୬୪ ବଙ୍ଗାବ୍ଦରେ 'କଥାଶିଳ୍ପ' ପତ୍ରିକାର କାର୍ତ୍ତିକ, ମାର୍ଗଶୀର, ପୌଷ ଓ ମାଘ ସଂଖ୍ୟାରେ ପ୍ରକାଶିତ ହେଲା ଏବଂ ଏହା ଅନେକଙ୍କ ଦ୍ୱାରା ପ୍ରଶଂସିତ ହେଲା । ଶ୍ରୀମତୀ ବାଣୀ ଚକ୍ରବର୍ତ୍ତୀ ମୋର ଏହି ଲେଖାଟି କୌଣସି କୌଣସି ସୁଲେଖକଙ୍କ ଦ୍ୱାରା ପ୍ରଶଂସିତ ହୋଇଅଛି ବୋଲି ମୋତେ ଉତ୍ସାହିତ କରିଥିଲେ ।

ପିତୃଦେବଙ୍କ ଲିଖିତ 'ଋଷିଚରିତ' କବିତା ୧୨୯୮ ବଙ୍ଗାବ୍ଦରେ ବଙ୍ଗଳା 'ନବ୍ୟଭାରତ' ପତ୍ରିକାର ମାର୍ଗଶୀର ସଂଖ୍ୟାରେ ପ୍ରକାଶିତ ହୋଇଥିଲା; ତା'ପରେ ରବୀନ୍ଦ୍ରନାଥଙ୍କ ସମ୍ପାଦିତ "ସାଧନା" ପତ୍ରିକାରେ ୧୨୯୮ ବଙ୍ଗାବ୍ଦରେ ପୌଷ ସଂଖ୍ୟାରେ ଏହାର ଅନୁକୂଳ ସମାଲୋଚନା ବାହାରିଲା ।

ଏହି 'ନବ୍ୟଭାରତ' ଓ 'ସାଧନା'ରୁ ଉକ୍ତ କବିତା ଓ ତାହାର ସମାଲୋଚନା ମୋ ଅନୁରୋଧରେ ଶ୍ରୀମାନ ଯୋଗେଶଚନ୍ଦ୍ର ବାଗଲ ବଙ୍ଗୀୟ ସାହିତ୍ୟ ପରିଷଦରୁ ଅନେକ ଯତ୍ନ ଓ କଷ୍ଟ ସ୍ୱୀକାର କରି ସଂଗ୍ରହ କରିଦେଲେ । ସେଥିପାଇଁ ମୁଁ ତାଙ୍କ ନିକଟରେ କୃତଜ୍ଞ । ଏହାପରେ ମୁଁ ପିତୃଦେବଙ୍କ ଲିଖିତ ଚିଠିପତ୍ର ପ୍ରଭୃତି ମଝିରେ ମଝିରେ ଶାରଦୀୟ ଯୁଗାନ୍ତରରେ ପ୍ରକାଶ କରିଅଛି; ଏବଂ ଏହି 'ଋଷିଚିତ୍ର' କବିତା ବିଷୟ ଓ ପିତୃପ୍ରସଙ୍ଗ ଯୁଗାନ୍ତରରେ କେତେକ ସଂଖ୍ୟାରେ ପ୍ରକାଶ କରିଅଛି । ବଙ୍ଗଦେଶରେ ଏହା ବେଶ୍ ଆଦୃତ ହୋଇଅଛି ଦେଖି ପିତୃଦେବଙ୍କ ଜୀବନ ଚରିତଟି ଲେଖିବା ପାଇଁ ମୋର ଆଗ୍ରହ ବଢ଼ିଥାଏ । ପିତୃଦେବଙ୍କ ଗ୍ରନ୍ଥାବଳୀ ଓଡ଼ିଆରେ ଲେଖା, ଓଡ଼ିଶାବାସୀ ତାହାଙ୍କୁ ଭକ୍ତକବି ନାମ ଦେଇଛନ୍ତି । ମୋର ସ୍ୱଭାବତଃ ଇଚ୍ଛା ହୋଇଥିଲା, ଜୀବନଚରିତଟି ଓଡ଼ିଆ ଭାଷାରେ ଲେଖିବି; ସେ ଚେଷ୍ଟା ମଧ୍ୟ କରିଥିଲି; କାରଣ ଓଡ଼ିଆ ମଧ୍ୟ ମୋର ମାତୃଭାଷା; ସେ ଭାଷାରେ ଲେଖିବାକୁ ମୋର କୌଣସି ଅସୁବିଧା ହେବା କଥା ନୁହେଁ । କିନ୍ତୁ ମୁଁ ଦୂରରେ ଥାଏ, କଟକରୁ ଆଶାନୁରୂପ ଆନୁକୂଲ୍ୟ ନପାଇଲେ, ଓଡ଼ିଆ ଭାଷାରେ ଜୀବନୀଟି ଲେଖିବା ଓ ପ୍ରକାଶ କରିବା ସମ୍ଭବ ନୁହେଁ ଦେଖି ସେ ଆଶା ତ୍ୟାଗ କରି ବଙ୍ଗଳାରେ ଲେଖିଲି । ବଙ୍ଗଦେଶରେ ମୁଁ ଆଶାତିରିକ୍ତ ଉତ୍ସାହ ଓ ଆନୁକୂଲ୍ୟ ଲାଭ କରିଅଛି । ବଙ୍ଗର ବିଶିଷ୍ଟ ମାସିକପତ୍ର "ବସୁଧାରା"ର ସମ୍ପାଦକ (ଅଧୁନା ସ୍ୱର୍ଗତ) ଶ୍ରଦ୍ଧେୟ ସ୍ନିଗ୍ଧଚନ୍ଦ୍ର ଭଟ୍ଟାଚାର୍ଯ୍ୟ ମହାଶୟ ପିତୃଦେବଙ୍କ ଜୀବନଚରିତ ଖଣ୍ଡିକର ପାଣ୍ଡୁଲିପି ଦେଖି ଆନ୍ତରିକ ଶ୍ରଦ୍ଧା ଓ ପ୍ରୀତି ସହକାରେ ଏହା ଧାରାବାହିକ ଭାବରେ ପତ୍ରସ୍ଥ କରିବାକୁ ସ୍ୱୀକୃତ ହୁଅନ୍ତି; କିନ୍ତୁ ଦୁଃଖର ବିଷୟ, ୧୩୬୮ ବଙ୍ଗାବ୍ଦରେ ଶ୍ରାବଣ ସଂଖ୍ୟା 'ବସୁଧାରା'ରେ ଉକ୍ତ ଜୀବନଚରିତର ପ୍ରଥମାଂଶ ପ୍ରକାଶ ପାଇବା ପରେ ସେ ପରଲୋକ ଗମନ କଲେ । ଉକ୍ତ ପତ୍ରିକାର ପରବର୍ତ୍ତୀ ସାତଟି ସଂଖ୍ୟାରେ ଏହି ଜୀବନଚରିତର ବହୁଳାଂଶ ପ୍ରକାଶିତ ହୁଏ । ଏଥିପାଇଁ ମୁଁ ଶ୍ରଦ୍ଧେୟ ସ୍ନିଗ୍ଧଚନ୍ଦ୍ର ଭଟ୍ଟାଚାର୍ଯ୍ୟ ଏବଂ 'ବସୁଧାରା' ପରିଚାଳକବର୍ଗଙ୍କ ନିକଟରେ ସବିଶେଷ କୃତଜ୍ଞ ।

ପିତୃଦେବଙ୍କ ଜୀବନ କଥା ମୋର ବଡ଼ ପ୍ରିୟ । ମୋର ସ୍ମୃତିରେ ତାଙ୍କର ବହୁ କଥା ଉଜ୍ଜ୍ୱଳ ଭାବରେ ଜାଗ୍ରତ ରହିଅଛି । ତାଙ୍କର ଚିଠିପତ୍ର ମୁଁ ଯତ୍ନ ସହିତ ସାଇତି ରଖିଛି ଓ ମଝିରେ ମଝିରେ ପାଠ କରେ । ମୋର

ବଡ଼ ଭଉଣୀ ବାସନ୍ତୀ ଦେବୀଙ୍କ ନିକଟରେ ମଧ୍ୟ ବାପାଙ୍କ ଚିଠିପତ୍ର ସଯତ୍ନରେ ରକ୍ଷିତ ଥିଲା । ବଡ଼ଭାଇ ଓ ଅନ୍ୟ ଭାଇଭଉଣୀମାନଙ୍କ ନିକଟକୁ ଲିଖିତ ବାପାଙ୍କ ଚିଠି ମଧ୍ୟ ସେମାନଙ୍କ ନିକଟରୁ ପାଇଅଛି । ଏହି ଗ୍ରନ୍ଥ ରଚନାରେ ସେଗୁଡ଼ିକ ମୋତେ ବହୁ ସାହାଯ୍ୟ କରିଅଛି । ମୋର କକା ରାୟସାହେବ ରଘୁନାଥ ରାଓ ମହାଶୟଙ୍କ ଜ୍ୟେଷ୍ଠା କନ୍ୟା ଶ୍ରୀମତୀ ସୁଶୀଳା ମିତ୍ର ଏହି ଗ୍ରନ୍ଥ ପ୍ରଣୟନରେ ମୋତେ ବହୁ ସାହାଯ୍ୟ କରିଆସିଛନ୍ତି । ଗ୍ରନ୍ଥ ଖଣ୍ଡିକ ଓଡ଼ିଆ ଭାଷାରେ ପ୍ରକାଶ କରିବାକୁ ମୋର ଆଗ୍ରହ ଜାଣି ସେ ଏହାର ଓଡ଼ିଆ ଅନୁବାଦର ଦାୟିତ୍ୱ ନେଇଛନ୍ତି ।

କୃତଜ୍ଞତା ସହିତ ସ୍ୱୀକାର କରୁଅଛି ଯେ, ମୃତ୍ୟୁଞ୍ଜୟ ରଥଙ୍କ ଲିଖିତ 'ଗ୍ରନ୍ଥକ ମଧୁସୂଦନ'ରୁ ମୁଁ ଏହି ଜୀବନୀ ଲେଖିବାରେ ବହୁ ଉପକରଣ ପାଇଅଛି । ଯେଉଁ ବିଷୟଗୁଡ଼ିକ ମୋର ମନେଥିଲା, ମୃତ୍ୟୁଞ୍ଜୟ ରଥ ମହାଶୟଙ୍କ ଲେଖାରେ ମୁଁ ସେ ସମସ୍ତ ପାଇଅଛି ଏବଂ ମୋର ସେହି ସ୍ମୃତି ଆହୁରି ସ୍ପଷ୍ଟ ଓ ଉଜ୍ଜ୍ୱଳ ହୋଇଅଛି । ସମାଜର ଓ ଦେଶର ତତ୍କାଳୀନ ଅବସ୍ଥା ମଧ୍ୟ ତାଙ୍କ ଲେଖାରେ ବହୁ କ୍ଷେତ୍ରରେ ବିଦ୍ୟମାନ । ମଧୁସୂଦନଙ୍କ କର୍ମଜୀବନର ଗୋଟିଏ ଧାରାବାହିକ ବିବରଣୀ ମଧ୍ୟ ତାଙ୍କ ଲେଖା ମଧ୍ୟରେ ସ୍ଥାନ ପାଇଅଛି । ଉତ୍କଳର ମାସିକ ପତ୍ର ପତ୍ରିକାମାନଙ୍କ ସମ୍ବନ୍ଧରେ ଗୋଟିଏ ପ୍ରାମାଣ୍ୟ ତଥ୍ୟ ତାଙ୍କର ଗୋଟିଏ ମୂଲ୍ୟବାନ ପ୍ରବନ୍ଧରେ ଲିପିବଦ୍ଧ । ଉତ୍କଳ ସାହିତ୍ୟରେ ୧୩୨୭ କାର୍ତ୍ତିକ, ମାର୍ଗଶୀର ସଂଖ୍ୟାରେ ତାହା ପ୍ରକାଶିତ ହୋଇଥିଲା । ଫକୀର ମୋହନ ସେନାପତି ମହାଶୟଙ୍କ ଓଡ଼ିଆ ଆତ୍ମଜୀବନୀ ଓ ଉତ୍କଳ ଭ୍ରମଣ ପ୍ରଭୃତି ପୁସ୍ତକରୁ ମଧ୍ୟ ମୁଁ ତଥ୍ୟ ସଂଗ୍ରହ କରିଅଛି । ସ୍ୱର୍ଗତ "ରାଧାନାଥ ଜୀବନୀ"ରୁ ମଧୁସୂଦନଙ୍କ ବିଷୟ ଆଶାନୁରୂପେ ପାଇନାହିଁ । ସାମାନ୍ୟ ଯାହା ପାଇଅଛି, ତାହା ମୋ ସ୍ମୃତି ସହିତ ମିଳାଇ ନେଇଛି ।

ପାରିବାରିକ ଜୀବନ ପରିଚ୍ଛେଦଟି ମୋର ନିଜ ସ୍ମୃତି, ବାପାଙ୍କ ଚିଠିପତ୍ର ଏବଂ ଆମ ଭାଇ-ଭଉଣୀଙ୍କ ସ୍ମୃତି ସାହାଯ୍ୟରେ ଲିଖିତ । "ରାମତନୁ ଲାହିଡ଼ୀ ଓ ତତ୍କାଳୀନ ବଙ୍ଗ ସମାଜ" ମୋର ଆଦର୍ଶ ହେଲେ ମଧ୍ୟ ମୁଁ ଏହି ଗ୍ରନ୍ଥ ରଚନାରେ ସେ ଆଦର୍ଶକୁ ସମ୍ୟକ୍ ରୂପେ ରକ୍ଷା କରିପାରିନାହିଁ । ଅର୍ଦ୍ଧଶତାବ୍ଦୀ ହେଲା ଭକ୍ତକବି ପରଲୋକ ଗମନ କରି-ଅଛନ୍ତି । ମୋର ମଧ୍ୟ ୮୨ ବର୍ଷ ପୂର୍ଣ୍ଣ ହୋଇଗଲଣି । କିନ୍ତୁ, ଚାରି ବର୍ଷ

ହେଲ ମୁଁ ଏହା ଆରମ୍ଭ କରିଅଛି । ବୃଦ୍ଧା ବୟସରେ, ରୁଗ୍ଣ ଦେହ, ଆତ୍ମୀୟ ବିୟୋଗ, ରୋଗ, ଶୋକ ଓ ନାନା ବାଧା ମଧ୍ୟରେ ଧୀରେ ଧୀରେ ଲେଖିଅଛି । ମୋର ଦୃଷ୍ଟିଶକ୍ତି, ସ୍ମରଣଶକ୍ତି ମଧ୍ୟ ମ୍ଳାନ ହୋଇଗଲାଣି । କୌଣସି ପ୍ରକାରେ ଗ୍ରନ୍ଥଖଣ୍ଡିକୁ ଶେଷ କରି ମୁଦ୍ରିତ କଲି । ଅନେକ ତ୍ରୁଟି ରହିଗଲା ।

ଉତ୍କଳର ନବଯୁଗ ନେତାମାନଙ୍କର ସଂକ୍ଷିପ୍ତ ଜୀବନୀ ଓ ସେମାନଙ୍କ ଅବଦାନର ବିଷୟ ଯାହା ମୋର ଲେଖିବାର ଇଚ୍ଛା ଥିଲା, ତାହା ମଧ୍ୟ ସମ୍ପୂର୍ଣ୍ଣ ଭାବରେ ଦେଇପାରିଲି ନାହିଁ । ଏ ଅଭାବ ମୁଁ ସର୍ବଦା ଅନୁଭବ କରେ; ମୋର ଅକ୍ଷମତା ଦୋଷରୁ ମୁଁ ଯାହା ସଂଗ୍ରହ କରିଥିଲି ତାହାହିଁ ଦେଲି । ଭବିଷ୍ୟତରେ କେହି ଯଦି ଏହି ଅଭାବ ପୂରଣର ଚେଷ୍ଟା କରନ୍ତି ବଡ଼ ଭଲ ହେବ । ମୁଁ ଯାହା ସଂଗ୍ରହ କରିଅଛି, ପରିଶିଷ୍ଟରେ ଦେଲି ।

ଶ୍ରୀଯୁକ୍ତ ପ୍ରିୟରଞ୍ଜନ ସେନ ଭକ୍ତକବିଙ୍କ ସାହିତ୍ୟ ସାଧନା ବିଷୟରେ ଗୋଟିଏ ପ୍ରବନ୍ଧ ଲେଖି, ଶ୍ରୀମାନ ଦିଲୀପ କୁମାର ବିଶ୍ୱାସ ଓଡ଼ିଶାର "ଐତିହାସିକ ପୃଷ୍ଠଭୂମିକା" ଲେଖି ଏବଂ ଶ୍ରୀଯୁକ୍ତ ଅନ୍ନଦାଶଙ୍କର ରାୟ ଏହି ଗ୍ରନ୍ଥର ଭୂମିକା ଲେଖି, ମୋତେ ଏହି ଗ୍ରନ୍ଥ ପ୍ରଣୟନରେ ବହୁପ୍ରକାର ସାହାଯ୍ୟ କରି ଚିର କୃତଜ୍ଞତା ପାଶରେ ଆବଦ୍ଧ କରିଅଛନ୍ତି ।

ଶ୍ରୀମାନ୍ ନଗେନ୍ଦ୍ରନାଥ ଚଟ୍ଟୋପାଧ୍ୟାୟ, ଯେ ପ୍ରାୟ ଅର୍ଦ୍ଧଶତାବ୍ଦୀ ପୂର୍ବରୁ ମୋର ଭକ୍ତିଭାଜନ ଶ୍ୱଶୁର ମହାଶୟଙ୍କ ସେବା କରିବାର ଆକୁଳ ଆଗ୍ରହରେ ଆସି ଦୀର୍ଘକାଳ ଏହି ପରିବାରର ନିକଟ ଆତ୍ମୀୟ ରୂପେ କଟାଇଛନ୍ତି, ସେ ହିଁ ମୋର ସୋଦରପ୍ରତିମ । ଏହି ଗ୍ରନ୍ଥ ପ୍ରଣୟନରେ ତାଙ୍କ ସାହାଯ୍ୟ କଥା ପ୍ରକାଶ କରିବାକୁ ଉପଯୁକ୍ତ ଭାଷା ମୋର ନାହିଁ । ତାଙ୍କର ଦୀର୍ଘକାଳ ବ୍ୟାପୀ ଅକୁଣ୍ଠ ସହାୟତା ବ୍ୟତୀତ ମୋର ଚିରପୋଷିତ ଆକାଂକ୍ଷାଟିର ଏହି ବାସ୍ତବ ରୂପାୟନ ଦୁରୂହ ହୋଇଥାନ୍ତା । ବହୁ ଲାଇବ୍ରେରି ବୁଲି ଓଡ଼ିଶାର ଇତିହାସଗୁଡ଼ିକରୁ ବହୁ ପରିଶ୍ରମରେ ପ୍ରାମାଣ୍ୟ ତଥ୍ୟ ସଂଗ୍ରହ କରି ଓଡ଼ିଶାର ତତ୍କାଳୀନ ଶିକ୍ଷାବସ୍ଥା ଏବଂ ବ୍ରାହ୍ମସମାଜର ଅଭ୍ୟୁଦୟର ସଂକ୍ଷିପ୍ତ ବିବରଣ ରଚନାରେ ସେ ମୋତେ ବିଶେଷ ଭାବରେ ସାହାଯ୍ୟ କରିଅଛନ୍ତି ଏବଂ ଏହି ପୁସ୍ତକର ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ବହୁ

ସ୍ଥାନରେ ସଂଶୋଧନ, ସଂଯୋଜନ ଏବଂ ଘଟଣାବିନ୍ୟାସ ବ୍ୟତୀତ ମୁଦ୍ରଣ ବିଷୟରେ ମଧ୍ୟ ବହୁପ୍ରକାର ସହାୟତା ସେ କରିଅଛନ୍ତି ।

ସର୍ବଶ୍ରୀ ଜ୍ୟୋତିରିନ୍ଦ୍ର ନାଥ ଦାସ, ସୁଧୀର କୁମାର ଚଟ୍ଟୋପାଧ୍ୟାୟ, ଚିତ୍ତରଞ୍ଜନ ଚକ୍ରବର୍ତ୍ତୀ, ପୂର୍ଣ୍ଣେନ୍ଦୁ ମୋହନ ଗଙ୍ଗୋପାଧ୍ୟାୟ ଓ ମଣୀନ୍ଦ୍ର କୁମାର ସରକାର ଏହି କାର୍ଯ୍ୟରେ ମୋତେ ନାନା ପ୍ରକାର ସାହାଯ୍ୟ କରିଥିବାରୁ ଆନ୍ତରିକ ଧନ୍ୟବାଦ ଜଣାଉଛି ।

ମଧୁସୂଦନ ଗ୍ରନ୍ଥାବଳୀର ପ୍ରଥମ ସଂସ୍କରଣ ୧୯୧୫ ଖ୍ରୀଷ୍ଟାବ୍ଦରେ ମୋର ଅନୁଜ ସହୋଦର ପ୍ରଶାନ୍ତ ରାଓଙ୍କ ଉଦ୍ୟୋଗରେ ପ୍ରକାଶିତ ହୋଇଥିଲା । ଏହି ସଂସ୍କରଣରେ ତାହା ଉଲ୍ଲେଖ ଅଛି । ଏହାପରେ ବହୁମୂତ୍ର ରୋଗରେ ଆକ୍ରାନ୍ତ ହେବାରୁ ତାଙ୍କର ସ୍ୱାସ୍ଥ୍ୟ ଦିନକୁ ଦିନ କ୍ଷୀଣ ହେଉଥିଲା, କିନ୍ତୁ ପିତୃଦେବଙ୍କ ଜୀବନୀ ପ୍ରକାଶ କରିବାର ଇଚ୍ଛା ସେ ବେଳେ ବେଳେ ବ୍ୟକ୍ତ କରୁଥିଲେ । ୧୯୨୭ ଖ୍ରୀଷ୍ଟାବ୍ଦରେ ତାଙ୍କର ଅକାଳ ମୃତ୍ୟୁ ହେବାରୁ, ସେ ସଂକଳ୍ପ କାର୍ଯ୍ୟରେ ପରିଣତ ହୋଇପାରି ନାହିଁ । ଆମ୍ଭମାନଙ୍କର ବଡ଼ଭଉଣୀ ବାସନ୍ତୀ ଦେବୀ ମଧ୍ୟ (ଭକ୍ତକବିଙ୍କ ପ୍ରଥମ ସନ୍ତାନ) ୧୯୫୩ ଖ୍ରୀଷ୍ଟାବ୍ଦରେ ପରଲୋକ ଗମନ କରିଅଛନ୍ତି । ମୋର ଅନ୍ତର ଆଜ ଆକୁଳ ହୋଇ ଏମାନଙ୍କର ଶୁଭକାମନାକୁ ସ୍ମରଣ କରୁଅଛି ।

—ଗ୍ରନ୍ଥକର୍ତ୍ତ୍ରୀ

# ବଂଶାବଳୀ

ନାଗପୁରରୁ ଏହି ବଂଶ - ଅନୁମାନ ୧୭୫୩ ଖ୍ରୀଷ୍ଟାବ୍ଦରେ ରାଜକାର୍ଯ୍ୟ ଉପଲକ୍ଷ୍ୟେ ଓଡ଼ିଶାରେ ଆସି ବାସ କରିବାକୁ ଆରମ୍ଭ କଲେ । ୧୮୦୩ ଖ୍ରୀଷ୍ଟାବ୍ଦରେ ନାଗପୁରର ରାଜା ରଘୁଜୀ ଭୋଁସଲାଙ୍କ ନିକଟରୁ ସନ୍ଧି ସୂତ୍ରରେ ଓଡ଼ିଶା ଇଂରେଜ ଶାସନ ଅଧୀନକୁ ଆସିଲା । ମଧୁସୂଦନଙ୍କ ପୂର୍ବପୁରୁଷ ଭୋଁସଲାଙ୍କର ଦୌହିତ୍ର ବଂଶ ଥିଲେ । ଓଡ଼ିଶା ଇଂରେଜ ଶାସନାଧୀନ ହେବାପରେ ବହୁ ମହାରାଷ୍ଟ୍ରୀୟ ପରିବାର ନାଗପୁରକୁ ଫେରିଗଲେ । ପ୍ରାୟ ଶତାଧିକ ମାତ୍ର ପରିବାର ଓଡ଼ିଶାରେ ରହିଗଲେ । ଅଧିକାଂଶ ଥିଲେ ପୁରୀ ଏବଂ କଟକ ଜିଲ୍ଲା ନିବାସୀ । ମଧୁସୂଦନଙ୍କର ବଂଶ ପରିଚୟ ଯାହା ମିଳିଅଛି ନିମ୍ନରେ ପ୍ରଦତ୍ତ ହେଲା ।





ଭକ୍ତ କବି ମଧୁସୂଦନ ରାଓ (ରାୟବାହାଦୁର)
ଜନ୍ମ - ୧୫ ମାଘ, ୧୭୭୪ ଶକାବ୍ଦ (ଇଂ ୧୯ ଜାନୁଆରୀ ୧୮୫୩)
ମୃତ୍ୟୁ - ୧୮ ଡିସେମ୍ବର, ୧୯୧୨ ଖ୍ରୀଷ୍ଟାବ୍ଦ ଗ୍ରନ୍ଥ ପାଠନ ସମୟରେ

# ଭକ୍ତକବି ମଧୁସୂଦନ ରାଓ
# ଓ
# ଉତ୍କଳରେ ନବଯୁଗ

## ପ୍ରଥମ ପରିଚ୍ଛେଦ

### ଐତିହାସିକ ପଟଭୂମିକା

( ଶ୍ରୀ ଦିଲୀପ କୁମାର ବିଶ୍ୱାସ )

ପୂର୍ବଭାରତ ପକ୍ଷରେ ଖ୍ରୀଷ୍ଟୀୟ ଊନବିଂଶ ଶତକ ଏକ ସ୍ମରଣୀୟ କାଳ । ପ୍ରାଶ୍ଚାତ୍ୟ ଶିକ୍ଷା ଏବଂ ଇଉରୋପୀୟ ଜ୍ଞାନବିଜ୍ଞାନର ସଂସ୍ପର୍ଶ ହେତୁ ଭାରତୀୟ ଚିତ୍ତରେ ସଂସ୍କାରକ ମୁକ୍ତିର ଯେଉଁ ଦୀପଶିଖା ଏହି ଶତାବ୍ଦୀରେ ଜଳି ଉଠିଥିଲା, ତାହାର ବ୍ୟାପକ ଓ ଦୀର୍ଘସ୍ଥାୟୀ ପ୍ରଭାବ ସର୍ବପ୍ରଥମେ ଲକ୍ଷ୍ୟ କରାଯାଏ ଭାରତ ବର୍ଷର ପୂର୍ବାଞ୍ଚଳରେ । ଆଜି ଏକଥା ଇତିହାସର ଛାତ୍ରମାନେ ସ୍ୱୀକାର କରିବେ ଯେ, ଏହି ପ୍ରଭାବର ମୂଳକେନ୍ଦ୍ର ଥିଲା ସାଧାରଣ ଅର୍ଥରେ ବଙ୍ଗଳା ଦେଶ ଏବଂ ବିଶେଷ ଅର୍ଥରେ ତତ୍କାଳୀନ ବ୍ରିଟିଶ ଭାରତର ରାଜଧାନୀ ଏବଂ ବଙ୍ଗ ଦେଶର ପ୍ରଧାନ ନଗରୀ କଲିକତା । ବଙ୍ଗଦେଶର ପୂର୍ବରେ ଅବସ୍ଥିତ ଆସାମ ପ୍ରଦେଶରେ ଏବଂ ପଶ୍ଚିମ ଓ ଦକ୍ଷିଣ-ପଶ୍ଚିମ ଅଞ୍ଚଳରେ ପ୍ରତିବାସୀ ପ୍ରଦେଶ ବିହାର ଓ ଓଡ଼ିଶାରେ ମୂଳତଃ ବଙ୍ଗଦେଶରୁ ଧୀରେ ଧୀରେ ଏହି ନବ ଭାବଧାରା ସଞ୍ଚାରିତ ହୋଇଥିଲା । ଆସାମ ଓ ବିହାରର କଥା ବର୍ତ୍ତମାନ ପ୍ରସଙ୍ଗରେ ଆମ୍ଭମାନଙ୍କର ଆଲୋଚ୍ୟ ନୁହେଁ । କିନ୍ତୁ ଏ କଥା ନିଃସଙ୍କୋଚରେ କୁହାଯାଇପାରେ ଓଡ଼ିଶାର ନୂତନ ଯୁଗର ସାହିତ୍ୟରେ ଭକ୍ତକବି ମଧୁସୂଦନଙ୍କ ଆବିର୍ଭାବ ଏହି ବଙ୍ଗ-ପ୍ରଭାବର ହିଁ ଅନ୍ୟତମ ଶୁଭକର ନିଦର୍ଶନ । କୌଣସି ସଙ୍କୀର୍ଣ୍ଣ ପ୍ରାଦେଶିକ ଦୃଷ୍ଟିଭଙ୍ଗୀରୁ ଏ କଥା କହୁନାହିଁ । କାରଣ ଏହା ଯେଉଁ ଯୁଗର କଥା, ସେତେବେଳେ ଆଞ୍ଚଳିକ ବା ପ୍ରାଦେଶିକ ଚେତନା ଆମ୍ଭମାନଙ୍କ ନବଗଠିତ ଜାତୀୟ ମନୋଭାବକୁ ଖଣ୍ଡିତ କରିବାକୁ ଆରମ୍ଭ କରିନଥିଲା । ପରସ୍ପରକୁ ଆମେ

ସେତେବେଳେ ପ୍ରସନ୍ନ ଚିତ୍ତରେ ଗ୍ରହଣ କରୁଥିଲେ । କିନ୍ତୁ ସଙ୍ଗେ ସଙ୍ଗେ ଏହା ମଧ୍ୟ ଅବଶ୍ୟ ସ୍ୱୀକାର୍ଯ୍ୟ ଯେ, ଓଡ଼ିଶାର ଓ ଓଡ଼ିଆ ସାହିତ୍ୟର ପୂର୍ବକଥିତ ଏହି ନୂତନ ଯୁଗକୁ କେବଳ ମାତ୍ର ଊନବିଂଶ ଶତାବ୍ଦୀୟ ବଙ୍ଗ-ପ୍ରଭାବ-ଜାତ କହିଲେ ସେହି ଉକ୍ତି ମଧ୍ୟରେ ଗୁରୁତର ଅସମ୍ପୂର୍ଣ୍ଣତା ରହିଯିବ । ବଙ୍ଗଦେଶ ପରି ଓଡ଼ିଶାର ମଧ୍ୟ ଗୋଟିଏ ନିଜସ୍ୱ ଅତି ପ୍ରାଚୀନ ସଂସ୍କୃତି-ଧାରା ଅଛି । ପ୍ରାଚୀନ ଓ ମଧ୍ୟଯୁଗରେ ବହୁ ଜାତି ଓ ଗୋଷ୍ଠୀ ବିଭିନ୍ନ ସମୟରେ ଆସି ଏଠାରେ ବାସ କରିଅଛନ୍ତି, ବେପାର ବାଣିଜ୍ୟ, ଧର୍ମପ୍ରଚାର ପ୍ରଭୃତି ମାଧ୍ୟମରେ ଉତ୍ତର ଓ ଦକ୍ଷିଣ ଭାରତର ବିଭିନ୍ନ ଅଞ୍ଚଳ ସହିତ ଏହାର ଯୋଗ ସ୍ଥାପିତ ହୋଇଅଛି, ସମୁଦ୍ର ବାଣିଜ୍ୟ ଓ ଦକ୍ଷିଣ ପୂର୍ବ ଏସିଆରେ ଉପନିବେଶ ସ୍ଥାପନ ପ୍ରଭୃତି କାର୍ଯ୍ୟରେ ଓଡିଶାର ପ୍ରାଚୀନ ଅଧିବାସୀବୃନ୍ଦ ଅଗ୍ରଣୀ ହୋଇ ବୈଦେଶିକ ପ୍ରଭାବ ପାଇଁ ଦ୍ୱାର ଉନ୍ମୁକ୍ତ କରିଅଛନ୍ତି; ମଧ୍ୟଯୁଗର ଆଫଗାନ, ମୋଗଲ ଓ ମରହଟ୍ଟାମାନଙ୍କ କର୍ତ୍ତୃକ ଓଡ଼ିଶା-ବିଜୟ ଓ ସେଠାରେ ରାଜ୍ୟ ସ୍ଥାପନ ଫଳରେ ମୁସଲମ ଓ ମରହଟ୍ଟା ଶାସନ-ପଦ୍ଧତି ଓ ଦରବାରୀ ସଂସ୍କୃତିର କିଛି କିଛି ପ୍ରଭାବ ଗଭୀର ଓ ବ୍ୟାପକ ଭାବରେ ନହେଲେ ମଧ୍ୟ, ଏହି ଅଞ୍ଚଳର କୌଣସି କୌଣସି ଅଂଶରେ ବଦ୍ଧମୂଳ ହୋଇଅଛି । ଗୋଟିଏ କଥାରେ, ଓଡ଼ିଶାର ନିଜସ୍ୱ ସଂସ୍କୃତିଧାରା ସୁପ୍ରାଚୀନ, ଗଭୀର ଓ ବହୁ ବିଚିତ୍ର ଉପାଦାନରେ ଗଠିତ । ଆଧୁନିକ ଓଡ଼ିଆ ଜାତି ଏହି ସଂସ୍କୃତି ସମ୍ପଦର ଉତ୍ତରାଧିକାରୀ ବହିରାଗତ ବିଚିତ୍ର ଭାବଧାରାକୁ ଆୟତ୍ତ ଓ ସମନ୍ୱିତ କରି ସଂସ୍କୃତିର ନବ ନବ ପର୍ବ ରଚନା କରିବାରେ ଓଡ଼ିଆମାନେ ବହୁକାଳ ପର୍ଯ୍ୟନ୍ତ ଅଭ୍ୟସ୍ତ ଥିଲେ । ସେହି ହେତୁ ଆଧୁନିକ ଯୁଗର ସୂଚନାରେ ସମ୍ପୂର୍ଣ୍ଣ ଗ୍ରହଣଶୀଳ ମନ ନେଇ ନୂତନ ଶିକ୍ଷା-ସଂସ୍କୃତିର ସମ୍ମୁଖୀନ ହେବା ଓଡ଼ିଆ ମନୀଷିମାନଙ୍କ ପକ୍ଷେ ଅପ୍ରତ୍ୟାଶିତ ବା କଠିନ ବୋଲି ମନେ ହେଉନଥିଲା ।

ପୂର୍ବ ଭାରତ ପ୍ରଥମରୁ ବୈଦିକ ଆର୍ଯ୍ୟ ସଭ୍ୟତାର କେନ୍ଦ୍ର-ବହିର୍ଭୂତ ଥିଲା ବୋଲି ଏହି ଅଞ୍ଚଳର ଇତିହାସ ଓ ସଂସ୍କୃତିରେ ଆର୍ଯ୍ୟ ଗୋଷ୍ଠୀ ସମ୍ପୂର୍ଣ୍ଣ ରୂପେ ସ୍ୱୀୟ ପ୍ରଭାବ ବିସ୍ତାର କରିପାରିନଥିଲା । ବସ୍ତୁତଃ ଆର୍ଯ୍ୟ ଓ ଅନାର୍ଯ୍ୟ ସଭ୍ୟତାର ଆଦି ସଂଘାତ ଓ ଉତ୍ତରକାଳୀନ ଶାନ୍ତିପୂର୍ଣ୍ଣ ସହାବସ୍ଥାନର ଚିତ୍ର ଓଡ଼ିଶାର ଇତିହାସରେ ଯେପରି ଜୀବନ୍ତ, ଭାରତର ଅନେକପର ଅଞ୍ଚଳରେ ସେପରି ଦୃଷ୍ଟିଗୋଚର ହୁଏ ନାହିଁ । ସଂସ୍କୃତ ସାହିତ୍ୟରେ ଉତ୍କଳ ସଭ୍ୟତାର ଏହି ଅନାର୍ଯ୍ୟ ଭିତ୍ତି ପ୍ରତି ପ୍ରଚ୍ଛନ୍ନ ଇଙ୍ଗିତ ଆବିଷ୍କାର କରିବା କଠିନ ନୁହେଁ ।

ବୋଧାୟନ ଧର୍ମସୂତ୍ରରେ (୧ । ୧ । ୨୫-୩୧) କଳିଙ୍ଗ ଅପବିତ୍ର ଦେଶ ରୂପେ ବର୍ଣ୍ଣିତ ହୋଇଅଛି ଏବଂ ତତ୍ରସ୍ଥ ଅଧିବାସୀମାନଙ୍କ ସମ୍ପର୍କ ଘଟିଲେ ଆର୍ଯ୍ୟ ଗୋଷ୍ଠୀଭୁକ୍ତ ଉଚ୍ଚବର୍ଣ୍ଣଜାତ ବ୍ୟକ୍ତିମାନଙ୍କ ପକ୍ଷେ ପ୍ରାୟଶ୍ଚିତ୍ତର ବିଧାନ ଦିଆହୋଇଅଛି । ଯାଜ୍ଞବଲ୍କ୍ୟ ସ୍ମୃତିର ଗୋଟିଏ ଶ୍ଳୋକର (୩।୨୯୩) ବ୍ୟାଖ୍ୟା ପ୍ରସଙ୍ଗରେ ବିଜ୍ଞାନେଶ୍ୱର ତାଙ୍କ ମିତାକ୍ଷରା ଟୀକାରେ ନିମ୍ନଲିଖିତ ଯେଉଁ ଦେବଳ ବଚନ ଉଦ୍ଧୃତ କରିଅଛନ୍ତି ସେଥିରେ ମଧ୍ୟ ଅନୁରୂପ ମନୋଭାବ ପ୍ରତିଫଳିତ :—

ସିନ୍ଧୁସୌବୀର ସୌରାଷ୍ଟ୍ରାଂସ୍ତଥା ପ୍ରତ୍ୟନ୍ତ ବାସିନଃ ।
ଅଙ୍ଗ ବଙ୍ଗ କଳିଙ୍ଗାଂଶ୍ଚ ଗତ୍ୱା ସଂସ୍କାରମର୍ହତି ॥

ମହାଭାରତ ଓ ପୁରାଣାଦିରେ କଥିତ ହୋଇଅଛି, ବ୍ରାହ୍ମଣ ଋଷି ଦୀର୍ଘତମସ୍ ଏବଂ ଅସୁରରାଜ ବଳିଙ୍କ ପତ୍ନୀ ସୁଦେଷ୍ଣାଙ୍କ ମିଳନ ଫଳରେ ଅଙ୍ଗ, ବଙ୍ଗ, କଳିଙ୍ଗ, ପୁଣ୍ଡ୍ର ଓ ସୁହ୍ମ ଏହି ପାଞ୍ଚ ଭ୍ରାତାଙ୍କର ଜନ୍ମ ହୋଇଥିଲା । ଏହି କାହାଣୀ କାଳ୍ପନିକ ହେଲେ ମଧ୍ୟ ଏହାର ଅନ୍ତର୍ନିହିତ ଐତିହାସିକ ଇଙ୍ଗିତଟି ସୁସ୍ପଷ୍ଟ । ପ୍ରଥମତଃ କାହାଣୀକାର ବୁଝାଇବାକୁ ଚାହିଁଛନ୍ତି, ଅଙ୍ଗ (ପୂର୍ବ ବିହାର—ଭାଗଲପୁର, ମୁଙ୍ଗେର ଏବଂ ସମ୍ଭବତଃ ପୂର୍ଣ୍ଣିଆ ଜିଲ୍ଲାର କିୟଦଂଶ), ବଙ୍ଗ (ବଙ୍ଗଳା ଦେଶର ପ୍ରେସିଡ଼େନ୍‌ସି ବିଭାଗ ଓ ଢ଼ାକା ବିଭାଗର ଅଧିକାଂଶ, କଳିଙ୍ଗ (ବର୍ତ୍ତମାନ ଓଡ଼ିଶାର କଟକ ଜିଲ୍ଲାର ପୂର୍ବାନ୍ତବାହିନୀ ବୈତରଣୀ ନଦୀ ଠାରୁ ଦକ୍ଷିଣରେ ଗୋଦାବରୀ ନଦୀ ପର୍ଯ୍ୟନ୍ତ ବିସ୍ତୀର୍ଣ୍ଣ ଭୂଭାଗ), ପୁଣ୍ଡ୍ର (ଉତ୍ତର ବଙ୍ଗଳାର ରାଜସାହୀ-ବିଭାଗ) ଏବଂ ସୁହ୍ମ (ପଶ୍ଚିମ-ବଙ୍ଗଳାର ବର୍ଦ୍ଧମାନ ବିଭାଗର ଅନ୍ତର୍ଗତ ହୁଗୁଳି ଓ ପାର୍ଶ୍ୱବର୍ତ୍ତୀ ଅଞ୍ଚଳ) ପ୍ରଭୃତି ଭୂଭାଗର ଅଧିବାସୀମାନଙ୍କ ମଧ୍ୟରେ ସେହି ଏକ ଉତ୍ପତ୍ତି ହେତୁ ସମ୍ଭବତଃ ଗୋଟିଏ ଜାତିଗତ ଆତ୍ମୀୟତା (ethnic kinship ଥିଲା । ଅନ୍ୟ ଦିଗରେ ବ୍ରାହ୍ମଣ ପିତା ଦୀର୍ଘତମସ୍‌ଙ୍କ ଔରସରେ ଅନାର୍ଯ୍ୟ ଅସୁର ରମଣୀ ସୁଦେଷ୍ଣାର ଗର୍ଭରେ ଉପରି-ଉକ୍ତ ସନ୍ତାନମାନଙ୍କ ଜନ୍ମ ବୃତ୍ତାନ୍ତରୁ ଇଙ୍ଗିତ ମିଳୁଅଛି ଯେ ଆର୍ଯ୍ୟ ଓ ଅନାର୍ଯ୍ୟ ସଭ୍ୟତାର ଯଥୋଚିତ ମିଶ୍ରଣ ଫଳରେ ଐତିହାସିକ କାଳରେ ଭାରତର ପୂର୍ବାଞ୍ଚଳର ସଭ୍ୟତା ଓ ସଂସ୍କୃତି ବହୁଳାଂଶରେ ଗଠିତ ହୋଇଅଛି । ସୁତରାଂ ଦେଖାଯାଏ, କଳିଙ୍ଗ ବା ଓଡ଼ିଶାର ଏକ ପ୍ରଧାନ ଭୂଭାଗ ସହିତ ବଙ୍ଗଳା-ବିହାରର ଯେ ଅତି ପ୍ରାଚୀନ

କାଳରୁ ଜାତିଗତ ଏବଂ ସଂସ୍କୃତିଗତ ଯୋଗଥିଲା ଏବଂ ଏହିସବୁ ଅଞ୍ଚଳରେ ସଂସ୍କୃତି ଯେ ଆର୍ଯ୍ୟ-ଅନାର୍ଯ୍ୟ ମିଶ୍ର ଉପାଦନରେ ଗଠିତ ହୋଇଥିଲା, ଏହାର ଆଗ୍ରସ ପ୍ରାଚୀନ ସଂସ୍କୃତ ସାହିତ୍ୟରେ ଅଛି ।୧ ବର୍ତ୍ତମାନ ଓଡ଼ିଶାର ଜନ ସମଷ୍ଟି ବିଶ୍ଳେଷଣ କଲେ ଦେଖାଯିବ, ଏହି ପ୍ରଦେଶର ଏକ ସୁବିସ୍ତୀର୍ଣ୍ଣ ଅଞ୍ଚଳ ବିଭିନ୍ନ ଅନାର୍ଯ୍ୟ ଆଦିବାସୀ **'କୋମ'** ଦ୍ୱାରା ଅଧୁଷିତ । ଗଣ୍ଡ, କୋନ୍ଧ, ଜୁଆଙ୍ଗ, ଶବର ପ୍ରଭୃତି ଉପଜାତି ଆବହମାନ କାଳରୁ ଓଡ଼ିଶାର ଇତିହାସରେ ଏକ ବିଶିଷ୍ଟ ଭୂମିକା ଗ୍ରହଣ କରିଛନ୍ତି, ଯଦିଚ ତାର ବିବରଣି ଅଦ୍ୟାପି ଲିଖିତ ହୋଇନାହିଁ । ଆଧୁନିକ କାଳରେ ଆବିଷ୍କୃତ ଓଡ଼ିଶାର ପ୍ରାଚୀନ ଖୋଦିତ ଲେଖମାଳାରେ ସମୟେ ସମୟେ ଏହି ଅନାର୍ଯ୍ୟ ଶକ୍ତିର ଗୁରୁତ୍ୱପୂର୍ଣ୍ଣ ରାଷ୍ଟ୍ରନୈତିକ ଭୂମିକାର ଇଙ୍ଗିତ ମିଳେ, ଯଥା କନସ ତାମ୍ରଶାସନରେ ତୋଷାଳୀର ଅନ୍ତର୍ଭୁକ୍ତ ଅଷ୍ଟାଦଶ ଆଟବିକ ରାଜ୍ୟର ଉଲ୍ଲେଖ (ତୋଷାଲ୍ୟାଂ ସାଷ୍ଟାଦଶାଟବୀ ରାଜ୍ୟାୟାମ୍) ବା ଦେବାନନ୍ଦ ଦେବଙ୍କ ବାରିପଦା ଚିତ୍ରଶାଳାରେ ରକ୍ଷିତ ତାମ୍ରଶାସନରେ ଜୟାନନ୍ଦଙ୍କ କର୍ତ୍ତୃକ ସମଗ୍ର "ଗୋଣ୍ଡ୍ରମ" (ଗଣ୍ଡ ଉପଜାତି ଅଧୁଷିତ ଇଲାକା ?) ବିଜୟର ଉଲ୍ଲେଖ, ଇତ୍ୟାଦି । ଏହିପରି ସ୍ପଷ୍ଟତଃ ଆର୍ଯ୍ୟ ଅନାର୍ଯ୍ୟ ମିଶ୍ର ଉପାଦାନର ଭିତ୍ତିରେ ଓଡ଼ିଶାର ସଭ୍ୟତା ଗଠିତ ହୋଇଥିବାରୁ ଓଡ଼ିଆ ଜାତି ନାନା ଐତିହାସିକ ପରୀକ୍ଷା-ନିରୀକ୍ଷା ମାଧ୍ୟମରେ ସହିଷ୍ଣୁତା ଓ ଗ୍ରହଣ ଶୀଳତା ଗୁଣ ଦୁଇଟି ଅଧିଗତ କରିବାକୁ ସମର୍ଥ ହୋଇଅଛି ।

ଓଡ଼ିଶାର ଭୌଗୋଳିକ ପରିସ୍ଥିତି ମଧ୍ୟ ତାହାର ଜନ୍ମସନ୍ନିବେଶ ଭୁଲି ତାହାକୁ ଯୁଗପତ୍ ଭାରତର ବିଭିନ୍ନ ଅଞ୍ଚଳ ସହିତ ଯୋଗାଯୋଗ ସ୍ଥାପନ କରିବାରେ ଏବଂ ସ୍ୱୀୟ ବୈଶିଷ୍ଟ୍ୟ ରକ୍ଷା କରିବାରେ ସାହାଯ୍ୟ କରିଅଛି । ବର୍ତ୍ତମାନ ଓଡ଼ିଶା କହିଲେ ଯେଉଁ ଭୂଭାଗକୁ ବୁଝାଏ ପ୍ରାଚୀନ କାଳରେ ତାହାର ବିଭିନ୍ନ ଅଂଶ ବିଭିନ୍ନ ନାମରେ ପରିଚିତ ଥିଲା । ଉତ୍ତରରେ ବୈତରଣୀ ନଦୀ ଠାରୁ ଦକ୍ଷିଣରେ ଗୋଦାବରୀ ନଦୀ ପର୍ଯ୍ୟନ୍ତ ବ୍ୟାପ୍ତ ଭୂଖଣ୍ଡକୁ ପ୍ରାଚୀନକାଳରେ କଳିଙ୍ଗ ନାମରେ ଅଭିହିତ କରାହେଉଥିଲା ।

---

୧ । ଦୀର୍ଘତମସ୍ ଓ ସୁଦେଷ୍ଣାର ଉପାଖ୍ୟାନ ସମ୍ପର୍କରେ ଦ୍ରଷ୍ଟବ୍ୟ, ମହାଭାରତ ୧।୧୦୪।୪୧-୫୫; ବାୟୁପୁରାଣ, ୯୯।୨୬-୩୪; ମତ୍ସ୍ୟପୁରାଣ, ୪୮।୬୦-୭୮, ଭାଗବତ ପୁରାଣ—୯।୨୩।୫, ଇତ୍ୟାଦି ।

ରାୟପୁର, ବିଳାସପୁର, ସମ୍ବଲପୁର ଅଞ୍ଚଳ ସମଗ୍ର ଭାବରେ ସେକାଳରେ ଦକ୍ଷିଣ କୋଶଳ ନାମରେ ପରିଚିତ ଥିଲା । ବର୍ତ୍ତମାନ ଓଡ଼ିଶାର ଅନ୍ତର୍ଭୁକ୍ତ ପାଟନା-ସୋନପୁର ଅଞ୍ଚଳ ମଧ୍ୟଯୁଗ ପର୍ଯ୍ୟନ୍ତ ଏହି ଦକ୍ଷିଣ କୋଶଳ ଦେଶର ଅଂଶ ଥିଲା । ପୁଣି ବାଲେଶ୍ୱର ଜିଲ୍ଲା, କଟକ ଏବଂ ପଶ୍ଚିମବଙ୍ଗର ମେଦିନୀପୁର ଜିଲ୍ଲାର କିୟଦଂଶ (ମୋଟାମୋଟି କାଁସାଇ ଓ ବୈତରଣୀ ନଦୀର ଅନ୍ତର୍ବର୍ତ୍ତୀ ଭୂଭାଗ) ପ୍ରାଚୀନ କାଳରେ ଉତ୍କଳ ନାମରେ ପରିଚିତ ଥିଲା । କେହି କେହି ପଣ୍ଡିତ ଅନୁମାନ କରନ୍ତି, ପ୍ରାଚୀନ ଓଡ୍ର ଜାତି ଉତ୍କଳର ଉତ୍ତର ସୀମାନ୍ତବର୍ତ୍ତୀ ଅଞ୍ଚଳରେ ବାସ କରୁଥିଲେ । ପରବର୍ତ୍ତୀ କାଳରେ କ୍ରମଶଃ ସମଗ୍ର ଓଡ଼ିଶା ଅର୍ଥରେ 'ଉତ୍କଳ' ବା 'ଓଡ୍ର' ନାମ ପ୍ରଚଳିତ ହୋଇଥିଲା । ୨ ଅତଏବ ଦେଖାଯାଉଅଛି, ଓଡ଼ିଶାର ଭୌଗୋଳିକ ଅବସ୍ଥାନ ଭାରତର ତିନୋଟି ବିଭିନ୍ନ ଅଞ୍ଚଳ ସହିତ ତାହାର ସମ୍ପର୍କ ଘଟାଇଅଛି । ଉତ୍କଳ ପ୍ରଦେଶର ମାଧ୍ୟମରେ ବଙ୍ଗଳାର ପଶ୍ଚିମ ସୀମାନ୍ତ ସହିତ ଆଧୁନିକ ସମୟ ପରି ପ୍ରାଚୀନ ଏବଂ ମଧ୍ୟଯୁଗରେ ମଧ୍ୟ ଏହାର ସର୍ବଦା ଯୋଗ ରକ୍ଷିତ ହେଉଥିଲା । ବସ୍ତୁତଃ ବଙ୍ଗ ଓ ଓଡ଼ିଶା ମଧ୍ୟରେ ନିର୍ଦ୍ଦିଷ୍ଟ ସୀମାରେଖା ସ୍ଥାପନ ପ୍ରାଚୀନ ଓ ମଧ୍ୟଯୁଗର ଇତିହାସର ଛାତ୍ରମାନଙ୍କ ପକ୍ଷରେ ବହୁ ସମୟରେ କଠିନ ହୋଇଉଠେ । ଯେଉଁ ଦେଶ ଯେତେବେଳେ ପରାକ୍ରମଶାଳୀ ହେଉଥିଲେ ସେତେବେଳେ ସେ ପ୍ରତିବେଶୀ ରାଜ୍ୟର ଅଭ୍ୟନ୍ତରରେ ପ୍ରବେଶ କରି ନିଜ ରାଜ୍ୟର ସୀମା ବଢ଼ାଇ ଦେଉଥିଲେ । ଏହିପରି ମେଦିନୀପୁର, ବାଲେଶ୍ୱର ପ୍ରଭୃତି ଅଞ୍ଚଳଗୁଡ଼ିକ ବହୁବାର ହସ୍ତାନ୍ତରିତ ହୋଇଅଛି । ଶାସକ ପରିବର୍ତ୍ତନ ଏବଂ ଅଧିବାସୀମାନଙ୍କ ପରସ୍ପର ମିଳାମିଶା ଓ ଯୋଗାଯୋଗ ଫଳରେ ଏହିସବୁ ମଧ୍ୟବର୍ତ୍ତୀ ଅଞ୍ଚଳର ଭାଷା ଓ ସଂସ୍କୃତି ମଧ୍ୟରେ ଅନିବାର୍ଯ୍ୟ ରୂପେ ମିଶ୍ରଣ ଦେଖାଦେଇଛି । ଦକ୍ଷିଣରେ କଳିଙ୍ଗ ମାଧ୍ୟମରେ ଓଡ଼ିଶା ଦ୍ରାବିଡ଼ ସଭ୍ୟତା ଓ ସଂସ୍କୃତି ସହିତ ଗଭୀର ଯୋଗ ସ୍ଥାପନ କରିବାକୁ ସକ୍ଷମ ହୋଇଅଛି; ସେହିପରି ପଶ୍ଚିମରେ ମଧ୍ୟଭାରତ ଓ ଓଡ଼ିଶା ପରସ୍ପରକୁ ସ୍ପର୍ଶ କରିଅଛି । ଏତଦ୍ବ୍ୟତୀତ କୁହାଯାଏ ପୂର୍ବେ ସୁବିସ୍ତୀର୍ଣ୍ଣ ସମୁଦ୍ର-ଉପକୂଳବର୍ତ୍ତୀ ଅଞ୍ଚଳ ଏବଂ ଅଧିବାସୀବୃନ୍ଦଙ୍କ ନୌଚାଳନ କ୍ଷମତା, ବାଣିଜ୍ୟପ୍ରୀତି ଓ ଦୁଃସାହସିକ ଅଭିଯାନ ପ୍ରତି ସ୍ୱାଭାବିକ

---

୨ । ଦ୍ରଷ୍ଟବ୍ୟ—ଅଧ୍ୟାପକ ଶ୍ରୀ ଦୀନେଶ ଚନ୍ଦ୍ର ସରକାର ଲିଖିତ "ପ୍ରାଚୀନ ଉଡ଼ିଷ୍ୟା" ଇତିହାସ, ଚତୁର୍ଥ ଖଣ୍ଡ, ଦ୍ୱିତୀୟ ସଂଖ୍ୟା ପୃ—୧୫୦-୫୨ ।

ଆକର୍ଷଣ, ଓଡ଼ିଶାକୁ ବ୍ରହ୍ମଦେଶ, ମାଳୟ ଏବଂ ପ୍ରଶାନ୍ତ ମହାସାଗରସ୍ଥ ଦ୍ୱୀପପୁଞ୍ଜ ସହିତ ଘନିଷ୍ଠ ଭାବରେ ଯୁକ୍ତ କରିଥିଲା । ଏହି ଭାବରେ ଭୌଗୋଳିକ କାରଣରୁ ମଧ୍ୟ ଭାରତର ବିଭିନ୍ନ ଅଞ୍ଚଳ ଏବଂ ଭାରତର ବାହାରେ ମଧ୍ୟ ବିଭିନ୍ନ ଦେଶ ସହିତ ସଂସ୍କୃତିର ଆଦାନ ପ୍ରଦାନର ସୁଯୋଗ ଓଡ଼ିଶା ପ୍ରାଚୀନ କାଳରୁ ପାଇଆସିଅଛି ।

ଭାରତ ବର୍ଷର ସାଂସ୍କୃତିକ ବିକାଶର ଇତିହାସରେ ଓଡ଼ିଶାର ଦାନ ଅସାମାନ୍ୟ । ଏହି ପ୍ରଦେଶ ବୌଦ୍ଧ, ଜୈନ ଏବଂ ବ୍ରାହ୍ମଣ୍ୟ ସଂସ୍କୃତିର ଲୀଳାଭୂମି । ବହୁ ପ୍ରାଚୀନ କାଳରୁ ଜୈନଧର୍ମ ଏହି ଅଞ୍ଚଳରେ ତାହାର ଗୁରୁତ୍ୱପୂର୍ଣ୍ଣ କେନ୍ଦ୍ର ସ୍ଥାପନ କରିଅଛି । ଖ୍ରୀଷ୍ଟପୂର୍ବ ପ୍ରଥମ ଶତକରେ କଳିଙ୍ଗ ସମ୍ରାଟ ଖାରବେଳ ସ୍ୱୟଂ ଜୈନଧର୍ମାବଲମ୍ବୀ ଓ ଜୈନଧର୍ମର ପୃଷ୍ଠପୋଷକ ଥିଲେ । ଜୈନଧର୍ମ ସଂଗେ ସଂଗେ ପରବର୍ତ୍ତୀ କାଳରେ ବୌଦ୍ଧଧର୍ମ ମଧ୍ୟ ଓଡ଼ିଶାର ବିଭିନ୍ନ ଅଞ୍ଚଳରେ ପ୍ରସାର ଲାଭ କରିଥିଲା ଏବଂ କ୍ରମଶଃ ଏହି ପ୍ରଦେଶ ମହାଯାନ ଓ ତତ୍‌ପରବର୍ତ୍ତୀ ତନ୍ତ୍ରଯାନ—ବୌଦ୍ଧଧର୍ମର ଗୋଟିଏ ବିଶିଷ୍ଟ କେନ୍ଦ୍ରରେ ପରିଣତ ହୋଇଥିଲା । ବ୍ରାହ୍ମଣ୍ୟ ଧର୍ମ ଓ ସଂସ୍କୃତିର ବିକାଶସ୍ଥଳ ରୂପେ ମଧ୍ୟ ଓଡ଼ିଶା ପ୍ରାଚୀନକାଳରୁ ପରିଚିତ ହୋଇଆସିଅଛି ଏବଂ କ୍ରମଶଃ ଏହାର ବିଭିନ୍ନ ଅଞ୍ଚଳ ହିନ୍ଦୁଧର୍ମର ବିଶିଷ୍ଟ ଦେବ ଦେବୀଙ୍କ ଲୀଳାସ୍ଥଳ ଓ ଉପାସନା କେନ୍ଦ୍ର ହିସାବରେ ଚିହ୍ନିତ ହୋଇ ପ୍ରସିଦ୍ଧି ଅର୍ଜନ କରିଅଛି । କଟକ ଜିଲ୍ଲା ଅନ୍ତର୍ଗତ ଯାଜପୁର ଓଡ଼ିଶାର ପ୍ରଧାନତମ ଶକ୍ତି-ପୂଜାର କେନ୍ଦ୍ର ଏବଂ ଏଠାରେ ବିରଜାଦେବୀଙ୍କ ମନ୍ଦିର ଶକ୍ତି ଉପାସକମାନଙ୍କ ନିକଟରେ ଅତି ପବିତ୍ର ଓ ମହିମାମଣ୍ଡିତ ସ୍ଥାନ । ପୁରୀ ଜିଲ୍ଲା ଅନ୍ତର୍ଗତ ଭୁବନେଶ୍ୱର ଶିବୋପାସକମାନଙ୍କର ମହାତୀର୍ଥ । ଓଡ଼ିଶାରେ ଶୈବଧର୍ମର ଓ ଶିବୋପାସନାର ଏହା ପ୍ରଧାନ କେନ୍ଦ୍ର । ଏଠାରେ ଲିଙ୍ଗରାଜ ମନ୍ଦିରର ମାହାତ୍ମ୍ୟ ସମଗ୍ର ଭାରତର ହିନ୍ଦୁ ସମାଜରେ ସୁବିଦିତ । ଶ୍ରୀକ୍ଷେତ୍ର, ଜଗନ୍ନାଥ କ୍ଷେତ୍ର ବା ପୁରୀଧାମର କଥା ତ ଏହି ପ୍ରସଂଗରେ ଅଧିକ କହିବା ବାହୁଲ୍ୟ । ବୈଷ୍ଣବ ଉପାସନାର ଏହି ସୁବିଖ୍ୟାତ କେନ୍ଦ୍ରଟିର ନାମ ଓ ମାହାତ୍ମ୍ୟ ସହିତ ହିନ୍ଦୁମାତ୍ରକ ପରିଚିତ ଏବଂ ପୁରୀ ଧାମରେ ଉପନୀତ ହୋଇ ଜଗନ୍ନାଥ ଦର୍ଶନ କରିବା ନିଷ୍ଠାବାନ ହିନ୍ଦୁମାନଙ୍କ ଜୀବନରେ ଗୋଟିଏ ପରମ ଆକାଂକ୍ଷା । ପୁଣି ପୁରୀରୁ କିଛି ଦୂରରେ ଅବସ୍ଥିତ ସୁବିଖ୍ୟାତ କୋଣାର୍କ

ମନ୍ଦିରର ଧ୍ୱଂସାବଶେଷ ଓଡ଼ିଶାର ଏକକାଳୀନ ସୁପ୍ରସିଦ୍ଧ ଏବଂ ଅଧୁନା ହୃତଗୌରବ ସୂର୍ଯ୍ୟକ୍ଷେତ୍ରର ମାହାତ୍ମ୍ୟ ଘୋଷଣା କରୁଅଛି । ଏହି ପ୍ରସଂଗରେ ଏହା ମଧ୍ୟ ଉଲ୍ଲେଖଯୋଗ୍ୟ ଯେ କଟକ ଜିଲ୍ଲା ଅନ୍ତର୍ଗତ ମହାବିନାୟକ ପର୍ବତ ଗଣେଶ ପୂଜାର ଅନ୍ୟତମ କେନ୍ଦ୍ରସ୍ଥଳ ବୋଲି ପ୍ରସିଦ୍ଧି ଅର୍ଜନ କରିଅଛି । ୩ ସୁତରାଂ ବିଭିନ୍ନ ସମ୍ପ୍ରଦାୟର ଧର୍ମପ୍ରାଣ ହିନ୍ଦୁଙ୍କ ନିକଟରେ ଓଡ଼ିଶାର ମାହାତ୍ମ୍ୟ ଓ ଗୁରୁତ୍ୱ ଅବଶ୍ୟ ସ୍ୱୀକାର୍ଯ୍ୟ । ଏହି ସମସ୍ତ ଧର୍ମ ଓ ଧର୍ମ ସମ୍ପ୍ରଦାୟକୁ ଆଶ୍ରୟ କରି ଓଡ଼ିଶାରେ ଯେଉଁ ଅପୂର୍ବ ସ୍ଥାପତ୍ୟ-ଭାସ୍କର୍ଯ୍ୟ ଗଢ଼ି ଉଠିଛି ସେଥିରେ ଓଡ଼ିଆ ଜାତିର ଗଭୀର ରସବୋଧ ଓ ଶିଳ୍ପ କାର୍ଯ୍ୟରେ ବିରାଟ ପ୍ରତିଭାର ପରିଚୟ ପାଇ ସମଗ୍ର ଜଗତ୍ ମୁଗ୍ଧ ହୋଇଅଛି । ଭୁବନେଶ୍ୱର, ପୁରୀ ଓ କୋଣାର୍କ ମନ୍ଦିରରେ ଯେଉଁ ସ୍ଥାପତ୍ୟ ମହିମାର ବିକାଶ ଘଟିଛି ଏବଂ ଏହି ସବୁ ସ୍ଥାନରୁ ତଥା ଖିଚିଂ, ଲଳିତଗିରି, ରତ୍ନଗିରି ପ୍ରଭୃତି କେନ୍ଦ୍ରରୁ ଭାସ୍କର୍ଯ୍ୟର ଯେଉଁ ସବୁ ଉତ୍କୃଷ୍ଟ ନିଦର୍ଶନ ମିଳିଅଛି—ସେସବୁ କେବଳ ଓଡ଼ିଶାର ନୁହେଁ, ସମଗ୍ର ଭାରତବର୍ଷର ଗୌରବ । ପ୍ରାଚୀନ ଓ ମଧ୍ୟଯୁଗୀୟ ଓଡ଼ିଆ ଶିଳ୍ପଶାସ୍ତ୍ରୀଗଣ ସ୍ଥାପତ୍ୟ ଶିଳ୍ପର ଯେଉଁ ଏକ ବିଶିଷ୍ଟ ଐତିହ୍ୟ ଗଢ଼ି ଯାଇଥିଲେ ଏବଂ ବଂଶ ପରମ୍ପରା କ୍ରମେ ଯତ୍ନ ସହିତ ରକ୍ଷା କରିଥିଲେ, ଅଧ୍ୟାପକ ନିର୍ମଳ କୁମାର ବସୁଙ୍କ ଯତ୍ନ ହାବ କିଛି କିଛି ଉଦ୍ଧାର ସମ୍ଭବ ହୋଇଅଛି । ୪ ଏହା ଓଡ଼ିଆ ଶିଳ୍ପୀ ସମ୍ପ୍ରଦାୟର ପ୍ରତିଭାର ସାକ୍ଷ୍ୟ ବହନ କରୁଅଛି ।

ଭାଷା ଓ ସାହିତ୍ୟ କ୍ଷେତ୍ରରେ ମଧ୍ୟ ଓଡ଼ିଶାର ଅବଦାନ ସାମାନ୍ୟ ନୁହେଁ । ପ୍ରାଚୀନ ଓ ମଧ୍ୟଯୁଗରେ ଓଡ଼ିଆ ବ୍ରାହ୍ମଣମାନେ ସଂସ୍କୃତ ଭାଷା ଓ ସାହିତ୍ୟର ଯଥେଷ୍ଟ ଚର୍ଚ୍ଚା କରିଅଛନ୍ତି । ବର୍ତ୍ତମାନ ମଧ୍ୟ ଏହି ଐତିହ୍ୟର ଧାରାଚ୍ଛେଦ ହୋଇନାହିଁ । ପୁରୀ ବର୍ତ୍ତମାନ ମଧ୍ୟ ସଂସ୍କୃତ ଚର୍ଚ୍ଚା ପାଇଁ ପ୍ରସିଦ୍ଧ । ମଧ୍ୟଯୁଗରେ ଏହି ସଂସ୍କୃତ ଚର୍ଚ୍ଚାର ବିଶେଷ ଫଳ ସ୍ୱରୂପ ଉତ୍କଳର ଗୋଟିଏ ନିଜସ୍ୱ ସ୍ମୃତିଶାସ୍ତ୍ର ଗଢ଼ି ଉଠିଥିଲା । ନୃସିଂହ ବାଜପେୟୀକୃତ ନିତ୍ୟାଚାରପ୍ରଦୀପ, ବିଦ୍ୟାକର ବାଜପେୟୀ ରଚିତ ନିତ୍ୟାଚାରପଦ୍ଧତି, ମୁରାରି ମିଶ୍ର ପ୍ରଣୀତ ପ୍ରାୟଶ୍ଚିତ୍ତ

---

୩ । ଶ୍ରୀ ହରଦାସ ମିତ୍ର ପ୍ରଣୀତ Ganapati (ବିଶ୍ୱଭାରତୀ କର୍ତ୍ତୃକ ପ୍ରକାଶିତ) ପୃ—୧୯, ପାଦଟୀକା ।

୪ । ଦ୍ରଷ୍ଟବ୍ୟ—ନିର୍ମଳ କୁମାର ବସୁ-Canons of Orissa Architecture.

ମନୋହର, ବିଶ୍ୱସିଂହ ମହାପାତ୍ରଙ୍କକୃତ ଶ୍ରୀଚରିତ, ଗଜପତିରାଜ ପ୍ରତାପରୁଦ୍ର ଦେବ ରଚିତ ସରସ୍ୱତୀ ବିଳାସ ଓ ପ୍ରତାପ ମାର୍ତ୍ତଣ୍ଡ, ଗଦାଧର ରାଜଗୁରୁକୃତ ଗଦାଧର ପଦ୍ଧତି ପ୍ରଭୃତି ଗ୍ରନ୍ଥ ତାହାର ଦୃଷ୍ଟାନ୍ତସ୍ଥଳ ହୋଇ ବିରାଜମାନ ।

ଓଡ଼ିଆ ଭାଷା ଓ ସାହିତ୍ୟର ଐତିହ୍ୟ କମ୍ ପ୍ରାଚୀନ ନୁହେଁ । ସାର ଜର୍ଜ ଗ୍ରୀୟର୍ସନ ଦେଖାଇ ଅଛନ୍ତି ଯେ ଖ୍ରୀଷ୍ଟୀୟ ଚତୁର୍ଦ୍ଦଶ ଶତକରେ ଓଡ଼ିଆ ଭାଷାର ବିକାଶ ଓ ଗଠନ ପ୍ରାୟ ସମ୍ପୂର୍ଣ୍ଣତା ଲାଭ କରିଥିଲା ଏବଂ ତଦବଧି ଆଜି ପର୍ଯ୍ୟନ୍ତ ତାହାର ରୂପରେ ଅଧିକ ପରିବର୍ତ୍ତନ ହୋଇନାହିଁ । * ମଧ୍ୟଯୁଗର କବିମାନଙ୍କ ହସ୍ତରେ ଏହି ଭାଷାରେ ଧୀରେ ଧୀରେ ଏକ ଉଲ୍ଲେଖଯୋଗ୍ୟ କାବ୍ୟ ସାହିତ୍ୟ ଗଢ଼ିଉଠିଥିଲା । ସୁତରାଂ ଆଧୁନିକ ଯୁଗରେ ନୂତନ ସାହିତ୍ୟିକଗଣ ନିଜ ନିଜର ପରୀକ୍ଷା-ନିରୀକ୍ଷା ପାଇଁ ଏକ ସୁଗଠିତ ଭାଷା ଏବଂ ସୁପ୍ରାଚୀନ ସାହିତ୍ୟିକ ଐତିହ୍ୟ ଯେ ସମ୍ମୁଖରେ ପାଇଥିଲେ ସେଥିରେ କୌଣସି ସନ୍ଦେହ ନାହିଁ ।

ପ୍ରାଚୀନ ଓ ମଧ୍ୟଯୁଗୀୟ ଓଡ଼ିଶାର ଇତିବୃତ୍ତ ଆଲୋଚନା କଲେ ଦେଖାଯାଏ, ପ୍ରାଚୀନ ଯୁଗରେ ଧାରାବାହିକ ରୂପେ ବହୁ ରାଜବଂଶ ଏହି ଅଞ୍ଚଳରେ ରାଜତ୍ୱ କରିଛନ୍ତି ଏବଂ ଅନେକ ସମୟରେ ଏକକାଳୀନ ବିଭିନ୍ନ ରାଜବଂଶ ଏହି ପ୍ରଦେଶର ବିଭିନ୍ନ ଭୂଖଣ୍ଡରେ ସ୍ୱାଧୀନ ଭାବରେ ପ୍ରଭୁତ୍ୱ ବିସ୍ତାର କରିଛନ୍ତି । ମଗଧର ନନ୍ଦ ଓ ମୌର୍ଯ୍ୟ ରାଜବଂଶଦ୍ୱୟ ଏବଂ ଚ୍ଛାମୀୟ ଚକ୍ରବର୍ତ୍ତୀ ରାଜା ଖାରବେଳଙ୍କ କଥା ଛାଡ଼ିଦେଲେ ପରବର୍ତ୍ତୀ କାଳରେ ଏହି ଯୁଗରେ ବିଗ୍ରହ ବଂଶ, ଶୈଳୋଦ୍ଭବ ବଂଶ, ଭୌମକର ବଂଶ, ସୋମ ବଂଶ, ଭଞ୍ଜ ବଂଶ, ଶୁଲକି ବଂଶ, ଗଙ୍ଗ ବଂଶ ପ୍ରଭୃତି ବିଭିନ୍ନ ସମୟରେ ଓଡ଼ିଶାରେ ରାଜତ୍ୱ କରିଛନ୍ତି ବୋଲି ଜଣାଯାଏ । ଏହିସବୁ ବଂଶର ରାଜତ୍ୱ କାଳରେ ଓଡ଼ିଶାରେ ବ୍ରହ୍ମଣ୍ୟ ସଭ୍ୟତାର ଭିତ୍ତି କ୍ରମଶଃ ଦୃଢ଼ ରୂପେ ସ୍ଥାପିତ ହୋଇଥିଲା ଏବଂ ଭାରତର ବିଭିନ୍ନ ଅଞ୍ଚଳରୁ ଧର୍ମପ୍ରାଣ ବେଦାଧ୍ୟାୟୀ ବ୍ରାହ୍ମଣମାନେ ଓଡ଼ିଶାକୁ ଆସି ଏବଂ ତତ୍ରସ୍ଥ ରାଜାମାନଙ୍କ ପୃଷ୍ଠପୋଷକତା ଲାଭ କରି ସ୍ଥାୟୀ ଭାବରେ ସେଠାରେ ବସବାସ

* । Linguistic Survey of India.
Vol.—V, Part - II, P - 367

କରିଥିଲେ । ଓଡ଼ିଶାର ପ୍ରାଚୀନ ଖୋଦିତ ଲେଖମାଳାରେ ଏହି ପ୍ରକାର ବହିର୍ଗତ ବହୁ ବ୍ରାହ୍ମଣ ପରିବାରଙ୍କ ଉଲ୍ଲେଖ ଅଛି । ଏମାନଙ୍କ ମଧ୍ୟରେ ବଙ୍ଗ ଦେଶର ସମାଗତ ବ୍ରାହ୍ମଣ ବଂଶର ମଧ୍ଯ ଅଭାବ ନଥିଲା । ଅପରପକ୍ଷରେ ଓଡ଼ିଶାର ଅଧିବାସୀ, ବିଶେଷତଃ ବ୍ରାହ୍ମଣମାନେ ଯେ ପ୍ରାଚୀନ ଯୁଗରେ ବଙ୍ଗ ଦେଶକୁ ଆସି ବସବାସ କରୁଥିଲେ, ବଙ୍ଗଦେଶର ଖୋଦିତ ଲିପିରେ ସେ ବିଷୟରେ ପ୍ରମାଣ ମଧ୍ଯ ଅଭାବ ନାହିଁ । ୬ ସୁତରାଂ ଚୈତନ୍ୟ ଯୁଗର ପୂର୍ବରୁ ବଙ୍ଗ ଓ ଓଡ଼ିଶାର ପାରସ୍ପରିକ ଭାବ ବିନିମୟ ଆରମ୍ଭ ହୋଇଥିଲା ବୋଲି ଧରି ନିଆଯାଇପାରେ । ମଧ୍ୟଯୁଗର ଗଜପତି ରାଜାମାନଙ୍କ ରାଜତ୍ୱ କାଳରେ ଓଡ଼ିଶାର ନିଜସ୍ୱ ଭାଷା ଓ ସଂସ୍କୃତି ଗଢି ଉଠିଥିଲା । ଏହି ଯୁଗର ବଙ୍ଗ ଓ ଓଡ଼ିଶାର ସଂସ୍କୃତି ବିନିମୟର ଇତିହାସରେ ବୃହତ୍ତମ ଘଟଣା ହେଉଛି ମହାପ୍ରଭୁ ଚୈତନ୍ୟ ଦେବଙ୍କ ଓଡ଼ିଶା ପରିଦର୍ଶନ ଓ ସ୍ଥାୟୀଭାବରେ ପୁରୀଧାମରେ ବାସ । ଜୀବନର ଶେଷ ଅଷ୍ଟାଦଶ ବର୍ଷ ସେ ନୀଳାଚଳରେ ଅତିବାହିତ କରିଥିଲେ । ତାଙ୍କ ପ୍ରଭାବରେ ଉତ୍କଳରେ କେବଳ ଗୌଡ଼ୀୟ ବୈଷ୍ଣବ ଧର୍ମର ପ୍ରସାର ହୋଇନାହିଁ; ଅଧିକନ୍ତୁ ପୁରୀରେ ତାଙ୍କ ଦୀର୍ଘ ଅବସ୍ଥିତି କାଳରେ ଓ ଦେହତ୍ୟାଗର ପରେ ଓଡ଼ିଶା ବିଶେଷତଃ ନୀଳାଚଳ ବଙ୍ଗାଳୀ ବୈଷ୍ଣବ ସମ୍ପ୍ରଦାୟର ମହାତୀର୍ଥରେ ପରିଣତ ହୋଇଅଛି । ବସ୍ତୁତଃ ମହାପ୍ରଭୁଙ୍କ ଦିବ୍ୟଜୀବନ ଏହି ଦୁଇ ପ୍ରଦେଶ ମଧ୍ୟରେ ଏକ ମହାମିଳନର ସେତୁ ରଚନା କରିଅଛି । ଓଡ଼ିଆ ବୈଷ୍ଣବମାନଙ୍କ ଉପରେ ମଧ୍ୟ ତାଙ୍କ ଜୀବନ ଓ ଶିକ୍ଷାର ପ୍ରଭାବ ଅତି ଗଭୀର ଭାବରେ କାର୍ଯ୍ୟକାରୀ ହୋଇଅଛି । ୭

ଆଫଗାନମାନେ ଓଡ଼ିଶା ଜୟ କରିବାରୁ ହିନ୍ଦୁ ରାଜତ୍ୱର ଅବସାନ ଘଟିଲା । କିନ୍ତୁ ଓଡ଼ିଶାରେ ଆଫଗାନ ରାଜତ୍ୱ ସ୍ଥାୟୀ ହୋଇନଥିଲା— ଷୋଡ଼ଶ ଶତାବ୍ଦୀରେ ମୋଗଲ ସମ୍ରାଟ ଆକବରଙ୍କ ରାଜତ୍ୱ କାଳରେ ମୋଗଲ ଶକ୍ତି କର୍ତ୍ତୃକ ଓଡ଼ିଶା ବିଜିତ ହୋଇଥିଲା । ଔରଙ୍ଗଜେବଙ୍କ ମୃତ୍ୟୁ ପରେ ମୋଗଲ ସାମ୍ରାଜ୍ୟ ଭାଙ୍ଗିବାକୁ ଆରମ୍ଭ କରିବାରୁ କ୍ରମଶଃ ବଙ୍ଗଳାର

---

୬ । ନୀହାର ରଞ୍ଜନ ରାୟ—ବଙ୍ଗାଲୀର ଇତିହାସ, ପୃ—୧୪୦-୧୭୩ ।

୭ । ପ୍ରଭାତ ମୁଖୋପାଧ୍ୟାୟ—History of Medieval Vaisnavism in Orissa (Calcutta—1940) P—123-47.

ନବାବ—ନାଜମ୍‌ମାନେ ଓଡ଼ିଶା ଉପରେ ସ୍ୱୀୟ କର୍ତ୍ତୃତ୍ୱ ସ୍ଥାପନ କରିଥିଲେ । ଅବଶେଷରେ ଅଷ୍ଟାଦଶ ଶତାବ୍ଦୀର ମଧ୍ୟଭାଗରେ ନାଗପୁରର ମରହଟ୍ଟା, ଭୋଁସଲା ରାଜାମାନଙ୍କ ଦ୍ୱାରା ଓଡ଼ିଶା ଅଧିକୃତ ହୋଇଥିଲା । ଉତ୍କଳରେ ମୁସଲମ୍ ଶାସନ ବଙ୍ଗ ଦେଶ ପରି ପ୍ରଭାବ ବିସ୍ତାର କରିପାରି ନଥିଲା । ଅଳ୍ପ କେତେ ଶତାବ୍ଦୀର ମୁସଲମାନ ରାଜତ୍ୱ କାଳରେ ଜନସାଧାରଣଙ୍କ ମଧ୍ୟରୁ ମୁଷ୍ଟିମେୟ କେତେଜଣ ଇସଲାମ ଧର୍ମଗ୍ରହଣ କରିଥିଲେ । ସ୍ଥାନୀୟ ହିନ୍ଦୁଧର୍ମ ଓ ସଂସ୍କୃତି ମଧ୍ୟେ ମଧ୍ୟେ ଅନୁଦାର ଶାସକ ଗୋଷ୍ଠୀକର୍ତ୍ତୃକ ନିପୀଡ଼ିତ ହେବା ସତ୍ତ୍ୱେ ଶେଷ ପର୍ଯ୍ୟନ୍ତ ଆତ୍ମରକ୍ଷା କରିବାକୁ ସକ୍ଷମ ହୋଇଥିଲା । ଏହା ଓଡ଼ିଆ ଜାତୀୟ ଜୀବନର ଅନ୍ତର୍ନିହିତ ବଳିଷ୍ଠତାର ନିଦର୍ଶନ । ଅପରାପର କ୍ଷେତ୍ରରେ ମଧ୍ୟ ଓଡ଼ିଆମାନଙ୍କ ଜାତୀୟ ଜୀବନକୁ ଉତ୍ତର ଭାରତୀୟ ମୁସଲମ୍ ସଭ୍ୟତା ଗଭୀର ଭାବରେ ସ୍ପର୍ଶ କରିପାରି ନଥିଲା ।

ଉତ୍କଳରେ ମରହଟ୍ଟା ଶାସନ ଅର୍ଦ୍ଧଶତାବ୍ଦୀରୁ କିଞ୍ଚିତ୍ ଅଧିକ କାଳ ସ୍ଥାୟୀ ହୋଇଥିଲା (୧୭୫୧-୧୮୦୩) । ଏତେ ଅଳ୍ପ ସମୟ ମଧ୍ୟରେ ଓଡ଼ିଶାର ଜାତୀୟ ଜୀବନରେ କୌଣସି ବିଶେଷ ଚିହ୍ନ ରଖିଯିବା ମରହଟ୍ଟା ଶକ୍ତି ପକ୍ଷରେ ସମ୍ଭବ ହୋଇନାହିଁ । ଏହା ମଧ୍ୟ ମନେ ରଖିବାକୁ ହେବ, ଏହି ସମୟରେ ଭାରତ ବର୍ଷ ଇତିହାସର ଏକ ସନ୍ଧିକ୍ଷଣରେ ଉପନୀତ ହୋଇଥିଲା । ମୋଗଲ ସାମ୍ରାଜ୍ୟର ପତନ, ପାଶ୍ଚାତ୍ୟ ଶକ୍ତି ସମୂହର ଆବିର୍ଭାବ, ଉତ୍ତର ପଶ୍ଚିମରୁ ବିଦେଶୀ ଆକ୍ରମଣ ପ୍ରଭୃତି ଏକ ସଙ୍ଗେ ଘଟି ଅଷ୍ଟାଦଶ ଶତକର ଭାରତରେ ଏପରି ଏକ ରାଜନୈତିକ ବିଶୃଙ୍ଖଳା ସୃଷ୍ଟି କରିଥିଲା ଯେ, ସେହି ସମୟରେ କୌଣସି ଦେଶୀୟ ଶକ୍ତି ପକ୍ଷରେ ସ୍ଥିର ହୋଇ ରାଜ୍ୟ ଶାସନ କରିବା ଅସମ୍ଭବ ନହେଲେ ମଧ୍ୟ ଅତ୍ୟନ୍ତ କଠିନ ଥିଲା । ଏଥିଉପରେ ମରହଟ୍ଟା ଶକ୍ତି ପଞ୍ଚକରେ ପରସ୍ପର ବୁଝାମଣା ଓ ଐକ୍ୟର ଅଭାବ ମରହଟ୍ଟା ଶକ୍ତିକୁ କ୍ରମଶଃ ଦୁର୍ବଳ କରିଦେଲା; ଏବଂ ଅବଶେଷରେ ୧୮୦୩ ଖ୍ରୀଷ୍ଟାବ୍ଦରେ ଓଡ଼ିଶା ମରହଟ୍ଟା ଶକ୍ତି କବଳରୁ ବ୍ରିଟିଶ ରାଜାଙ୍କ ଅଧୀନକୁ ଚାଲିଯାଇଥିଲା । ଇଂରେଜ ଐତିହାସିକମାନେ ଓଡ଼ିଶାରେ

ସ୍ୱଳ୍ପକାଳ ସ୍ଥାୟୀ ମରହଟ୍ଟା ଶାସନର ଦ୍ରୁତର ନିନ୍ଦାବାଦ କରିଅଛନ୍ତି । (୮) ଦେଶୀୟ ଗବେଷକମାନେ ସମସ୍ତେ ଏହି ମତ ଗ୍ରହଣ କରିନାହାନ୍ତି । କେହି କେହି ମରହଟ୍ଟା ଶାସନର ଉଚ୍ଚ ପ୍ରଶଂସା କରିଅଛନ୍ତି । (୯) ଏହି ବିତର୍କ ବର୍ତ୍ତମାନ ପ୍ରସଙ୍ଗରେ ଅବାନ୍ତର । ମରହଟ୍ଟା ଶାସନକାଳର ଦୁଇଟି ବିଶେଷତ୍ୱ ମନେରଖିଲେହିଁ ଆମ୍ଭମାନଙ୍କ ପକ୍ଷରେ ଯଥେଷ୍ଟ ହେବ । ହିନ୍ଦୁ ମରହଟ୍ଟା ଶକ୍ତିର ପୃଷ୍ଠପୋଷକତାରେ ଓଡ଼ିଆ ଜାତି ପୁନରାୟ ଧର୍ମକର୍ମର ଅବାଧ ସ୍ୱାଧୀନତା ଲାଭ କରିଥିଲା ଏବଂ ଓଡ଼ିଶାର ବିଖ୍ୟାତ ଧର୍ମସ୍ଥାନ ଓ ମନ୍ଦିରଗୁଡ଼ିକ ପୁନରାୟ ସୁବ୍ୟବସ୍ଥିତରୂପେ ପରିଚାଳିତ ହୋଇଥିଲା । ଦ୍ୱିତୀୟତଃ, ମରହଟ୍ଟା ଶାସନର ଅବସାନ ପରେ ମଧ୍ୟ କେତେକ ମରହଟ୍ଟା ପରିବାର ସ୍ଥାୟୀ ଭାବେ ଓଡ଼ିଶାର ଅଧିବାସୀ ହୋଇଯାଇଥିଲେ । ଏମାନେ ଓଡ଼ିଶାର ଭାଷା, ସଂସ୍କୃତି ଓ ସାହିତ୍ୟକୁ ସମ୍ପୂର୍ଣ୍ଣ ନିଜସ୍ୱ କରିନେଇଥିଲେ । ଏହି ଓଡ଼ିଶାବାସୀ ମରାଠୀ ସମାଜ ମଧ୍ୟରୁ ଓଡ଼ିଶାର ନବଯୁଗର କବି ମଧୁସୂଦନ ରାଓ ଆବିର୍ଭୂତ ହୋଇଥିଲେ ।

ଆଲୋଚନା ପ୍ରସଙ୍ଗରେ ଆମ୍ଭେମାନେ ଊନବିଂଶ ଶତାବ୍ଦୀର ଦ୍ୱାର ଦେଶରେ ଆସି ଉପସ୍ଥିତ ହୋଇଅଛୁଁ । ଏହି ଶତାବ୍ଦୀର ପ୍ରଥମ ଦଶକରେ ଯେତେବେଳେ ଓଡ଼ିଶାରେ ବ୍ରିଟିଶ ଶାସନ ପ୍ରତିଷ୍ଠିତ ହୋଇଥିଲା, ତାହାର ଅବ୍ୟବହିତ ପରେ ଭାରତର ନବଯୁଗ-ପ୍ରବର୍ତ୍ତକ ରାଜା ରାମମୋହନ ରାୟ ଆସି କଲିକତାରେ ସ୍ଥାୟୀ ଭାବେ ବାସ କରିବାକୁ ଆରମ୍ଭ କରିଥିଲେ । କ୍ରମଶଃ କଲିକତା ବ୍ରାହ୍ମଧର୍ମ ଓ ଇଂରାଜୀ ଶିକ୍ଷାର କେନ୍ଦ୍ର ହୋଇଉଠିଥିଲା । ଭାରତର ପ୍ରାଚୀନ ଓ ମଧ୍ୟଯୁଗୀୟ ସଂସ୍କୃତିର ସାରଭାଗ ସହିତ ପାଶ୍ଚାତ୍ୟ ଧର୍ମ ଦର୍ଶନ ଓ ବିଜ୍ଞାନର ଶିକ୍ଷାକୁ ସମନ୍ୱିତ କରି ରାମମୋହନ ଯୁଗୋପଯୋଗୀ

---

୮ । A Sterling Orrissa— its Geography, Statistics, History, Religion and Antiquities (London, 1846) P.— 106.
W. W. Hunter Orissa. Vol. II (London, 1872) P.—31-35.

୯ । ରାଖାଲ ଦାସ ବନ୍ଦୋପାଧ୍ୟାୟ—History of Orissa. Vol.-II P.—246-47.
ଭଗିନ ବିହାରୀ ରାୟ—Orissa under Marathas. P.160-65.

ନୂତନ ଜୀବନ-ଦର୍ଶନ ଗଠନ କରିଥିଲେ । ତାଙ୍କ ହସ୍ତରୁ ଉତ୍ତରକାଳରେ ଆଲୋକବର୍ତ୍ତିକା ଗ୍ରହଣ କଲେ ମହର୍ଷି ଦେବେନ୍ଦ୍ରନାଥ ଠାକୁର, ବ୍ରହ୍ମାନନ୍ଦ କେଶବ ଚନ୍ଦ୍ର ସେନ ଓ ପଣ୍ଡିତ ଶିବନାଥ ଶାସ୍ତ୍ରୀ ପ୍ରମୁଖ ବ୍ରାହ୍ମ ସମାଜର ନେତୃବୃନ୍ଦ । ଏହି ନବଜୀବନ ସ୍ରୋତ ବଙ୍ଗଦେଶରୁ ପ୍ରବାହିତ ହୋଇ ପାର୍ଶ୍ବସ୍ଥ ପ୍ରଦେଶଗୁଡ଼ିକୁ ମଧ୍ୟ ପ୍ଲାବିତ କରିଥିଲା । ଏଥିରେ ଅବଗାହନ କରି ଓଡ଼ିଶାର ସୁସନ୍ତାନ ମଧୁସୂଦନ ରାଓ ନବଜୀବନ ଲାଭ କରିଥିଲେ ଏବଂ ଏହାରି ପ୍ରଭାବରେ ତାଙ୍କ କବି-ପ୍ରତିଭା ଆତ୍ମପ୍ରକାଶର ପଥ ଖୋଜି ପାଇଥିଲା । କିନ୍ତୁ ମଧୁସୂଦନଙ୍କ ବ୍ରାହ୍ମଧର୍ମ ଗ୍ରହଣ ଏବଂ ବଙ୍ଗଦେଶ ସହିତ ନିବିଡ଼ ଆତ୍ମୀୟତା ବାହ୍ୟ ଅନୁକରଣ ମାତ୍ର ନୁହେଁ ତାହା ପଛରେ ଥିଲା ଓଡ଼ିଶାର ଦୀର୍ଘକାଳର ସାଂସ୍କୃତିକ ଐତିହ୍ୟ । ଏହା ତାଙ୍କ ମନକୁ ସମୃଦ୍ଧ, ସହିଷ୍ଣୁ ଓ ଗ୍ରହଣଶୀଳ କରିନଥିଲେ ବହିର୍ଜଗତ ଆଧ୍ୟାତ୍ମିକ ଓ ସାମାଜିକ ଜଗତର ବାଣୀକୁ ସେ ଏଭଳି ସ୍ୱାଗତ ଜଣାଇ ପାରିଥାଆନ୍ତେ କି ନା ସନ୍ଦେହ । ସଂସ୍କୃତି-ସମନ୍ୱୟ କ୍ଷେତ୍ରରେ ଓଡ଼ିଶାର ଯେଉଁ ସ୍ୱାଭାବିକ ପ୍ରବଣତା ଯୁଗ ଯୁଗ ନାନା ବିଚିତ୍ର ଭାବରେ ନିଜକୁ ପ୍ରକାଶ କରିଅଛି, ଊନବିଂଶ ଶତକରେ ଭକ୍ତକବି ମଧୁସୂଦନଙ୍କ ଜୀବନରେ ଆମ୍ଭେମାନେ ନୂତନ ରୂପରେ ତାହାର ପରିଚୟ ପାଇଅଛୁଁ ।

—୦—

# ଦ୍ୱିତୀୟ ପରିଚ୍ଛେଦ

## ଜନ୍ମ, ବଂଶ ପରିଚୟ ଓ ଶୈଶବ

ଓଡ଼ିଶା ଅନ୍ତର୍ଗତ ପୁରୀ-ନଗରୀ ହିନ୍ଦୁମାନଙ୍କର ପ୍ରଧାନ ତୀର୍ଥକ୍ଷେତ୍ର ରୂପେ ସମଗ୍ର ଭାରତରେ ସୁପରିଚିତ । ବଙ୍ଗୋପସାଗରର ଉପକୂଳରେ ଅବସ୍ଥିତ ବୋଲି ପ୍ରାକୃତିକ ସୌନ୍ଦର୍ଯ୍ୟ ଲାଗି ମଧ୍ୟ ଜନସାଧାରଣଙ୍କ ନିକଟରେ ଏହା ଗୋଟିଏ ଆକର୍ଷଣର ସ୍ଥଳ । ପ୍ରାଚୀନ ସଂସ୍କୃତ ସାହିତ୍ୟରେ ଏହା ମହାପ୍ରଭୁ ଜଗନ୍ନାଥଙ୍କର ପୀଠସ୍ଥାନ ରୂପେ ଶ୍ରୀକ୍ଷେତ୍ର ବା ପୁରୁଷୋତ୍ତମପୁର ବୋଲି ଅଭିହିତ ହୋଇଅଛି । କିନ୍ତୁ ଆଶ୍ଚର୍ଯ୍ୟର ବିଷୟ ଏହି ଯେ, ସପ୍ତମ ଶତାବ୍ଦୀରେ ଚୀନ ଦେଶୀୟ ପରିବ୍ରାଜକ ହୁୟେନ ସାଂ ଯେତେବେଳେ ଭାରତବର୍ଷ ଭ୍ରମଣରେ ଆସି ଏହି ଅଞ୍ଚଳ ପରିଦର୍ଶନ କରନ୍ତି, ସେତେବେଳେ ପୁରୁଷୋତ୍ତମପୁର ବା ଜଗନ୍ନାଥ ଦେବଙ୍କ ମନ୍ଦିରର ଅସ୍ତିତ୍ୱ ସେ ଦେଖିପାରି-ନାହାନ୍ତି । ତାହାଙ୍କ ଲିଖିତ ଏହି ଅଞ୍ଚଳର ବିବରଣୀ ମଧ୍ୟରେ "ଚରିତ୍ର" (ଚୀନ ଭାଷାରେ—ଚ୍ଚ-ଲି-ତା-ଲୋ) ବୋଲି ଗୋଟିଏ ସମୁଦ୍ରୋପକୂଳବର୍ତ୍ତୀ ନଗରର ଉଲ୍ଲେଖ ଅଛି । ଯେଉଁଠାରେ ସେ ବହୁ ବୌଦ୍ଧ ଏବଂ ଜୈନମନ୍ଦିର, ବିହାର ଇତ୍ୟାଦି ମଧ୍ୟରେ କେତେଗୁଡ଼ିଏ ହିନ୍ଦୁମନ୍ଦିର ମଧ୍ୟ ଦେଖିଥିଲେ । ଏଥିରୁ ଅନୁମାନ କରିବା ଅସଙ୍ଗତ ହେବନାହିଁ ଯେ, ଏହି ଚରିତ୍ର ପରବର୍ତ୍ତୀ ଯୁଗରେ, ବୌଦ୍ଧ ଓ ଜୈନ ଧର୍ମର ପତନ ସହିତ ହିନ୍ଦୁଧର୍ମର ଅଭ୍ୟୁଦୟ ଏବଂ ଜଗନ୍ନାଥ ମହାପ୍ରଭୁଙ୍କ ପ୍ରତିପତ୍ତି ବୃଦ୍ଧି ଫଳରେ, ପୁରୁଷୋତ୍ତମପୁର ବୋଲି ପରିଚିତ ଲାଭ କଲା । ଗୌଡ଼ୀୟ ବୈଷ୍ଣବ ସାହିତ୍ୟରେ ନୀଳାଚଳ ମହାପ୍ରଭୁ ଶ୍ରୀଗୌରାଙ୍ଗଙ୍କ ଲୀଳାସ୍ଥଳ ବୋଲି ସୁବିଦିତ । ଶ୍ରୀ ଗୌରାଙ୍ଗ ତାଙ୍କ ଜୀବନର ଶେଷ ଅଷ୍ଟାଦଶ ବର୍ଷ ପ୍ରଧାନତଃ ଏହିଠାରେ ଅତିବାହିତ କରିଥିଲେ ଓ ଏହିଠାରେ ତାଙ୍କର ତିରୋଧାନ ଘଟିଥିଲା । ବୋଲିବା ବାହୁଲ୍ୟ, ଏହି ନୀଳାଚଳ—ପୁରୁଷୋତ୍ତମପୁର ବା ପୁରୀର ଅନ୍ୟତମ ନାମ, ଇଂରେଜ ଅମଳରୁ ଏହି ପୁରୁଷୋତ୍ତମପୁର ସଂକ୍ଷେପରେ "ପୁରୀ" ବୋଲି ଅଭିହିତ ହୋଇଆସୁଅଛି ।

ଏହି ପୁରୀ ନଗରୀର ପଥୁରିଆ ସାହି ନାମକ ପଲ୍ଲୀରେ ମଧୁସୂଦନ ରାଓ ଖ୍ରୀ ୧୮୫୩ ଜାନୁଆରୀ ୨୯ ତାରିଖ ଶ୍ରୀପଞ୍ଚମୀ ତିଥିରେ (୧୭୭୪ ଶକାବ୍ଦ, ସନ ୧୨୬୯, ୧୫ ମାଘ) ଏକ ମହାରାଷ୍ଟ୍ରୀୟ ପରିବାରରେ ଜନ୍ମଗ୍ରହଣ କରିଥିଲେ । କଥିତ ଅଛି—ଏମାନେ ନାଗପୁରର ଭୋଁସଲମାନଙ୍କ ଦୌହିତ୍ର ବଂଶ ଥିଲେ । ମଧୁସୂଦନଙ୍କ ପିତାଙ୍କ ନାମ ଭଗିରଥୀ ରାଓ ।

ଓଡ଼ିଶା ବ୍ରିଟିଶ ଅଧିକାରରେ ଆସିବା ପୂର୍ବରୁ ନାଗପୁରର ଭୋଁସଲବଂଶୀୟ ମହାରାଷ୍ଟ୍ରୀୟମାନେ ଅର୍ଦ୍ଧଶତାବ୍ଦୀ କାଳ ଏଠାରେ ରାଜତ୍ୱ କରିଥିଲେ । ପରେ ୧୮୦୩ ଖ୍ରୀଷ୍ଟାବ୍ଦରେ ଯେତେବେଳେ ଇଂରେଜ ଶାସନ ଓଡ଼ିଶାରେ ପ୍ରବର୍ତ୍ତିତ ହେଲା, ସେତେବେଳେ ରାଜକାର୍ଯ୍ୟରେ ନିଯୁକ୍ତ ଅଧିକାଂଶ ମହାରାଷ୍ଟ୍ରୀୟ ନାଗପୁରକୁ ଫେରିଗଲେ ।

ଭାରତ ଇତିହାସର ପାଠକବର୍ଗ ଅବଗତ ଅଛନ୍ତି ଯେ, ଅଷ୍ଟାଦଶ ଶତକରେ ଉଦୀୟମାନ ମରହଟ୍ଟା ପଞ୍ଚଶକ୍ତିର ଅନ୍ୟତମ, ନାଗପୁରର ରଜା ରଘୁଜୀ ଭୋଁସଲେଙ୍କର ଅଧିନସ୍ଥ ମରହଟ୍ଟା ଅଶ୍ୱାରୋହୀ ସୈନ୍ୟ ଦଳର (ବର୍ଗୀର) ବାରମ୍ବାର ଆକ୍ରମଣରେ ବିପର୍ଯ୍ୟସ୍ତ ହୋଇ ବଙ୍ଗ, ବିହାର ଓ ଓଡ଼ିଶାର ବୃଦ୍ଧ ନବାବ ଆଲିବର୍ଦ୍ଦି ଖାଁ ପ୍ରଜାକୁଳର ରକ୍ଷା ନିମନ୍ତେ ଅବଶେଷରେ ୧୭୫୧ ଖ୍ରୀଷ୍ଟାବ୍ଦରେ ନାଗପୁର ରାଜାଙ୍କୁ ଓଡ଼ିଶା ଅଞ୍ଚଳର ଅଧିକାର ଛାଡ଼ିଦେଇ ଏବଂ ବଙ୍ଗ, ବିହାରର ଚୌଥ, ଅର୍ଥାତ୍ ରାଜସ୍ୱର ଏକ ଚତୁର୍ଥାଂଶ ବାର୍ଷିକ ୧୨ ଲକ୍ଷ ଟଙ୍କା, ଦେବାକୁ ଅଙ୍ଗୀକାର କରି ଯେଉଁ ସନ୍ଧି ସ୍ଥିର କରିଥିଲେ ସେହି ସନ୍ଧି ସୂତ୍ରରେ ଓଡ଼ିଶାର ମୋଗଲବନ୍ଦି ଅଞ୍ଚଳ ମରହଟ୍ଟାମାନଙ୍କର ଶାସନାଧୀନ ହୋଇଥିଲା ।

ଏହାର ୫୨ ବର୍ଷ ପରେ (୧୮୦୩ ଖ୍ରୀଷ୍ଟାବ୍ଦରେ) ଲର୍ଡ଼ ଓ୍ୱେଲେସଲି ଆରଗାଁଓ ଯୁଦ୍ଧରେ, ଭୋଁସଲେଙ୍କଠାରୁ ଓଡ଼ିଶା ଓ ବେରାର ଅଞ୍ଚଳର ଅଧିକାର ଲାଭ କଲେ । ଏହିପରି ଊନବିଂଶ ଶତକର ପ୍ରଥମ ଦଶକରେ ଓଡ଼ିଶାରେ ଯେତେବେଳେ ଇଂରେଜ ଶାସନ ପ୍ରବର୍ତ୍ତିତ ହେଲା, ସେତେବେଳେ ରାଜକାର୍ଯ୍ୟରେ ନିଯୁକ୍ତ ଅଧିକାଂଶ ମହାରାଷ୍ଟ୍ରୀୟ ନାଗପୁର ଫେରିଗଲେ । କେବଳ ଯେଉଁମାନେ ଜମିଦାରୀ ଓ ଘରବାଡ଼ି ପ୍ରଭୃତି କରି ବସବାସ କରୁଥିଲେ ଓ ଯାହାଙ୍କର ଅନ୍ତରରେ ଧର୍ମପିପାସା ବଳବତୀ ଥିଲା ଏବଂ

ଶ୍ରୀକ୍ଷେତ୍ରରେ ବାସ କରି ଯେଉଁମାନେ ଜଗନ୍ନାଥ ଦର୍ଶନକୁ ଅଧିକ ବାଞ୍ଛନୀୟ ମନେ କଲେ, ସେହିମାନେ— ଅନୁମାନ ଶତାଧିକ ପରିବାର— ଓଡ଼ିଶାରେ ରହିଗଲେ । ପ୍ରଧାନତଃ ପୁରୀ ଓ କଟକ ଜିଲ୍ଲାର ସଦର ଓ ନିକଟବର୍ତ୍ତୀ ସ୍ଥାନରେ ଏମାନେ ବାସ କରୁଥିଲେ । ସେତେବେଳେ ଏମାନେ ନିଜ ଭିତରେ ମରାଠୀ ଭାଷା କହୁଥିଲେ ଏବଂ ସାଧାରଣଙ୍କ ସହିତ କଥା ଭାଷାରେ ହିନ୍ଦୀ ଭାଷା ବ୍ୟବହାର କରୁଥିଲେ । ମଧ୍ୟେ କ୍ରମଶଃ ଏମାନେ ଓଡ଼ିଆ ଭାଷାକୁ ନିଜର ମାତୃଭାଷା ରୂପେ ଗ୍ରହଣ କରି ଓଡ଼ିଶାବାସୀ ବୋଲି ପରିଗଣିତ ହେବାକୁ ଲାଗିଲେ ।

ମଧୁସୂଦନଙ୍କ ପିତାମହ ସଦାଶିବ ରାଓ, ମାତାମହ ଭରତଙ୍କ ପ୍ରଭୃତି କେତେଜଣ ମହାରାଷ୍ଟ୍ରୀୟ କ୍ଷତ୍ରିୟ ସେହି ସମୟରେ ପୁରୀ ନଗରୀରେ ବସତି ସ୍ଥାପନ କରିଥିଲେ । ସଦାଶିବ ରାଓ ଅତି ତେଜସ୍ୱୀ ପୁରୁଷ ଥିଲେ ।

ତାହାର ଗୋଟିଏ ଦୃଷ୍ଟାନ୍ତ ଏହି ଯେ, ତାଙ୍କର ଏକମାତ୍ର ପୁତ୍ର ଭଗୀରଥି ରାଓ ଉପାର୍ଜନକ୍ଷମ ହେବାପରେ ଅମିତବ୍ୟୟୀ ହେବାରୁ, ସେ ପୁତ୍ର ସହିତ ବାକ୍ୟାଳାପ ବନ୍ଦ କରିଥିଲେ । ଏପରି ଦୀର୍ଘ ୧୦ ବର୍ଷ କାଳ ପିତା ପୁତ୍ରଙ୍କ ମଧ୍ୟରେ ବାକ୍ୟାଳାପ ବନ୍ଦ ରହିବା ପରେ, ସଦାଶିବ ଯେତେବେଳେ କଠିନ ରୋଗରେ ମୃତ୍ୟୁଶଯ୍ୟା ଗ୍ରହଣ କଲେ, ସେତେବେଳେ ସେ ପୁତ୍ରର ମୁଖ ଦର୍ଶନ କରିବା ପାଇଁ ବ୍ୟାକୁଳ ହୋଇପଡ଼ିଲେ । ତାଙ୍କର ବ୍ୟାକୁଳତା ଦେଖି ଆତ୍ମୀୟ ବନ୍ଧୁଗଣ ପୁତ୍ରକୁ ସମ୍ବାଦ ପ୍ରେରଣ କଲେ । ଭଗୀରଥି ମଧ୍ୟ ବ୍ୟଗ୍ର ଚିତ୍ତରେ କର୍ମସ୍ଥଳରୁ ଦୌଡ଼ି ଆସିଲେ । କିନ୍ତୁ ଗୃହ ଠାରୁ କେତେକ ଗଜ ମାତ୍ର ବ୍ୟବଧାନରେ ତାହାଙ୍କୁ ଆସିବାର ଦେଖି, କୌଣସି ଦୁଷ୍ଟବେଶୀ ଉତ୍କଣ୍ଠିତ ସଦାଶିବଙ୍କୁ ହଠାତ୍ "ଆପ୍‌କା ବେଟା ଆଗିୟା" କହି ପକାଇଲେ । ଏହି କଥା ଶୁଣିବା ମାତ୍ରେ ସଦାଶିବ— "କାହାଁ ହୈ, କାହାଁ ହୈ" କହୁ କହୁ ଗୃହ ଦ୍ୱାରରେ ଆଗତ ପୁତ୍ରର ମୁଖ ଆଡ଼କୁ ଚାହିଁ ତତ୍‌କ୍ଷଣାତ୍ ଟଳିପଡ଼ିଲେ ଓ ସଙ୍ଗେ ସଙ୍ଗେ ତାଙ୍କର ପ୍ରାଣବାୟୁ ଉଡ଼ିଗଲା । ପିତାଙ୍କର ଏହି ମୃତ୍ୟୁ ଭଗୀରଥି ରାଓଙ୍କ ପକ୍ଷେ ଅତ୍ୟନ୍ତ ମର୍ମସ୍ପର୍ଶୀ ଓ ଶିକ୍ଷାପ୍ରଦ ହୋଇଥିଲା ।

ମଧୁସୂଦନଙ୍କ ମାତା ଅମ୍ବିକାବାଈ ଭରତଙ୍କଙ୍କ କନିଷ୍ଠା କନ୍ୟା ଥିଲେ । ସେ ସୁନ୍ଦରୀ, ଅତି ସୁଶୀଳା ଏବଂ ରୂପରେ ଗୁଣରେ ସମସ୍ତଙ୍କ ନିକଟରେ

ସମାଦୃତା ଥିଲେ । ଏହାଙ୍କୁ ବିବାହ କରିବା ପରେ ଭଗୀରଥି ବିଶ୍ୱଙ୍କ ସାଂସାରିକ ଉନ୍ନତି ହୋଇଥିଲା । ଏହାଙ୍କର କର୍ମ କୁଶଳତା ଗୁଣରେ ଭଗୀରଥିଙ୍କର ଅଳ୍ପ ଆୟର ସଂସାର ସୁଖ ସ୍ୱାଚ୍ଛନ୍ଦ୍ୟରେ ଚଳିଥିଲା । କିନ୍ତୁ ତାଙ୍କ ଅଦୃଷ୍ଟରେ ଏହି ସୁଖ ଭୋଗ ଅଧିକ ଦିନ ସ୍ଥାୟୀ ହୋଇନାହିଁ ।

ପୁରୀର ତଦାନୀନ୍ତନ ମାଜିଷ୍ଟ୍ରେଟ ଡ଼ାମଣ୍ଡ ସାହେବ ଭଗୀରଥିଙ୍କ କର୍ମକୁଶଳତାରେ ସନ୍ତୁଷ୍ଟ ହୋଇ, ତାହାଙ୍କୁ ପୁରୀ ସହର ନିକଟସ୍ଥ ଅଠରନଳା ନାମକ ପୁଲିସ-ଫାଣ୍ଡିର ଜମାଦାର ପଦରେ ନିଯୁକ୍ତ କଲେ । ଜଗନ୍ନାଥ-ଯାତ୍ରୀ-କର ସଂଗ୍ରହ ପାଇଁ ସେତେବେଳେ ଏହି ଫାଣ୍ଡିଟି ନୂତନ ସ୍ଥାପିତ ହୋଇଥିଲା । ଏହା ପ୍ରାୟ ଊନବିଂଶ ଶତାବ୍ଦୀର ମଧ୍ୟଭାଗର ଘଟଣା । ଏହାର କିଛି କାଳ ପରେ ଭଗୀରଥିଙ୍କ ପ୍ରଥମ ସନ୍ତାନ ଜନ୍ମ ଗ୍ରହଣ କଲେ । ମଧୁମୟ ଶ୍ରୀପଞ୍ଚମୀ ତିଥିରେ ଏହାଙ୍କର ଜନ୍ମ ହେବାରୁ ପିତା ଏହି ଶିଶୁର ନାମ 'ମଧୁସୂଦନ' ରଖିଲେ । ନବଜାତ ଶିଶୁର ଅନୁପମ କାନ୍ତି ଦର୍ଶନ କରି ସମସ୍ତେ ମୁଗ୍ଧ ନୟନରେ ଚାହିଁରହିଥାନ୍ତି । ସ୍ନେହମୟୀ ଜନନୀ ପରମସ୍ନେହ ଓ ଯତ୍ନରେ ଏହି ଶିଶୁର ଲାଳନ ପାଳନ କରିବାକୁ ଲାଗିଲେ । ଅଢ଼େଇ ବର୍ଷ ପରେ ଅମ୍ବିକାବାଈ ଆଉ ଗୋଟିଏ ପୁତ୍ର ସନ୍ତାନ ଲାଭ କଲେ । ଶ୍ରୀକ୍ଷେତ୍ରବାସୀ ପିତା ଶ୍ରୀକ୍ଷେତ୍ର ମହାପ୍ରଭୁ ଜଗନ୍ନାଥ ଦେବଙ୍କ ନାମାନୁସାରେ ଏହାଙ୍କ ନାମ 'ଜଗନ୍ନାଥ' ରଖିଲେ । ଜଗନ୍ନାଥଙ୍କର ଅଢ଼େଇ ବର୍ଷ ବୟସରେ ଅମ୍ବିକାବାଈ ଗୋଟିଏ କନ୍ୟା ପ୍ରସବ କରି ନବଜାତ ଶିଶୁ ସହ ସୂତିକା-ଗାରରେ ପରଲୋକ ଗମନ କଲେ । ସେତେବେଳେ ତାଙ୍କର ବୟସ ମାତ୍ର ୧୯ ବର୍ଷ ।

ଅନ୍ତିମ ସମୟରେ ଏହି ସତୀ ନାରୀ ସ୍ୱାମୀଙ୍କ ପାଦୋଦକ ସେବନ ପାନ କଲେ ଓ ତତ୍ପରେ ପୁତ୍ରଦ୍ୱୟଙ୍କୁ ନିଜ ବକ୍ଷରେ ଗ୍ରହଣ କରି "ମୋର ଧନ ଦୁଇଟି ତୁମ ହାତରେ ଦେଲି"—ଅଶ୍ରୁପୂର୍ଣ୍ଣ ନୟନରେ ଏହି କଥା କହି ଶେଷ ନିଶ୍ୱାସ ତ୍ୟାଗ କଲେ । ଶୈଶବର ଏହି କରୁଣ ଦୃଶ୍ୟର ସ୍ମୃତି ମଧୁସୂଦନଙ୍କ ଅନ୍ତରେ ଆଜୀବନ ଜାଗରୂକ ଥିଲା । ସେ ବହୁ ସମୟରେ ସଜଳ ନୟନରେ ଏହି ଘଟଣା କଥା କହୁଥିଲେ । ପରବର୍ତ୍ତୀ କାଳରେ "ମୋ ଜନନୀ" କବିତା ମଧ୍ୟରେ ତାହାଙ୍କର ଯେ ମାତୃଭକ୍ତିର ପ୍ରକାଶ ହୋଇଅଛି; ତାହାର କିୟଦଂଶ ନିମ୍ନରେ ଉଦ୍ଧୃତ ହେଲା—

ଅତି ମଳିନ ମୋ ଅଙ୍ଗ ଧୂଳି ଧୂସରିତ ହେ
ପୋଛୁଣ ଶ୍ରୀକରେ
ମା ମୋର ଆନନ୍ଦମୟୀ ମଧୁର ବଚନ କହି
ଆନନ୍ଦେ ଧରନ୍ତି ମୋତେ ଅମୃତ ବକ୍ଷରେ ହେ
ଅମୃତ ବକ୍ଷରେ ।

ମାତାର ଅମୃତ ବକ୍ଷ ସ୍ୱର୍ଗ ସୁଖ ଜିଣି ହେ
ଅତି ସୁଖମୟ;
ଯାହିଁ ପଦ୍ମାନ୍ତର ତାର, ରାଜ୍ୟ ବିଭବ କି ଛାର,
ଯାହିଁ ଆଉ ସନ୍ତାନର ସେପରି ଆଶ୍ରୟ ହେ
ସେପରି ଆଶ୍ରୟ !

ପାଞ୍ଚ ବର୍ଷ ବୟୁ ମୁହିଁ ଅଟଇ ଅନାଥ ହେ,
ହରାଇ ଜନନୀ;
କିନ୍ତୁ ଆହା ବିଶ୍ୱପତି ଦୟାବନ୍ତ ଦୁଃଖୀ ପ୍ରତି
ଦେଇଛନ୍ତି ମୋର ପ୍ରାଣେ ମହା ସ୍ପର୍ଶମଣି ହେ,
ମହା ସ୍ପର୍ଶମଣି !

ବିଶ୍ୱାସ ପରଶ-ମଣି ହୃଦୟେ ମୁଁ ଧରି ହେ,
ଦେଖଇ ପ୍ରତ୍ୟକ୍ଷେ
ହିରାମଣି ଆକାଶରେ; ଜଳେସ୍ଥଳେ ଚରାଚରେ,
ମୋହର ଜନନୀ ମୂର୍ତ୍ତି ଧରି ମୋତେ ବକ୍ଷେ ହେ,
ଧରି ମୋତେ ବକ୍ଷେ ।"

ପତ୍ନୀ ବିୟୋଗ ପରେ ଭଗୀରଥି ଯେତେବେଳେ ଶିଶୁ ସନ୍ତାନ ଦୁଇଟି ନେଇ ବିପନ୍ନ ହୋଇପଡ଼ିଛନ୍ତି, ସେହି ସମୟରେ ତାଙ୍କର ବଦଳିର ଆଦେଶ ଆସିଲା । ପାଣ୍ଡୀ କର ସଂଗ୍ରହ ପ୍ରଥା ଉଠିଯିବାରୁ, ଅଠରନଳା ଫାଣ୍ଡି ମଧ୍ୟ ଉଠିଗଲା; ସୁତରାଂ ଭଗୀରଥି ବାବୁ 'ଗୋପ' ଥାନାର ଜମାଦାର ପଦରେ ନିଯୁକ୍ତ ହୋଇ ପୁରୀ ତ୍ୟାଗ କରିବାକୁ ବାଧ୍ୟ ହେଲେ । ବର୍ତ୍ତମାନ ପୁଲିସ ବିଭାଗରେ ସବ୍‌ଇନସ୍‌ପେକ୍ଟର ନାମରେ ଯେଉଁ ପଦ ଅଛି, ତାହା ସେତେବେଳେ ନଥିଲା ।

ଏହି ଜମାଦାର ପଦବୀଧାରୀ ବ୍ୟକ୍ତିମାନଙ୍କୁ ଉକ୍ତ କାର୍ଯ୍ୟ କରିବାକୁ ହେଉଥିଲା । ଲାଲପଗଡ଼ି, ସବୁଜ ରଙ୍ଗର ଚପକନ (ବ୍ୟାଜ) ଏମାନଙ୍କର ପୋଷାକ ଥିଲା । ଏମାନେ ଦାରୋଗା ଅର୍ଥାତ୍ ଆଧୁନିକ ଇନ୍‌ସପେକ୍ଟରର ପଦବୀ ଧାରୀ କର୍ମଚାରୀଙ୍କ ଅଧୀନରେ କାମ କରୁଥିଲେ ।

ପୁରୀ ତ୍ୟାଗ କରିବା ପୂର୍ବରୁ ଭଗୀରଥି ଶିଶୁପୁତ୍ର ଦୁହିଁଙ୍କର ପ୍ରତିପାଳନ ବିଷୟରେ ଅତ୍ୟନ୍ତ ବ୍ୟାକୁଳ ହୋଇ ଜ୍ୟେଷ୍ଠ ଶାଳକଙ୍କ (ନାରାୟଣଜୀ) ହସ୍ତରେ ଏମାନଙ୍କର ଭାର ଅର୍ପଣ କଲେ । ଅମ୍ବିକାବାଈ ମଧ୍ୟ ଅନ୍ତିମକାଳରେ କନିଷ୍ଠ ପୁତ୍ରର ଲାଳନପାଳନ ଭାର ଭ୍ରାତା ନାରାୟଣଜୀଙ୍କୁ ଦେବାକୁ କହି ଯାଇଥିଲେ । ସୁତରାଂ ଶିଶୁ ଜଗନ୍ନାଥ ଓ ମଧୁସୂଦନ ଏହି ମାତୁଳ ଗୃହରେ ପ୍ରତିପାଳିତ ହେବାକୁ ଲାଗିଲେ ।

ଗୋପରେ ସେତେବେଳେ ସୁବଳ ଚନ୍ଦ୍ର ବସୁ ନାମରେ ଜଣେ ଦାରୋଗା ଥିଲେ । ଭଗୀରଥି ରାଓଙ୍କର ଧୀର ସ୍ୱଭାବ; ନମ୍ର ବ୍ୟବହାର ଓ କାର୍ଯ୍ୟ କୁଶଳତା ଗୁଣରେ ସନ୍ତୁଷ୍ଟ ହୋଇ ଦାରୋଗା ବାବୁ ତାହାଙ୍କୁ ବନ୍ଧୁ ଭାବରେ ଦେଖିବାକୁ ଲାଗିଲେ । କ୍ରମେ ଏମାନଙ୍କ ମଧ୍ୟରେ ଘନିଷ୍ଠତା ବଢ଼ିଗଲା । ଗୋପରେ ବାସ କରିବାର ବର୍ଷେକାଳ ମଧ୍ୟରେ ଦିନେ ରାତ୍ରରେ ଭଗୀରଥି ଗୋଟିଏ ଅଦ୍ଭୁତ ସ୍ୱପ୍ନ ଦେଖି ଅତ୍ୟନ୍ତ ବିଚଳିତ ହୋଇପଡ଼ିଲେ । ସେ ସ୍ୱପ୍ନରେ ଦେଖିଲେ, ସ୍ୱର୍ଗଗତା ପତ୍ନୀ ଅମ୍ବିକାବାଈ ଆସି କହିଲେ "ମୋର ପ୍ରାଣପ୍ରିୟ ସନ୍ତାନ ଦୁଇଟି ତୁମ ହାତରେ ଦେଇଆସିଛି, ସେମାନଙ୍କର ଅଯତ୍ନ ହେଉଛି । ତୁମେ ଯଦି ଦେଖି ନପାର, ତେବେ ମୁଁ ଜଗନ୍ନାଥକୁ (ଦ୍ୱିତୀୟ ପୁତ୍ର) ନେଇଆସିବି ।"

ପୁତ୍ରବତ୍ସଳ ଭଗୀରଥି ନିତାନ୍ତ କାତର ହୋଇ କର୍ମ କ୍ଷେତ୍ରର ବନ୍ଧୁ ଦାରୋଗାବାବୁଙ୍କ ନିକଟରେ ପିଲାଟି ଭଳି କ୍ରନ୍ଦନ କରୁ କରୁ ସ୍ୱପ୍ନ ବିବରଣୀ ତାହାଙ୍କୁ ଜଣାଇ କହିଲେ, "ମୋତେ ଏହିକ୍ଷଣି ପୁରୀ ଯିବାକୁ ହେବ, ଛୁଟି ଦିଅନ୍ତୁ ।" ଦାରୋଗା ସୁବଳ ବାବୁ ଗୋପରେ ବାସ କରୁଥିଲେ; ସୁତରାଂ ବନ୍ଧୁଙ୍କର ଏହି ଶିଶୁ ଦୁଇଟିର ପାଳନ ବିଷୟରେ ଭରସା ଦେଇ, ସେମାନଙ୍କୁ ନେଇ ଆସିବାକୁ ଅନୁମତି ଦେଲେ । ପୁତ୍ରବତ୍ସଳ ଭଗୀରଥି ସେହିଦିନ ପଦବ୍ରଜରେ ପୁରୀ ଯାତ୍ରା କଲେ । ସେହି ସମୟରେ ପୁରୀକୁ

ଗୋପ (ପ୍ରାୟ ୧୧୧୦ଶ) ଯାତାୟତ ପଥ, ବର୍ତ୍ତମାନ ସମୟ ପରି ସୁଗମ ନଥିଲା । ଗୋ-ଯାନ ଏକମାତ୍ର ଅବଲମ୍ବନ ଥିଲା, କିନ୍ତୁ ପଥ ଦୁର୍ଗମ ମଧ୍ୟ ଥିଲା । ସେହି ଦୁର୍ଗମ ପଥରେ ଶିଶୁମାନଙ୍କୁ ବିଶେଷତଃ ରୁଗ୍‌ଣ ଜଗନ୍ନାଥଙ୍କୁ ଗୋ-ଯାନରେ ନେଇଯିବା ଅତ୍ୟନ୍ତ କଷ୍ଟକର ହେବ, ବୁଝିପାରି ଭାଗୀରଥି ଯେଉଁ ଉପାୟ ଅବଲମ୍ବନ କରିଥିଲେ, ତାହା ବଡ଼ କୌତୁକପ୍ରଦ । ପାଠକପାଠିକା ମାନଙ୍କର ଅବଗତି ନିମିତ୍ତ ସେ ଘଟଣାଟିର ଉଲ୍ଲେଖ କରାଗଲା । ସେ ପ୍ରଥମେ ଦୁଇଟି ବଡ଼ (ବେତା) ଟୋକେଇ ଆଣି ତା' ଭିତରେ ଧାନ ଢ଼ାଳି ସମତଳ କରିଦେଲେ; ତତ୍‌ପରେ ଲୁଗା ଚଟାଇ ତା' ଉପରେ ବିଛାଇ ଶିଶୁ ଦୁଇଟିକୁ ସେଥିରେ ବସାଇଲେ । ଏହି ଦୁଇଟି (ବେତା) ଟୋକେଇ ଜଣେ ଭାରବାହୀର କାନ୍ଧରେ ଦୁଇ କଡ଼େ ଝୁଲାଇ, ବାହକକୁ ସଙ୍ଗରେ ନେଇ ପଦବ୍ରଜରେ ଗୋପ ଗମନ କଲେ । ସେଠାରେ ଶିଶୁ ଦୁଇଟି ପିତାଙ୍କ ନିକଟରେ ରହି ପାଳିତ ହେବାକୁ ଲାଗିଲେ ।

ଏହି ପ୍ରସଙ୍ଗରେ କହିବା ପ୍ରୟୋଜନ ଯେ ମାତୁଳ ନାରାୟଣଙ୍କ ପତ୍ନୀ ସେତେବେଳେ କିଶୋରୀ ବଧୂ ମାତ୍ର, ନିଜେ ସନ୍ତାନର ଜନନୀ ହୋଇ-ନାହାନ୍ତି । ଏହି ପରିବାରରେ ବୟସ୍କା ଗୃହିଣୀ ମଧ୍ୟ ସେତେବେଳେ ଅନ୍ୟ କେହି ନଥିଲେ । ସୁତରାଂ କିଶୋରୀ ମାତୁଳାନୀଙ୍କର ଶିଶୁ ସନ୍ତାନ ପାଳନର ଅନଭିଜ୍ଞତା ଯୋଗୁଁ ଶିଶୁ ଜଗନ୍ନାଥଙ୍କର ସମୁଚିତ ଯତ୍ନର ଅଭାବରେ ପ୍ରକୃତରେ ସ୍ୱାସ୍ଥ୍ୟହାନି ଘଟିଥିଲା ।

## (୨) ଓଡ଼ିଶାର ତତ୍କାଳୀନ ଶିକ୍ଷାର ଅବସ୍ଥା

୧୮୦୩ ଖ୍ରୀଷ୍ଟାବ୍ଦରେ ଲର୍ଡ଼ ୱେଲେସଲି ଆରଗାଁଓ ଯୁଦ୍ଧରେ ନାଗପୁର ଭୋଁସଲାଙ୍କୁ ପରାଜିତ କରି, ଦେଓଗାଁଓର ସନ୍ଧି ସୂତ୍ରରେ ଭୋଁସଲାଙ୍କ ନିକଟରୁ ଓଡ଼ିଶା ଓ ବେରାରର ଅଧିକାର ଲାଭ କଲେ । ଓ'ମ୍ୟାଲି ସାହେବ ତାଙ୍କ ଡିଷ୍ଟ୍ରିକ୍ଟ ଗେଜେଟିୟାରରେ ଲେଖିଛନ୍ତି ଯେ, ଏହି ସମୟରେ ଓଡ଼ିଶାର ସମସ୍ତ ଅଫିସ ଅଦାଲତ କାମ ଫାର୍ସି ଭାଷାରେ ନିର୍ବାହିତ ହେଉଥିଲା । ୧୮୦୫ ଖ୍ରୀଷ୍ଟାବ୍ଦରେ ଇଂରେଜ ଶାସକ ଆଦେଶ ଜାରି କଲେ ଯେ, ସାଧାରଣଙ୍କ ବିଜ୍ଞପ୍ତି ପାଇଁ ସମସ୍ତ ଇସ୍ତାହାର ବା ବିଜ୍ଞାପନରେ ଫାର୍ସି ଭାଷା ସହିତ ଓଡ଼ିଆ ଭାଷା ମଧ୍ୟ ବ୍ୟବହାର କରିବାକୁ ହେବ । ତାହା ଫଳରେ ଓଡ଼ିଆ ଲିଖନ

ପଠନକ୍ଷମ ମୋହରରର ନିୟୋଗର ପ୍ରୟୋଜନ ଅନୁଭୂତ ହେଲା । ୧୮୨୧ ଖ୍ରୀଷ୍ଟାବ୍ଦରେ କଟକ ମାଜିଷ୍ଟ୍ରେଟଙ୍କ ରିପୋର୍ଟରେ ଦେଖାଗଲା ଯେ, ସେତେବେଳ ପର୍ଯ୍ୟନ୍ତ ମଧ୍ୟ ସରକାରୀ କାର୍ଯ୍ୟରେ ସାଧାରଣ ମୋହରରର କାମ ଚଳାଇବାର ଯୋଗ୍ୟତା ଥିବା ଓଡ଼ିଆ ଜଣେ ସୁଦ୍ଧା ନଥିଲେ । ଓଡ଼ିଶା-ଅଧିବାସୀ ବଙ୍ଗାଳୀ ଓ ମୁସଲମାନ କର୍ମଚାରୀମାନଙ୍କ ସାହାଯ୍ୟରେ ସେହି ସମୟରେ ସରକାରୀ ଦପ୍ତରଖାନାର କାର୍ଯ୍ୟ ନିର୍ବାହିତ ହେଉଥିଲା ।

ଐତିହାସିକ ହଣ୍ଟର ସାହେବ ଲେଖିଅଛନ୍ତି, ଲୋକଙ୍କର ଏକଜିଦିଆ ପୁରୁଣା କାଳିଆ ମନୋବୃତ୍ତି ପାଇଁ ଖ୍ରୀଷ୍ଟୀୟ ମିଶନାରୀମାନଙ୍କର ଓ ବ୍ରିଟିଶ ସରକାରଙ୍କର ଓଡ଼ିଶାରେ ସମସ୍ତ ଉନ୍ନତି ପ୍ରଚେଷ୍ଟା ବ୍ୟାହତ ହୋଇଅଛି । ୧୮୩୮ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ଗୋଟିଏ ଦୁଇଟି ମିଶନାରୀ କେନ୍ଦ୍ର ଛଡ଼ା ଓଡ଼ିଶାରେ ଉଲ୍ଲେଖଯୋଗ୍ୟ କୌଣସି ବିଦ୍ୟାଳୟ ନଥିଲା । ସମଗ୍ର ପ୍ରଦେଶରେ ୨୫ ଲକ୍ଷ ଅଧିବାସୀ ସେତେବେଳେ ଭୟଙ୍କର କୁସଂସ୍କାର ଓ ଅଜ୍ଞାନ ଅନ୍ଧକାରରେ ନିମଜ୍ଜିତ । କ୍ୱଚିତ୍ କେଉଁଠାରେ କୌଣସି ଜମିଦାରଙ୍କ ଆଶ୍ରୟରେ ଜଣେ, ଦୁଇଜଣ ବ୍ରାହ୍ମଣ ପଣ୍ଡିତ କେତୋଟି ଛାତ୍ରଙ୍କୁ ସଂସ୍କୃତ ପଢ଼ାଉଥିବାର ଦେଖାଯାଉଥିଲା ଏବଂ ବଡ଼ ବଡ଼ ଗ୍ରାମରେ ଉନ୍ମୁକ୍ତ ସ୍ଥାନରେ ବୃକ୍ଷଛାୟାରେ ଗ୍ରାମ୍ୟ ଗୁରୁ ମହାଶୟ (ଅବଧାନ) କେତୋଟି ଛାତ୍ରଙ୍କୁ ସ୍ୱର ଲମ୍ବାଇ ପ୍ରଥମ ପଣିକିଆ ଇତ୍ୟାଦି ଶିଖାଇବାରେ ବା ଧୂଳିରେ ଅ, ଆ, କ, ଖ, ଲେଖାଇବାରେ ବ୍ୟାପୃତ ଥିବାର ଦେଖାଯାଉଥିଲା । ଯେ କେହି ତାଳପତ୍ରରେ ଦୁଇଛତ୍ର ଲେଖିପାରୁଥିଲା, ସେ ସେତେବେଳେ ମସ୍ତ ବିଦ୍ୱାନ ବୋଲି ସମାଦୃତ ହେଉଥିଲା । ୧୮୩୮ ଖ୍ରୀଷ୍ଟାବ୍ଦରେ ଇଷ୍ଟଇଣ୍ଡିଆ କମ୍ପାନୀର ସରକାର ପ୍ରଥମ ଶିକ୍ଷା କ୍ଷେତ୍ରରେ ଅବତୀର୍ଣ୍ଣ ହୋଇ ପୁରୀ ନଗରୀରେ ଗୋଟିଏ ଇଂରାଜୀ ଓ ଗୋଟିଏ ସଂସ୍କୃତ ବିଦ୍ୟାଳୟ ସ୍ଥାପନ କଲେ । କିନ୍ତୁ ସ୍ଥାନୀୟ ଅଜ୍ଞାନତା ଓ ଧର୍ମାନ୍ଧତାର ବନ୍ୟାରେ ସରକାରୀ ପ୍ରଚେଷ୍ଟା ଭାସିଗଲା; ବିଦ୍ୟାଳୟ ଚଳିଲା ନାହିଁ । ତତ୍ପରେ ୧୮୪୧ ଖ୍ରୀଷ୍ଟାବ୍ଦରେ କଟକରେ ପ୍ରଥମ ଉଚ୍ଚ ଇଂରାଜୀ ବିଦ୍ୟାଳୟ ସ୍ଥାପିତ ହେଲା । ବହୁ ବାଧାବିଘ୍ନ ଦୂର କରି ଏହି ବିଦ୍ୟାଳୟ ରହିଗଲା; ଏବଂ ବହୁକାଳ ପର୍ଯ୍ୟନ୍ତ ଏହା ଓଡ଼ିଶାର ପ୍ରଥମ ଶିକ୍ଷାକେନ୍ଦ୍ର ରୂପେ ବିରାଜମାନ ରହିଲା । ଲର୍ଡ଼ ହାର୍ଡ଼ିଞ୍ଜଙ୍କ ଶାସନ କାଳରେ ୧୮୪୫ ଖ୍ରୀଷ୍ଟାବ୍ଦରେ ଦୁଇଟି ଓଡ଼ିଆ ବିଦ୍ୟାଳୟ ସ୍ଥାପିତ ହେଲା । ୧୮୪୮ ଖ୍ରୀଷ୍ଟାବ୍ଦରେ

ଏହାପରେ ଆଠଗଡ଼ରେ ଗୋଟିଏ ବିଦ୍ୟାଳୟ ଏବଂ ୧୮୫୩ ଖ୍ରୀଷ୍ଟାବ୍ଦରେ ବାଲେଶ୍ୱର ଓ ପୁରୀରେ ଗୋଟିଏ ଲେଖାଏଁ ଉଚ୍ଚ ଇଂରାଜୀ ବିଦ୍ୟାଳୟ ସ୍ଥାପିତ ହେଲା। ୧୮୫୦ ଖ୍ରୀଷ୍ଟାବ୍ଦରେ ଉଡ଼ ସାହେବଙ୍କ (ତଦାନୀନ୍ତନ ବୋର୍ଡ-ଅଫ୍-କଣ୍ଟ୍ରୋଲର ସଭାପତି) ବିଖ୍ୟାତ ଡେସ୍‌ପ୍ୟାଚ ବା କମ୍ପାନୀର ସରକାରଙ୍କ ନିକଟକୁ ପ୍ରେରିତ ଶିକ୍ଷାବିଷୟକ ନିର୍ଦ୍ଦେଶ ପତ୍ରଟି ଭାରତର ପାଶ୍ଚାତ୍ୟ ଶିକ୍ଷା ବିସ୍ତାରରେ ଏକ ନବଯୁଗ ଆନୟନ କଲା। ତତ୍‌ସତ୍ତ୍ୱେ ଓଡ଼ିଶାରେ ପାଶ୍ଚାତ୍ୟ ଶିକ୍ଷା ଅତି ଧୀର ଗତିରେ ଅଗ୍ରସର ହେଉଥାଏ। ୧୮୫୫ ରୁ ୧୮୫୯ ଖ୍ରୀଷ୍ଟାବ୍ଦ ମଧ୍ୟରେ ଓଡ଼ିଶାରେ ଉନବିଂଶଟି ପ୍ରାଥମିକ ବିଦ୍ୟାଳୟ ଓ ମଧ୍ୟବିଦ୍ୟାଳୟ ସ୍ଥାପିତ ହୋଇଥିଲା। ତନ୍ମଧ୍ୟରୁ ଊନବିଂଶଟି ଖୋରଧା, ବାଙ୍କି ଓ ଅନୁଗୁଳର ଖାସ୍‌ମହାଲ ଇଲାକାରେ ଥିଲା। ପ୍ରକୃତ କଥା ଏହି ଯେ, ସମସ୍ତ ଓଡ଼ିଶାବାସୀ ବୈଦେଶିକ ଶିକ୍ଷାନୀତିର ସମ୍ପୂର୍ଣ୍ଣ ବିରୋଧୀ ଥିଲେ। ଶିକ୍ଷା କ୍ଷେତ୍ରରେ ଆଧୁନିକ କାଳରେ ଯେଉଁ ସାମାନ୍ୟ ଉନ୍ନତି ଦେଖାଯାଉଥିଲା, ତାହାର ମୂଳରେ ଓଡ଼ିଆମାନଙ୍କର ସାହାଯ୍ୟ ବିଶେଷ ନଥିଲା। ତାହାର କୃତିତ୍ୱ ବିଶେଷତଃ ସେହି ସମସ୍ତ ବଙ୍ଗାଳୀମାନଙ୍କର ପ୍ରାପ୍ୟ, ଯେଉଁମାନେ ସରକାରୀ କାର୍ଯ୍ୟ ଉପଲକ୍ଷେ ଓଡ଼ିଶାରେ ସ୍ଥାୟୀ ଭାବେ ବାସ କରୁଥିଲେ। ୧୮୬୮ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ଯେଉଁ ୫୮ ଜଣ ଓଡ଼ିଶା-ଛାତ୍ର କଲିକତା ବିଶ୍ୱବିଦ୍ୟାଳୟର ଏଣ୍ଟ୍ରାନ୍‌ସ ପରୀକ୍ଷା ପାସ କରିଥିଲେ, ସେମାନଙ୍କ ମଧ୍ୟରୁ ମାତ୍ର ୧୦ ଜଣ ଖାଣ୍ଟି ଓଡ଼ିଆ, ବାକି ୪୮ ଜଣ ଓଡ଼ିଶାର ପ୍ରବାସୀ ଛାତ୍ର।"

ଉପରେ ହଣ୍ଟର ସାହେବ ତଦାନୀନ୍ତନ ଓଡ଼ିଶାର ଶିକ୍ଷାସମ୍ବନ୍ଧୀୟ ଦୁରବସ୍ଥାର ଯେଉଁ ଚିତ୍ର ଅଙ୍କି ଅଛନ୍ତି, ସରକାରୀ ଦୃଷ୍ଟିଭଙ୍ଗୀରେ ତାହା ସତ୍ୟ ହେଲେ ମଧ୍ୟ, ଏହି ବିବରଣୀକୁ ପ୍ରକୃତ ଅବସ୍ଥାର ପରିଚାୟକ ଜ୍ଞାପକ ବୋଲି ସ୍ୱୀକାର କରାଯାଏ ନାହିଁ। ଏ ଦେଶରେ ସେତେବେଳେ ଇଂରେଜ ସରକାରଙ୍କ ଅନୁମୋଦିତ ପାଶ୍ଚାତ୍ୟ ଜ୍ଞାନ-ଭିତ୍ତିକ ଶିକ୍ଷାଳୟ ଅତି ଅଳ୍ପ ସଂଖ୍ୟକ ଥିଲେ ମଧ୍ୟ, ଦେଶୀୟ ଶିକ୍ଷା ବ୍ୟବସ୍ଥା ନିତାନ୍ତ ନଗଣ୍ୟ ନଥିଲା। ଅବଶ୍ୟ ଏହି ଶିକ୍ଷା ଅଧିକାଂଶ କ୍ଷେତ୍ରରେ ଉଚ୍ଚାଙ୍ଗର କିଛି ନହେଲେ ମଧ୍ୟ ଦୈନନ୍ଦିନ ଜୀବନଯାତ୍ରାର ଅନୁପଯୋଗୀ ନଥିଲା। ବ୍ରିଟିଶ ଶାସନ ଆରମ୍ଭ ହେବାର ଅବ୍ୟବହିତ ପୂର୍ବେ ଓଡ଼ିଶାରେ ନାନା ପ୍ରକାର ବିଶୃଙ୍ଖଳା, ଏବଂ ମରହଟ୍ଟାମାନଙ୍କ ଅତ୍ୟାଚାର ଉତ୍ପୀଡ଼ନ ଚାଲିଥିଲେ ମଧ୍ୟ, ଗ୍ରାମ୍ୟ ଶିକ୍ଷା-ବ୍ୟବସ୍ଥା କେବେହେଲେ ଏକବାରେ ଭାଙ୍ଗିପଡ଼ିନଥିଲା। ଜନଗଣଙ୍କ ସାକ୍ଷରତାର ମାନ

ସମଗ୍ର ଦେଶରେ ବ୍ରିଟିଶ ଅମଳ ଅପେକ୍ଷା ଯେ ଉନ୍ନତତର ଥିଲା, ତାହାର ପ୍ରମାଣ ଅଛି। ରାଜା ରାମମୋହନ ରାୟଙ୍କ ସହକର୍ମୀ ଓ ବନ୍ଧୁ-ଇଉନିଟେରିୟାନ ପ୍ରଚାରକ ଉଇଲିୟମ ଆଡ଼ାମ ସାହେବଙ୍କ ରିପୋର୍ଟ ମଧ୍ୟରେ, ଭାରତର ତଦାନୀନ୍ତନ ବଡ଼ଲାଟ୍—ଭାରତ ହିତୈଷୀ ଲର୍ଡ ବେଣ୍ଟିକ୍ଙ୍କ ନିର୍ଦ୍ଦେଶକ୍ରମେ ଆଡ଼ାମ ସାହେବ ବଙ୍ଗ ଓ ବିହାରର କେତୋଟି ଜିଲ୍ଲାରେ ଅନୁସନ୍ଧାନ କାର୍ଯ୍ୟ (ସ୍ୟାମ୍ପଲ ସର୍ଭେ) ସମାଧାନ କରି ୧୮୩୫-୧୮୩୮ ଖ୍ରୀଷ୍ଟାବ୍ଦ ମଧ୍ୟରେ ଯେଉଁ ରିପୋର୍ଟ ଦାଖଲ କଲେ, ସେଥିରେ ଦେଖାଗଲା ଯେ, ବଙ୍ଗ ଓ ବିହାରର ଦୁଇ କୋଟି ଲୋକଙ୍କ ପାଇଁ ଏକ ଲକ୍ଷ ଅର୍ଥାତ୍ ପ୍ରତି ଦୁଇ ଶହ ଲୋକଙ୍କ ପାଇଁ ଗୋଟିଏ କରି ଦେଶୀୟ ପ୍ରାଥମିକ ବିଦ୍ୟାଳୟ ଥିଲା। ଉଚ୍ଚଶିକ୍ଷା ପାଇଁ ଥିଲା, ହିନ୍ଦୁମାନଙ୍କର ସଂସ୍କୃତ-ମାଧ୍ୟମ ଶିକ୍ଷା କେନ୍ଦ୍ର-ଟୋଲ ଚତୁଷ୍ପାଠୀ ପ୍ରଭୃତି, ଏବଂ ମୁସଲମାନମାନଙ୍କର ଥିଲା—ମାଦ୍ରାସା ଯେଉଁଠାରେ ଆରବୀ ଓ ଫାର୍ସୀ ମାଧ୍ୟମରେ ଶିକ୍ଷା ଦିଆହୁଏ। ପ୍ରାଥମିକ ବିଦ୍ୟାଳୟର ଅନ୍ତର୍ଭୁକ୍ତ ଥିଲା ଫାର୍ସୀ ଓ ଉର୍ଦ୍ଦୁ ଶିକ୍ଷା ପାଇଁ ମକ୍ତବ ଏବଂ ଭାରତୀୟ ଭାଷା ସମୂହର ଶିକ୍ଷା ପାଇଁ ବିଭିନ୍ନ ପ୍ରକାରର ଗ୍ରାମ୍ୟ ପାଠଶାଳା ପ୍ରଭୃତି। ହିନ୍ଦୁ ମୁସଲମାନ ଉଭୟ ଶ୍ରେଣୀର ଉଚ୍ଚଶିକ୍ଷାର କେନ୍ଦ୍ରଗୁଡ଼ିକରେ ଧର୍ମଶାସ୍ତ୍ର, କାବ୍ୟ, ପୁରାଣ, ଦର୍ଶନ, ଜ୍ୟୋତିଷ ପ୍ରଭୃତିର ଅନୁଶୀଳନ ଓ ଅଧ୍ୟାପନା ହେଉଥିଲା। ଟୋଲ୍; ଚତୁଷ୍ପାଠୀର ଅଧ୍ୟାପକ ଓ ଛାତ୍ର ପ୍ରାୟ ବ୍ରାହ୍ମଣ ଥିଲେ। ମୁସଲମାନଙ୍କ ମାଦ୍ରାସାର ଅଧ୍ୟାପକ ଅଧିକାଂଶ କ୍ଷେତ୍ରରେ ମୁସଲମାନ ହେଲେ ମଧ୍ୟ, ଫାର୍ସୀ ଉଚ୍ଚଶିକ୍ଷା-କ୍ଷେତ୍ରରେ କେବେ କେବେ ହିନ୍ଦୁ ଅଧ୍ୟାପକ ମଧ୍ୟ ଦେଖା-ଯାଉଥିଲେ।

ଆଡ଼ାମ ସାହେବଙ୍କ ଉକ୍ତ ରିପୋର୍ଟଟି ବଙ୍ଗ-ବିହାରର ସମ୍ବନ୍ଧରେ ହେଲେ ମଧ୍ୟ, ଦେଶୀୟ ପ୍ରାଥମିକ ଶିକ୍ଷା କ୍ଷେତ୍ରରେ ସେତେବେଳେ ବଙ୍ଗ, ବିହାର, ଓଡ଼ିଶାର ବିଶେଷ କୌଣସି ପାର୍ଥକ୍ୟ ଥିଲା ବୋଲି ମନେହୁଏନା। ସ୍ୱର ଧରି ପଢିବାରେ ମଧ୍ୟ ରାମାୟଣ, ମହାଭାରତ, ଭାଗବତ, ପାଲା ପ୍ରଭୃତିର ଆବୃତ୍ତି କ୍ଷମତା ଓଡ଼ିଆ ଜନସାଧାରଣଙ୍କ ମଧ୍ୟରେ ଖୁବ୍ ବ୍ୟାପକ ଥିଲା, ଏବଂ ବ୍ରିଟିଶ ସରକାରଙ୍କ ଦପ୍ତରର କାର୍ଯ୍ୟକ୍ରମରେ ଓ ହିସାବ-ରକ୍ଷଣରେ ଅପଟୁ ହେଲେ ମଧ୍ୟ ଓଡ଼ିଆମାନେ ଦୈନନ୍ଦିନ ବଜାର ହିସାବ, ସାଧାରଣ ବ୍ୟବସାୟ ବାଣିଜ୍ୟ ବା ବ୍ୟବସାୟୀ ଗଦିର ହିସାବ ପତ୍ରାଦିରେ

ରକ୍ଷଣରେ ଏବଂ ଜମିଦାରୀ ସିରସ୍ତାର କାର୍ଯ୍ୟ ପରିଚାଳନା କରିବାରେ ସମ୍ପୂର୍ଣ୍ଣ ଯୋଗ୍ୟ ଥିଲେ ।

ଓଡ଼ିଶାର ତତ୍କାଳୀନ ପ୍ରାଥମିକ ଶିକ୍ଷା ସମ୍ବନ୍ଧରେ ସୁବିଖ୍ୟାତ ଓଡ଼ିଆ କଥା-ସାହିତ୍ୟିକ ଓ ଆଧୁନିକ ଓଡ଼ିଆ ଗଦ୍ୟ ସାହିତ୍ୟର ଅନ୍ୟତମ ଜନ୍ମଦାତା ଫକୀର ମୋହନ ସେନାପତି ସ୍ୱୟଂ 'ଆତ୍ମ ଜୀବନ ଚରିତ'ରେ ଯେଉଁ ଉପଯୋଗୀ ବିବରଣୀ ଦେଇଛନ୍ତି, ନିମ୍ନରେ ତାହାର କିୟଦଂଶ ଉଦ୍ଧୃତ ହେଲା । (ଉକ୍ତ ଗ୍ରନ୍ଥର ତୃତୀୟ ପରିଚ୍ଛେଦ ଦ୍ରଷ୍ଟବ୍ୟ) :—

"ସେ କାଳରେ ବଡ଼ ବଡ଼ ଗ୍ରାମରେ, ଏବଂ ଗ୍ରାମଗୁଡ଼ିକ ଶ୍ରେଷ୍ଠ ହେଲେ, ଦୁଇ ତିନୋଟି ଗ୍ରାମ ପାଇଁ ଗୋଟିଏ ଗୋଟିଏ ପାଠଶାଳା ଥାଏ । ଅବସ୍ଥାପନ୍ନ ଗୃହସ୍ଥ ଘରେ ସ୍ୱତନ୍ତ୍ର ଭାବରେ ମଧ୍ୟ ଜଣେ ଜଣେ ଅବଧାନ, ଅର୍ଥାତ୍ ଗୁରୁ ମହାଶୟ ନିଯୁକ୍ତ ଥାଆନ୍ତି । ଗ୍ରାମର ପାଣ, ବାଉରି, କଣ୍ଡରା ପ୍ରଭୃତି ଅସ୍ପୃଶ୍ୟ ଜାତିର ବାଳକମାନେ ମଧ୍ୟ ଉଚ୍ଚବର୍ଣ୍ଣର ଛାତ୍ରମାନଙ୍କଠାରୁ କିଛି ଦୂରରେ ବସି ଏହି ସମସ୍ତ "ଚାଟଶାଳୀ" ଅର୍ଥାତ୍ ପାଠଶାଳାରେ ପଢିପାରୁଥିଲେ । ଅବଧାନମାନଙ୍କ ମଧ୍ୟରୁ ଅଧିକାଂଶ କରଣ ଜାତିର ଥିଲେ, ଅଳ୍ପସଂଖ୍ୟକ 'ମାଷ୍ଟି ବଂଶ' ଓଝା ଥିଲେ । ବାଲେଶ୍ୱରବାସୀ ଅବଧାନମାନେ ଜାତିରେ ଜ୍ୟୋତିଷୀ ଥିଲେ । ସେ ଯୁଗରେ କଟକ ଜିଲ୍ଲାରୁ ବିଶେଷତଃ ଏହାର ଅନ୍ତର୍ଗତ ଝଙ୍କଡ଼ ପ୍ରଗଣାରୁ ବହୁ ଅବଧାନଙ୍କର ଆମଦାନୀ ହେଉଥିଲା । ଫାଲ୍ଗୁନ ମାସଠାରୁ ଚୈତ୍ରର ଶେଷ ପର୍ଯ୍ୟନ୍ତ ଅବଧାନ ଆମଦାନୀର ସମୟ ଥିଲା । ଏହି ସମୟରେ ସେମାନେ ଗ୍ରାମେ ଗ୍ରାମେ କର୍ମ ସନ୍ଧାନରେ ଘୂରି ବୁଲୁଥିଲେ । ବେଶଭୂଷା ଓ ସାଜସରଞ୍ଜାମରୁ ଅବଧାନ-କର୍ମପ୍ରାର୍ଥୀମାନଙ୍କୁ ଚିହ୍ନି ହୋଇଯାଏ । ସେମାନଙ୍କର ପରିଧେୟ ଥିଲା—ଆଣ୍ଠୁ ତଳ ପର୍ଯ୍ୟନ୍ତ ଖଣ୍ଡିଏ ଦେଶୀ ତନ୍ତବୁଣା ଧୋତି, ମୁଣ୍ଡରେ ଭିଡ଼ା ଖଣ୍ଡିଏ ମଇଳା ଗାମୁଛା, କାନ୍ଧରେ ଦୁଇପାଖେ ଝୁଲୁଥିବା ଗୋଟିଏ ଗଣ୍ଠିଲି, ଗଣ୍ଠିଲିର ଗୋଟିଏ ପୁଟୁଳିରେ ଅଧସେର ଚାଉଳ, ରନ୍ଧିବା ମୁଠାଏକ ଖଣ୍ଡିଏ ପିତଳ ବାସନ, ଶ୍ରେଷ୍ଠ ହାଲୁକା ଗୋଟିଏ ଲୋଟା । ଅନ୍ୟ ପୁଟୁଳିରେ ଦୁଇ ତିନିଟା ତାଳପତ୍ର ପୋଥିର ବିଡ଼ା ଏବଂ ଖଣ୍ଡିଏ ଆଠ ନଅ ହାତ ଧୋତି । ଏହା ହିଁ କର୍ମପ୍ରାର୍ଥୀ ଅବଧାନଙ୍କର ଚିହ୍ନ ଥିଲା ।

"ଏମାନେ ଯେ କେବଳ କଟକ, ପୁରୀ ଓ ବାଲେଶ୍ୱର ଜିଲ୍ଲାରେ ଚାଟଶାଳୀ ସ୍ଥାପନ କରି ପ୍ରାଥମିକ ଶିକ୍ଷାଦାନ କରି ବୁଲୁଥିଲେ, ତାହାନୁହେଁ, ଏମାନଙ୍କର କର୍ମକ୍ଷେତ୍ର ଗଡ଼ଜାତର ଦେଶୀୟ ରାଜ୍ୟସମୂହରେ ଏବଂ ମେଦିନୀପୁର ଜିଲ୍ଲାର, ଦାନ୍ତନ, ପଟାଶପୁର, କାନ୍ଥି ଓ ମହିଷାଦଳ ପର୍ଯ୍ୟନ୍ତ ବିସ୍ତୃତ ଥିଲା।

"ଗ୍ରାମସ୍ଥ ମଠ ମନ୍ଦିର ଏକପ୍ରାନ୍ତରେ ଅଥବା ଗୁରୁମହାଶୟଙ୍କ ନିଜ ଗୃହରେ, ଅନ୍ୟଥା କୌଣସି ବୃକ୍ଷ ତଳେ ବସି ଅବଧାନ ତାଙ୍କ ପାଠଶାଳାର କାର୍ଯ୍ୟ ଆରମ୍ଭ କରୁଥିଲେ। ଏହି ଅବଧାନମାନେ ଅର୍ଥଲୋଲୁପ ନଥିଲେ। ଛାତ୍ରମାନଙ୍କ ନିକଟରୁ ସେମାନେ ଅଧିକାଂଶ କ୍ଷେତ୍ରରେ ନିର୍ଦ୍ଦିଷ୍ଟ କୌଣସି ବେତନ ପାଉନଥିଲେ। ନିୟମିତ ଛାତ୍ରବେତନ ପରିବର୍ତ୍ତେ ସେମାନେ ବିଭିନ୍ନ ଛାତ୍ରଙ୍କ ଅବସ୍ଥା ବୁଝି କାହା ପାଖରୁ କେତେ ସେର ଚାଉଳ, କାହାଠାରୁବା କେତୋଟା ନଡ଼ିଆ, ବା କିଛି ଡ଼ାଲି ଅଥବା ପରିବାପତ୍ର, ଫଳମୂଳ ପାଇ ସନ୍ତୁଷ୍ଟ ହେଉଥିଲେ। କେବେ କେବେ ଛୁଟି ଦିନରେ କେତେକ ବୟସ୍କ ଛାତ୍ର ଗୀତ ଗାଇ ଘର ଘର ବୁଲି ଅବଧାନଙ୍କ ପାଇଁ ଚାଉଳ ଭିକ୍ଷା କରି ଆଣୁଥିଲେ। କୌଣସି ଛାତ୍ର ନୂଆ ପାଠ ଆରମ୍ଭ କରିବା ବେଳେ ଅବଧାନଙ୍କ ପାଇଁ ଗୋଟିଏ 'ସଞ୍ଜା' ନେଇଆସୁଥିଲେ। ସଞ୍ଜାର ଉପକରଣ ଥିଲା,ଏକ ସେର ଚାଉଳ, ଗୋଟିଏ ଗୁଆ, କିଛି ଗୁଡ଼ ଓ ଉଖୁଡ଼ା ଏବଂ କେତୋଟି ଫୁଲ।"

ଏହି ସମସ୍ତ ଗ୍ରାମ୍ୟ ପାଠଶାଳରେ ସାଧାରଣତଃ ପାଞ୍ଚ ବର୍ଷ ପୂର୍ଣ୍ଣ ନହେଲେ ବାଳକମାନଙ୍କର ବିଦ୍ୟାରମ୍ଭ ହେଉନଥିଲା। ସାତ, ଆଠ ବର୍ଷ ପର୍ଯ୍ୟନ୍ତ ସେମାନେ ଏଠାରେ ପଢ଼ି ପାରୁଥିଲେ। ଅବଶ୍ୟ ସବୁ ଅବଧାନଙ୍କର ବିଦ୍ୟା ଅଥବା ଜ୍ଞାନବତ୍ତା ସମାନ ନଥିଲା, ଏବଂ ଛାତ୍ରମାନଙ୍କର ମଧ୍ୟ ସମସ୍ତଙ୍କର ବିଦ୍ୟାଲାଭ ପାଇଁ ସମାନ ଆକାଂକ୍ଷା ବା ସୁଯୋଗ ନଥିଲା। ସୁତରାଂ ଅଧିକାଂଶ ଛାତ୍ର ତିନି-ପାଞ୍ଚ ବର୍ଷ ମଧ୍ୟରେ ଯାହା ଶିକ୍ଷା କରିବା ନିତାନ୍ତ ପ୍ରୟୋଜନୀୟ—ଯଥା, ଲିଖନ, ପଠନ ଓ ସାଧାରଣ ହିସାବ ବୁଝିବା ପାଇଁ ଯେତେଟା ଅଙ୍କର ପ୍ରୟୋଜନ ତାହା ଶିଖି ସାରି ପାଠଶାଳା ତ୍ୟାଗ କରୁଥିଲେ। ଅତି ଅଳ୍ପ ସଂଖ୍ୟକ ଛାତ୍ର ହିଁ ଚାଟଶାଳୀର ପାଠ ସମାପନ କରୁଥିଲେ।

ଚାଟଶାଳୀର ପାଠ ଶେଷ କରି ଜ୍ଞାନପିପାସୁ ମେଧାବୀ ଛାତ୍ରଗଣ ଉଚ୍ଚତର ଶିକ୍ଷା କେନ୍ଦ୍ରରେ ବା ଉପଯୁକ୍ତ ଅଧ୍ୟାପକଙ୍କ ପାଖରେ ସ୍ୱ ସ୍ୱ ପ୍ରେରଣା

ବା ଇଚ୍ଛାନୁଯାୟୀ ଓଡ଼ିଆ ସାହିତ୍ୟ ଅଥବା ସଂସ୍କୃତ କାବ୍ୟ, ବ୍ୟାକରଣ, ଅଳଙ୍କାର, ସ୍ମୃତି-ପୁରାଣ—ଜ୍ୟୋତିଷ ବା ଆୟୁର୍ବେଦ ଦର୍ଶନାଦିର ଚର୍ଚ୍ଚା କରୁଥିଲେ । ଅବଶ୍ୟ ସେ ଯୁଗରେ ଇଚ୍ଛାନୁଯାୟୀ ଉଚ୍ଚଶିକ୍ଷା ଲାଭର ଉପାୟ ଯେ ଖୁବ୍ ସୁଲଭ ଥିଲା, ତାହା ନୁହେଁ, କିନ୍ତୁ ଅର୍ଥବ୍ୟୟ ଦିଗରୁ ଆଧୁନିକ କାଳ ଅପେକ୍ଷା ଏହା ବହୁଳାଂଶରେ ସହଜ ମଧ୍ୟ ଥିଲା । କାରଣ ଏହି ସମସ୍ତ ଉଚ୍ଚଶିକ୍ଷାର କେନ୍ଦ୍ରଗୁଡ଼ିକ ପ୍ରାୟତଃ ଧନୀ ବଣିକ ଶ୍ରେଣୀ, ଜମିଦାର ଓ ରାଜନ୍ୟ ବର୍ଗଙ୍କ ପୃଷ୍ଠପୋଷକତାରେ ପରିଚାଳିତ ହେଉଥିଲା । ସୁପଣ୍ଡିତ, ବ୍ରାହ୍ମଣ ଅଧ୍ୟାପକଗଣ ସ୍ୱତନ୍ତ୍ର ଭାବରେ ଚତୁଷ୍ପାଠୀ ପରିଚାଳନା କରୁଥିଲେ । ଏହି ସମସ୍ତ ଅଧ୍ୟାପକ ବିଦ୍ୟାଦାନର ବିନିମୟରେ ଛାତ୍ରଙ୍କଠାରୁ ଅର୍ଥ ଗ୍ରହଣ କରିବା ତ ଦୂରର କଥା, ବରଂ ଛାତ୍ରମାନଙ୍କୁ ନିଜ ଗୃହରେ ଆଶ୍ରୟ ଦେଇ ସେମାନଙ୍କର ଭରଣ ପୋଷଣର ପୂର୍ଣ୍ଣ ଦାୟିତ୍ୱ ଗ୍ରହଣ କରୁଥିଲେ । ସୁତରାଂ ଦରିଦ୍ର ମେଧାବୀ ଓ ଜ୍ଞାନପିପାସୁ ଛାତ୍ରମାନଙ୍କର ଉଚ୍ଚଶିକ୍ଷା ଲାଭର ପଥ ସେହି ଯୁଗରେ ବର୍ତ୍ତମାନ ସମୟ ତୁଳନାରେ ଅପେକ୍ଷାକୃତ ସୁଗମ ଥିଲା । ଉପଯୁକ୍ତ ଗୁରୁ ସନ୍ଧାନ କରି ତାଙ୍କ କୃପା ଓ ଆଶ୍ରୟ ଲାଭ କରିପାରିଲେ, ଛାତ୍ରର ଆଉ ଦୁର୍ଭାବନାର ବିଶେଷ କୌଣସି କାରଣ ନଥିଲା । ଛାତ୍ରଗଣ ଗୁରୁଙ୍କ ଗୃହରେ ରହି କଠୋର ତପସ୍ୟା ଦ୍ୱାରା ବିଦ୍ୟାଭ୍ୟାସ କରୁଥିଲେ । ଗୁରୁଙ୍କ ଜୀବନଯାତ୍ରା ଅତି ସହଜ, ସରଳ ଓ ବିଳାସବର୍ଜ୍ଜିତ ଥିଲା । ଛାତ୍ର-ମାନଙ୍କୁ ଅଧିକାଂଶ କ୍ଷେତ୍ରରେ ଗୁରୁ ଗୃହରେ ନାନାବିଧ ପରିଶ୍ରମ-ସାଧ୍ୟ କାର୍ଯ୍ୟ କରିବାକୁ ହେଲେ ମଧ୍ୟ ଗୁରୁଙ୍କ ସାନ୍ନିଧ୍ୟ ଓ ସାହାଯ୍ୟ ଲାଭ କରି ସେମାନେ ମଧ୍ୟ ଗୁରୁଙ୍କ ସହିତ ଘନିଷ୍ଠ ଯୋଗରେ ଯୁକ୍ତ ହୋଇପାରୁଥିଲେ । ସେ ଯୁଗରେ ଗୁରୁସେବା ଓ ଗୁରୁଭକ୍ତି ହିଁ ଜ୍ଞାନାର୍ଜନର ପ୍ରଧାନ ଉପାୟ ବୋଲି ବିବେଚିତ ହେଉଥିଲା ।

ତେବେ ସେ ଯୁଗରେ ଉଚ୍ଚଶିକ୍ଷା ଲାଭର ପ୍ରଧାନ ଅନ୍ତରାୟ ଥିଲା, କାଗଜ ଓ ପୁସ୍ତକର ଅଭାବ । ଯେଉଁମାନେ ଉଚ୍ଚଶିକ୍ଷା ଲାଭର ଇଚ୍ଛା ପୋଷଣ କରୁଥିଲେ, ସେମାନଙ୍କୁ ବହୁ ପରିଶ୍ରମ ଓ କଷ୍ଟ ସ୍ୱୀକାରପୂର୍ବକ ପ୍ରୟୋଜନୀୟ ପୋଥିପତ୍ର ସନ୍ଧାନ ଓ ସଂଗ୍ରହ କରିବାକୁ ହେଉଥିଲା । ଯେଉଁମାନେ ଏତେ କଷ୍ଟ ସ୍ୱୀକାର କରି ଉଚ୍ଚଜ୍ଞାନ ଲାଭରେ ଯତ୍ନବାନ ହେଉଥିଲେ ସେମାନେ ଥିଲେ ପ୍ରକୃତ ଜ୍ଞାନପିପାସୁ । ସେମାନଙ୍କର ବିଦ୍ୟା ଅର୍ଥକାରୀ ବିଦ୍ୟା ନଥିଲା, ସେମାନଙ୍କର ଉଦ୍ଦେଶ୍ୟ ଥିଲା ଜ୍ଞାନଲାଭ ଓ ଆତ୍ମୋତ୍କର୍ଷ-ସାଧନ ।

ଅବଧାନ ତଥା ଶିକ୍ଷକ ଓ ଅଧ୍ୟାପକମାନଙ୍କ ପୋଥିପତ୍ର ସବୁ ତାଳ ପତ୍ରରେ ଲେଖା ହେଉଥିଲା । ସ୍ଥାୟୀତ୍ୱ ପାଇଁ ତାଳପତ୍ର ଉପରେ ସୂଚ୍ୟଗ୍ର ଲୌହଶଳାକା (ଲେଖଣୀ) ଦ୍ୱାରା ଏହି ସମସ୍ତ ପୋଥି ଲେଖା ହେଉଥିଲା । ଏବଂ ପରେ ତା' ଉପରେ କାଳିର ଲେପ ବୁଲାଇ ଲିଖିତ ବିଷୟକୁ ସୁସ୍ପଷ୍ଟ କରି ଦିଆ ହେଉଥିଲା । ସମ୍ଭବତଃ ଏହି ଲିଖନ ପଦ୍ଧତି ପାଇଁ ଓଡ଼ିଆ ଅକ୍ଷର ଗୁଡ଼ିକର ମାତ୍ରା ଅର୍ଦ୍ଧବୃତ୍ତାକାର ହୋଇଥିଲା । କାରଣ ଲୌହ ଲେଖଣୀ ଦ୍ୱାରା ତାଳପତ୍ରରେ ବଙ୍ଗଳା ଅକ୍ଷର ପରି ସରଳ ମାତ୍ରା ଲେଖିବାକୁ ଗଲେ; ପତ୍ର ଚିରିଯାଇ ପୋଥି ଅଳ୍ପ କାଳ ମଧ୍ୟରେ ନଷ୍ଟ ହେବାର ଆଶଙ୍କା ରହୁଥିଲା ।

ବାଳିକାମାନଙ୍କ ଶିକ୍ଷାର ପ୍ରଥା ସମାଜରେ ସୁପ୍ରଚଳିତ ନଥିଲେ ମଧ୍ୟ, ଅଳ୍ପବୟସ୍କା ବାଳିକାମାନଙ୍କୁ ସାଧାରଣ ଚାଟଶାଳୀରେ ବାଳକମାନଙ୍କ ସହିତ ଏକତ୍ର ବସି ଲିଖନ, ପଠନ ଓ ସାମାନ୍ୟ ଅଙ୍କ ଶିଖିବାରେ ବିଶେଷ ସାମାଜିକ ପ୍ରତିବନ୍ଧକ ନଥିଲା । ଅବସ୍ଥାପନ୍ନ ଗୃହସ୍ଥ ଜମିଦାର ଅଥବା ରାଜନ୍ୟଗଣ—ଯେଉଁମାନେ ସ୍ୱତନ୍ତ୍ର ଗୃହ ଶିକ୍ଷକ ନିଯୁକ୍ତ କରିପାରୁଥିଲେ, ସେମାନଙ୍କର ପରିବାରସ୍ଥ ବାଳିକାମାନଙ୍କ ପକ୍ଷରେ ଅପେକ୍ଷାକୃତ ଅଧିକ ବୟସ ପର୍ଯ୍ୟନ୍ତ ଅଳ୍ପାଧିକ ଉଚ୍ଚତର ଶିକ୍ଷାଲାଭର ସମ୍ଭାବନା ଥିଲା—ବିଶେଷତଃ ସଂସ୍କାରଯୁକ୍ତ ଅଧ୍ୟାପକ ବ୍ରାହ୍ମଣଙ୍କ ଗୃହରେ ମଧ୍ୟେ ମଧ୍ୟେ ବିଦୁଷୀ ଶାସ୍ତ୍ରଜ୍ଞା ମହିଳା ଲେଖିକା ମଧ୍ୟ ଦେଖାଯାଉଥିଲେ ।

ଅବଧାନୀୟ ଶିକ୍ଷା ରୀତିର ଦୋଷ ତ୍ରୁଟି ଅନେକ ଥିଲା । ଏଥିରେ ନିୟମିତ କୌଣସି ପାଠ୍ୟକ୍ରମ ନଥିବାରୁ, ଛାତ୍ରମାନଙ୍କର ଅନେକ ସମୟ ଅଯଥା ନଷ୍ଟ ହେଉଥିଲା । ଛାତ୍ରସଂଖ୍ୟା ଅଧିକ ହେଲେ, ଜଣେ ଅବଧାନଙ୍କ ପକ୍ଷରେ ସବୁ ଛାତ୍ରଙ୍କ ପ୍ରତି ଦୃଷ୍ଟି ରଖିବା ସମ୍ଭବ ହେଉନଥିଲା । ସେଥିପାଇଁ ଅଧିକାଂଶ ଚାଟଶାଳୀରେ 'ବଡ଼ ଚାଟ' ପ୍ରଥା ପ୍ରଚଳିତ ଥିଲା । ଶିକ୍ଷଣୀୟ ବିଷୟଟିକୁ ମନୋରମ ବା ଚିତ୍ତାକର୍ଷକ କରିବା ପାଇଁ ଶିକ୍ଷକମାନଙ୍କର କୌଣସି ଚେଷ୍ଟା ନଥିଲା । ଚାଟଶାଳୀର କଠୋର ଦଣ୍ଡବିଧି ସେମାନଙ୍କ ଶିକ୍ଷାପଦ୍ଧତିରେ ମୁଖ୍ୟସ୍ଥାନ ଅଧିକାର କରିଥିଲା ।

କେବଳ ଯେ ଲଘୁପାପରେ ଗୁରୁଦଣ୍ଡ ବିଧାନ ଥିଲା, ତାହାନୁହେଁ, ବିନା ଅପରାଧରେ ମଧ୍ୟ ଅନେକ ସମୟରେ କଠୋର ଦଣ୍ଡ ଭୋଗ କରିବାକୁ

ହେଉଥିଲା । ବେତର ସଦ୍‌ବ୍ୟବହାର ବିନା ଲିଖନ-ପଠନ-ବିଦ୍ୟାଭ୍ୟାସ ଯେ ମୋଟେ ହୋଇପାରେ ନାହିଁ, ଏହା ଥିଲା ସେ ଯୁଗର ବଦ୍ଧମୂଳ ଧାରଣା । ପ୍ରାୟ ସବୁ ଦେଶରେ ଏବଂ ଏ ବିଷୟରେ ଅଭିଭାବକମାନଙ୍କର ମଧ୍ୟ ଅଧିକାଂଶ କ୍ଷେତ୍ରରେ ମତୈକ୍ୟ ବିଦ୍ୟମାନ ଥିଲା ।

କିନ୍ତୁ ଏହି ଅବଧାନୀୟ ଶିକ୍ଷାପଦ୍ଧତିର ପ୍ରଧାନ ସୁବିଧା ଥିଲା, ଏହାର ବ୍ୟୟସ୍ୱଳ୍ପତା, ଆଉ ଏହା ଥିଲା ଓଡ଼ିଆ-ମାଧ୍ୟମ-ଶିକ୍ଷା । ସରକାରଙ୍କ ପ୍ରତିଷ୍ଠିତ ଓଡ଼ିଆ ବିଦ୍ୟାଳୟଗୁଡ଼ିକର ପ୍ରଧାନ ଅନ୍ତରାୟ ବା ତ୍ରୁଟି ଥିଲା ଏହି ଯେ, ଏହା ଥିଲା ବଙ୍ଗଳା-ମାଧ୍ୟମ ଶିକ୍ଷା । ଶିକ୍ଷକମାନେ ଅଧିକାଂଶ ବଙ୍ଗାଳୀ ଓ ପାଠ୍ୟ ପୁସ୍ତକମାନ ବଙ୍ଗଳାରେ ଲିଖିତ । କାରଣ ସେ ପର୍ଯ୍ୟନ୍ତ ଓଡ଼ିଆ ଭାଷାର କୌଣସି ପାଠ୍ୟପୁସ୍ତକ ରଚିତ ହୋଇନଥିଲା ।

## (୩) ଶିକ୍ଷାରମ୍ଭ

ଗୋପ ଆସିବା ପରେ ଏହିପରି ଗୋଟିଏ ଗ୍ରାମ୍ୟ ଚାଟଶାଳୀ ବା ପାଠଶାଳାରେ ସପ୍ତମ ବର୍ଷ ବୟସରେ ମଧୁସୂଦନଙ୍କର ବିଦ୍ୟାରମ୍ଭ ହୁଏ । ଚାଟଶାଳୀର ରୀତି ଅନୁସାରେ ହରଣ, ଗୁଣନ, ଶୋଧ, ଓଡ଼ାଙ୍କ, କୋଠାନଳ, ହସ୍ତ ବିହସ୍ତ ପ୍ରଭୃତି ଯେଉଁସବୁ ଅଙ୍କର ନାମ ବର୍ତ୍ତମାନ ଛାତ୍ରମାନଙ୍କ କର୍ଣ୍ଣଗୋଚର ମଧ୍ୟ ହୁଏନାହିଁ, ପ୍ରାଥମିକ ଶିକ୍ଷା ମଧ୍ୟରେ ମଧୁସୂଦନଙ୍କୁ ସେସବୁ ଶିଖିବାକୁ ହୋଇଥିଲା । ବର୍ଷାଧିକ କାଳ ପରେ ଭଗୀରଥି ଭୁବନେଶ୍ୱର ବଦଳି ହୋଇ ଆସିବା ଉତ୍ତାରୁ ପୁତ୍ରର ଶିକ୍ଷାର କିଞ୍ଚିତ ସୁବିଧା ହେଲା । କାରଣ ସେଠାରେ ତତ୍‌ପୂର୍ବେ ଗୋଟିଏ ମିଡ଼ିଲ୍ ଭର୍ଣ୍ଣାକୁଲର ବିଦ୍ୟାଳୟ ପ୍ରତିଷ୍ଠିତ ହୋଇଥିଲା । ଅଷ୍ଟାଦଶ ଶତାବ୍ଦୀର ମଧ୍ୟଭାଗରେ ୧୭୫୭ ଖ୍ରୀଷ୍ଟାବ୍ଦରେ ପଲାସୀ ଯୁଦ୍ଧ ଉତ୍ତାରୁ ଭାରତର ପୂର୍ବାଞ୍ଚଳରେ ଇଂରେଜ ପ୍ରଭୁତ୍ୱର ସୂତ୍ରପାତ ହୋଇଥିଲେ ମଧ୍ୟ, ପ୍ରଥମ ଅର୍ଦ୍ଧଶତାବ୍ଦୀକାଳ କମ୍ପାନି ସରକାର କେବଳ ରାଜସ୍ୱ ଆଦାୟ, ସୈନ୍ୟଦଳ ବୃଦ୍ଧି ଓ ରାଜ୍ୟ ବିସ୍ତାରରେ ମନୋନିବେଶ କରିଥିଲେ । ୧୮୧୩ ଖ୍ରୀଷ୍ଟାବ୍ଦରେ ଇଷ୍ଟଇଣ୍ଡିଆ କମ୍ପାନିର ସନନ୍ଦ ଯେତେବେଳେ ନୂତନ କରି ମଞ୍ଜୁର ହେଲା, ସେତେବେଳେ ତାହାର ଗୋଟିଏ ସୂତ୍ରରେ ଦେଶୀୟ ସାହିତ୍ୟର ପୁନରୁଜ୍ଜୀବନ ଓ ଉନ୍ନତିକଳ୍ପେ ଏବଂ

ଭାରତୀୟମାନଙ୍କ ମଧ୍ୟରେ ଜ୍ଞାନ-ବିଜ୍ଞାନର ପ୍ରଚାର ନିମିତ୍ତ କମ୍ପାନୀକୁ ବାର୍ଷିକ ଅନ୍ୟୂନ ଏକ ଲକ୍ଷ ଟଙ୍କା ବ୍ୟୟ କରିବାକୁ ଆଦେଶ ଦିଆହେଲା । ଏହାହିଁ ଭାରତୀୟ ଶିକ୍ଷାର ଇତିହାସରେ କମ୍ପାନୀ ସରକାରଙ୍କ ପ୍ରଥମ ଉଦ୍ୟମ, ଏହି ସମୟରେ ବ୍ରିଟିଶ ଭାରତରେ ପାଶ୍ଚାତ୍ୟ ଶିକ୍ଷା ବିସ୍ତାର କଳ୍ପେ ତିନି ଦଳ ଲୋକ କାର୍ଯ୍ୟାରମ୍ଭ କରିଥିଲେ :—

(୧) ପ୍ରୋଟେଷ୍ଟାଣ୍ଟ ମିଶନାରୀ ଦଳ; (୨) ଶିକ୍ଷା ସୁହୃଦ ଓ ଶିକ୍ଷା-ବ୍ୟବସାୟୀ ଦେଶୀୟ ଓ ବିଦେଶୀୟ ବ୍ୟକ୍ତିମାନଙ୍କ ଦଳ; ଏବଂ (୩) କମ୍ପାନୀଙ୍କ ସରକାର, ଶିକ୍ଷାର ଆଦର୍ଶ ନେଇ ଭାରତୀୟଙ୍କ ମଧ୍ୟରେ ମତଦ୍ୱୈଧ ଉପସ୍ଥିତ ହୋଇ ପ୍ରାଚ୍ୟବାଦୀ (Orientalist) ଓ ପାଶ୍ଚାତ୍ୟବାଦୀ (Occidentalist) ନାମକ ଦୁଇ ଦଳର ବାଦ-ବିତଣ୍ଡା ବହୁ ଦିନ ଚାଲିବା ପରେ, ଅବଶେଷରେ ଲର୍ଡ଼ ବେଣ୍ଟିଙ୍କ୍‌ଙ୍କ ଉଦାର ନୈତିକ ଶାସନ କାଳରେ (୧୮୨୮-୧୮୩୫ ଖ୍ରୀଷ୍ଟାବ୍ଦରେ) ଶେଷ ଭାଗରୁ କମ୍ପାନୀଙ୍କ ସରକାର ପାଶ୍ଚାତ୍ୟ ଇଂରାଜୀ-ମାଧ୍ୟମରେ ଶିକ୍ଷା-ନୀତି ପ୍ରତି ପକ୍ଷପାତିତ୍ୱ ଦେଖାଇବାକୁ ଲାଗିଲେ । ୧୮୫୩ ଖ୍ରୀଷ୍ଟାବ୍ଦରେ କମ୍ପାନୀର ସନନ୍ଦ ନୂତନ କରିଦେବାର ସମୟ ଆସନ୍ତେ, ଭାରତ ଶାସନର ଅନ୍ୟାନ୍ୟ ବିଷୟ ସହିତ ଶିକ୍ଷା ବିଷୟକ ଆଲୋଚନା ମଧ୍ୟ ହେଲା । ତଦାନୀନ୍ତନ ଇଂଲଣ୍ଡର ଉଦାରନୀତିକ ମତବାଦର ସାଫଲ୍ୟରେ ଓ ଭାରତରେ କମ୍ପାନୀର ଅପେକ୍ଷାକୃତ ସୁପ୍ରତିଷ୍ଠିତ ଅବସ୍ଥା ଫଳରେ ନୂତନ ସନନ୍ଦ ମଧ୍ୟରେ ଏଭଳି କେତେକ ସୂତ୍ର ସନ୍ନିବେଶିତ କରାଗଲା, ଯାହାର ପ୍ରଭାବ ଶିକ୍ଷା କ୍ଷେତ୍ରରେ ସୁଦୂର ପ୍ରସାରୀ ହୋଇଥିଲା । ଶିକ୍ଷା ବାବଦରେ ବାର୍ଷିକ ବ୍ୟୟ ଏକ ଲକ୍ଷରୁ ବଢ଼ାଇ ପନ୍ଦର ଲକ୍ଷ ଟଙ୍କା କରାଗଲା । କେବଳ ତାହା ନୁହେଁ, ଆଉ ଗୋଟିଏ ସୂତ୍ରରେ ଇଉରୋପ ଓ ଆମେରିକାର ଯେ କୌଣସି ଦେଶରୁ ସବୁ ସମ୍ପ୍ରଦାୟର ଖ୍ରୀଷ୍ଟୀୟ ମିଶନାରୀମାନେ ଭାରତକୁ ଆସି କାମ କରିବାର ଅଧିକାର ପାଇଲେ । ତାହା ଫଳରେ ଶିକ୍ଷା କ୍ଷେତ୍ରରେ ଖ୍ରୀଷ୍ଟୀୟ ମିଶନାରୀ-ମାନଙ୍କ କର୍ମତତ୍ପରତା ବହୁ ଗୁଣରେ ବୃଦ୍ଧି ପାଇଲା ।

ଇଂରେଜ ଅମଳର ପ୍ରଥମ ଏକଶତାବ୍ଦୀ କାଳ ବଙ୍ଗଳା, ବିହାର ଓ ଓଡ଼ିଶା ଜଣେ ଲେଫ୍‌ଟେନେଣ୍ଟ ଗଭର୍ଣ୍ଣରଙ୍କ ଶାସନାଧୀନ ଥିଲା । ସୁତରାଂ ଏହି ତିନି ପ୍ରଦେଶରେ ଏକାପ୍ରକାର ଶିକ୍ଷାନୀତି ପ୍ରଚଳିତ ହେଉଥିଲା । ୧୮୫୩

ଖ୍ରୀଷ୍ଟାବ୍ଦରେ ବଙ୍ଗର ପ୍ରଥମ ଲ୍ଫ୍ଟେନାଣ୍ଟ ହ୍ୟାଲିଡେ ସାହେବ ତଦାନୀନ୍ତନ ବଡ଼ଲାଟଙ୍କ ପାଖକୁ ଈଶ୍ବର ଚନ୍ଦ୍ର ବିଦ୍ୟାସାଗର ମହାଶୟଙ୍କ ପ୍ରଣୀତ ଗୋଟିଏ ପ୍ରାଥମିକ ଶିକ୍ଷାର ପରିକଳ୍ପନା ପ୍ରେରଣ କଲେ । ଉକ୍ତ ପରିକଳ୍ପନାରେ ବିଦ୍ୟାସାଗର ଲେଖିଥିଲେ ଯେ, କେବଳ ସାମାନ୍ୟ ବଙ୍ଗଳା ଲେଖାପଢ଼ା, ଆଉ ଅଳ୍ପ ଅଙ୍କ ଶିଖାଇଲେ ଚଳିବ ନାହିଁ । ଶିକ୍ଷାକୁ ସମ୍ପୂର୍ଣ୍ଣ କରିବା ପାଇଁ ଭୂଗୋଳ, ଇତିହାସ ଜୀବନ ଚରିତ, ପାଟୀଗଣିତ, ଜ୍ୟାମିତି, ପଦାର୍ଥବିଦ୍ୟା, ନୀତିବିଜ୍ଞାନ, ରାଷ୍ଟ୍ରବିଜ୍ଞାନ, ଶରୀରତତ୍ତ୍ୱ ପ୍ରଭୃତି ଶିଖାଇବାର ପ୍ରୟୋଜନ ମଧ୍ୟ ଅଛି । ୧୮୫୪ ଖ୍ରୀଷ୍ଟାବ୍ଦରେ କମ୍ପାନିର 'ବୋର୍ଡ-ଅଫ୍ କଣ୍ଟ୍ରୋଲର ସଭାପତି ଉଡ୍-ସାହେବଙ୍କ ବିଖ୍ୟାତ ଡେସ୍‌ପ୍ୟାଚରେ ପାଶ୍ଚାତ୍ୟ ବିଜ୍ଞାନ ଭିତ୍ତିକ ଶିକ୍ଷା-ନୀତି ସ୍ୱୀକୃତ ହୋଇ ପ୍ରାଥମିକ ସ୍ତରର ଶିକ୍ଷକ-ଶିକ୍ଷଣର ବ୍ୟବସ୍ଥା ଉପରେ ଜୋର ଦିଆଗଲା । ଏହି ନୀତି ଅନୁଯାୟୀ କମ୍ପାନି ବ୍ରିଟିଶ ଭାରତର ଶିକ୍ଷା କ୍ଷେତ୍ରରେ ପୂର୍ଣ୍ଣ ଉଦ୍ୟମରେ କାର୍ଯ୍ୟ ଆରମ୍ଭ କଲେ । ଏହା ଫଳରେ ଭୁବନେଶ୍ବରରେ ଗୋଟିଏ ସରକାରୀ ମଧ୍ୟ ଶ୍ରେଣୀ ବିଦ୍ୟାଳୟ ସ୍ଥାପିତ ହୋଇଥିଲା । ଓଡ଼ିଆ ପାଠ୍ୟ ପୁସ୍ତକର ଅଭାବ ହେତୁ ସେତେବେଳେ ବଙ୍ଗଳା ପୁସ୍ତକ ସାହାଯ୍ୟରେ ଓଡିଶାର ନିମ୍ନ ଓ ମଧ୍ୟଶ୍ରେଣୀର ବିଦ୍ୟାଳୟରେ ଶିକ୍ଷା ଦିଆହେଉଥିଲା । ଯଦିଓ ଏହା ପୂର୍ବରୁ ଖ୍ରୀଷ୍ଟୀୟ ମିଶନାରୀମାନେ ଓଡିଶାରେ ଓଡ଼ିଆ ଛାପାଖାନା ପ୍ରତିଷ୍ଠା କରିଥିଲେ, ଏବଂ କଲିକତା ସ୍କୁଲ ବୁକ୍ ସୋସାଇଟି ଦ୍ୱାରା ପ୍ରକାଶିତ କେତେଖଣ୍ଡି ବଙ୍ଗଳା ପାଠ୍ୟ ପୁସ୍ତକ ମଧ୍ୟ ଓଡ଼ିଆରେ ଅନୁବାଦ କରି ଛପାଇଥିଲେ ତଥାପି ସେ ବିଜାତୀୟ ଓଡ଼ିଆ ଭାଷା ସର୍ବସାଧାରଣଙ୍କ ବୋଧଗମ୍ୟ ନଥିଲା ।

ଭଗୀରଥି ଭୁବନେଶ୍ବର ବଦଳି ହୋଇ ଆସିବା ପରେ ମଧୁସୂଦନଙ୍କୁ ଏହି ବିଦ୍ୟାଳୟରେ ଭର୍ତ୍ତି କରିଥିଲେ । ଛାତ୍ରର ପ୍ରଖର ବୁଦ୍ଧି, ପାଠାନୁରାଗ ଓ ଉତ୍ତମ ସ୍ୱଭାବ ଦେଖି ଶିକ୍ଷକଗଣ ଅଚିରେ ତାଙ୍କ ପ୍ରତି ଆକୃଷ୍ଟ ହୋଇଥିଲେ । ଉକ୍ତ ସ୍କୁଲର ପ୍ରଧାନଶିକ୍ଷକ ଶ୍ରୀହରି ଭଟ୍ଟାଚାର୍ଯ୍ୟ ମଧୁସୂଦନ ଯେ ଉଚ୍ଚଶିକ୍ଷା ପାଇବାର ଉପଯୁକ୍ତ ସେକଥା ବେଶ୍ ବୁଝିପାରିଥିଲେ । କିନ୍ତୁ ଭଗୀରଥିଙ୍କ ସାମାନ୍ୟ ଆୟ ପୁଅକୁ ଉଚ୍ଚଶିକ୍ଷା ଦାନର ଅନୁକୂଳ ନଥିଲା । ବିଧାତାଙ୍କ କୃପାରୁ ଶୀଘ୍ର ଗୋଟିଏ ଘଟଣାରେ ଏହି ଅନ୍ତରାୟ ଦୂର ହେଲା । ତଦାନୀନ୍ତନ ସ୍କୁଲ ସମୂହର ଅଧିକର୍ତ୍ତା ଉଡ୍ରୋ-ସାହେବ ଖଣ୍ଡଗିରି

ଉଦୟଗିରିର ପ୍ରତ୍ନସମ୍ଭାର ଦେଖିବାକୁ ଆସି, ସେଠାରୁ ଭୁବନେଶ୍ୱରରେ ସାହେବଙ୍କ ଅବସ୍ଥାନର ଉପଯୋଗୀ ସୁବିଧାଜନକ ସ୍ଥାନ ସେ ସମୟରେ ନଥିବାରୁ ତହସିଲ ଥାନାରେ ସାହେବଙ୍କୁ ଅବସ୍ଥାନ କରିବାକୁ ହୋଇଥିଲା । ଲୋକ ବ୍ୟବହାର-କୁଶଳ ଭଗୀରଥି ସେହି ସମୟରେ ଆତିଥ୍ୟ ସତ୍କାର ଦ୍ୱାରା ସାହେବଙ୍କୁ ଆପ୍ୟାୟିତ କରିଥିଲେ । ବିଦ୍ୟାଳୟ ଗୃହରେ ପ୍ରବେଶ କରିବା ମାତ୍ରେ ପରମ ସୁନ୍ଦର ବାଳକ ମଧୁସୂଦନଙ୍କୁ ଦେଖି ସାହେବ ପ୍ରଶ୍ନ କଲେ— ଏ'ଟି କାହାର ପୁତ୍ର ? ସୁଚତୁର ଭଗୀରଥି ହିନ୍ଦୀରେ "ଏ'ଟି (ଏଇଟି) ମୋର ପୁଅ" କହିବାରୁ ସାହେବ ଅଧିକତର ସନ୍ତୁଷ୍ଟ ହୋଇ ସସ୍ମିତ ମୁଖରେ କହିଲେ, "ଆଚ୍ଛା, ତୁମ ପୁଅକୁ ପରୀକ୍ଷା କରେ ।" ପ୍ରଥମେ ସମ୍ମୁଖରେ ଭାରତର ମାନଚିତ୍ର ଦେଖି ସେ କେତୋଟି ଭୌଗୋଳିକ ପ୍ରଶ୍ନ କରିଥିଲେ । ପ୍ରତ୍ୟେକଟିର ଠିକ୍ ଉତ୍ତର ପାଇ ପୁନରାୟ ଗଣିତ ପରୀକ୍ଷା କଲେ । ମଧୁସୂଦନଙ୍କ ନିକଟରୁ ଆଶାନୁରୂପ ଉତ୍ତର ପାଇ ଅତ୍ୟନ୍ତ ପ୍ରୀତ ହୋଇ ସାହେବ ପୁରୀ ଜିଲ୍ଲା ସ୍କୁଲରେ ବାଳକଟିକୁ ପଢ଼ାଇବା ପାଇଁ ପରାମର୍ଶ ଦେଲେ ଏବଂ ଯେପରି ମଧୁସୂଦନ ଉକ୍ତ ସ୍କୁଲରେ ପାଞ୍ଚ ବର୍ଷ ବିନା ବେତନରେ ପଢ଼ିପାରିବ, ତଦ୍ରୂପ ଲିଖିତ ନିର୍ଦ୍ଦେଶ ମଧ୍ୟ ଦେଲେ । ଏହି ସୁଯୋଗ ଘଟିବାରୁ ଭଗୀରଥି ଅତ୍ୟନ୍ତ ଆନନ୍ଦିତ ହୋଇ ପୁତ୍ରକୁ ପୁରୀ ଜିଲ୍ଲା ସ୍କୁଲରେ ଭର୍ତ୍ତି କରିବା ପାଇଁ ଉଦ୍‌ଯୋଗୀ ହେଲେ ।

## (୪) ପୁରୀ ଜିଲ୍ଲା ସ୍କୁଲରେ ଶିକ୍ଷା ଓ ବିବାହ

ପୁରୀରେ ଭଗୀରଥିଙ୍କ ଅନ୍ତରଙ୍ଗ ବନ୍ଧୁ ବଳରାମଜୀଙ୍କ ଗୃହରେ ମଧୁସୂଦନଙ୍କ ରହିବାର ବ୍ୟବସ୍ଥା ହେଲା । ବଳରାମଜୀ ସରଳ, ଈଶ୍ୱରବିଶ୍ୱାସୀ ସାଧୁପୁରୁଷ ଥିଲେ । ମଧୁସୂଦନଙ୍କ ବୟସ ସେତେବେଳେ ଅନୁମାନ ନଅ ବର୍ଷ ଅତିକ୍ରମ କରିଥିଲା । ମଧୁସୂଦନଙ୍କ ମୁହଁରୁ ଆମ୍ଭେମାନେ ଶୁଣିଛୁ, ଭୁବନେଶ୍ୱରରୁ ଆସି ସେ ଗୃହ ପ୍ରାଙ୍ଗଣରେ ଦଣ୍ଡାୟମାନ ବଳରାମଜୀଙ୍କ ପାଦ ବନ୍ଦନା କରିବା ମାତ୍ରେ ସେ ତାହାଙ୍କୁ ଆଲିଙ୍ଗନ କରି ଜଗନ୍ନାଥ ମନ୍ଦିରର ଚୂଡ଼ାସ୍ଥିତ ସୁଦର୍ଶନ ଚକ୍ର ଆଡ଼କୁ ଦୃଷ୍ଟି ନିବଦ୍ଧ କରି କହିଥିଲେ, "ଚକ୍ରଧର, ଏହି ବାଳକଙ୍କୁ ତୁମର ଚକ୍ରର ଆଢୁଆଳରେ ରକ୍ଷା କର ।"

ପୁରୀ ଜିଲ୍ଲା ସ୍କୁଲରେ ଭର୍ତ୍ତି ହେବାରୁ ମଧୁସୂଦନଙ୍କ ଶିକ୍ଷାର ସୁଯୋଗ ବହୁ ପରିମାଣରେ ବୃଦ୍ଧି ପାଇଲା; କାରଣ ଭୁବନେଶ୍ୱର ଅପେକ୍ଷା ପୁରୀ ସ୍କୁଲରେ ଛାତ୍ର ସଂଖ୍ୟା ଅନେକ ବେଶୀ ଏବଂ ଶିକ୍ଷକଗଣ ମଧ୍ୟ ଉଚ୍ଚଶିକ୍ଷିତ ।

"ଛାତ୍ରାଣାମ୍ ଅଧ୍ୟୟନଂ ତପଃ"—ଏହି ନୀତିବାକ୍ୟ ମଧୁସୂଦନଙ୍କ ଜୀବନରେ ସାର୍ଥକତା ଲାଭ କରିଥିଲା । ବିଦ୍ୟାଳୟରେ ଅନ୍ୟ ଛାତ୍ରମାନେ ଯେତେବେଳେ ଶ୍ରେଣୀରେ ବାଲସୁଲଭ ଚପଳତାବଶତଃ କୋଳାହଳ କରନ୍ତି, ଦେଖାଯାଏ ମଧୁସୂଦନ ସେତେବେଳେ ନିବିଷ୍ଟ ଚିତ୍ତରେ ପାଠରେ ନିଯୁକ୍ତ, ତାହାଙ୍କୁ ସେତେବେଳେ କେହି କିଛି କହିଲେ ବା ଡ଼ାକିଲେ ସେ ବିରକ୍ତି ପ୍ରକାଶ କରୁଥିଲେ । ମଧୁସୂଦନ ମେଧାବୀ ଛାତ୍ର ଥିଲେ; ତଦୁପରି ଅଧ୍ୟବସାୟ-ଗୁଣରେ ପ୍ରଥମ ବାର୍ଷିକ ପରୀକ୍ଷାରେ ପ୍ରଥମ ସ୍ଥାନ ଅଧିକାର କରି ଡ଼ବଲ ପ୍ରମୋଶନ ପାଇ ପରବର୍ଷରେ ସେ ଦ୍ୱିତୀୟ ଶ୍ରେଣୀକୁ ଆସିଲେ । ସେ ପ୍ରତିବର୍ଷ ବାର୍ଷିକ ପରୀକ୍ଷାରେ ପ୍ରଥମ ସ୍ଥାନ ଅଧିକାର କରି ଶିକ୍ଷକ ଓ ସହାଧ୍ୟାୟୀ ଛାତ୍ରଗଣଙ୍କ ଦୃଷ୍ଟି ଆକର୍ଷଣ କରିଥିଲେ ।

ପୁରୀର ତଦାନୀନ୍ତନ ଗୁଣଗ୍ରାହୀ ମାଜିଷ୍ଟ୍ରେଟ୍ ବକ୍‌ସ ଓ୍ୱେଲ ସାହେବ ପୁରୀ ଜିଲ୍ଲା-ସ୍କୁଲର ଛାତ୍ରମାନଙ୍କ ପାଠୋନ୍ନତି ପାଇଁ ଏହି ନିୟମ କରିଥିଲେ ଯେ ପ୍ରତିବର୍ଷ ଚାରୋଟି ବିଷୟର ପ୍ରତ୍ୟେକଟିରେ ପାଞ୍ଚଟି କରି ମୋଟ କୋଡ଼ିଏଟି ପ୍ରଶ୍ନ କରାହେବ; ଯେଉଁ ଛାତ୍ର ଏହି ସମୁଦାୟ ପ୍ରଶ୍ନର ନିର୍ଭୁଲ ଭାବେ ଉତ୍ତର ଦେବ, ତାହାକୁ ପ୍ରତ୍ୟେକ ଉତ୍ତର ପାଇଁ ପାଞ୍ଚ ଟଙ୍କା କରି ମୋଟ ଏକଶତ ଟଙ୍କା ପୁରସ୍କାର ଦିଆହେବ । ଛାତ୍ରଗଣଙ୍କ ମଧ୍ୟରେ ଏକାକୀ ମଧୁସୂଦନ ତିନି ବର୍ଷ ଏହି ଏକଶତ ଟଙ୍କା କରି ପୁରସ୍କାର ପାଇଥିଲେ । ଏତଦ୍‌ବ୍ୟତୀତ ରେଓ୍ୱା ନାମକ ଦେଶୀୟ ରାଜ୍ୟର ରାଜାଙ୍କ ପ୍ରଦତ୍ତ ଗୋଟିଏ ବଡ଼ ୪୦।୫୦ ଭରି ଓଜନର ରୌପ୍ୟ ପଦକ ତାଙ୍କର ପ୍ରାପ୍ୟ ହୋଇଥିଲା । ନିୟମ ଥିଲା ଯେ, ପୁରୀ ଜିଲ୍ଲା-ସ୍କୁଲରେ ଯେଉଁ ଛାତ୍ର ବାର୍ଷିକ ପରୀକ୍ଷାରେ ସବୁ ବିଷୟରେ ପ୍ରଥମ ସ୍ଥାନ ଅଧିକାର କରିବ, ତାହାକୁ ଏହି ପଦକଟି ସାତଦିନ ପାଇଁ ଦିଆହେବ; ତତ୍ପରେ ଏହା ପୁଣି ସ୍କୁଲରେ ରକ୍ଷିତ ହେବ । କିନ୍ତୁ ଯେଉଁ ଛାତ୍ର ଉପର୍ଯ୍ୟୁପରି ତିନି ବର୍ଷ ଏହି ପଦକ ଲାଭ କରିବ, ପଦକଟି ତାହାର ନିଜସ୍ୱ ହୋଇଯିବ । ଏହି ସର୍ତ୍ତାନୁଯାୟୀ ମଧୁସୂଦନ ଦୁଇବର୍ଷ ଏହି ପଦକ ପାଇଥିଲେ । ତୃତୀୟ ବର୍ଷ ପ୍ରଥମ ଶ୍ରେଣୀରେ ଉଠି ଶାରୀରିକ ଅସୁସ୍ଥତା

ହେଲୁ ସେ ପ୍ରବେଶିକା ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇପାରି ନଥିଲେ । କିନ୍ତୁ ପରବର୍ଷ ପରୀକ୍ଷା ଦେଇ ପୁରୀ ଜିଲ୍ଲା-ସ୍କୁଲରୁ ପ୍ରଥମ ସ୍ଥାନ ଅଧିକାର କରି ମାସିକ ଦଶ ଟଙ୍କା ବୃତ୍ତି ଲାଭ କଲେ । ତତ୍ପରେ ଏଫ୍. ଏ. ପଢ଼ିବା ପାଇଁ କଟକ ଯିବାକୁ ଆସିବାରୁ ସେ ପଦକଟିକୁ ସେ ପାଇନଥିଲେ । ପରବର୍ଷ ହରେକୃଷ୍ଣ ଦାସ ନାମକ ଜଣେ ଛାତ୍ର ପୁରୀ ଜିଲ୍ଲା-ସ୍କୁଲରୁ ଦ୍ୱିତୀୟ ଶ୍ରେଣୀରେ ଉତ୍ତୀର୍ଣ୍ଣ ହୋଇ ମାସିକ ୧୫ ଟଙ୍କା ବୃତ୍ତି ପାଇଲେ ଏବଂ ଉକ୍ତ ପଦକଟି ପାଇବା ପାଇଁ ଦାବୀ କଲେ, କିନ୍ତୁ ଗୁଣଗ୍ରାହୀ ନ୍ୟାୟପରାୟଣ ବକ୍ସ ଓ୍ୱେଲ ସାହେବଙ୍କ ସୁବିବେଚନା ଫଳରେ ଡିଷ୍ଟ୍ରିକ୍ଟ କମିଟି ଏହି ପଦକଟିକୁ ମଧୁସୂଦନଙ୍କୁ ଦେବାର ସିଦ୍ଧାନ୍ତ କଲେ । ଯେଉଁଦିନ ମଧୁସୂଦନଙ୍କର ସେହି ପଦକଟି ପାଇବା କଥା, ସେଦିନ କୌଣସି ନିରାଶ୍ୟ ଛାତ୍ର ଈର୍ଷା ପରବଶ ହୋଇ ସ୍କୁଲ ଗୃହରେ ଅଗ୍ନି ସଂଯୋଗ କଲେ ଓ ତାହା ଫଳରେ ସେହି ରୌପ୍ୟ ପଦକଟି ସହିତ ସ୍କୁଲର ବହୁ ପୁସ୍ତକ ଓ ପ୍ରୟୋଜନୀୟ କାଗଜପତ୍ରାଦି ଭସ୍ମରେ ପରିଣତ ହେଲା । ଏହି ଘଟଣା ଦ୍ୱାରା ମଧୁସୂଦନ ମନରେ ଅତ୍ୟନ୍ତ ଆଘାତ ପାଇଥିଲେ ।

୧୮୬୬-୬୭ ଖ୍ରୀଷ୍ଟାବ୍ଦରେ ଓଡ଼ିଶାରେ ଭୀଷଣ ଲୋମହର୍ଷଣକାରୀ ଦୁର୍ଭିକ୍ଷ ହେଲା । ତତ୍କାଳୀନ ପୁରୀର ରାଜା ଶ୍ରୀ ଶ୍ରୀ ଦିବ୍ୟସିଂହ ଦେବଙ୍କ ନାମୀୟ ବର୍ଷ ଗଣନା ଅନୁସାରେ ତାହାଙ୍କ ରାଜତ୍ୱର ନବମ ବର୍ଷରେ ଏହି ଦୁର୍ଭିକ୍ଷ ଘଟିଥିଲା ବୋଲି, ଓଡ଼ିଶାରେ ଏହାକୁ ନ'ଅଙ୍କ ଦୁର୍ଭିକ୍ଷ ବୋଲିଯାଏ । ଏହି ଭୀଷଣ ଦୁର୍ଭିକ୍ଷର ମର୍ମାନ୍ତିକ କାହାଣୀ ଭାଷାରେ ବର୍ଣ୍ଣନା କରିହେବ ନାହିଁ । ସରକାରୀ ହିସାବରେ ସ୍ୱୀକୃତ ଯେ, ଓଡ଼ିଶାର ଏକ-ତୃତୀୟାଂଶରୁ ଅଧିକ ଲୋକ ଏହି ଦୁର୍ଭିକ୍ଷରେ ପ୍ରାଣତ୍ୟାଗ କରିଥିଲେ; ବାଟଘାଟରେ ଶହ ଶହ ଶବ ପଡ଼ି ରହୁଥିଲା । ସେହି ଶୋଚନୀୟ ଦୃଶ୍ୟ କୋମଳମତି ବାଳକ ମଧୁସୂଦନଙ୍କ ଅନ୍ତରକୁ ବଡ଼ ବ୍ୟଥିତ କରୁଥିଲା । ଏହି ସମୟରେ ସରକାର ଦୁର୍ଭିକ୍ଷ-ପ୍ରପୀଡ଼ିତ ଜନସାଧାରଣଙ୍କ ମଧ୍ୟରେ ରନ୍ଧାଅନ୍ନ ବାଣ୍ଟିବାର ବ୍ୟବସ୍ଥା କଲେ, ପୁରୀର ତଦାନୀନ୍ତନ ସୁପଣ୍ଡିତ ମହନ୍ତ ନାରାୟଣ ଦାସଙ୍କ ଅନୁରୋଧରେ ମାଜିଷ୍ଟ୍ରେଟ୍ ବକ୍ସ ଓ୍ୱେଲ ସାହେବ ଜିଲ୍ଲା-ସ୍କୁଲର ଦ୍ୱିତୀୟ ଶ୍ରେଣୀର ଛାତ୍ର ମଧୁସୂଦନଙ୍କୁ ଏହି ରନ୍ଧାଅନ୍ନ ବିତରଣର ଭାର ଅର୍ପଣ କଲେ । ଦୟାର୍ଦ୍ର-ହୃଦୟ ମଧୁସୂଦନ ଏହି ଅସହାୟ ଦୁସ୍ଥଗଣଙ୍କ ସେବା କାର୍ଯ୍ୟରେ ନିଜକୁ ନିୟୋଗ କରିପାରି କୃତାର୍ଥ ହେଲେ । ଜଣେ ସ୍କୁଲ ଛାତ୍ରର ଏଭଳି

ଦାୟିତ୍ୱପୂର୍ଣ୍ଣ ସେବାବ୍ରତ ଗ୍ରହଣ ସେ କାଳର ଲୋକଙ୍କ ନିକଟରେ ଅଭାବନୀୟ ଥିଲା।

ମଧୁସୂଦନ ଜିଲ୍ଲା ସ୍କୁଲରେ ଭର୍ତ୍ତି ହେବାର କିଛି କାଳ ପରେ ଭାଗୀରଥି ଦ୍ୱିତୀୟବାର ବିବାହ କଲେ। ଏହି ଦ୍ୱିତୀୟା ପତ୍ନୀଙ୍କ ନାମ ତୁଳସୀବାଈ। ସେ ମଧୁସୂଦନଙ୍କ ଅପେକ୍ଷା ମାତ୍ର ୨।୩ ବର୍ଷ ବଡ଼ ଥିଲେ। ସପତ୍ନୀର ପୁତ୍ରଦ୍ୱୟଙ୍କ ପ୍ରତି ତାଙ୍କର ବ୍ୟବହାର ବେଶ୍ ଭଲ ଥିଲା। କ୍ରମେ ଏହି ବିମାତା ବୟଃପ୍ରାପ୍ତା ହୋଇ ପତିଗୃହକୁ ଆସିଲେ, ପୁଣିରେ ଭାଗୀରଥିଙ୍କ ଗୃହସ୍ଥ ଜୀବନ ପୁନଃ ପ୍ରତିଷ୍ଠିତ ହେଲା। ସେହି ସମୟରୁ ମଧୁସୂଦନ ଓ ଜଗନ୍ନାଥ ପୁଣି ଘରେ ଉଚ୍ଚ ବିଦ୍ୟା ଶିକ୍ଷା କରିବାକୁ ଲାଗିଲେ। ତୁଳସୀବାଈ ନିରକ୍ଷର ହେଲେ ମଧ୍ୟ ବୁଦ୍ଧିମତୀ ଥିଲେ। ତାଙ୍କର ସ୍ମୃତି ଶକ୍ତି ଏତେ ପ୍ରଖର ଥିଲା ଯେ ସେଥିରେ ଯାହା ଶୁଣନ୍ତି, ତାହା ତାଙ୍କର କଣ୍ଠସ୍ଥ ହୋଇଯାଏ। ଜଗନ୍ନାଥ ମହାପ୍ରଭୁଙ୍କ 'ଜଣାଣ' (ସ୍ତବ ସ୍ତୁତି) ଓ ପୌରାଣିକ କାହାଣୀ ଅବଲମ୍ବନରେ ଦେଶ ପ୍ରଚଳିତ ବହୁ ଗୀତ—କାହାଣୀ ତାଙ୍କର କଣ୍ଠସ୍ଥ ଥିଲା।

ଆମ୍ଭେ ଶୁଣିଅଛୁ, ତୁଳସୀବାଈଙ୍କ ପିତୃଗୃହ କଟକ ନିକଟବର୍ତ୍ତୀ ଏକ ଗ୍ରାମରେ ଥିଲା। ଏମାନେ ତିନି ଭଉଣୀ ଥିଲେ, ତନ୍ମଧ୍ୟରୁ ଜ୍ୟେଷ୍ଠା ଗଜରାଜ ବାଈ; ଏହାଙ୍କର ସ୍ୱାମୀଙ୍କ ନାମ ହରଣଗୀ। ଏମାନେ କଟକରେ ବାସ କରୁଥିଲେ। ମଧୁସୂଦନ କଟକରେ ଏଫ୍. ଏ. ପଢିଲା ବେଳେ ଏମାନଙ୍କ ବସାରେ ରହି କଲେଜ ଯାଉଥିଲେ।

ତୁଳସୀବାଈଙ୍କର ଜ୍ୟେଷ୍ଠା ଦ୍ୱିତୀୟା ଭଗିନୀଙ୍କୁ ଆମ୍ଭେମାନେ ଦେଖିଅଛୁ ଏବଂ ତାଙ୍କ ନିକଟରୁ ପିତାମହୀର ସ୍ନେହାଦର ଲାଭ କରିଅଛୁ। ସେତେବେଳେ ସେ କଟକର ଅନତି ଦୂରରେ ବାରଙ୍ଗ ନାମକ ଗ୍ରାମରେ ବାସ କରୁଥିଲେ। ଏହି ସ୍ଥାନର ଅନ୍ୟ ନାମ ସାରଙ୍ଗଗଡ଼। ଏଠାରେ ଗୋଟିଏ ଗ୍ରେଟକୋଟ କିଲ୍ଲା ଥିଲା। ଯାହାର ଧ୍ୱଂସାବଶେଷ ବର୍ତ୍ତମାନ ସୁଦ୍ଧା ରହିଛି। ସେ ଅଳ୍ପ ବୟସରେ ବିଧବା ହୋଇଥିଲେ। ମଧୁସୂଦନ ଏଫ୍. ଏ. ପାସ୍ କରିବା ପରେ ପ୍ରଥମ ସ୍କୁଲର ନେଇ ସସ୍ତ୍ରୀକ କର୍ମସ୍ଥଳ ଯାଜପୁରକୁ ଗଲାବେଳେ ଭାଗୀରଥି ଏହି ବୟସ୍କା ଶ୍ୟାଳିକାକୁ ପୁତ୍ରର ପରିବାରରେ

ଅଭିଭାବକ ରୂପେ ରହିବା ପାଇଁ ସେଠାକୁ ପଠାଇଥିଲେ । ପରବର୍ତ୍ତୀ କାଳରେ ମଧୁସୂଦନ ଯେତେବେଳେ କଟକ ଆସିଲେ, ସେତେବେଳେ ସେ ଅନେକ ସମୟରେ ବାରଙ୍ଗରୁ କଟକ ଆସି ତାହାଙ୍କ ନିକଟରେ ରହୁଥିଲେ ।

ଅନୁମାନ, ବାର ବର୍ଷ ବୟସରେ ପୁଣା ନିବାସୀ ବଳରାମଜୀଙ୍କ ଦ୍ୱିତୀୟା କନ୍ୟା ଚମ୍ପା ବାଈଙ୍କ ସହିତ ମଧୁସୂଦନଙ୍କର ବିବାହ ହୋଇଥିଲା । ମହାରାଷ୍ଟ୍ରୀୟ ରୀତି ଅନୁସାରେ ପତିଗୃହରେ ଏହାଙ୍କର "ପଦ୍ମା" ନାମକରଣ ହେଲା । ତଦବଧି ଏହି 'ପଦ୍ମା'ବାଈ ନାମରେ ସେ ସମଗ୍ର ଜୀବନ ପରିଚିତା ଥିଲେ ।

ଏକାନ୍ନବର୍ତ୍ତୀ ପରିବାରର କର୍ତ୍ତା ରୂପେ ବଳରାମଜୀଙ୍କ ଜୀବନ ଆଦର୍ଶସ୍ଥାନୀୟ ଥିଲା । ଏହାଙ୍କର ପତ୍ନୀଙ୍କ ନାମ "ମିଠୁ ବାଈ" ଥିଲା । ଏମାନଙ୍କର ଦୁଇ ପୁତ୍ର; ଦୁଇ କନ୍ୟା । ଜ୍ୟେଷ୍ଠପୁତ୍ର ଗଣେଶ, କନ୍ୟାଦ୍ୱୟ ସ୍ୱର୍ଣ୍ଣ ଓ ଚମ୍ପା (ଓରଫ ପଦ୍ମା) ଓ କନିଷ୍ଠ ପୁତ୍ର ରାମକୃଷ୍ଣ । ବଳରାମଜୀଙ୍କ କନିଷ୍ଠଭ୍ରାତା ହରିହର ଅକାଳରେ ପରଲୋକ ଗମନ କରିଥିଲେ । ତାଙ୍କର ନିଃସନ୍ତାନା ବାଳିକା-ବଧୂଟିକୁ ବଳରାମଜୀ କନ୍ୟା ନିର୍ବିଶେଷରେ ଆଜୀବନ ପାଳନ କରିଥିଲେ । ତାଙ୍କର କନିଷ୍ଠ ପୁତ୍ର ରାମକୃଷ୍ଣ ଯେତେବେଳେ ଶିଶୁ ସେତେବେଳେ ସେହି ଶିଶୁଟିକୁ ସେ ଭ୍ରାତୃବଧୂଙ୍କ ହସ୍ତରେ ପୁତ୍ର ରୂପେ ପାଳନ କରିବାକୁ ଦେଇଥିଲେ । ଏହି ବିଧବା ଭ୍ରାତୃବଧୂଙ୍କ ନାମ ହିରାବାଈ । କଟକ ନିକଟସ୍ଥ ଚୌଦ୍ୱାରର ଅନତି ଦୂରରେ ଖଇରା ଗ୍ରାମରେ ଏହାଙ୍କର ବାପଘର ଥିଲା । ମୋର ମା ଓ ଜ୍ୟେଷ୍ଠ ମାମୁଁଙ୍କୁ ଇଏ ନିଜ ସନ୍ତାନ ତୁଲ୍ୟ ଦେଖୁଥିଲେ । ୧୮୯୧ ଖ୍ରୀଷ୍ଟାବ୍ଦରେ ମାମୁଁ ରାମକୃଷ୍ଣ ରାଓ କଟକରେ ଘରଭଡ଼ା ନେଇ ସପରିବାର ବାସ କରିବାକୁ ଆସିଲେ । ହିରାବାଈ ସେହି ସମୟରେ ପୁଣାରୁ କଟକ ଆସି ଏହାଙ୍କ ନିକଟରେ ଆଜୀବନ କଟାଇ ଥିଲେ । ରାମକୃଷ୍ଣ ରାଓଙ୍କ ସହିତ ମୋର ବଡ଼ ପିଉସୀ ତାରା ବାଈଙ୍କର ଦଶ ବର୍ଷ ବୟସରେ ବିବାହ ହୋଇଥିଲା । ଏହି ବଧୂଟିକୁ ହୀରା ବାଈ ଯେପ୍ରକାର ଯତ୍ନ ଆଦର କରୁଥିଲେ ତାହା ସଚରାଚର ଦେଖାଯାଏ ନାହିଁ । ମୋ ମା'ଙ୍କର ମଧ୍ୟ ସୁଖ-ଦୁଃଖ, ରୋଗ-ଶୋକ ସବୁ ଅବସ୍ଥାରେ ଏହାଙ୍କୁ

ପାଖେ ପାଖେ ଦେଖିଅଛୁ । ନିଷ୍ଠାବତୀ, ସୁଗୃହିଣୀ, ସେବାପରାୟଣା ଏହି ସ୍ତ୍ରୀ ବାଈ, ରାମକୃଷ୍ଣ ରାଉଙ୍କର ଦୁଇପୁତ୍ରଙ୍କର (ଭାସ୍କର ଓ ସୁଧାକର) ବିବାହ ପରେ ନାତି ନାତିବୋହୂଙ୍କ ସହିତ କିଛି କାଳ ଆନନ୍ଦରେ କଟାଇ ଅଳ୍ପଦିନ ରୋଗ ଭୋଗ ପରେ ୧୯୨୧ ଜୁଲାଇ ୧୮ ତାରିଖରେ କଟକରେ ପରଲୋକ ଗମନ କଲେ । ମୋ ବାପା ଏହାଙ୍କୁ ଯଥେଷ୍ଟ ଶ୍ରଦ୍ଧା ଭକ୍ତି କରୁଥିଲେ । ଆମମାନଙ୍କର ସ୍ନେହାଦର ଆମେ ଏହାଙ୍କ ପାଖରୁ ପାଇଅଛୁ ।

ବଳରାମଜୀଙ୍କ ଆର୍ଥିକ ଅବସ୍ଥା ଭଲ ଥିଲା । ପୁରୀ ଜଗନ୍ନାଥ ମନ୍ଦିରକୁ ଅଟା ଯୋଗାଣ ଦେବା ଏହାଙ୍କର ପ୍ରଧାନ ବ୍ୟବସାୟ ଥିଲା । ଏହି ସୂତ୍ରରେ ବହୁ ଦରିଦ୍ରାନାରୀ ଏହାଙ୍କ ଗୃହରେ ଚକରେ ପେଷି ଜୀବିକା ନିର୍ବାହ କରୁଥିଲେ । ବଳରାମଜୀ ହିଁ ଏହି ଦରିଦ୍ର ପରିବାରଗୁଡ଼ିକର ଭରସାସ୍ଥଳ ଥିଲେ ।

ମଧୁସୂଦନଙ୍କ ଅନୁଜ ଜଗନ୍ନାଥ ରାଉଙ୍କର ବିବାହ କଟକ ଜିଲ୍ଲା ଅନ୍ତର୍ଗତ ପ୍ରାଚୀନ ଚୌଦ୍ୱାର ନିକଟସ୍ଥ ଆଗ୍ରାହାଟ ଗ୍ରାମ ନିବାସୀ ଲଚ୍ଛମନଜୀଙ୍କ ଦ୍ୱିତୀୟା କନ୍ୟା ଚନ୍ଦ୍ରମଣିଙ୍କ ସହିତ ହୋଇଥିଲା । ପୂର୍ବୋକ୍ତ ମରହଟ୍ଟା ରୀତି ଅନୁଯାୟୀ ବିବାହ ପରେ ଏହାଙ୍କର ନାମ ପରିବର୍ତ୍ତନ କରି ରମା ବାଈ ରଖାହେଲା । ରମା ବାଈଙ୍କ ପିତାଙ୍କ ଆର୍ଥିକ ଅବସ୍ଥା ସ୍ୱଚ୍ଛଳ ନଥିବାରୁ-ତତ୍କାଳୀନ ପ୍ରଚଳିତ ରୀତି ଅନୁସାରେ କନ୍ୟାର ବିବାହ ପୂର୍ବରୁ 'ମହାପ୍ରସାଦ ଭିଡା' (ଅର୍ଥାତ୍ ମହାପ୍ରଭୁ ଜଗନ୍ନାଥଙ୍କ ପ୍ରସାଦ ଗ୍ରହଣପୂର୍ବକ ବିବାହ ସ୍ଥିରୀକୃତ ଅନୁଷ୍ଠାନ) ସମ୍ପନ୍ନ କରି ଶ୍ୱଶୁର ଗୃହକୁ ଅର୍ଥାତ୍ ପୁରୀକୁ ନେଇଯାଇ ସେଠାରେ ବିବାହ ଦିଆଗଲା । ବଳରାମଜୀ କନ୍ୟା କର୍ତ୍ତାରୂପେ ଏହି କନ୍ୟା ସମ୍ପ୍ରଦାନ କଲେ । ତଦବଧି ସେ ନିଜେ କନ୍ୟା ପଦ୍ମା ସହିତ ରମାକୁ ମଧ୍ୟ ସମଦୃଷ୍ଟିରେ ଦେଖୁଥିଲେ । ଉଭୟଙ୍କ ସନ୍ତାନ-ମାନଙ୍କ ପ୍ରତି ବ୍ୟବହାରରେ ମଧ୍ୟ ସେ କୌଣସି ପ୍ରକାର ପାର୍ଥକ୍ୟ କରିନାହାନ୍ତି । ଏହି ଉଦାର ହୃଦୟ ପ୍ରେମିକ-ପ୍ରାଣର ଦୃଷ୍ଟାନ୍ତ ତାଙ୍କ ପରିବାରର ସମସ୍ତଙ୍କ ପ୍ରାଣରେ ଏପରି ମୁଦ୍ରିତ ହୋଇଥିଲା ଯେ ବହୁ ବର୍ଷ ପରେ ବୃଦ୍ଧାବସ୍ଥାରେ ରମା ବାଈଙ୍କ ମୃତ୍ୟୁ ହୁଅନ୍ତେ, ବଳରାମଙ୍କ କନିଷ୍ଠ ପୁତ୍ର ବୃଦ୍ଧ ରାମକୃଷ୍ଣ ନିଜକୁ ଭଗ୍ନୀସ୍ନେହରୁ ବଞ୍ଚିତ ଦେଖି, କାନ୍ଦି କାନ୍ଦି କହିଥିଲେ, "ମୋର ଦିଦି ଡାକ ଶେଷ ହୋଇଗଲା ।"

ମଧୁସୂଦନ ପୁରୀ ଜିଲ୍ଲା ସ୍କୁଲରେ ପ୍ରଥମ ଶ୍ରେଣୀରେ ପଢୁଥିବା ସମୟରେ ବାଲେଶ୍ୱର ଜିଲ୍ଲା ସ୍କୁଲର ଶିକ୍ଷକ କବିବର ରାଧାନାଥ ରାୟ, ଜଗନ୍ନାଥ ଦର୍ଶନ ପାଇଁ ପୁରୀ ଯାଇ ଦିନେ ସ୍ଥାନୀୟ ଜିଲ୍ଲା ସ୍କୁଲ ଦେଖିବାକୁ ଗଲେ । ସେତେବେଳେ ସେ ଦେଖିଲେ, ଗୋଟିଏ ବାଳକ ପୁସ୍ତକ ଖୋଲି ପାଠରେ ନିମଗ୍ନ । ପାର୍ଶ୍ୱବର୍ତ୍ତୀ ଅପର ଜଣେ ଛାତ୍ର ତାହାର ହାତଧରି ଟାଣି କଅଣ ଯେପରି କହୁଅଛି । ପ୍ରଥମ ବାଳକଟି ବିରକ୍ତ ହୋଇ କହିଲା, "Don't bother me now." ଏହି ଦୃଶ୍ୟରେ ରାଧାନାଥଙ୍କ ମନ ବାଳକଟିର ପ୍ରତି ଆକୃଷ୍ଟ ହେବାରୁ ତାହାକୁ ଡାକଆଣି ତାହାର ପରିଚୟ ପଚାରିଲେ । ଏହି ବାଳକଟି ମଧୁସୂଦନ । ଏହି ଘଟଣାର କେତେ ମାସ ପରେ ରାଧାନାଥ ବାଲେଶ୍ୱରରୁ ବଦଳି ହୋଇ ପୁରୀ ଜିଲ୍ଲା ସ୍କୁଲର ଦ୍ୱିତୀୟ ଶିକ୍ଷକ ପଦରେ ନିଯୁକ୍ତ ହୋଇଆସିଲେ । ତାହାଙ୍କ ଉପରେ ସ୍କୁଲରେ ଭୂଗୋଳ ଓ ଇତିହାସ ପଢ଼ାଇବା ଭାର ଥିଲା । ପୂର୍ବବର୍ଷ ମଧୁସୂଦନ କଠିନ ପୀଡ଼ାଗ୍ରସ୍ତ ହୋଇ ପରୀକ୍ଷା ଦେଇନପାରି ଥିବାରୁ, ରାଧାନାଥ ଏଠାରେ ତାହାଙ୍କୁ ଛାତ୍ର ରୂପେ ପାଇଲେ । ତୀକ୍ଷ୍ଣ ବୁଦ୍ଧି, ମେଧା ଓ ପାଠାନୁରକ୍ତି ଗୁଣରେ ମଧୁସୂଦନ ଅଚିରେ ତାହାଙ୍କର ପ୍ରିୟତମ ଛାତ୍ର ରୂପେ ପରିଗଣିତ ହେଲେ । ଏ ବର୍ଷ ମଧ୍ୟ ଅସୁସ୍ଥତା ହେତୁ ମଧୁସୂଦନ ଶେଷ ପରୀକ୍ଷାର ପ୍ରସ୍ତୁତି ସମ୍ବନ୍ଧରେ ସନ୍ଦିହାନ ହୋଇ ବ୍ୟାକୁଳ ଭାବରେ ରାଧାନାଥଙ୍କୁ ସମସ୍ତ ବିଷୟ ଜଣାଇଲେ । ରାଧାନାଥ ତାହାଙ୍କୁ ପରୀକ୍ଷାରେ କୃତକାର୍ଯ୍ୟ ହେବା ବିଷୟରେ ଆଶା ଓ ଉତ୍ସାହ ଦେଇ ପାଠ୍ୟ ବିଷୟଗୁଡିକ ପ୍ରତି ତୀକ୍ଷ୍ଣ ଦୃଷ୍ଟି ରଖିଲେ । ଅଙ୍କରେ ଟିକିଏ କଚା ବୋଲି ମଧୁସୂଦନ ତାହାଙ୍କୁ ଅଙ୍କ ଶିକ୍ଷା ଦେବା ପାଇଁ ଅନୁରୋଧ କରିବାରୁ ରାଧାନାଥ ପ୍ରତ୍ୟହ ମଧୁସୂଦନଙ୍କ ଗୃହକୁ ଆସି ତାହାଙ୍କୁ ଅଙ୍କ ଶିକ୍ଷା ଦେବାକୁ ଲାଗିଲେ । ଏହା ଫଳରେ ଉଭୟଙ୍କ ମଧ୍ୟରେ ଯେଉଁ ଗୁରୁ-ଶିଷ୍ୟ ସମ୍ବନ୍ଧ ସୃଷ୍ଟି ହେଲା, ତାହା ଆଜୀବନ ଅକ୍ଷୁଣ୍ଣ ରହିଲା ।

କବିବର ରାଧାନାଥଙ୍କ ସଙ୍ଗରେ ଜ୍ୟୋତ୍ସ୍ନାପ୍ଲାବିତ ରଜନୀରେ ସ୍ୱର୍ଗଦ୍ୱାର ସାଗର ସୈକତରେ ବସି ମହା ସମୁଦ୍ରର ମନୋହାରୀ ରୁଦ୍ରସୁନ୍ଦର ଦୃଶ୍ୟାବଳୀ ଓ ଶ୍ମଶାନର ଭାବ-ଗମ୍ଭୀର ରହସ୍ୟ ଓ ଇହଜୀବନର କ୍ଷଣସ୍ଥାୟୀ ଲୀଳା ଦେଖି ଦେଖି ମଧୁସୂଦନଙ୍କ ଅନ୍ତରରେ ନାନା ପ୍ରକାର ଭାବୋଦୟ ହେଉଥିଲା । ରାଧାନାଥଙ୍କ ସଙ୍ଗଗୁଣରେ ମଧୁସୂଦନଙ୍କ ଅନ୍ତରରେ ସାହିତ୍ୟାନୁରାଗ ମଧ୍ୟ ଦିନକୁ ଦିନ ବଢିବାକୁ ଲାଗିଲା ।

ସେତେବେଳେ ପୁରୀରେ ହରିହର ଦାସ ନାମକ ଜଣେ ସଂସ୍କୃତଜ୍ଞ ମହାପଣ୍ଡିତ ବାସ କରୁଥିଲେ । ଦେଶ ବିଦେଶ ସର୍ବତ୍ର ଏହାଙ୍କ ପାଣ୍ଡିତ୍ୟର ଖ୍ୟାତି ଥିଲା । ସଂସ୍କୃତ ଭାଷାରେ ଏହାଙ୍କର ଅନର୍ଗଳ ବକ୍ତୃତା-ଶକ୍ତି ପଣ୍ଡିତ ମାନଙ୍କୁ ମୁଗ୍‌ଧ କରୁଥିଲା । ପୁରୀର ତଦାନୀନ୍ତନ ମାଜିଷ୍ଟ୍ରେଟ୍ ବିକ୍‌ସ ଓଫେଲ ସାହେବ ଏହାଙ୍କ ପାଖରେ ପାଠପଢି ସଂସ୍କୃତ ଭାଷାରେ ବ୍ୟୁତ୍ପନ୍ନ ହୋଇଥିଲେ । ରାଧାନାଥ ଏବଂ ମଧୁସୂଦନ ଉଭୟେ ଏକଥର ପଣ୍ଡିତ ପ୍ରବର ହରିହରଙ୍କ ବାସଭବନକୁ ଯାଇ ସଂସ୍କୃତ ଚର୍ଚ୍ଚା କରୁଥିଲେ ଓ ତାଙ୍କ ଦାର୍ଶନିକ ମତବାଦ ଗ୍ରହଣ କରୁଥିଲେ । ବ୍ରାହ୍ମଣ-ପଣ୍ଡିତ ହେଲେ ମଧ୍ୟ ହରିହର ଦାସ ନାସ୍ତିକ ଦାର୍ଶନିକ ଥିଲେ, ଏବଂ ସେଥିପାଇଁ ସେ ହିନ୍ଦୁ-ଧର୍ମାନୁମୋଦିତ ଆଚାର ବ୍ୟବହାର ମାନୁନଥିଲେ । ଏହାଙ୍କର ପ୍ରବର୍ତ୍ତନାରେ ବଳରାମପୁରର ବଦାନ୍ୟ ମହାରାଜଙ୍କ ଅର୍ଥାନୁକୂଲ୍ୟରେ ପୁରୀରେ ସଂସ୍କୃତ ବିଦ୍ୟାଳୟ ପ୍ରତିଷ୍ଠିତ ହୋଇଥିଲା । ପୁରୀ ସଂସ୍କୃତ ବିଦ୍ୟାଳୟର ପ୍ରଥମ ଉଦ୍ୟୋକ୍ତା ଓ ପ୍ରତିଷ୍ଠାତା ହିସାବରେ ଏହି ପଣ୍ଡିତ ମହୋଦୟ ଓଡ଼ିଶାର ଜନସାଧାରଣଙ୍କ ନିକଟରେ ଚିରସ୍ମରଣୀୟ ହୋଇ ରହିଅଛନ୍ତି । ତାହାଙ୍କ ପ୍ରତିଷ୍ଠିତ ଏହି ବିଦ୍ୟାଳୟଟି ବର୍ତ୍ତମାନ "ପୁରୀ ସଂସ୍କୃତ କଲେଜ" ନାମରେ ପରିଚିତ ।

ଏହି ମହାତ୍ମା ପଣ୍ଡିତଙ୍କ ଜୀବନର ପ୍ରଭାବ ରାଧାନାଥ, ମଧୁସୂଦନ ଓ ତାଙ୍କର ଅନ୍ୟାନ୍ୟ କେତେକ ଶିଷ୍ୟଙ୍କ ଜୀବନରେ ପଡ଼ିଥିଲା । ବାଳକ ମଧୁସୂଦନଙ୍କ ଅନ୍ତରରେ ଆସ୍ତିକ୍ୟ ବୁଦ୍ଧି ସ୍ୱାଭାବିକ ଭାବରେ ଥିଲା । ପଣ୍ଡିତ ମହାଶୟଙ୍କ ନିକଟରୁ ଶାସ୍ତ୍ରରେ ଉଲ୍ଲିଖିତ ବିଭିନ୍ନ ମତବାଦ ଶ୍ରବଣ କରି ମଧୁସୂଦନ ତାଙ୍କ ସହିତ ତର୍କ କରୁଥିଲେ, କାରଣ ନାସ୍ତିକତାକୁ ତାଙ୍କ ଅନ୍ତର ସମର୍ଥନ କରୁନଥିଲା । ଗୁରୁଙ୍କ ପ୍ରତି ତାଙ୍କର ଯଥେଷ୍ଟ ଶ୍ରଦ୍ଧା ଭକ୍ତି ଜନ୍ମିଥିଲା, କିନ୍ତୁ ବିଭିନ୍ନ ମତବାଦ ମଧ୍ୟରେ ତାଙ୍କ ନାସ୍ତିକତାର ସମର୍ଥନ ଦେଖି ମଧୁସୂଦନଙ୍କ ଅନ୍ତର ଦ୍ୱିଧା ଦ୍ୱନ୍ଦ୍ୱରେ ଆନ୍ଦୋଳିତ ହେଉଥିଲା । ମନର ଏହି ଅଶାନ୍ତ ଅବସ୍ଥାରେ ମଧୁସୂଦନ ଦିନେ ରାତିରେ ଗୋଟିଏ ସ୍ୱପ୍ନ ଦେଖିଲେ, ସ୍ୱପ୍ନଟି ଏହିପରି :—କେତେଖଣ୍ଡ଼ିଏ ଜ୍ୱଳନ୍ତ କାଷ୍ଠ ଖଣ୍ଡ ସ୍କନ୍ଧରେ ନେଇ ପଣ୍ଡିତ ହରିହର ଦାସ ପୁରୀର "ବଡ଼ଦାଣ୍ଡରେ" (ପ୍ରଧାନ ରାସ୍ତା-ଯେଉଁ ରାସ୍ତାରେ ପୁରୀ ରଥଯାତ୍ରା ସମୟରେ ରଥଟଣା ହୁଏ)

ବ୍ୟାକୁଳ ଭାବରେ ଦୌଡ଼ା ଦୌଡ଼ି କରୁଅଛନ୍ତି ଓ ଜ୍ୱଳନ୍ତ କାଷ୍ଠକୁ ପାର୍ଶ୍ୱବର୍ତ୍ତୀ ଜନତା ପ୍ରତି ନିକ୍ଷେପ କରୁଛନ୍ତି । ସେମାନେ ମଧ୍ୟ ଅଗ୍ନିଦଗ୍ଧ ହୋଇ ଆର୍ତ୍ତସ୍ୱରରେ ଚିତ୍କାର କରୁଅଛନ୍ତି । ଏହିପରି କରୁ କରୁ ଅବଶେଷରେ ପଣ୍ଡିତ ମହାଶୟ ନିକଟବର୍ତ୍ତୀ ନରେନ୍ଦ୍ର ପୁଷ୍କରିଣୀରେ ନିମଜ୍ଜିତ ହୋଇ ଚିର ଶାନ୍ତି ଲାଭ କଲେ ।

ଆଶ୍ଚର୍ଯ୍ୟର କଥା, ଏହାର ଅଳ୍ପକାଳ ପରେ ପଣ୍ଡିତ ପ୍ରବର ହରିହର ଦାସଙ୍କର ଅଗ୍ନିଦାହରେ ମୃତ୍ୟୁ ହୋଇଥିଲା । ଏହି ଘଟଣା ଏବଂ ପଣ୍ଡିତ ମହାଶୟଙ୍କ ସ୍ମୃତି କିଶୋର ମଧୁସୂଦନଙ୍କ ଅନ୍ତରରେ ଏପରି ଗଭୀର ଭାବରେ ମୁଦ୍ରିତ ହୋଇଥିଲା ଯେ ପରବର୍ତ୍ତୀ କାଳରେ ଅନେକଥର ସେ ଆମ୍ଭମାନଙ୍କ ନିକଟରେ ଆବେଗମୟୀ ଭାଷାରେ ଏହି ଗଳ୍ପ କହୁଥିଲେ । ଏହି ସ୍ମୃତିକୁ ଅବଲମ୍ବନ କରି ତାଙ୍କର "ପରମ ପ୍ରମାଣ" ନାମକ ଯେଉଁ କବିତାଟି ରଚିତ ହୋଇଥିଲା, ତାହାର କିୟଦଂଶ ନିମ୍ନରେ ଉଦ୍ଧୃତ ହେଲା :—

ହେ ଧୀମନ୍ତ ବୁଧକୁଳ ! ଖୋଜୁଅଛ ଧ୍ୟାନେ,
କେମନ୍ତ ଯୁକତି—ସେତୁ ନିର୍ମି ସୁକୌଶଳେ,
ନାଶି ଦୃଶ୍ୟ—ଅଦୃଶ୍ୟର ମହାବ୍ୟବଧାନ
ଏକତ୍ର କରିବ ସବୁ ଧରଣୀ ମଣ୍ଡଳେ ।
ହେ ପଣ୍ଡିତ ! କ୍ଷୁଦ୍ରତବ ବୁଦ୍ଧି-ମାନଦଣ୍ଡେ
ଇଚ୍ଛିଅଛ, ମାପିବ ହେ ଅନନ୍ତ ଅପାରେ·········

× × ×

ଶାସ୍ତ୍ର-ଯୁକ୍ତି—ପ୍ରମାଣେ ର ଅତୀତ, ଅଗାଧ,
ସେ ଅନ୍ତରତମ, ବୁଡଯାଅ ସେ ଅତଳେ ।
ଦୂରେ ଫିଙ୍ଗି ଅଭିମାନ, ପ୍ରମାଣ-ପ୍ରମାଦ
ପଡ଼ ଆସି ହେ ଅନନ୍ତ-ପାଦ-ପଦ୍ମ-ତଳେ ।
ହେ ଚତୁର ସୁଧୀ ! ଛାଡ଼ ବିଚାର-ବିତୃଷା
ଭୁଞ୍ଜ ମହାନନ୍ଦେ ମହା ବିଶ୍ୱାସ ମାଧୁରୀ ।

ମଧୁସୂଦନଙ୍କର ଓଡ଼ିଆ କବିତାଟି ନଗେନ୍ଦ୍ରବାଳା ସରସ୍ୱତୀ କର୍ତ୍ତୃକ ବଙ୍ଗଳାରେ ଅନୁବାଦିତ ହୋଇଥିଲା ।

ଏହି ସମ୍ପର୍କରେ ସାଧୁ ହରି ଦାସ ବାବାଜୀଙ୍କ ବିଷୟ ମଧ୍ୟ ଉଲ୍ଲେଖଯୋଗ୍ୟ । ପୁରୀ ମନ୍ଦିର ନିକଟରେ ଗୋଟିଏ ମଠରେ ଏହି ସାଧୁ ଜଣକ ବାସ କରୁଥିଲେ । ବାଳକ ମଧୁସୂଦନ ଜଗନ୍ନାଥ-ଦର୍ଶନ-ନିମିତ୍ତ ମଝି ମଝି ମନ୍ଦିରକୁ ଯାଉଥିଲେ । ସେତେବେଳେ ବାବାଜୀଙ୍କ ପାଖକୁ ଯାଇ ବସନ୍ତି ଓ ତାଙ୍କ ପାଖରୁ ଧର୍ମ କଥା ଶୁଣନ୍ତି । ବାଳକର ଏହି ଧର୍ମଭାବ ଦେଖି ସାଧୁ ଅତ୍ୟନ୍ତ ପ୍ରୀତ ହୋଇ ତାହାର ମୁଣ୍ଡରେ ହାତ ବୁଲାଇ ଆଶୀର୍ବାଦ କରୁଥିଲେ । ସୁବୋଧ ବାଳକ ମଧୁସୂଦନଙ୍କର ଅନେକ ନୀତି-ମୂଳକ ଶ୍ଳୋକ କଣ୍ଠସ୍ଥ ଥିଲା । ବାବାଜୀ ଏହି ସମସ୍ତ ଶ୍ଳୋକର ଅର୍ଥ ବ୍ୟାଖ୍ୟା କରି ମଧୁସୂଦନଙ୍କୁ ବୁଝାଇ ଦେଲେ । ତାହା ଏହି ବାଳକର ଅନ୍ତରରେ ଚିର ମୁଦ୍ରିତ ରହିଯାଉଥିଲା । ମଧୁସୂଦନ ଆନନ୍ଦିତ ଅନ୍ତରରେ ଆହୁରି ନୂତନ ଶ୍ଳୋକ କଣ୍ଠସ୍ଥ କରି ବାବାଜୀଙ୍କ ନିକଟରେ ଉପସ୍ଥିତ ହେଉଥିଲେ । ଏହି ଭାବରେ ସାଧୁସଙ୍ଗ ମଧ୍ୟଦେଇ ଭକ୍ତିପିପାସୁ ବାଳକର ପ୍ରାଣ ବିକାଶ ପଥରେ ଅଗ୍ରସର ହେଉଥିଲା । ଭକ୍ତକବି ମଧୁସୂଦନଙ୍କ ଜୀବନରେ ପରବର୍ତ୍ତୀ କାଳରେ ଯେଉଁ ଭଗବଦ୍ ଭକ୍ତି ଫୁଟି ଉଠିଥିଲା, ତାହାର ଅଙ୍କୁରୋଦ୍‌ଗମ ସାଧୁ ହରିଦାସ ବାବାଜୀଙ୍କ ସଙ୍ଗ ଲାଭର ଫଳ ।

## (୫) ଉଚ୍ଚତର ଶିକ୍ଷା

୧୮୬୯ ଖ୍ରୀଷ୍ଟାବ୍ଦରେ ମଧୁସୂଦନ ପୁରୀ ଜିଲ୍ଲା ସ୍କୁଲରୁ ପ୍ରବେଶିକା ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ସରକାରୀ ବୃତ୍ତି ଲାଭ କରି ଏଫ୍. ଏ. ପଢ଼ିବା ପାଇଁ କଟକ ଆସିଲେ । କଟକରେ ସେତେବେଳେ କଲେଜ ସ୍ଥାପିତ ହୋଇନଥାଏ, କେବଳ ଓଡ଼ିଶାର ଛାତ୍ରମାନଙ୍କ ଏଫ୍. ଏ. ପଢ଼ିବା ସୁବିଧା ପାଇଁ କଟକସ୍ଥ ସରକାରୀ ଉଚ୍ଚ ଇଂରାଜୀ ବିଦ୍ୟାଳୟରେ ଦୁଇଟି ଅତିରିକ୍ତ ଶ୍ରେଣୀ ସଂଯୋଜିତ ହୋଇଥିଲା । ରାଜକିଶୋର ବନ୍ଦୋପାଧ୍ୟାୟ, ଏମ୍. ଏ. ବି. ଏଲ୍., ଓ ହରନାଥ ଭଟ୍ଟାଚାର୍ଯ୍ୟ ଏମ୍. ଏ. ଏହି ଦୁଇ ଶ୍ରେଣୀରେ ଅଧ୍ୟାପନା କରୁଥିଲେ ।

ରାଜକିଶୋର ଇଂରାଜୀରେ ଅଧ୍ୟାପକ ଥିଲେ; ସେ ବୟୋବୃଦ୍ଧ ଓ ପ୍ରେମବୃଦ୍ଧ ବୃତ୍ତିଧାରୀ ଏବଂ ଇଂରାଜୀ ଓ ବଙ୍ଗଳା ଉଭୟ ଭାଷାରେ ସୁପଣ୍ଡିତ

ଥିଲେ । ତାହାଙ୍କ ରଚିତ "ମିତ୍ର ବିଳାପ" ଓ କାବ୍ୟ କଳାପ" ନାମକ ଦୁଇଟି ବଙ୍ଗଳା ପୁସ୍ତକରେ ତାଙ୍କ କବିକୃତି ପ୍ରକାଶ ପାଇଥିଲା । ଅଧ୍ୟାପନା ସମୟରେ ସେ କେବଳ ଇଂରାଜୀରେ ବ୍ୟାଖ୍ୟାନ ପ୍ରଦାନ କରନ୍ତି ନାହିଁ, ପରନ୍ତୁ ହୋମର – ବାଲ୍ମୀକି, ବ୍ୟାସ—ଭର୍ଜିଲ, ମିଲଟନ୍—ମାଇକେଲ (ମାଇକେଲ 'ମେଘନାଦ ବଧ'—କାବ୍ୟ ପ୍ରଣେତା ମଧୁସୂଦନ ଦତ୍ତ) ପ୍ରଭୃତି ମହାକବିମାନଙ୍କର ରଚନାରୁ ଉପଯୋଗୀ କବିତା ସମୂହ ଉଦ୍ଧୃତ କରି ଛାତ୍ରମାନଙ୍କ ସମ୍ମୁଖରେ ଉପସ୍ଥାପିତ କରୁଥିଲେ । ରାମାୟଣ, ମହାଭାରତରୁ ନାନାବିଧ ସୂକ୍ଷ୍ମ ପ୍ରଶ୍ନ କରି ଛାତ୍ରମାନଙ୍କୁ ଉତ୍ତର ଦେବାକୁ କହୁଥିଲେ । ଏହିପ୍ରକାର ଅଧ୍ୟାପନା ଗୁଣରେ ଛାତ୍ରମାନଙ୍କ ସମୋନ୍ନତିର ସହିତ ସମାଲୋଚନା ମନୋବୃତ୍ତି ମଧ୍ୟ ମାର୍ଜିତ ହେଉଥିଲା ।

ହରନାଥ ଭଟ୍ଟାଚାର୍ଯ୍ୟ, ଏମ୍. ଏ. ଦର୍ଶନ ଶାସ୍ତ୍ରର ଅଧ୍ୟାପକ ଥିଲେ । ନବୀନ ଯୁବକ ହେଲେ ମଧ୍ୟ ଏହାଙ୍କର ବିଦ୍ୱତ୍ତା, ନିର୍ମଳ ଚରିତ୍ର ଓ ପ୍ରଶାନ୍ତଭାବ ଦେଖି ଛାତ୍ରମାନଙ୍କ ଅନ୍ତରରେ ଭୟ ଓ ଭକ୍ତି ସଞ୍ଚାର ହେଉଥିଲା ।

ସେ ଶ୍ରେଣୀରେ ପ୍ରବେଶ କଲେ ଛାତ୍ରବର୍ଗ ତତ୍‌କ୍ଷଣାତ୍ ନିସ୍ତବ୍‌ଧଭାବ ଧାରଣ କରନ୍ତି । ବ୍ରାହ୍ମଧର୍ମାବଲମ୍ବୀ ହରନାଥଙ୍କ ଦାର୍ଶନିକ ଉପଦେଶ ଅଭିନିବିଷ୍ଟ ଛାତ୍ରର ହୃଦୟରେ ଉର୍ବର ଭୂମିରେ ରୋପିତ ବୀଜତୁଲ୍ୟ ଫଳପ୍ରଦ ହେଉଥିଲା ।

ପରବର୍ତ୍ତୀ କାଳରେ ଶିକ୍ଷକ ମଧୁସୂଦନଙ୍କ ପାଠନରେ ଏହି ଉଭୟ ଅଧ୍ୟାପକଙ୍କ ଦୃଷ୍ଟାନ୍ତ ଓ ପ୍ରଭାବ ଉଜ୍ଜ୍ୱଳ ରୂପେ ପ୍ରତିଭାତ ହୋଇଥିଲା ।

ଏହି ସମୟରେ ମଧୁସୂଦନଙ୍କ ସହାଧ୍ୟାୟୀବର୍ଗଙ୍କ ମଧ୍ୟରେ ପ୍ୟାରୀମୋହନ ଆଚାର୍ଯ୍ୟ, ଭଗବତୀ ଚରଣ ଚଟ୍ଟୋପାଧ୍ୟାୟ, ଚତୁର୍ଭୁଜ ପଟ୍ଟନାୟକ ଓ ବଳରାମ ଦାସ ଏହି କେତେଜଣ ପ୍ରଧାନ ଥିଲେ । ଏହି ସହପାଠୀମାନଙ୍କ ମଧ୍ୟରେ ମଧୁସୂଦନ ସବୁ ବିଷୟରେ ଶ୍ରେଷ୍ଠ ଥିଲେ । ତାଙ୍କ ବହୁମୁଖୀ ପ୍ରତିଭା ଦେଖି ଅଧ୍ୟାପକମାନେ ତାଙ୍କ ପ୍ରତି ଅତ୍ୟନ୍ତ ପ୍ରୀତ ଥିଲେ ।

ଏହି ସହାଧ୍ୟାୟୀମାନଙ୍କ ପ୍ରତ୍ୟେକଙ୍କର ରୁଚି ବିଭିନ୍ନ । ଭଗବତୀ ଗମ୍ଭୀରସ୍ୱଭାବ, ବିପ୍ରଚରଣ ହାସ୍ୟ-ପରିହାସ-ରସିକ, ଚତୁର୍ଭୁଜ ଚଞ୍ଚଳମତି, କାଳୀରାମ ଉନ୍ନତ ରୁଚିସମ୍ପନ୍ନ ହେଲେ ମଧ୍ୟ ରସିକତାପୂର୍ଣ୍ଣ ଥିଲେ । ଏହିପରି ବିଭିନ୍ନ ରୁଚିସମ୍ପନ୍ନ ହୋଇ ମଧ୍ୟ ଏମାନେ କେତେଜଣ ପରସ୍ପର ପ୍ରୀତି ସୂତ୍ରରେ ଯୁକ୍ତ ଥିଲେ । କର୍ମ କ୍ଷେତ୍ରରେ ପ୍ରବିଷ୍ଟ ହେବା ପରେ ଏମାନେ ଦୂରରେ ଦୂରରେ ରହିବାକୁ ବାଧ୍ୟ ହୋଇଥିଲେ । କିନ୍ତୁ ଛାତ୍ର ଜୀବନର ସେହି ସୁଖମୟ ସ୍ମୃତି ଏମାନଙ୍କ ଅନ୍ତରରେ ଚିର ମୁଦ୍ରିତ ଥିଲା ଏବଂ ଏମାନଙ୍କ ସୌହାର୍ଦ୍ଦ୍ୟ ଆଜୀବନ ଅକ୍ଷୁର୍ଣ୍ଣ ଥିଲା । କିନ୍ତୁ ମଧୁସୂଦନ ଓ ପ୍ୟାରୀମୋହନ ଏହି ଦୁଇଜଣଙ୍କ ସଂଯୋଗ ସତେ ଯେପରି ମଣି-କାଞ୍ଚନ ଯୋଗ ଭଳି ହୋଇଥିଲା । ବିଦ୍ୟାଳୟରେ ଅବକାଶ ସମୟରେ ଏହି ଦୁଇବନ୍ଧୁ ଅନ୍ୟ ଛାତ୍ରମାନଙ୍କ ଠାରୁ ଇତସ୍ତତଃ ଦୂର ନିର୍ଜ୍ଜନ ନିଭୃତରେ ବସି ନାନା ପ୍ରସଙ୍ଗ-ବିଶେଷତଃ ଆଧ୍ୟାତ୍ମିକ ଓ ସାମାଜିକ ବିଷୟ ଆଲୋଚନା କରୁଥିଲେ । ମଧ୍ୟେ ମଧ୍ୟେ ପ୍ରବନ୍ଧାଦି ଲେଖୁଥିଲେ ଓ ଇଂରାଜୀ ଭାଷାରେ ଲିଖିତ କୌଣସି ଉତ୍କୃଷ୍ଟ ରଚନାର ଅନୁବାଦ କରୁଥିଲେ । ଏହି ସମାନଧର୍ମୀ ଯୁବକଦ୍ୱୟ ଉଭୟେ ଉଭୟଙ୍କର ପ୍ରାଣପ୍ରିୟ ସଖା ଥିଲେ ।

ଅଧ୍ୟାପକ ହରନାଥ ଭଟ୍ଟାଚାର୍ଯ୍ୟଙ୍କ ନିର୍ମଳ ଚରିତ୍ର-ସତ୍ୟନିଷ୍ଠା ଓ ଧର୍ମପରାୟଣତାର ପ୍ରଭାବରେ ପ୍ୟାରୀମୋହନ ଓ ମଧୁସୂଦନ ଉଭୟେ ବ୍ରାହ୍ମଧର୍ମାନୁରାଗୀ ହେଲେ । ଏମାନଙ୍କ ତେଜସ୍ୱିତା ଓ ସତ୍ୟନିଷ୍ଠା ବିଷୟରେ ଗୋଟିଏ ଦୃଷ୍ଟାନ୍ତ ଉଲ୍ଲେଖଯୋଗ୍ୟ :—

୧୮୭୧ ଖ୍ରୀଷ୍ଟାବ୍ଦରେ ବଙ୍ଗ ଦେଶର ନବଯୁଗ ସଂସ୍କାରକ ବ୍ରହ୍ମାନନ୍ଦ କେଶବ ଚନ୍ଦ୍ର ସେନଙ୍କ ଉଦ୍ୟୋଗରେ ବ୍ରାହ୍ମବିବାହ ଆଇନର ପାଣ୍ଡୁଲିପି (ବରର ବୟସ ୧୮ ବର୍ଷ ଓ କନ୍ୟାର ବୟସ ୧୪ ବର୍ଷ ଅପେକ୍ଷା କମ୍ ହେଲେ ସେ ବିବାହ ନିଷିଦ୍ଧ) ଅନୁଯାୟୀ ଆଇନ ବିଧିବଦ୍ଧ ହେବାର ଉପକ୍ରମ ହେବାରୁ ଦେଶବ୍ୟାପୀ ସଂସ୍କାର-ବିରୋଧୀ ଆନ୍ଦୋଳନ ଫଳରେ ଯେତେବେଳେ ଜନସାଧାରଣଙ୍କ ମତ ଜଟିଳ ହେଲା, ସେତେବେଳେ ଓଡ଼ିଶାରୁ ମଧୁସୂଦନ ଓ ପ୍ୟାରୀମୋହନ ସତସାହସ ପ୍ରଦର୍ଶନ ପୂର୍ବକ ପ୍ରକାଶ୍ୟରେ ଉକ୍ତ ଆଇନ ସପକ୍ଷରେ ମତ ଜ୍ଞାପନ କରିଥିଲେ । ପୁଣି ଆଚାର୍ଯ୍ୟ କେଶବ ଚନ୍ଦ୍ର ଯେତେବେଳେ ସ୍ୱୀୟ ଚେଷ୍ଟାରେ ବିଧିବଦ୍ଧ ଉକ୍ତ ଆଇନର ବିରୁଦ୍ଧରେ ନିଜ

ଅପ୍ରାପ୍ତ-ବୟସ୍କା ଜ୍ୟେଷ୍ଠା କନ୍ୟା ସହିତ ଅପ୍ରାପ୍ତ ବୟସ୍କ କୁଚବିହାର ରାଜାଙ୍କ ବିବାହରେ ଉଦ୍ୟୋଗୀ ହେଲେ, ସେତେବେଳେ, ତାହା ବିରୁଦ୍ଧରେ ବ୍ରାହ୍ମ ସମାଜରେ ଯେଉଁ ଆନ୍ଦୋଳନ ଉତ୍ଥିତ ହେଲା ଏହି ଦୁଇ ଯୁବକ ସେହି ଆନ୍ଦୋଳନ ସପକ୍ଷରେ ମତ ଦେଇଥିଲେ । ଯେତେବେଳେ ଦେଶରେ ହିନ୍ଦୁ ସଂପ୍ରଦାୟ ମଧ୍ୟରେ ବାଲ୍ୟ-ବିବାହ ପ୍ରଥା ପୂର୍ଣ୍ଣ ମାତ୍ରାରେ ପ୍ରଚଳିତ, ସେତେବେଳେ ଏହି ଦୁଇ ଯୁବକଙ୍କ ପକ୍ଷେ ତତ୍କାଳୀନ ସମାଜ ସ୍ରୋତର ପ୍ରତିକୂଳ ଦିଗରେ ଏହିଭଳି କାର୍ଯ୍ୟରେ ଅଗ୍ରସର ହେବା କେଉଁଭଳି ସତସାହସର ପରିଚାୟକ, ତାହା ସହଜରେ ଅନୁମେୟ ।

ଏହି ପ୍ୟାରୀମୋହନ ମାତ୍ର ୩୦ ବର୍ଷ ବୟସରେ ୧୮୮୧ ଖ୍ରୀଷ୍ଟାବ୍ଦରେ ଡିସେମ୍ବର ୨୮ ତାରିଖରେ କଟକ ନଗରୀରେ ଅକାଳରେ ପରଲୋକ ଗମନ କଲେ । ମାତ୍ର ପାଞ୍ଚଟି ଦିନ ପ୍ରବଳ ଜ୍ୱର ଭୋଗ ପରେ ତାଙ୍କର ମୃତ୍ୟୁ ହେଲା । ମଧୁସୂଦନ ସେତେବେଳେ ସର୍ବଦା ତାହାଙ୍କ ନିକଟରେ ରହି ଅକ୍ଳାନ୍ତ ଭାବରେ ବନ୍ଧୁର ସେବା ଶୁଶ୍ରୂଷା କରୁଥିଲେ । ଏହାଙ୍କ ରୋଗଶଯ୍ୟା ଓ ଅନ୍ତିମ କାଳର କରୁଣ-ଦୃଶ୍ୟ ପ୍ରଭୃତି ଶୋକାବହ ଘଟଣାର କଥା ମଧୁସୂଦନ କେବେକେବେ ଅଶ୍ରୁପୂର୍ଣ୍ଣ ନୟନରେ ବର୍ଣ୍ଣନା କରୁଥିଲେ । 'ବସନ୍ତ ଗାଥା' ନାମକ କବିତା-ପୁସ୍ତକରେ ମଧୁସୂଦନ ଏହାଙ୍କୁ ଯେଉଁ କବିତାଟି ଉତ୍ସର୍ଗ କରିଅଛନ୍ତି ତାହା ଏଠାରେ ଉଦ୍ଧୃତ ହେଲା :—

ସଂସାର ସାଗର ତୀରେ ପୁଣ୍ୟାନନ୍ଦ ମଗ୍ନ  
ପରଲୋକ-ଧାମେ ସଖା ଅଛ ଦେବ ଦଳେ

ଭ୍ରମି ଭବ-ସିନ୍ଧୁ-କୂଳେ ବ୍ୟାକୁଳ ଅଥୟ  
ଏକାକୀ ମୁଁ ସୁଦ୍ଧ ମୂର୍ତ୍ତି ଶୋକ-ଅଶ୍ରୁ-ଜଳେ ।

ସେ ସିଂହ ବିକ୍ରାନ୍ତ ତବ ପୁରୁଷ-ହୃଦୟ  
ଦବାନଳ ଶିଖାପ୍ରାୟ ପୁଣ୍ୟ ଉତ୍ସାହ-ଅନଳେ

ଦୟା ସ୍ନେହ ବିଗଳିତ ସେ ଆଶ୍ରୟ ତବ  
ସୁନ୍ଦର ମିଳନ ଆହା କଠୋରେ କୋମଳେ ।

ବ୍ରହ୍ମପାଦ-ପଦ୍ମତଳେ ସେ ଅମୃତଧାମେ  
ହୋଇଅଛୁ ତାହା ଆହା କି ରୁଚିରତର ।

ଚନ୍ଦ୍ରସ୍ପର୍ଶ ନୟନ୍ତୁଁ ଭବ ସେ ଚନ୍ଦ୍ରସ୍ପ ଧାମେ
ଝରୁଅଛି ଆହା କବା ପ୍ରେମର ନର୍ଝର ।
ବ୍ୟଥିତ ତୃଷିତ ମୂର୍ତ୍ତି ସଂସାର ସଂଗ୍ରାମେ
ଦେବ କି ହେ ପାନେ ସଖା ସେ ପ୍ରେମ ଶୀକର ।

ମଧୁସୂଦନ ଏଫ୍. ଏ. ପରୀକ୍ଷା ଦେବା ସମୟରେ କଟକରେ ଏହି ପରୀକ୍ଷା ଦେବାର ବ୍ୟବସ୍ଥା ନଥିଲା ବୋଲି ତାଙ୍କୁ କଲକତା ଯାଇ ପରୀକ୍ଷା ଦେବାକୁ ପଡ଼ିଥିଲା । ସେତେବେଳେ ସେ କଲକତାରେ କେତୋଟି ବ୍ରାହ୍ମଯୁବକଙ୍କ ସହିତ ଗୋଟିଏ ମେସ୍‌ରେ ରହି ପରୀକ୍ଷା ଦେଇଥିଲେ ।

ବାପାଙ୍କ ପାଖରୁ ଶୁଣିଛି, ସେହି ମେସ୍‌ରେ ସେତେବେଳେ ଶଶିଭୂଷଣ ଦତ୍ତ ମହାଶୟ ଏବଂ ତାଙ୍କ କନିଷ୍ଠ ଭ୍ରାତା ପାର୍ବତୀନାଥ ଦତ୍ତ ମଧ୍ୟ ରହୁଥିଲେ । ସେମାନେ ଉଭୟେ ମେଧାବୀ ଏବଂ ମନୋଯୋଗୀ ଛାତ୍ର ଥିଲେ । କଲକତାରେ ନବାଗତ ମଧୁସୂଦନଙ୍କ ସର୍ବପ୍ରକାର ସୁଖ-ସୁବିଧା ପ୍ରତି ସେମାନେ ଦୃଷ୍ଟି ରଖୁଥିଲେ । ଏହି ସମୟରେ ମଧୁସୂଦନଙ୍କ ସହିତ ଏମାନଙ୍କର ଯେଉଁ ସୌହାର୍ଦ୍ଦ୍ୟ ହୋଇଥିଲା ତାହା ଆଜୀବନ ଅକ୍ଷୁର୍ଣ୍ଣ ଥିଲା ଓ ଏହି ସୁଖସ୍ମୃତି ତାଙ୍କ ଅନ୍ତରରେ ଏପରି ଜାଗରୂକ ଥିଲା ଯେ ସେ ବହୁ ସମୟ ତାଙ୍କ ପୁତ୍ରମାନଙ୍କ ନିକଟରେ ଏମାନଙ୍କ କଥା କହୁଥିଲେ । ଏମ୍. ଏ: ପାଶ୍ କରିବା ପରେ ଶଶୀଭୂଷଣ କଟକ ହାଇସ୍କୁଲ ସାଙ୍ଗରେ ଯେଉଁ ଏଫ୍: ଏ: ଶ୍ରେଣୀ ଯୁକ୍ତ ଥିଲା, ସେଥିରେ ଅଧ୍ୟାପକ କାର୍ଯ୍ୟରେ ନିଯୁକ୍ତ ହୋଇଥିଲେ । ତାପରେ ଢ଼ାକା କାଓରଇ ବଂଶର ଜମିଦାର ସାଧୁ କାଳୀନାରାୟଣ ଗୁପ୍ତଙ୍କ (ସାର୍ କେ. ଜି. ଗୁପ୍ତଙ୍କର ପିତା) ଜ୍ୟେଷ୍ଠା କନ୍ୟା ଚପଳା ଦେବୀଙ୍କ ସହିତ ତାଙ୍କର ବିବାହ ହେଲା । ମଧୁସୂଦନଙ୍କ ମୁହଁରୁ ଶୁଣିଅଛି, ଏହି ଉପଲକ୍ଷ୍ୟରେ ସେ ଗୋଟିଏ ବ୍ରହ୍ମସଙ୍ଗୀତ ରଚନା କରି ପଠାଇଥିଲେ ଏବଂ ତାହା ସେମାନଙ୍କର ବିବାହ ସଭାରେ ଗାନ କରାଯାଇଥିଲା ।

୧୮୭୧ ଖ୍ରୀଷ୍ଟାବ୍ଦରେ ସୁଖ୍ୟାତି ସହିତ ଏଫ୍: ଏ: ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ମଧୁସୂଦନ ସରକାରୀ ବୃତ୍ତି ପ୍ରାପ୍ତ ହେଲେ ଏବଂ କଟକରେ ବି. ଏ. ପଢିବାର ସୁବିଧା ନଥିବାରୁ କଲକତା ଯାଇ ପଢିବା ପାଇଁ ଆଗ୍ରହାନ୍ୱିତ ହେଲେ । କିନ୍ତୁ ସେତେବେଳେ ଓଡିଶାରେ ରେଳପଥ ସ୍ଥାପିତ ହୋଇନଥିଲା ।

କଟକରୁ ଜଳପଥରେ ମହାନଦୀର କେନାଲ ଦେଇ ବାଲେଶ୍ୱର ନିକଟବର୍ତ୍ତୀ ଚାନ୍ଦବାଲି ନାମକ ସାମୁଦ୍ରିକ ବନ୍ଦରରୁ ଷ୍ଟୀମର ଯୋଗେ କଲିକତା ଆସିବାକୁ ଚାରି, ପାଞ୍ଚ ଦିନ ସମୟ ଲାଗୁଥିଲା ଏବଂ ପଥକଷ୍ଟ ମଧ୍ୟ ଖୁବ୍ ଭୋଗିବାକୁ ପଡୁଥିଲା । ସୁତରାଂ ପୁତ୍ରବତ୍ସଳ ପିତା ମଧୁସୂଦନଙ୍କୁ ଏତେଦୂର ପଠାଇବାକୁ ସମ୍ମତ ନହେବାରୁ ତାଙ୍କର ଆଉ କଲେଜରେ ପଢ଼ା ହେଲାନାହିଁ । ମାନସାପ୍ତ ଗଣନାରେ ଛାତ୍ରାବସ୍ଥା ଏଇଠାରେ ଶେଷ ହେଲେ ମଧ୍ୟ ଯେଉଁ ଜ୍ଞାନପିପାସା ତାଙ୍କ ଜୀବନରେ ନିତ୍ୟ ଜାଗ୍ରତ ଥିଲା, ତାହା ଆଜୀବନ ତାହାଙ୍କୁ ଜ୍ଞାନଲାଭରେ ନିୟୋଜିତ ରଖିଥିଲା ।



# ତୃତୀୟ ପରିଚ୍ଛେଦ

## କର୍ମଜୀବନ

### (କ) ଯାଜପୁର, ବାଲେଶ୍ୱର ଓ କଟକରେ ସହକାରୀ ଶିକ୍ଷକତା

ମଧୁସୂଦନ ଏଫ୍. ଏ. ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ପୁରୀ ଜିଲ୍ଲା ସ୍କୁଲର ତୃତୀୟ ଶିକ୍ଷକ ରୂପେ ମନୋନୀତ ହେଲେ, କିନ୍ତୁ ତଦାନୀନ୍ତନ ଇନସ୍ପେକ୍ଟର ମାର୍ଟିନ ସାହେବ ବଙ୍ଗ ଦେଶରୁ ଅନ୍ୟ ଏକ ଜଣଙ୍କୁ ଉକ୍ତ ପଦରେ ନିଯୁକ୍ତ କରି ପଠାଇବାରୁ ମଧୁସୂଦନ ଉକ୍ତ କାର୍ଯ୍ୟଟି ପାଇଲେ ନାହିଁ । କର୍ମଜୀବନରେ ପ୍ରଥମେ ଏହିପରି ଆଶା ଭଙ୍ଗ ହେବାରୁ ମଧୁସୂଦନ ଯେଉଁ ଆଘାତ ପାଇଲେ, ତାହା ତାଙ୍କ ହିତକାମୀ ବନ୍ଧୁ ରାଧାନାଥ ରାୟଙ୍କୁ ମଧ୍ୟ ବ୍ୟଥିତ କରିଥିଲା । ସେତେବେଳେ ରାଧାନାଥ ବାଲେଶ୍ୱର ଜିଲ୍ଲାର ଡେପୁଟୀ ଇନସ୍ପେକ୍ଟର । ମାର୍ଟିନ ସାହେବ ଯେତେବେଳେ ଓଡ଼ିଶାର ସ୍କୁଲ ପରିଦର୍ଶନ କରିବାକୁ ଆସିଲେ, ବାଲେଶ୍ୱରରେ ତାହାଙ୍କ ସହିତ କଥା ପ୍ରସଙ୍ଗରେ ରାଧାନାଥ ମଧୁସୂଦନଙ୍କ କଥା ଉଲ୍ଲେଖ କରି କହିଥିଲେ, "ମଧୁସୂଦନ ରାଓଙ୍କୁ ପୁରୀ ସ୍କୁଲ ନିଯୋଗ ବିଷୟରେ ହତାଶ କରି ହୋଇଅଛି । ଏହା ଉଚିତ ହୋଇନାହିଁ । ସେ ଏଫ୍. ଏ. ପାସ୍ କଲେ ମଧ୍ୟ ଅନେକ ବି. ଏ. ଉପାଧିଧାରୀଙ୍କ ଅପେକ୍ଷା ତାଙ୍କ ଯୋଗ୍ୟତା ଅଧିକ ବୋଲି ମୁଁ ମନେକରେ । ଓଡ଼ିଶାରେ ତାଙ୍କ ପରି-ଯୋଗ୍ୟ ବ୍ୟକ୍ତି ଆଉ ନାହିଁ କହିଲେ ଚଳେ । ସୁତରାଂ ସର୍ବାଗ୍ରେ ତାହାଙ୍କୁ ନିଯୁକ୍ତ କରିବା ଉଚିତ ଥିଲା ।

ରାଧାନାଥଙ୍କ କଥାରେ ମାର୍ଟିନ ସାହେବ ନିଜର ଭୁଲ୍ ବୁଝିପାରି ମଧୁସୂଦନଙ୍କୁ ଉପଯୁକ୍ତ କର୍ମରେ ନିଯୋଗ କରିବା ବିଷୟଟି ମନେରଖିଥିଲେ । କଟକ ହାଇସ୍କୁଲରେ ସେତେବେଳେ ଶାରଦା ପ୍ରସାଦ ସାନ୍ୟାଲ ନାମରେ ଜଣେ ଅତିରିକ୍ତ ଶିକ୍ଷକ ଥିଲେ । ସେ କିଞ୍ଚିତ୍ ଅପ୍ରକୃତିସ୍ଥ ଥିବା ଯୋଗୁଁ ଇନସ୍ପେକ୍ଟର ତାହାଙ୍କୁ ପଦଚ୍ୟୁତ କରି ମଧୁସୂଦନଙ୍କୁ ମାସିକ ୨୦ ଟଙ୍କା ବେତନରେ ଉକ୍ତ ପଦରେ ନିଯୋଗ କରିବାର ପ୍ରସ୍ତାବ କରିଥିଲେ । କିନ୍ତୁ

ତତ୍ପରେ ଉର୍ଦ୍ଧ୍ୱତନ କର୍ତ୍ତୃପକ୍ଷଙ୍କ ନିକଟରୁ ସ୍କୁଲର ଉକ୍ତ ପଦଟି ଉଠାଇ ଦେବାର ନିର୍ଦ୍ଦେଶ ଆସିଲା । ଇନସ୍‌ପେକ୍ଟର ସାହେବ ଅନନ୍ୟୋପାୟ ହୋଇ ଯାଜପୁରର ମଧ୍ୟଇଂରାଜୀ ସ୍କୁଲର ପ୍ରଧାନଶିକ୍ଷକ ପଦ ଖାଲି ହୋଇଛି ଶୁଣିବା ମାତ୍ରେ ମଧୁସୂଦନଙ୍କୁ ମାସିକ ୪୫ ଟଙ୍କା ବେତନରେ ଉକ୍ତ ପଦରେ ନିଯୁକ୍ତ କଲେ । ଏହାପରେ ମଧୁସୂଦନଙ୍କୁ ଯାଜପୁରରେ ପ୍ରଥମ ସରକାରୀ କାର୍ଯ୍ୟରେ ପ୍ରବେଶର ସୁଯୋଗ ମିଳିଲା ।

ମଧୁସୂଦନ ଯେତେବେଳେ ଯାଜପୁର ଆସିଲେ ତାଙ୍କର ସେତେବେଳେ ବୟସ ମାତ୍ର ୧୮ ବର୍ଷ । ପତ୍ନୀଙ୍କର ବୟସ ୧୫ ବର୍ଷ । ଉଦାରହୃଦୟ ପିତା ଭଗୀରଥି ବଧୂଙ୍କୁ ମଧ୍ୟ ପୁତ୍ର ସହିତ କର୍ମସ୍ଥଳକୁ ପ୍ରେରଣ କରିବାକୁ ସ୍ଥିର କରି ସ୍ୱୀୟ ପତ୍ନୀ (ମଧୁସୂଦନଙ୍କ ବିମାତା) ତୁଳସୀ ବାଈଙ୍କ ବିଧବା ଜ୍ୟେଷ୍ଠା ଭଗିନୀଙ୍କୁ ଏମାନଙ୍କ ଅଭିଭାବିକା ସ୍ୱରୂପରେ ଏବଂ କନିଷ୍ଠ ପୁତ୍ର ଜଗନ୍ନାଥ ଓ ତାହାଙ୍କ ବାଳିକା ବଧୂଙ୍କୁ ମଧ୍ୟ ଏମାନଙ୍କ ସଙ୍ଗରେ ଯାଜପୁରକୁ ପଠାଇଥିଲେ ।

ସେତେବେଳେ ପୁରୀଠାରୁ ଯାଜପୁର ଯିବାକୁ ୫।୭ ଦିନ ଲାଗୁଥିଲା । ଗୋ-ଯାନରେ ଯିବାକୁ ହେଉଥିଲା ଏବଂ ବାଟରେ ଛୋଟ ବଡ଼ ଅନେକ ନଦୀ ନୌକା ଦ୍ୱାରା ପାର ହେବାକୁ ପଡୁଥିଲା । ସେ ସମୟରେ ପଥ ମଧ୍ୟ ବିପଦ-ସଙ୍କୁଳ ଥିଲା । ପ୍ରତିଦିନ ପଥ ମଧ୍ୟସ୍ଥ ପାନ୍ଥଶାଳାରେ ବିଶ୍ରାମ ଓ ଆହାରାଦି ପାଇଁ ପର୍ଣ୍ଣକୁଟୀରରେ (ବ୍ୟବସାୟୀମାନଙ୍କ ଦ୍ୱାରା ପରିଚାଳିତ) ରହି ଆହାରାଦି ସମାପ୍ତ କରି ପୁନରାୟ ଗୋ-ଯାନରେ ଚଢିବାକୁ ହେଉଥିଲା ।

ଯାଜପୁରରେ ଉତ୍କଳର ବିଶିଷ୍ଟ କଥା ସାହିତ୍ୟିକ ଫକୀର ମୋହନଙ୍କ ସହିତ ମଧୁସୂଦନଙ୍କର ପ୍ରଥମ ପରିଚୟ ହେଲା ଏବଂ କ୍ରମଶଃ ଏହା ଘନିଷ୍ଠତାରେ ପରିଣତ ହେଲା । ଉଭୟେ ଉଭୟଙ୍କୁ ଅନ୍ତରଙ୍ଗ ବନ୍ଧୁ ରୂପରେ ଆଙ୍କଡ଼ିବାକୁ ଯାଇଛନ୍ତି ।

ଯାଜପୁର ବିଦ୍ୟାଳୟର ଛାତ୍ରମାନଙ୍କ ମଧ୍ୟରୁ କେହି କେହି ମଧୁସୂଦନଙ୍କ ସମବୟସ୍କ ଥିଲେ । କେହି କେହି ତାଙ୍କଠାରୁ ଅପେକ୍ଷା ବୟସରେ ବଡ଼ ଥିଲେ । ସେଥିପାଇଁ ଏହି ଅଳ୍ପବୟସ୍କ ଶିକ୍ଷକଙ୍କୁ ସେମାନେ ପ୍ରଥମେ ଶ୍ରଦ୍ଧା

ଓ ସମ୍ଭ୍ରମ ଦୃଷ୍ଟିରେ ଦେଖିପାରି ନଥିଲେ । କିନ୍ତୁ ମଧୁସୂଦନଙ୍କ ଗାମ୍ଭୀର୍ଯ୍ୟ ସ୍ୱଭାବ ଓ ତେଜସ୍ୱିତାର ପରିଚୟ ପାଇ ସେମାନେ ଅଳ୍ପ ସମୟ ମଧ୍ୟରେ ତାଙ୍କ ପ୍ରତି ଶ୍ରଦ୍ଧା ଓ ସମ୍ମାନସୂଚକ ବ୍ୟବହାର କରିବାକୁ ଆରମ୍ଭ କଲେ । ମଧୁସୂଦନ ଯାଜପୁରରେ ଦେଢ଼ ବର୍ଷ କାର୍ଯ୍ୟ କରିବା ପରେ, ବାଲେଶ୍ୱର ଜିଲ୍ଲା ସ୍କୁଲରେ ହେଡ୍‌ମାଷ୍ଟର ପଦ ଶୂନ୍ୟ ହେଲା । ବାଲେଶ୍ୱର ଜିଲ୍ଲା ସମିତିର ତଦାନୀନ୍ତନ ସଭାପତି ମାଜିଷ୍ଟ୍ରେଟ୍ ବୀମସ୍ ସାହେବ ଉକ୍ତ ସ୍କୁଲର ଦ୍ୱିତୀୟ ଶିକ୍ଷକ ଉମାପ୍ରସାଦଙ୍କୁ ହେଡ୍‌ମାଷ୍ଟର ପଦରେ ନିଯୁକ୍ତ କରି ମଧୁସୂଦନଙ୍କୁ ଦ୍ୱିତୀୟ ଶିକ୍ଷକ ଭାବେ ନିଯୁକ୍ତ କଲେ । କିନ୍ତୁ ମଧୁସୂଦନ ଏହି କାର୍ଯ୍ୟରେ ଯୋଗଦାନ କରିବା ପୂର୍ବରୁ ପୁଣି (ତୃତୀୟ ବାର) ବିଘ୍ନ ଉପସ୍ଥିତ ହେଲା । ତତ୍କାଳୀନ ଇନସ୍‌ପେକ୍ଟର ହପକିନ୍‌ସ ସାହେବ, ଜିଲ୍ଲା ସମିତିର ଏହି ନିଯୋଗକୁ ସେମାନଙ୍କର ଅନଧିକାର ଚର୍ଚ୍ଚା ବୋଲି ଘୋର ପ୍ରତିବାଦ କରିବାକୁ ଲାଗିଲେ । ଏହି ଅପ୍ରୀତିକର ଘଟଣାରେ ସାଧୁ ମଧୁସୂଦନ ବ୍ୟଥିତ ହୋଇ ଫେରି ଆସିବାକୁ ଉଦ୍ୟୋଗୀ ହେଲେ । କିନ୍ତୁ ସେ ସମୟରେ ସୌଭାଗ୍ୟବଶତଃ ବୀମସ୍ ସାହେବ ଓଡ଼ିଶାର ଅସ୍ଥାୟୀ କମିଶନର ପଦରେ ନିଯୁକ୍ତ ହେବାରୁ ସମସ୍ତ ଅସୁବିଧା ଦୂର ହୋଇଗଲା । ସେ ହଠାତ୍ କଟକରୁ ବାଲେଶ୍ୱରର ଡେପୁଟି ଇନସ୍‌ପେକ୍ଟର ରାଧାନାଥ ରାୟଙ୍କୁ ନିମ୍ନଲିଖିତ ତାର ସମ୍ବାଦ ପଠାଇଲେ—'Let Madhusudan stay where he is.' ଏହାପରେ ମଧୁସୂଦନ ଉପସ୍ଥିତ ବିଘ୍ନ ସବୁ ଅତିକ୍ରମ କରି ୧୮୭୩ ଖ୍ରୀଷ୍ଟାବ୍ଦର ଅକ୍ଟୋବର ୨୯ ତାରିଖରେ ବାଲେଶ୍ୱର ଜିଲ୍ଲା ସ୍କୁଲରେ ଦ୍ୱିତୀୟ ଶିକ୍ଷକ ପଦରେ ଯୋଗଦାନ କଲେ ।

ଉତ୍କଳର ଆଧୁନିକ ସାହିତ୍ୟ ସ୍ରଷ୍ଟା ରୂପେ ତିନି ଜଣଙ୍କ ନାମ ବର୍ତ୍ତମାନ କାଳରେ ଉଲ୍ଲେଖ ହୋଇ ଆସୁଅଛି । ସେହି ଫକୀର ମୋହନ, ରାଧାନାଥ ଓ ମଧୁସୂଦନଙ୍କ ସାହିତ୍ୟିକ ମିଳନ ଏହି ବାଲେଶ୍ୱରରେ ପ୍ରଥମେ ସଙ୍ଘଟିତ ହେଲା ଏବଂ ଏହିଠାରେ ଯଥାର୍ଥ ସାହିତ୍ୟ ଚର୍ଚ୍ଚାର ସୂତ୍ରପାତ ହେଲା। ସେ ଯୁଗରେ ଓଡ଼ିଆ ଭାଷାରେ ବିଦ୍ୟାଳୟ ପାଠ୍ୟ କୌଣସି ପୁସ୍ତକ ମୁଦ୍ରିତ ହୋଇନଥାଏ । ସ୍ୱର୍ଗୀୟ ଦାମୋଦର ପ୍ରସାଦ ଦାସଙ୍କ ପୁସ୍ତକାଳୟରୁ ବହୁ ବଙ୍ଗଳା ପୁସ୍ତକ ସଂଗ୍ରହ କରି ଓ ତାଳପତ୍ର ପୋଥିରେ ଲିଖିତ ରସକଲ୍ଲୋଳାଦି ପ୍ରାଚୀନ କାବ୍ୟ ଗ୍ରନ୍ଥାଦିର ଆଲୋଚନା କରି ସେମାନେ ଓଡ଼ିଆରେ ନୂତନ

ପାଠ୍ୟ ପୁସ୍ତକ ରଚନା କରିବାକୁ ଉଦ୍ୟୋଗୀ ହେଲେ । କୁମାର ବୈକୁଣ୍ଠ ନାଥ ଦେ (ପରବର୍ତ୍ତୀ କାଳରେ ମହାରାଜା) ପୃଷ୍ଠପୋଷକ ହେବାରୁ ଏମାନଙ୍କର ଏହି ପ୍ରଚେଷ୍ଟା କାର୍ଯ୍ୟରେ ପରିଣତ ହେବାକୁ ଲାଗିଲା । ଏହାର ୫ ବର୍ଷ ପୂର୍ବରୁ ବୟୋଜ୍ୟେଷ୍ଠ ଫକୀର ମୋହନଙ୍କ କେତେଜଣ ବନ୍ଧୁଙ୍କ ସହ ମାତୃଭାଷାର ଉନ୍ନତିକଳ୍ପେ ଗୋଟିଏ ମୁଦ୍ରାଯନ୍ତ୍ର ସ୍ଥାପନ କରି 'ବୋଧ-ଦାୟିନୀ' ଓ 'ବାଲେଶ୍ୱର-ସମ୍ବାଦ-ବାହିକା ପତ୍ରିକା' ପ୍ରକାଶ କରୁଥିଲେ । ନୂତନ ପାଠ୍ୟ ପୁସ୍ତକ ରଚନାର ସୂତ୍ରପାତ ମଧ୍ୟ ଏହି ସମୟରେ ହୋଇଥିଲା । ବର୍ତ୍ତମାନ ପୁଣି ବୈକୁଣ୍ଠନାଥଙ୍କର ନବପ୍ରତିଷ୍ଠିତ ମୁଦ୍ରାଯନ୍ତ୍ରର ରାଧାନାଥ ଓ ମଧୁସୂଦନଙ୍କ ଲିଖିତ ନୂତନ ନୂତନ ପୁସ୍ତକ ପ୍ରକାଶିତ ହେବାର ଆୟୋଜନ ହେଲା ।

ଆମ୍ଭେମାନେ ଶୁଣିଅଛୁ ଏହି ଦୁଇବନ୍ଧୁଙ୍କ ଯତ୍ନରେ ଉକ୍ତ ମୁଦ୍ରଣାଳୟରେ 'ଉତ୍କଳ ଦର୍ପଣ' ନାମରେ ଯେଉଁ ଓଡ଼ିଆ ମାସିକ ପତ୍ର ପ୍ରକାଶିତ ହେଲା ବିଷୟ ଗୌରବରେ ଏହାର ସମକକ୍ଷ ସାହିତ୍ୟିକ ପତ୍ରିକା ଓଡ଼ିଶାରେ ବହୁକାଳ ପର୍ଯ୍ୟନ୍ତ ପ୍ରକାଶିତ ହୋଇନଥିଲା । ଏହି ଦୁଇ ବନ୍ଧୁ ଉକ୍ତ ପତ୍ରିକାର ପ୍ରଧାନ ଲେଖକ ଥିଲେ ଏବଂ ଉଭୟଙ୍କର ପ୍ରଥମ ଲେଖାଗୁଡ଼ିକ ଏଥିରେ ପ୍ରକାଶିତ ହୋଇଥିଲା । ରାଧାନାଥଙ୍କର 'ଇଟାଲୀୟ ଯୁବା', 'ବିବେକୀ' ପ୍ରଭୃତି ଗଦ୍ୟ ରଚନା ମେଘଦୂତରେ ପଦ୍ୟାନୁବାଦ ଏବଂ ମଧୁସୂଦନଙ୍କର 'ପ୍ରଣୟର ଅଦ୍ଭୁତ ପରିଣାମ' ନାମକ କ୍ଷୁଦ୍ର ଉପନ୍ୟାସ ଓ ଚନ୍ଦ୍ର, ତାରା, ଉଲ୍‌କାପିଣ୍ଡ, ସୂର୍ଯ୍ୟ, ଆଗ୍ନେୟଗିରି ପ୍ରଭୃତି ପ୍ରବନ୍ଧ ଓ ନିଶୀଥ ଚିନ୍ତା, ଶ୍ମଶାନ, ରଘୁବଂଶର ରାମଙ୍କର ଅଯୋଧ୍ୟା ପ୍ରତ୍ୟାଗମନର ପଦ୍ୟାନୁବାଦ ଏହି ପତ୍ରିକାରେ ପ୍ରଥମେ ପ୍ରକାଶିତ ହେଲା । ତାହାପରେ ଅନ୍ୟାନ୍ୟ ପ୍ରବନ୍ଧ ଓ କବିତା ସହ ଏହିସବୁ ପ୍ରବନ୍ଧ ଓ କବିତା ସଂକଳିତ ହୋଇ ଯଥାକ୍ରମେ 'ପ୍ରବନ୍ଧମାଳା' ଓ 'କବିତାବଳୀ' ନାମରେ ପ୍ରକାଶିତ ହେଲା । ଏହି ଓଡ଼ିଆ ପୁସ୍ତକଦ୍ୱୟ ସ୍କୁଲ ପାଠ୍ୟ ରୂପେ ଓଡ଼ିଶାରେ ଦୀର୍ଘକାଳ ପ୍ରଚଳିତ ଥିଲା ।

ମଧୁସୂଦନଙ୍କ ଯଥାର୍ଥ ବିଦ୍ୟାଚର୍ଚ୍ଚା ଓ ସାହିତ୍ୟ ସେବାର ମୂଳଭିତ୍ତି ଏହିଠାରେ ସ୍ଥାପିତ ହେଲା । ଓଡ଼ିଆ ଭାଷାରେ ସୁଲେଖକ ନାମର ପ୍ରତିଷ୍ଠା ସେ ଏହିଠାରେ ଲାଭ କଲେ ।

ମାର୍ଟିନ ସାହେବଙ୍କ ପ୍ରସ୍ତାବତ ପୂର୍ବଲିଖିତ କଟକ ହାଇସ୍କୁଲରେ ଅତିରିକ୍ତ ଶିକ୍ଷକପଦ ଦୁଇ ବର୍ଷ ପରେ ପୁନଃସ୍ଥାପିତ ହେବାରୁ ମଧୁସୂଦନଙ୍କୁ ଉକ୍ତ ପଦରେ ୭୫ ଟଙ୍କା ମାସିକ ବେତନରେ ନିଯୁକ୍ତ କରାଗଲା ।

ବାଲେଶ୍ୱରରୁ କଟକ ଫେରିବା ପୂର୍ବରୁ ଏଠାରେ ତାଙ୍କ ଜ୍ୟେଷ୍ଠା କନ୍ୟା ବାସନ୍ତୀର ଜନ୍ମ ହେଲା (୧୮୭୪ ଜୁନ୍ ୫ ତାରିଖ) ।

୧୮୭୫ ଖ୍ରୀଷ୍ଟାବ୍ଦରୁ ମଧୁସୂଦନ କଟକରେ ସ୍ଥାୟୀ ଭାବରେ ବାସ କରି ଯାଇଛନ୍ତି । କେବଳ ମଝିରେ ୧୮୯୩ ଖ୍ରୀଷ୍ଟାବ୍ଦରେ କେତେ ମାସ ପାଇଁ ବାଲେଶ୍ୱରରେ ଡେପୁଟି ଇନସ୍‌ପେକ୍ଟର କାର୍ଯ୍ୟ କରିଥିଲେ ।

କଟକ ହାଇସ୍କୁଲରେ ପ୍ରଶଂସା ସହିତ ୧ ବର୍ଷ କାର୍ଯ୍ୟ କରିବା ପରେ ଏହି ସ୍କୁଲର ଦ୍ୱିତୀୟ ଶିକ୍ଷକ ପଦ ଶୂନ୍ୟ ହେବାରୁ ମଧୁସୂଦନଙ୍କ ଯୋଗ୍ୟତାରେ ସନ୍ତୁଷ୍ଟ କର୍ତ୍ତୃପକ୍ଷ ଅନ୍ୟ ପ୍ରାର୍ଥୀ ଥିବା ସତ୍ତ୍ୱେ ମଧୁସୂଦନଙ୍କୁ ଏହି ପଦରେ ନିଯୁକ୍ତ କଲେ । ସେତେବେଳେ ଏହି ସ୍କୁଲରେ ଅନେକ ଦୁର୍ଦ୍ଦାନ୍ତ ଓ ଦୁଃଶୀଳ ଛାତ୍ର ଥିଲେ । ସେମାନେ ତାଙ୍କ ଚରିତ୍ର ପ୍ରଭାବରେ ଓ ସ୍ନେହ ଶାସନରେ ଅଳ୍ପଦିନ ମଧ୍ୟରେ ତାଙ୍କ ବଶୀଭୂତ ହେଲେ ଏବଂ ସେମାନଙ୍କ ଜୀବନର ଗତି ପରିବର୍ତ୍ତିତ କରି ସେମାନେ ସତ୍‌ପଥରେ ଚାଳିତ ହେଲେ । ଏହି ସମୟରେ ଶିକ୍ଷାପ୍ରାପ୍ତ କଟକ ହାଇସ୍କୁଲର ବହୁ ଛାତ୍ର ପରବର୍ତ୍ତୀ କାଳରେ ଉତ୍କଳର ନାନା ସ୍ଥାନରେ କାର୍ଯ୍ୟ କରି ସୁନାମ ଅର୍ଜନ କରିଯାଇଛନ୍ତି ।

ଏହି ସମୟରେ ମହାମତି ଟି. ର୍‍ୟାଭେନ୍‌ସ, ଆଇ. ସି. ଏସ୍. ଓଡ଼ିଶା ବିଭାଗର କମିଶନର ଏବଂ ଗଡ଼ଜାତର ଦେଶୀୟ ରାଜ୍ୟଗୁଡ଼ିକର ସୁପରିଣ୍ଟେଣ୍ଡେଣ୍ଟ ଥିଲେ (୧୮୭୦-୧୮୭୮) । ଜଣେ ଲୋକପ୍ରିୟ ସୁଶାସକ ଏବଂ ଉତ୍କଳର ପ୍ରକୃତ ବନ୍ଧୁ ରୂପେ ସମଗ୍ର ଓଡ଼ିଶାରେ ସମ୍ମାନିତ । ଶିକ୍ଷା କ୍ଷେତ୍ରରେ ତାଙ୍କର ଅବଦାନ ଅପରିସୀମ । ପ୍ରଧାନତଃ ତାଙ୍କରି ଯତ୍ନ ଏବଂ ଦୁଇ ବର୍ଷ ଆନ୍ଦୋଳନ ଫଳରେ ମୟୂରଭଞ୍ଜର ମହାରାଜ ପ୍ରମୁଖ ଉତ୍କଳର ରାଜନ୍ୟବର୍ଗ ଓ ଅନ୍ୟାନ୍ୟ ବଦାନ୍ୟ ବ୍ୟକ୍ତିମାନଙ୍କ ଅର୍ଥାନୁକୂଲ୍ୟରେ କଟକ ଜିଲ୍ଲା-ସ୍କୁଲର ଦ୍ୱିତୀୟ ଶ୍ରେଣୀରେ କଲେଜର ପ୍ରଥମ ଶ୍ରେଣୀ ଭାବରେ ବ୍ୟବହୃତ କରାହେଲା ଏବଂ ର୍‍ୟାଭେନ୍‌ସ ସାହେବଙ୍କ ପ୍ରତି କୃତଜ୍ଞତାର ଚିହ୍ନସ୍ୱରୂପ ୧୮୭୮ ଖ୍ରୀଷ୍ଟାବ୍ଦରୁ

ଏହା ର୍ୟାଭେନ୍‌ଶା କଲେଜ ନାମରେ ପରିଚୟ ଲାଭ କଲା । ଉକ୍ତ ବର୍ଷରୁ କଟକ ହାଇସ୍କୁଲ 'ର୍ୟାଭେନ୍‌ଶା କଲେଜିଏଟ୍ ସ୍କୁଲ' ନାମରେ ଅଭିହିତ ହୋଇ ଆସୁଅଛି ।

## (ଖ) ଡେପୁଟି-ଇନସ୍‌ପେକ୍ଟର ପଦ

କଲେଜର ଅଧ୍ୟକ୍ଷଙ୍କ ଅଧୀନରେ ଏହି କଲେଜିଏଟ୍ ସ୍କୁଲରେ ପ୍ରଶଂସାର ସହିତ ପ୍ରାୟ ୩ ବର୍ଷ କାଳ ଦ୍ୱିତୀୟ ଶିକ୍ଷକର କର୍ମ ନିର୍ବାହ କରିବା ପରେ ଅନୁମାନ ୧୮୮୦ ଖ୍ରୀଷ୍ଟାବ୍ଦରେ ମଧୁସୂଦନ କଟକ ଜିଲ୍ଲାର ସ୍କୁଲସମୂହର ଡେପୁଟି ଇନସ୍‌ପେକ୍ଟର ପଦରେ ନିଯୁକ୍ତ ହେଲେ । ଏହି ପଦର ବେତନ ୮୦-୧୦୦ ଟଙ୍କା ଥିଲା । ମଧୁସୂଦନଙ୍କ ଆପ୍ରାଣ ଚେଷ୍ଟାରେ ତାହା କିପରି ପରିବର୍ତ୍ତିତ ହେଲା ଅତଃପର ତାହାର କିଞ୍ଚିତ୍ ବିବରଣୀ ପ୍ରଦତ୍ତ ହେଉଅଛି । ସେଥିରୁ ଉପଲବ୍‌ଧି କରିହେବ ଓଡ଼ିଶାରେ ନବଯୁଗ ପ୍ରବର୍ତ୍ତନର ଭିତରେ ମଧୁସୂଦନଙ୍କ କୃତିତ୍ୱ କେତେ ପରିମାଣରେ ଥିଲା ।

ବଙ୍ଗ ଦେଶର ଯେପରି ଉଇଲିୟମ କେରି, ମାର୍ଶମାନ ପ୍ରମୁଖ ମିଶନାରୀଗଣ ପ୍ରଥମ ମୁଦ୍ରାଯନ୍ତ୍ର ସ୍ଥାପନର ଓ ଗଦ୍ୟ ପୁସ୍ତକାଦି ରଚନାର ପ୍ରବର୍ତ୍ତକ ଥିଲେ ଓଡ଼ିଶାରେ ମଧ୍ୟ ସେହିପରି ଖ୍ରୀଷ୍ଟାନ ମିଶନାରିଗଣଙ୍କ ଦ୍ୱାରା ପ୍ରଥମ ମୁଦ୍ରାଯନ୍ତ୍ର ସ୍ଥାପିତ ହୋଇ ଓଡ଼ିଆ ଭାଷାରେ ପାଠ୍ୟପୁସ୍ତକ, ସମ୍ବାଦପତ୍ର ପ୍ରଭୃତି ପ୍ରସ୍ତୁତ ହୋଇଥିଲା । ଓଡ଼ିଶାର ଏହି ଶ୍ରେଣୀରେ ମିଶନାରୀମାନଙ୍କ ମଧ୍ୟରେ ପ୍ରଥମେ ରେଭେରେଣ୍ଡ ଶଟନ ସାହେବଙ୍କ ନାମ ଉଲ୍ଲେଖଯୋଗ୍ୟ । ଏହି ଶଟନ୍ ସାହେବଙ୍କ ଲିଖିତ ଓଡ଼ିଆ ଅଭିଧାନ, ଇତିହାସ ଓ ସାହିତ୍ୟ ପୁସ୍ତକ ତତ୍କାଳୀନ ଓଡ଼ିଆ ଗ୍ରନ୍ଥମାନଙ୍କର ଅବଲମ୍ବନ ଥିଲା । ତାଙ୍କ ଲିଖିତ ସାର ସଂଗ୍ରହର ପ୍ରଥମ ଓ ଦ୍ୱିତୀୟ ଭାଗ ଯଥାକ୍ରମେ ପ୍ରାଥମିକ ଓ ମଧ୍ୟ ଶ୍ରେଣୀର ବିଦ୍ୟାଳୟରେ ଓଡ଼ିଆ ପାଠ୍ୟପୁସ୍ତକ ଥିଲା । ଏଥିମଧ୍ୟରେ ସଂକଳିତ କେତୋଟି ରଚନାର ନାମ ଜଳୀୟବାଷ୍ପ କଥା, ପକ୍ଷୀର କଥା, ମନର ଧୈର୍ଯ୍ୟର କଥା । ସମ୍ଭବତଃ ଏଗୁଡିକ ବଙ୍ଗ ଭାଷାରୁ ଅନୂଦିତ କିନ୍ତୁ ଏହି ଓଡ଼ିଆ ଗଦ୍ୟ ରଚନା ଏପରି ଅଦ୍ଭୁତ ଥିଲା ଯେ କୌଣସି ଅଭିଧାନ ବା ବ୍ୟାକରଣ ସାହାଯ୍ୟରେ ସରଳ ଭାବରେ ଏହାର ଅର୍ଥବୋଧ କରିବା ଦୁଷ୍କର ହେଉଥିଲା । ଏହାପରେ ପରଲୋକଗତ ଉତ୍କଳର-ହିତୈଷୀ ବିଚ୍ଛନ୍ଦ ପଟ୍ଟନାୟକଙ୍କୃତ ବଙ୍ଗଳା

'ସ୍ତୁଚପାଠ' ପ୍ରଭୃତିର ଓଡ଼ିଆ ଅନୁବାଦ ପାଠ୍ୟ ହେଲା । ତାହାର ଭାଷା ମଧ୍ୟ ବିକୃତ ଓ ଅଶୁଦ୍ଧ ଥିଲା ଏବଂ ବହୁ ସ୍ଥାନରେ ଅନୁବାଦରେ ପ୍ରକୃତ ଓଡ଼ିଆ ଭାଷା ବ୍ୟବହୃତ ହୋଇନଥିଲା । ଅଧ୍ୟାପକ ରାମପ୍ରସନ୍ନ ମୁଖୋପାଧ୍ୟାୟକୃତ ବଙ୍ଗଳା ପଦ୍ୟମାଳା, ପଦ୍ୟପାଠ ପ୍ରଭୃତିର ଓଡ଼ିଆ ଅନୁବାଦ କବିତା ପୁସ୍ତକ ରୂପେ ସ୍କୁଲସମୂହରେ ପଠିତ ହେଉଥିଲା । ଏହି ଅନୁବାଦରେ ମଧ୍ୟ ଓଡ଼ିଆ ଭାଷାର ଶୁଦ୍ଧତା ଯଥାଯଥ ରକ୍ଷିତ ହୋଇନଥିଲା ।

ମଧୁସୂଦନ ଡ଼େପୁଟି ଇନସ୍‌ପେକ୍‌ଟର ହୋଇ ସ୍କୁଲ ସମୂହର ଓଡ଼ିଆ ପାଠ୍ୟପୁସ୍ତକର ଏହି ଶୋଚନୀୟ ଅବସ୍ଥା ଓ ଅଭାବ ଦେଖି ଅତ୍ୟନ୍ତ ବ୍ୟଥିତ ହେଲେ ଏବଂ ଏହି ଅବସ୍ଥାର ପରିବର୍ତ୍ତନ ନିମିତ୍ତ ବଦ୍ଧପରିକର ହୋଇ ପାଠ୍ୟ ପୁସ୍ତକ ରଚନାରେ ପ୍ରବୃତ୍ତ ହେଲେ । କବିବର ରାଧାନାଥ ରାୟ ଏହି ସମୟରେ ଓଡ଼ିଶାର ସ୍କୁଲ ସମୂହର ଜଏଣ୍ଟ ଇନସ୍‌ପେକ୍‌ଟର । ସେ ଏବଂ ମଧୁସୂଦନ ଏହି ଚେଷ୍ଟାରେ ସମ୍ପୂର୍ଣ୍ଣ ଅନୁକୂଳ ଓ ପୃଷ୍ଠପୋଷକ ଥିଲେ । ରାଜକାର୍ଯ୍ୟରେ ନିଯୁକ୍ତ ଥିବା ସତ୍ତ୍ୱେ ମଧୁସୂଦନ କଠୋର ପରିଶ୍ରମ କରି ବର୍ଣ୍ଣ ଶିକ୍ଷା ଠାରୁ ଆରମ୍ଭ କରି ମଧ୍ୟ ଛାତ୍ରବୃତ୍ତି ପର୍ଯ୍ୟନ୍ତ ସମସ୍ତ ଶ୍ରେଣୀରେ ଉପଯୋଗୀ ସାହିତ୍ୟ ପାଠ୍ୟପୁସ୍ତକ ଉତ୍କଳର ବିଦ୍ୟାଳୟଗୁଡ଼ିକୁ ଉପହାର ପ୍ରଦାନ କରିଥିଲେ । ସେହିଦିନଠାରୁ ଦୀର୍ଘକାଳ ପର୍ଯ୍ୟନ୍ତ ଏହିଗୁଡ଼ିକ ଓଡ଼ିଶାରେ ପାଠ୍ୟପୁସ୍ତକ ଭାବରେ ଗୃହୀତ ହୋଇଥିଲା ।

ପ୍ରଥମ ଖଣ୍ଡ 'ଛନ୍ଦମାଳା'ର କବିତାଗୁଡ଼ିକ ଅଳ୍ପବୟସ୍କ ଶିଶୁମାନଙ୍କ ପାଇଁ ରଚିତ । ଏହା ବର୍ଣ୍ଣ ପରିଚୟର ପର ଶ୍ରେଣୀରେ ପାଠ୍ୟ ଥିଲା । ଏହାର ପ୍ରଥମ କବିତାଟିରେ ଜଗତ୍ପିତାଙ୍କ ପ୍ରତି ଭକ୍ତି ଓ ପ୍ରୀତି ଅତି ସରଳ ଭାବରେ ବର୍ଣ୍ଣିତ ହୋଇଅଛି । ଜଗତ୍‌ପିତା ପରମେଶ୍ୱରଙ୍କ ପ୍ରତି ଏହି ପ୍ରୀତି ଓ ଭକ୍ତିଭାବ ବାଲ୍ୟକାଳରୁ ହୃଦୟରେ ଜାଗ୍ରତ ହେଲେ ମାନବ ସନ୍ତାନର ଅନ୍ତରରେ ସ୍ୱାଭାବିକ୍ ଭାବରେ ଭଗବତ୍ ପ୍ରୀତି ସଞ୍ଚାରିତ ହୁଏ । ଏହି ପୁସ୍ତକର ଷଡ଼ଋତୁ ବର୍ଣ୍ଣନା ସରଳତା ଓ ସ୍ୱାଭାବିକତା ଯୋଗୁଁ ଅନନ୍ୟ-ସାଧାରଣ । ଏହି ଋତୁଗୁଡ଼ିକର ପ୍ରତ୍ୟେକଟିର ପ୍ରୟୋଜନୀୟତା ଓ ଉପକାରିତା ଏଥିରେ ଅତି ସରଳ ଭାବରେ ବର୍ଣ୍ଣିତ ହୋଇଅଛି । ପ୍ରକୃତି ରାଜ୍ୟରେ ବିଭିନ୍ନ ଋତୁରେ ଯେଉଁ ଶୋଭା ଓ ସୌନ୍ଦର୍ଯ୍ୟର ପ୍ରକାଶ ହୁଏ ଓ ସେଥିମଧ୍ୟରେ ବିଧାତାଙ୍କର କଲ୍ୟାଣ ହସ୍ତ ଯେପରି କାର୍ଯ୍ୟ କରେ ତାହାର ସୁଲଳିତ ବର୍ଣ୍ଣନା

କୋମଳମତି ବାଳକବାଳିକାମାନଙ୍କ ଅନ୍ତର ସରସ କରିଦିଏ । ବାଲ୍ୟକାଳରେ ପଠିତ ଏହି କବିତାକୁ ପ୍ରୌଢ଼ ଓ ବୃଦ୍ଧ ଅବସ୍ଥାରେ ମଧ୍ୟ ଆବୃତ୍ତି କରି ଅନେକଙ୍କୁ ଏହାର ଭାବରସରେ ନିମଗ୍ନ ହେବାର ଦେଖିଅଛୁ । 'ପୃଥିବୀ ପ୍ରତି' ଓ 'ଜନ୍ମଭୂମି' କବିତାରେ ଯେଉଁ ସ୍ୱଦେଶ ପ୍ରେମ ପ୍ରକାଶିତ, ତାହା ମଧ୍ୟ ବାଲ୍ୟକାଳରୁ ଶିଶୁ ଚିତ୍ତକୁ ଦେଶପ୍ରେମରେ ଉଦ୍‌ବୁଦ୍ଧ କରେ । 'ମୋ ଜନନୀ' କବିତାଟି ବାତ୍ସଲ୍ୟରସର ଅପୂର୍ବ ନିଦର୍ଶନ ।

ଦ୍ୱିତୀୟ ଖଣ୍ଡ 'ଛନ୍ଦମାଳା' ଅପେକ୍ଷାକୃତ ବୟସ୍କ ଛାତ୍ରମାନଙ୍କ ପାଇଁ ଲିଖିତ । ଏହାର ପ୍ରଥମ କବିତା 'ସ୍ତବ'ଟି ଅଖିଳ ବ୍ରହ୍ମାଣ୍ଡପତିଙ୍କ ସ୍ତୁତି । ଏଥିରେ ବହିର୍ଜଗତରେ ଓ ଅନ୍ତର୍ଜଗତରେ ବିଭୁ କରୁଣାର ନିଦର୍ଶନ ଦେଖି ମୁଗ୍ଧ କବିର ଅନ୍ତରରୁ ଯେଉଁ ପ୍ରାର୍ଥନା ଓ ଭକ୍ତିରସ ଉତ୍ସାରିତ ହୋଇଥିଲା । ତାହାର କେତୋଟି ପଂକ୍ତି ଏହିପରି :—

> ସତ୍ୟ ପଥେ ଧର୍ମ ପଥେ ଘେନିଯାଅ ମୋତେ,
> ଭସାଅ ପରାଣ ମୋର ତବ ପ୍ରେମ ସ୍ରୋତେ;
> ପ୍ରଭୋ ପରମ ଶରଣ,
> ଏ ଜୀବନ ଶ୍ରୀଚରଣେ କଲି ସମର୍ପଣ ।

କବିତାଟିର ଉକ୍ତ କଡ଼ିଟି କେତେ ବ୍ୟାକୁଳାତ୍ମାଙ୍କ କଣ୍ଠରେ ନିତ୍ୟ ଉଚ୍ଚାରିତ ହୋଇ ସେମାନଙ୍କ ଅନ୍ତରରେ ଶକ୍ତି ଯୋଗାଇ ଆସୁଅଛି ।

ତାଙ୍କର 'କବିତାବଳୀ' ପୁସ୍ତକଟି ବିଦ୍ୟାଳୟର ଉଚ୍ଚ ଶ୍ରେଣୀରେ ପଠିତ ହେଉଥିଲା । କିଶୋରପ୍ରାଣ ଯେତେବେଳେ ବିଶ୍ୱପତିଙ୍କ ରଚନା ଆଡ଼କୁ ଜିଜ୍ଞାସୁ ଦୃଷ୍ଟିରେ ଅନାଏ, ବହିର୍ଜଗତର ବିଚିତ୍ରତା ଯେତେବେଳେ ତାହାକୁ ନାନା ବିଷୟରେ କୌତୂହଳୀ କରେ, ପୁଣି ମାନବ ସମାଜରେ ସୁଖ-ଦୁଃଖ, ଉତ୍‌ଥାନ-ପତନ ଓ ନାନାପ୍ରକାର ଅବସ୍ଥାର ପରିବର୍ତ୍ତନ ଦେଖି ଯେତେବେଳେ ତାହାର ଜିଜ୍ଞାସୁ ପ୍ରାଣ କାର୍ଯ୍ୟ-କାରଣ ଅନୁସନ୍ଧାନ ପାଇଁ ଉତ୍ସୁକ ହୁଏ । ସେତେବେଳେ ସେହି କିଶୋର ପ୍ରାଣକୁ ଫୁଟାଇବା ପାଇଁ ଭକ୍ତକବିଙ୍କ ପ୍ରୟାସ ଏହି କବିତାଗୁଡ଼ିକ ମଧ୍ୟରେ ସୁସ୍ପଷ୍ଟ । ଶୋଣ, ଧ୍ୱନି, ମାଣିଅ ଚିନ୍ତା, ଜୀବନ ଚିନ୍ତା, ପ୍ରଭୃତି କବିତା ଏହି ପ୍ରସଙ୍ଗରେ ଉଲ୍ଲେଖ-ଯୋଗ୍ୟ ।

ଜନ୍ମଭୂମିର ଗୌରବସୂଚକ ଗାଥା 'ଭାରତ ଭାବନା' କବିତା ମଧ୍ୟରେ ଭାରତର ଅତୀତ ସୌଭାଗ୍ୟ ବର୍ଣ୍ଣନା କରି ଦେଶର ତତ୍‌କାଳୀନ ଦୁରବସ୍ଥା ଦର୍ଶନରେ ବ୍ୟଥିତ କବି ଭାରତ ପାଇଁ ଭାରତୀଙ୍କ ଚରଣରେ ଯେଉଁ ମର୍ମଭେଦୀ ପ୍ରାର୍ଥନା 'ଭାରତୀ ବନ୍ଦନା'ରେ ନିବେଦନ କରିଅଛନ୍ତି, ସେହି କବିତାର କେତେକାଂଶ ଏଠାରେ ଉଦ୍ଧୃତ ହେଲା :—

ଆସ ମା ଆସ ମା ଆସ ମା ଜନନୀ,
ଆଜି ପୁଣ୍ୟ ମାଘେ ପୁଣ୍ୟ ଶ୍ରୀପଞ୍ଚମୀ;

ସୂର୍ଯ୍ୟରୁ ନବୀନ ମଧୁ ଆଗମନେ,
ହସଇ ଧରଣୀ ଆନନ୍ଦିତ ମନେ ।
ଆସ ମା ଭାରତେ ଭାରତୀ ଭାଣୀ !

ତିମିର ସାଗରୁ ନବ ଦିନମଣି,
ହିରଣ୍ମୟ କରେ ଉଦ୍ଧାର ଧରଣୀ ।

ଭାରତ ଆକାଶ କରୁ ସମୁଜ୍ଜ୍ୱଳ,
ଉଚ୍ଛୁଳୁ ଭାରତେ ଉତ୍ସାହ ତରଙ୍ଗ ।
ହସୁ ଏ ଭାରତ ଶୁଣି ତୋ ବାଣୀ !

କିଶୋର ବାଳକ ବାଳିକାଙ୍କ ନବୀନ ମାନସସମକ୍ଷରେ କବିଙ୍କ ଏହି ପ୍ରାର୍ଥନା ବାଣୀ ଅପରୂପ ଆଶାର ଜ୍ୟୋତି ଆଣିଦିଏ ।

ମଧୁସୂଦନଙ୍କ ଲେଖନୀ-ପ୍ରସୂତ ଓଡ଼ିଆ ଗଦ୍ୟ ପୁସ୍ତକ 'ପ୍ରବନ୍ଧମାଳା' ତତ୍କାଳୀନ ବିଦ୍ୟାଳୟ ପାଠ୍ୟ ଗଦ୍ୟ ସାହିତ୍ୟ ମଧ୍ୟରେ ଅପ୍ରତିଦ୍ୱନ୍ଦୀ ସ୍ଥାନ ଅଧିକାର କରି ଦୀର୍ଘକାଳ ପର୍ଯ୍ୟନ୍ତ ଚଳୁଥିଲା ।

ସେତେବେଳେ ଗ୍ରାମରେ ଯେଉଁ ସବୁ ଚାଟଶାଳୀ ଅର୍ଥାତ୍ ପାଠଶାଳା ଥିଲା ସେଥିରେ ଯେଉଁ ଅବଧାନ (ଗୁରୁ ମହାଶୟ) ମାନେ ପଢ଼ାଉଥିଲେ ସେମାନଙ୍କ ପଠନଭଙ୍ଗୀ ଶିଶୁମାନଙ୍କ ପକ୍ଷରେ ଅତ୍ୟନ୍ତ ଅନୁପଯୋଗୀ ବୋଲି ମଧୁସୂଦନଙ୍କ ମନରେ ଧାରଣା ଜନ୍ମିଲା । ସେ ଏହି ଶିକ୍ଷକମାନଙ୍କୁ ଉପଯୁକ୍ତ କରିବା ପାଇଁ ଶିକ୍ଷାଦାନ ପ୍ରଣାଳୀ ସମ୍ବନ୍ଧରେ ଅବଧାନ-ବନ୍ଧୁ ନାମକ ପୁସ୍ତକ ରଚନା କରିଥିଲେ । ସ୍କୁଲ ପରିଦର୍ଶନରେ ସେ ସର୍ବଦା ଏହି ବିଷୟରେ ଅବଧାନମାନଙ୍କୁ ଉପଦେଶ ଓ ପରାମର୍ଶ ଦେଉଥିଲେ ।

ମଧୁସୂଦନଙ୍କ ଲିଖିତ ପୁସ୍ତକ ଗୁଡ଼ିକର ବହୁଳ ପ୍ରଚାର ହେବାରୁ ପୂର୍ବବର୍ତ୍ତୀ ଗ୍ରନ୍ଥକାରମାନଙ୍କ ପୁସ୍ତକଗୁଡ଼ିକ ଆଉ ପାଠ୍ୟ ରହିଲା ନାହିଁ । ଏଥିରେ କୌଣସି କୌଣସି ଗ୍ରନ୍ଥକାର ଆନ୍ଦୋଳନ ଉପସ୍ଥିତ କରି ଜଏଣ୍ଟ ଇନସ୍‌ପେକ୍‌ଟର ରାଧାନାଥ ଓ ଡେପୁଟି ଇନସ୍‌ପେକ୍‌ଟର ମଧୁସୂଦନଙ୍କ ଉପରେ ଦୋଷ ଲେପ କଲେ । କିନ୍ତୁ ସେ ଆନ୍ଦୋଳନ ଫଳପ୍ରଦ ହେଲାନାହିଁ । ଅବଶେଷରେ କର୍ତ୍ତୃପକ୍ଷଙ୍କ ନିକଟରେ ଯୋଗ୍ୟତମର ଅଗ୍ରାଧିକାର ସ୍ୱୀକୃତି ଲାଭ କଲା ।

ଏହାପରେ ଓଡ଼ିଶାରେ ବିଦ୍ୟାଳୟଗୁଡ଼ିକରେ କେବଳ ଉପଯୁକ୍ତ ପାଠ୍ୟପୁସ୍ତକର ବ୍ୟବସ୍ଥା କରି ମଧୁସୂଦନ ସ୍ୱୀୟ କର୍ତ୍ତବ୍ୟ ସମାପନ କରି-ନାହାନ୍ତି । ବିଦ୍ୟାଳୟସମୂହର ପରିଦର୍ଶନ କାଳରେ ଶ୍ରେଣୀଗୁଡ଼ିକରେ ନିଜେ ପଢ଼ାଇ ଶିକ୍ଷକମାନଙ୍କୁ ସେ ପଠନରୀତି ଶିଖାଉଥିଲେ । ଛାତ୍ରମାନଙ୍କ ନୈତିକ ଜୀବନର ଉନ୍ନତିକଳ୍ପେ ସେ ବହୁ ଚେଷ୍ଟା କରୁଥିଲେ । କୌଣସି ବଡ଼ ଗ୍ରାମରେ କେବଳ ପାଠଶାଳା ଅଛି ଦେଖିଲେ, ତାହାକୁ ମଧ୍ୟଶ୍ରେଣୀର ବିଦ୍ୟାଳୟକୁ ଉନ୍ନୀତ କରିବା ପାଇଁ ଗ୍ରାମବାସୀମାନଙ୍କୁ ଡାକି ସେମାନଙ୍କ ସଙ୍ଗରେ ସେ ଆଲୋଚନା କରୁଥିଲେ । ଏହାଫଳରେ ସେମାନେ ଉଦ୍ୟୋଗୀ ହେଲେ ସେମାନଙ୍କୁ ସାହାଯ୍ୟ କରି ଉକ୍ତ ଅଞ୍ଚଳରେ ଉନ୍ନତତର ଶିକ୍ଷାର ବ୍ୟବସ୍ଥା ସେ କରୁଥିଲେ । ଏହି ରୂପେ ରାଧାନାଥ ଓ ମଧୁସୂଦନଙ୍କ ସମ୍ମିଳିତ ଚେଷ୍ଟାରେ ଓଡ଼ିଶାରେ ପ୍ରାଥମିକ ଓ ମାଧ୍ୟମିକ ଶିକ୍ଷା ଦ୍ରୁତ ପ୍ରସାର ଲାଭ କରିଥିଲା ।

ଆଦର୍ଶ ଶିକ୍ଷାର ଦୃଷ୍ଟାନ୍ତ ଦେଖାଇବା ପାଇଁ ମଧୁସୂଦନ ୧୮୮୧ ଖ୍ରୀଷ୍ଟାବ୍ଦରେ କଟକ ଟାଉନ ସ୍କୁଲ ନାମରେ ଗୋଟିଏ ମଧ୍ୟଇଂରାଜୀ ବିଦ୍ୟାଳୟ ସ୍ଥାପନ କଲେ । ଏହି ସ୍କୁଲରେ ଭୂପତିନାଥ ବସୁ, ବିଶ୍ୱନାଥ କର ପ୍ରଭୃତି ବିଦ୍ୟୋତ୍ସାହୀ କୃତୀ ଯୁବକମାନେ ଶିକ୍ଷକତା କରିଅଛନ୍ତି । ବିଶ୍ୱନାଥ କର ଏହାର ପ୍ରଧାନ ଶିକ୍ଷକ ଥିଲାବେଳେ ସ୍କୁଲଟିର ଏପରି ଉନ୍ନତି ହେଲା, ପ୍ରତିବର୍ଷ ଏହି ସ୍କୁଲର ଛାତ୍ରମାନେ ବୃତ୍ତିଲାଭ କରୁଥିଲେ । ଛାତ୍ରସଂଖ୍ୟାର ବୃଦ୍ଧି ଦେଖି ୧୮୮୯ ଖ୍ରୀଷ୍ଟାବ୍ଦରେ ଏହାକୁ ହାଇସ୍କୁଲରେ ଉନ୍ନୀତ କରାଗଲା ଏବଂ ବିଜୟ ଚନ୍ଦ୍ର ମଜୁମଦାର, ବି. ଏ. ଏହାର ପ୍ରଧାନଶିକ୍ଷକ ନିଯୁକ୍ତ ହେଲେ । କିନ୍ତୁ ଏହି ବହୁ ବ୍ୟୟସାଧ୍ୟ ହାଇସ୍କୁଲର ଗୁରୁଭାର ବହନ କରିବା ମଧୁସୂଦନଙ୍କ

ପକ୍ଷେ ଅସମ୍ଭବ ହେବାରୁ ଦୁଇ ବର୍ଷ ପରେ ସ୍କୁଲଟି ପୁନର୍ବାର ମଧ୍ୟଶ୍ରେଣୀ ବିଦ୍ୟାଳୟରେ ରୂପାନ୍ତରିତ ହେଲା ।

କଟକ ଜିଲ୍ଲାର ଡେପୁଟି ଇନସ୍‌ପେକ୍ଟର-ରୂପେ କାର୍ଯ୍ୟ କରିବା ସମୟରେ ୧୮୮୭ ଖ୍ରୀଷ୍ଟାବ୍ଦରେ ମଧୁସୂଦନ 'ଶିକ୍ଷାବନ୍ଧୁ' ନାମକ ଖଣ୍ଡିଏ ମାସିକ ପତ୍ର ପ୍ରତିଷ୍ଠା କଲେ । ଏଥିରେ ବିଦ୍ୟାଳୟର ଶିକ୍ଷକମାନଙ୍କୁ ଅଧ୍ୟାପନା ବିଷୟରେ ନାନା ପ୍ରକାର ଉପଦେଶ ଦେବା ପାଇଁ ପ୍ରବନ୍ଧାବଳୀ ଲିଖିତ ହେଉଥିଲା । ଏହାଦ୍ୱାରା ଶିକ୍ଷକମାନଙ୍କର ଯଥେଷ୍ଟ ଉନ୍ନତି ସାଧିତ ହୋଇଥିଲା । ମଧୁସୂଦନଙ୍କ ବ୍ୟତୀତ ସାଧୁଚରଣ ରାୟ, ବିଶ୍ୱନାଥ କର, ବିଜୟ ଚନ୍ଦ୍ର ମଜୁମଦାର, ଶ୍ୟାମସୁନ୍ଦର ନନ୍ଦ ପ୍ରଭୃତି ଶିକ୍ଷକମାନେ ଏହି ପତ୍ରିକାରେ ନିୟମିତ ପ୍ରବନ୍ଧାଦି ଲେଖୁଥିଲେ ।

## (ଗ) ରେଭେନ୍‌ସା କଲେଜିଏଟ୍ ସ୍କୁଲର ପ୍ରଧାନଶିକ୍ଷକ

୧୮୮୦ ଠାରୁ ୧୮୯୧ ଖ୍ରୀଷ୍ଟାବ୍ଦ ମଧୁସୂଦନ ପର୍ଯ୍ୟନ୍ତ କଟକ ଜିଲ୍ଲାର ଡେପୁଟି ଇନସ୍‌ପେକ୍ଟର ପଦରେ ଅଧିଷ୍ଠିତ ଥିଲେ । ଏହି ସମୟରେ ର୍ୟାଭେନ୍‌ସା କଲେଜିଏଟ୍ ସ୍କୁଲର ପ୍ରଧାନ ଶିକ୍ଷକ ରାମଦାସ ଚକ୍ରବର୍ତ୍ତୀ କର୍ମରୁ ଅବସର ଗ୍ରହଣ କରିବାରୁ କର୍ତ୍ତୃପକ୍ଷ ମଧୁସୂଦନଙ୍କୁ ଯୋଗ୍ୟତମ ବିବେଚନା କରି ଉକ୍ତ ସ୍କୁଲରେ ପ୍ରଧାନ ଶିକ୍ଷକ ପଦରେ ନିଯୁକ୍ତ କଲେ । ୧୮୯୧ ଖ୍ରୀଷ୍ଟାବ୍ଦ ଜୁଲାଇ ମାସରେ ଉକ୍ତ ପଦରେ ଅସ୍ଥାୟୀ ଭାବେ ନିଯୁକ୍ତ ହୋଇ ୧୮୯୧ ମସିହା ମାର୍ଚ୍ଚ ମାସରେ ମାସିକ ୧୫୦ (ଦେଢ଼ଶତ) ଟଙ୍କା ବେତନରେ ସେହି ପଦରେ ସ୍ଥାୟୀ ହେଲେ ଏବଂ ଗେଜେଟେଡ୍ ଅଫିସର ବୋଲି ଘୋଷିତ ହେଲେ । କଟକ ରେଭେନ୍‌ସା କଲେଜିଏଟ୍ ସ୍କୁଲର ଓଡ଼ିଆ ପ୍ରଧାନଶିକ୍ଷକ ରୂପେ ମଧୁସୂଦନ ହିଁ ପ୍ରଥମ ।

ଇତିପୂର୍ବେ ସେ ଡେପୁଟି ଇନସ୍‌ପେକ୍ଟର ଥିବା ସମୟରେ ଜିଲ୍ଲା ସମିତି ଅର୍ଥାତ୍ ଡିଷ୍ଟ୍ରିକ୍ଟ ବୋର୍ଡର ସଭ୍ୟରୂପେ ଏଭଳି ସୁଖ୍ୟାତି ସହିତ କାର୍ଯ୍ୟ କରିଥିଲେ ଯେ ସେଥିପାଇଁ ସେ ଦୀର୍ଘକାଳ (୧୮୯୭ ପର୍ଯ୍ୟନ୍ତ) ସଭ୍ୟ ପଦରେ ନିର୍ବାଚିତ ହୋଇ ଆସୁଥିଲେ ।

ମଧୁସୂଦନ କଲେଜିଏଟ୍ ସ୍କୁଲରେ ପ୍ରଧାନଶିକ୍ଷକ ଥିବା ସମୟରେ ହଲେୱାର୍ଡ ସାହେବ କଲେଜର ଅଧ୍ୟକ୍ଷ ଥିଲେ । ସେହି ସମୟ ପରେ କଲେଜ ଓ ସ୍କୁଲ ଏକ ସ୍ଥାନରେ ଅର୍ଥାତ୍ ବର୍ତ୍ତମାନ କଲେଜିଏଟ୍ ସ୍କୁଲଟି ଯେଉଁଠାରେ ଅବସ୍ଥିତ ସେହିଠାରେ ଥିଲା ଏବଂ କଲେଜର ଅଧ୍ୟକ୍ଷ ସର୍ବେସର୍ବା ଥିଲେ । ହଲେୱାର୍ଡ ସାହେବଙ୍କ ଶାସନ ଅତି ବେଶ୍ କଠୋର ଥିଲା । ସେ ନିୟମ କରିଥିଲେ ଯେ ସକାଳ ୧୦ଟା ୨୫ ମିନିଟ୍ ପୂର୍ବରୁ ସ୍କୁଲର ଗେଟ୍ ଖୋଲା ହେବନାହିଁ । ତାହା ଫଳରେ ଗ୍ରୀଷ୍ମ କାଳରେ ବହୁ ଛାତ୍ରଙ୍କୁ ଫାଟକ ବାହାରେ ଖରାରେ ଛିଡ଼ା ହୋଇ କଷ୍ଟ ଭୋଗ କରିବାକୁ ପଡ଼ୁଥିଲା । ଏହାର ପ୍ରତିକାରର କୌଣସି ଉପାୟ ନଦେଖି ରାତିରେ କୌଣସି ଛାତ୍ର ଫାଟକର ତାଲା ଭାଙ୍ଗି କରି ନେଲା । ଅଧ୍ୟକ୍ଷ ମହାଶୟଙ୍କ ଅବିଚାରରେ ବହୁ ନିର୍ଦ୍ଦୋଷ ଛାତ୍ର ଶାସ୍ତି ଭୋଗ କରିବାକୁ ବାଧ୍ୟ ହେଲେ । ଏଥିରେ ଛାତ୍ରମାନଙ୍କ ଅଭିଭାବକ ଓ ଜନସାଧାରଣଙ୍କ ମଧ୍ୟରେ ଆନ୍ଦୋଳନ ସୂତ୍ରପାତ ହେଲା । ସମ୍ମିଳିତ କରି ସେମାନେ ଅଧ୍ୟକ୍ଷଙ୍କ କାର୍ଯ୍ୟରେ ତୀବ୍ର ପ୍ରତିବାଦ କଲେ । ଏ ବିଷୟରେ 'ଉତ୍କଳ ଦୀପିକା' ସମ୍ପାଦକଙ୍କ ମନ୍ତବ୍ୟରେ କିୟଦଂଶ ଉଦ୍ଧୃତ କରାଗଲା ।

"ଆମ୍ଭମାନଙ୍କ କଲେଜର ଅଧ୍ୟକ୍ଷଙ୍କ କାର୍ଯ୍ୟରେ ଅନେକେ ଅସନ୍ତୋଷ ପ୍ରକାଶ କରୁଅଛନ୍ତି । ଶୁଣାଯାଉଛି; ତାଲା ଭାଙ୍ଗିବା ଛାତ୍ରମାନଙ୍କୁ ଧରା-ଯାଇଅଛି । ସେମାନଙ୍କ ଅଗ୍ରଣୀକୁ ସ୍କୁଲରୁ ବହିଷ୍କୃତ କରାହୋଇଅଛି । ୮।୧୦ଟି ଛାତ୍ରଙ୍କୁ ନିମ୍ନ ଶ୍ରେଣୀକୁ ଖସାଇ ଦିଆହୋଇଛି । କିପ୍ରକାର ପ୍ରମାଣ ପାଇ ଏମାନଙ୍କୁ ଦୋଷୀ ସାବ୍ୟସ୍ତ କରି ଏପରି କଠିନ ଦଣ୍ଡ ବିଧାନ ହୋଇଛି, ତାହା ଆମେ ଜାଣୁନାହିଁ । ବାଳକମାନେ ସର୍ବଦା ଅଳ୍ପାଧିକ ଚଞ୍ଚଳ ଓ ଦୁଷ୍ଟାମିରେ ଅଭ୍ୟସ୍ତ । ପ୍ରିନ୍‌ସିପାଲ ସାହେବ ୧୦ଟା ୨୫ ମିନିଟ୍‌ର ପୂର୍ବ ପର୍ଯ୍ୟନ୍ତ ଗେଟ୍ ବନ୍ଦ ରଖିବାରୁ ଦୁଆର ବାହାରେ ଛିଡ଼ା ହୋଇ ଖରାରେ କଷ୍ଟ ପାଇ ସେମାନେ ଯଦି ତାଲା ଭାଙ୍ଗି କରିଥାଆନ୍ତି, ତେବେ ତାହା ଏତେ ବଡ଼ ଗୁରୁତର ଦୋଷ ନୁହେଁ ଯେ, ସେଥିପାଇଁ ପେନାଲ କୋର୍ଡର ଫାଶି ଦଣ୍ଡ ସ୍ୱରୂପ ସେମାନଙ୍କର ଭବିଷ୍ୟତର ଗତି ବନ୍ଦ କରାଯାଇପାରେ ।"

ଏହି ଛାତ୍ର ଶାସନ ବ୍ୟାପାରରେ ଅଧ୍ୟକ୍ଷ ମହାଶୟଙ୍କ ସହିତ ମଧୁସୂଦନଙ୍କର ମତାନ୍ତର ଓ ମନାନ୍ତର ହେଲା । କୌଣସି କୌଣସି ଛାତ୍ରଙ୍କୁ ବେତ ଦଣ୍ଡ ଦେବାକୁ ଆଦେଶ କରିବାରୁ ମଧୁସୂଦନ ତାହାର ତୀବ୍ର

ପ୍ରତିବାଦ କରି କହିଲେ ମୁଁ ଆପଣଙ୍କ ଆଦେଶ ପାଳନ କରିବାକୁ ବାଧ୍ୟ କିନ୍ତୁ ବିବେକ ଏହାକୁ ଅନୁମୋଦନ କରେନାହିଁ । ନ୍ୟାୟାନୁରୋଧରେ ପ୍ରଧାନଶିକ୍ଷକ ମଧୁସୂଦନ ଅଧ୍ୟକ୍ଷଙ୍କ ଆଦେଶ ସମ୍ପୂର୍ଣ୍ଣ ପାଳନ ନକରିପାରିବାରୁ ଅଧ୍ୟକ୍ଷ ତାହାଙ୍କ ସମ୍ବନ୍ଧରେ ଏହିପରି ଅଭିମତ ବ୍ୟକ୍ତ କଲେ—"He is a very good teacher, but a weak disciplinarian." ଅର୍ଥାତ୍ ମଧୁସୂଦନ ଖୁବ୍ ଭଲ ଶିକ୍ଷକ କିନ୍ତୁ ଛାତ୍ର ଶାସନରେ ଦୁର୍ବଳ ।

ଦୁଇ ବର୍ଷ ପ୍ରଧାନଶିକ୍ଷକର କାର୍ଯ୍ୟ କରିବା ପରେ ୧୮୯୩ ଖ୍ରୀଷ୍ଟାବ୍ଦ ଅଗଷ୍ଟ ମାସରେ ଉପରୋକ୍ତ କାରଣରୁ ମଧୁସୂଦନଙ୍କ ପ୍ରତି ବଦଳି ଆଦେଶ ହେଲା ଏବଂ ସେ ବାଲେଶ୍ୱର ଡେପୁଟି ଇନସ୍ପେକ୍ଟର ପଦରେ ନିଯୁକ୍ତ ହେଲେ । 'ଉତ୍କଳ ଦୀପିକା' (୮ । ୭ । ୧୮୯୩) ଏହି ଘଟଣାରେ ଦୁଃଖ ପ୍ରକାଶ କରି ଯାହା ଲେଖିଥିଲେ ତାହାର ସାରମର୍ମ ଏହିପରି :—

"ମଧୁବାବୁ ଛାତ୍ରମାନଙ୍କ ପ୍ରତି ଅନ୍ୟାୟ ଦଣ୍ଡଦାନରେ ସହାୟତା ନକରି ସୁବିଚାର ପୂର୍ବକ ଶାସନ କରିବାରୁ ତାଙ୍କ ଉର୍ଦ୍ଧ୍ୱତନ କର୍ମଚାରୀଙ୍କ କର୍ତ୍ତୃକ ନିନ୍ଦିତ ହୋଇ ସ୍ଥାନାନ୍ତର ହେବାକୁ ବାଧ୍ୟ ହେଲେ, ଏହା କଣ କମ୍ ପରିତାପର ବିଷୟ ?"

## (ଘ) ଟ୍ରେନିଂ ସ୍କୁଲର ପ୍ରଧାନଶିକ୍ଷକ

ବାଲେଶ୍ୱରରେ ତିନିମାସ କାର୍ଯ୍ୟ କରିବା ପରେ କଟକ ଟ୍ରେନିଂ ସ୍କୁଲର ହେଡ୍‌ମାଷ୍ଟର ଦ୍ୱାରକାନାଥ ଚକ୍ରବର୍ତ୍ତୀ ସରକାରୀ କାର୍ଯ୍ୟରୁ ଅବସର ଗ୍ରହଣ କରିବାରୁ ମଧୁସୂଦନ ଉକ୍ତ ପଦରେ ନିଯୁକ୍ତ ହୋଇ ୧୮୯୩ ଖ୍ରୀଷ୍ଟାବ୍ଦ ଅକ୍ଟୋବର ୨୭ ତାରିଖରେ ଏହାର କାର୍ଯ୍ୟଭାର ଗ୍ରହଣ କଲେ । ଏଥିପୂର୍ବେ ଏହି ବିଦ୍ୟାଳୟର ଶିକ୍ଷାରୀତି ସମ୍ବନ୍ଧରେ ସ୍ଥାନୀୟ ଶିକ୍ଷିତ ବ୍ୟକ୍ତି ଅସନ୍ତୁଷ୍ଟ ହୋଇ ଆନ୍ଦୋଳନ ସୃଷ୍ଟି କରିଥିଲେ । ସେମାନଙ୍କ ମଧ୍ୟରେ ବିଶ୍ୱନାଥ କର ଅଗ୍ରଣୀ ଥିଲେ । ସେ ସମ୍ବଲପୁର 'ହିତୈଷିଣୀ' ପତ୍ରିକାରେ ଏ ବିଷୟରେ ଯେଉଁ ଅଭିଯୋଗ କରିଥିଲେ ତାହାର ସାରମର୍ମ ଏହିପରି—ସାହିତ୍ୟ, ଗଣିତ, ସଂସ୍କୃତ, ଭୂଗୋଳ, ଇତିହାସ ପ୍ରଭୃତି ସମସ୍ତ ବିଷୟର ଚର୍ଚ୍ଚା ଅତି ହୀନ ଭାବରେ ହେଉଅଛି । ଛାତ୍ରବୃତ୍ତି ପରୀକ୍ଷାରେ ଉତ୍ତୀର୍ଣ୍ଣ ଛାତ୍ରମାନେ

ଶିକ୍ଷକତା-ଶିକ୍ଷଣ ପାଇଁ ଏହି ବିଦ୍ୟାଳୟକୁ ପଢିବାକୁ ଆସନ୍ତି । ଯେଉଁ ପାଠ୍ୟଗ୍ରନ୍ଥ ସେମାନେ ପୂର୍ବରୁ ପଢି ଆସିଛନ୍ତି, ତାହା ଏଠାରେ ସେମାନଙ୍କୁ ଚର୍ବିତ-ଚର୍ବଣ କରିବାକୁ ହୁଏ । ରଚନାର ଅନୁଶୀଳନ ପ୍ରାୟ ନାହିଁ କହିଲେ ଚଳେ । ଗଣିତର ଶିକ୍ଷା ମଧ୍ୟ ତଦନୁରୂପ । ଭୂଗୋଳ ଶିକ୍ଷା ସମ୍ବନ୍ଧରେ ଏପରି ଶୁଣାଯାଏ ଯେ କୌଣସି ବୁଦ୍ଧିମାନ ଛାତ୍ର ଶିକ୍ଷକ ମହାଶୟଙ୍କୁ ପଚାରିଲା— ବହିରେ ଲେଖା ଅଛି ଯେ ପୃଥିବୀ ଶୂନ୍ୟରେ ଅଛି । ସେ ସୂର୍ଯ୍ୟଙ୍କ ଚତୁର୍ଦ୍ଦିଗରେ ବୁଲୁଅଛି । କିନ୍ତୁ ପୁରାଣରେ ଲେଖାଅଛି ଯେ ପୃଥିବୀ ସ୍ଥିର ଓ ବାସୁକୀ ନାଗ ଏହାକୁ ମସ୍ତକରେ ଧାରଣ କରିଅଛି । ଏହି ଦୁଇ ତଥ୍ୟରୁ କେଉଁଟି ପ୍ରକୃତ ସତ୍ୟ ? ପଣ୍ଡିତ ମହାଶୟ ଗମ୍ଭୀର ଭାବରେ ଉତ୍ତର ଦେଲେ— ମୂର୍ଖ, ପୁରାଣ କଣ ମିଥ୍ୟା କଥା କହେ ? ବହିରେ ଯାହା ଅଛି, ତାହା କେବଳ ପରୀକ୍ଷାରେ ପାସ୍ କରିବା ପାଇଁ, ମୁଖସ୍ଥ କରିଯାଅ" ଏହିସବୁ ଉଲ୍ଲେଖ କରି ବିଶ୍ୱନାଥ କର ଟ୍ରେନିଂ ସ୍କୁଲର ଉପଯୁକ୍ତ ଶିକ୍ଷକ ଓ ପାଠ୍ୟପୁସ୍ତକ ନିର୍ବାଚନ ଏବଂ ପରୀକ୍ଷା ବିଧି ପରିବର୍ତ୍ତନର ଦାବୀ ଜଣାଇ ଆନ୍ଦୋଳନ କରିଥିଲେ । ଶିକ୍ଷାବିତ୍ ରୂପରେ ବିଶ୍ୱନାଥ କର ତତ୍କାଳରେ ଓଡ଼ିଶାରେ ସୁପରିଚିତ ଥିଲେ ଏବଂ ତାଙ୍କର ଏହି ଆନ୍ଦୋଳନ ସଫଳ ହୋଇଥିଲା ।

ମଧୁସୂଦନ ଏହି ସ୍କୁଲର କାର୍ଯ୍ୟଭାର ଗ୍ରହଣ କରି ଦେଖିଲେ, ଉପର୍ଯ୍ୟୁକ୍ତ ଅଭିଯୋଗଗୁଡିକ ସମ୍ପୂର୍ଣ୍ଣ ସତ୍ୟ । ସ୍କୁଲର ଏହି ଅବସ୍ଥା ଦେଖି ବ୍ୟଥିତ ମଧୁସୂଦନ ଏହାର ପ୍ରତିକାର ପାଇଁ ଆପ୍ରାଣ ଚେଷ୍ଟା କରିବାକୁ ଲାଗିଲେ । ମଧୁସୂଦନ ଡେପୁଟି ଇନସ୍ପେକ୍ଟର ଥିବାବେଳେ ମଧ୍ୟଶ୍ରେଣୀ ବିଦ୍ୟାଳୟର ଶିକ୍ଷକମାନଙ୍କ ଯୋଗ୍ୟତା ଓ ପାଠନ ରୀତିରେ ଯେଉଁସବୁ ତ୍ରୁଟି ଅଭାବ ଦେଖି କ୍ଷୋଭ ପ୍ରକାଶ କରୁଥିଲେ ଓ ତାହା ଦୂର କରିବା ପାଇଁ ବ୍ୟାକୁଳ ହେଉଥିଲେ ବର୍ତ୍ତମାନ ଭଗବାନ ସେହି ତ୍ରୁଟି ଅଭାବ ପୂରଣର ଭାର ତାହାଙ୍କ ଉପରେ ଦେଲେ । ସେ ମଧ୍ୟ ବିଧିବତ୍ ଏହି ସୁଯୋଗର ସମ୍ପୂର୍ଣ୍ଣ ସଦ୍ ବ୍ୟବହାର କରିଥିଲେ । ଏଠାରେ ଦୀର୍ଘକାଳ ରହି ସେ ତାଙ୍କ ମନଲାଖି ଶିକ୍ଷକ ଗଢିଥିଲେ । ଚନ୍ଦ୍ରମୋହନ ମହାରଣା ଓ ପଣ୍ଡିତ ମଧୁସୂଦନ ଦାସ ଏହି ଦୁଇଜଣ ଦକ୍ଷ ସହକାରୀଙ୍କୁ ନେଇ ସେ ଏହି ସ୍କୁଲର ଯେଉଁ ଅପୂର୍ବ ପରିବର୍ତ୍ତନ ଘଟାଇଥିଲେ ତାହା କଟକ ଟ୍ରେନିଂ ସ୍କୁଲ ଇତିହାସରେ ଏବଂ ମଧ୍ୟ ଓ ପ୍ରାଥମିକ ଶିକ୍ଷା କ୍ଷେତ୍ରରେ ନବଯୁଗ ଆନୟନ କରିଥିଲା ।

'ଉତ୍କଳର ମଧୁସୂଦନ'ର ଲେଖକ ମୃତ୍ୟୁଞ୍ଜୟ ରଥ ଲେଖିଛନ୍ତି :— "ସ୍କୁଲର ଏହି ଯୁଗଟି ମଧୁସୂଦନ ଯୁଗ କହିଲେ ଅତ୍ୟୁକ୍ତି ହେବ ନାହିଁ ।" ଟ୍ରେନିଂ ସ୍କୁଲରୁ ଉତ୍ତୀର୍ଣ୍ଣ ଛାତ୍ରମାନେ ଓଡ଼ିଶାର ମଧ୍ୟଶ୍ରେଣୀ ବିଦ୍ୟାଳୟରେ ଶିକ୍ଷକ କାର୍ଯ୍ୟ କରୁଥିଲେ । ମଧୁସୂଦନ ଏହି ଛାତ୍ରମାନଙ୍କ ଜ୍ଞାନୋନ୍ନତି ପାଇଁ ପ୍ରଥମେ ଉଚ୍ଚମାନର ପାଠ୍ୟପୁସ୍ତକ ନିର୍ବାଚନ କଲେ । ସାହିତ୍ୟ, ଗଣିତ, ଭୂଗୋଳ, ଇତିହାସ ଓ ପଦାର୍ଥ ବିଦ୍ୟା ଏହି କେତୋଟି ବିଷୟ ସେତେବେଳେ ଏହି ବିଦ୍ୟାଳୟରେ ପାଠ୍ୟ ଥିଲା । ଏହି ସମସ୍ତ ବିଷୟରେ ଅଧିକ ଜ୍ଞାନଲାଭର ବ୍ୟବସ୍ଥା ସେ କଲେ କିନ୍ତୁ ତଦତିରିକ୍ତ, ଜ୍ୟୋତିର୍ଗଣିତ (Astronomy) ଅର୍ଥନୀତି (Political Economy) ରସାୟନ (Chemistry) ଏବଂ ଗତି - ସ୍ଥିତି ଶାସ୍ତ୍ର (Statics and Dynamics) ଏହି କେତୋଟି ବିଷୟରେ ମଧ୍ୟ ଶିକ୍ଷା ଦେବାର ସେ ପ୍ରସ୍ତାବ କଲେ । ଇଉକ୍ଲିଡ଼ର ଜ୍ୟାମିତି, ଇଂଲଣ୍ଡ ଗ୍ରୀସ୍ ଓ ରୋମର ଇତିହାସ ପୁସ୍ତକ ସେତେବେଳେ ମଧ୍ୟ ଓଡ଼ିଆ ଭାଷାରେ ମୁଦ୍ରିତ ହୋଇନଥିବାରୁ ବଙ୍ଗଳା ଭାଷାରେ ଲିଖିତ ପୁସ୍ତକ ପଢିବାକୁ ପଡୁଥିଲା । ଏହିସବୁ ଦୁରୂହ ବିଷୟରେ ଛାତ୍ରମାନଙ୍କ ଶିକ୍ଷା କିପରି ଅଗ୍ରସର ହେଉଅଛି, ତାହା ଜାଣିବା ପାଇଁ ସେ ଅନ୍ୟ ଶିକ୍ଷକମାନଙ୍କ ଅଧ୍ୟାପନା ସମୟରେ ସେମାନଙ୍କ ଶ୍ରେଣୀରେ ଉପସ୍ଥିତ ହୋଇ ସମସ୍ତ ଲକ୍ଷ୍ୟ କରୁଥିଲେ ଏବଂ ପ୍ରୟୋଜନ ମନେକଲେ ନିଜେ ସେ ବିଷୟରେ ଆଲୋଚନା ଦ୍ୱାରା ଶିକ୍ଷକମାନଙ୍କୁ ଶିକ୍ଷଣ କାର୍ଯ୍ୟରେ ସାହାଯ୍ୟ କରୁଥିଲେ । ଏହା ଶିକ୍ଷକ ଓ ଛାତ୍ର ଉଭୟଙ୍କ ହୃଦୟରେ ଉଜ୍ଜ୍ୱଳ ରୂପେ ଚିର ମୁଦ୍ରିତ ହୋଇ ଉତ୍ତର ଜୀବନରେ ସେମାନଙ୍କୁ ଶିକ୍ଷକତା କରିବାରେ ଯଥେଷ୍ଟ ସାହାଯ୍ୟ କରୁଥିଲା ।

ପ୍ରାଚୀନ ରୀତିର ସଂସ୍କୃତ ଅଧ୍ୟାପନାର ପରିବର୍ତ୍ତେ ଛାତ୍ରମାନେ ଯେପରି ବ୍ୟାକରଣରେ ଶୁଦ୍ଧ ଜ୍ଞାନଲାଭ କରି ମାତୃଭାଷାରେ ସଂସ୍କୃତକୁ ଉତ୍ତମ ରୂପେ ବ୍ୟକ୍ତ କରିପାରନ୍ତି କିମ୍ବା ସାର୍ଥକ ଅନୁବାଦ କରିପାରନ୍ତି, ସେ ସେଥିପାଇଁ ଯତ୍ନଶୀଳ ଥିଲେ । ଅନେକ ସମୟରେ ଶ୍ରେଣୀକୁ ଆସି ସେ ସଂସ୍କୃତ ପାଠ୍ୟ 'ଉତ୍ତର ରାମଚରିତ' ନାଟକରୁ ଆଦର୍ଶ ଅନୁବାଦ କରି ଛାତ୍ରମାନଙ୍କୁ ଶିଖାଉ ଥିଲେ । ସମସ୍ତ ବିଷୟରେ ଛାତ୍ରମାନଙ୍କ ଯଥୋଚିତ ଶିକ୍ଷା ପାଇଁ ତାଙ୍କ ବ୍ୟାକୁଳତା ଦେଖି ମନେ ହେଉଥିଲା, ଅବସର ଥିଲେ ସମସ୍ତ ବିଷୟ ସେ ନିଜେ ପଢ଼ାଇଥାନ୍ତେ । ଇତିମଧ୍ୟରେ ଟ୍ରେନିଂ ସ୍କୁଲର ଗଣିତ ଶିକ୍ଷକ ଚନ୍ଦ୍ରମୋହନ ମହାରଣା ବଦଳି ହୋଇ ପୁରୀ ଯିବାରୁ ମଧୁସୂଦନ କେତେ-

ବର୍ଷ ସ୍ୱୀୟ ସ୍କୁଲର ସାହିତ୍ୟ, ଗଣିତ ଉଭୟ ବିଷୟ ଶିଖାଇବା ଭାର ନିଜ ସ୍କନ୍ଧରେ ଗ୍ରହଣ କଲେ । ଯୋଗ୍ୟ ସହକାରୀ ଥିବା ସତ୍ତ୍ୱେ ଆଗ୍ରହ ସହକାରେ ଗଣିତ ଶିକ୍ଷାଦାନର ଗୁରୁଦାୟିତ୍ୱ ଗ୍ରହଣ କରିବାର କାରଣ ଦେଖାଇବାକୁ ଯାଇ ସେ କହିଲେ ଯେ ଛାତ୍ରାବସ୍ଥାରେ ସେ ଆଶାନୁରୂପ ଗଣିତ ଚର୍ଚ୍ଚା କରିନପାରି ଥିବାରୁ ଯେଉଁସବୁ ତ୍ରୁଟି ରହିଯାଇଛି, ଏହି ସୁଯୋଗରେ ଅନୁଶୀଳନ ଦ୍ୱାରା ସେହି ତ୍ରୁଟିମାନଙ୍କୁ କେତେକ ପରିମାଣରେ ବି ଦୂରୀତ କରିବାର ଚେଷ୍ଟା ସେ କରିବେ । ଦେଖା ଯାଉଥିଲା ଶ୍ରେଣୀରେ ଅଙ୍କ କଷିବାକୁ ଦେଇ ସେ ନିଜେ ଛାତ୍ରଙ୍କ ଭଳି ଅଙ୍କ କଷିବାକୁ ଲାଗିଯାଇଛନ୍ତି । ଟ୍ରେନିଂ ସ୍କୁଲର ଛାତ୍ରମାନଙ୍କୁ ସେ ପ୍ରାୟତଃ କହୁଥିଲେ—"ତୁମ୍ଭମାନଙ୍କ ମଧ୍ୟରେ ଯେଉଁମାନେ ଅଙ୍କରେ ଅଳ୍ପ ଅପରିପକ୍ୱ ଅଛ, ଶିକ୍ଷକତା ଗ୍ରହଣ କରି ଯଦି ତୁମ୍ଭେମାନେ କଠିନ ଅଙ୍କ କଷାଇବା ଭାର ନିଅ ଏବଂ ତାପାଇଁ ସାମାନ୍ୟ ଚେଷ୍ଟା କର ତାହାହେଲେ ଦେଖିବ ଯେ ତୁମ୍ଭମାନଙ୍କର ସେହି ତ୍ରୁଟି ଦୁର୍ବଳତା ଦୂର ହୋଇଅଛି ।"

ପାଟୀଗଣିତର ପ୍ରଶ୍ନ-ସମାଧାନର ସହଜ ସୁବୋଧ୍ୟ ରୀତି ଏବଂ ଶିଶୁମାନଙ୍କ ଉପଯୋଗୀ ସରଳ ବ୍ୟାଖ୍ୟାନ-ପଦ୍ଧତି ଛାତ୍ରମାନଙ୍କ ଭବିଷ୍ୟତ ଶିକ୍ଷକ ଜୀବନରେ କେତେ ପ୍ରୟୋଜନୀୟ ତାହା ସେ ବିଶେଷଭାବେ ଛାତ୍ର-ମାନଙ୍କୁ ବୁଝାଇ ଦିଅନ୍ତି । ଫଳତଃ ତାଙ୍କ ତତ୍ତ୍ୱାବଧାନ ଓ ଅଧ୍ୟାପନା ଦ୍ୱାରା କଟକ ଟ୍ରେନିଂ ସ୍କୁଲରେ ଗଣିତ ଏବଂ ଅନ୍ୟାନ୍ୟ ବିଷୟରେ ଛାତ୍ରମାନଙ୍କ ଜ୍ଞାନ ଦ୍ୱାର, ପୂର୍ବାପେକ୍ଷା ପ୍ରଶସ୍ତତର ହୋଇଥିଲା ଓ ଶିକ୍ଷଣ ପଦ୍ଧତିରେ ଅଭୂତପୂର୍ବ ଉନ୍ନତି ହୋଇଥିଲା ।

ସାହିତ୍ୟ ପଢ଼ାଇବା ବେଳେ ସେ କେବଳ ମାତ୍ର ପାଠ୍ୟପୁସ୍ତକ ମଧ୍ୟରେ ସୀମାବଦ୍ଧ ରହୁନଥିଲେ । ଅଧିତବ୍ୟ ବିଷୟର ଅନୁରୂପ ଭାବସମ୍ପନ୍ନ ଉକ୍ତିସମୂହ ଅନ୍ୟାନ୍ୟ ପୁସ୍ତକାଦିରୁ ଉଦ୍ଧୃତ କରି ତଦ୍‌ବିଷୟକ ଜ୍ଞାନ ବା ଧାରଣା ଛାତ୍ର ମନରେ ଉଜ୍ଜ୍ୱଳଭାବେ ପରିସ୍ଫୁଟ କରିବାକୁ ସର୍ବଦା ପ୍ରୟାସୀ ହେଉଥିଲେ । ଏଥିପାଇଁ କେବେ କେବେ ତାଙ୍କ ଟେବୁଲ ଉପରେ ସ୍ତୂପୀକୃତ ହୋଇଥାଏ କେତେକ ସଂସ୍କୃତ କାବ୍ୟ ନାଟକ ଉପନିଷଦ ସମ୍ବନ୍ଧୀୟ ପୁସ୍ତକାବଳୀ । ଅଳଙ୍କାର ଶାସ୍ତ୍ର ପଢ଼ାଇବା ସମୟରେ ମଧୁସୂଦନ ସଂସ୍କୃତ ଅଳଙ୍କାର-ସମ୍ବନ୍ଧୀୟ ପୁସ୍ତକାବଳୀର ଆଲୋଚନା କରୁଥିଲେ । ଏପରିକି ତାଙ୍କ

ଛାତ୍ରମାନେ ଇଂରେଜୀ ଭାଷାରେ ଅନଭିଜ୍ଞ ହେଲେ ମଧ୍ୟ ସେମାନଙ୍କୁ ଏହି ଭାଷାର ଅଳଙ୍କାରର ବ୍ୟାଖ୍ୟାନ ଓ କାବ୍ୟୋକ୍ତି ଶୁଣାଇ ତା' ସହ ସଂସ୍କୃତ ଅଳଙ୍କାରବଳୀର ତୁଳନା ଦ୍ୱାରା ବିଷୟଟିକୁ ଛାତ୍ରର ବୋଧଗମ୍ୟ ନକରି ଛାଡୁନଥିଲେ ।

ଇତିହାସ, ଭୂଗୋଳ ପ୍ରଭୃତି ଅନ୍ୟାନ୍ୟ ବିଷୟରେ ଶିକ୍ଷୋନ୍ନତି ବ୍ୟାପାରରେ ମଧ୍ୟ ତାଙ୍କର ଅନୁରୂପ ସଜାଗ ଦୃଷ୍ଟି ଥିଲା । ଏପରିକି ଡ୍ରିଲ ଶିକ୍ଷା ପର୍ଦ୍ଧିରେ ଛାତ୍ରମାନେ ପରସ୍ପରର ବୀତସ୍ପୃହ ଥାଆନ୍ତି । ସେହି ଡ୍ରିଲ ଘଣ୍ଟାରେ ଛାତ୍ର ଦଳରେ ଯୋଗଦାନ କରି ଡ୍ରିଲ ଶିକ୍ଷକଙ୍କ ଆଦେଶାନୁଯାୟୀ ତାହାକୁ ଆଗ୍ରହ ସହକାରେ ଡ୍ରିଲ କରିବାର ଦେଖାଯାଉଥିଲା । ଏହା ଦେଖିଲେ ଛାତ୍ରମାନଙ୍କର କିଏ ଆଉ ଡ୍ରିଲ ପ୍ରତି ଉଦାସୀନ ହେବାର ଉପାୟ ଥାଇପାରେ !

ମଧୁସୂଦନଙ୍କ ଅଧ୍ୟାପନାର ବିଶେଷ ରୀତି ଥିଲା, କିପରି ଅଳ୍ପ ସମୟ ମଧ୍ୟରେ ତାଙ୍କ ଛାତ୍ରମାନଙ୍କ ହୃଦୟରେ ବିବିଧ ଭାବରାଶି ନିହିତ କରିଯାଇ ପାରିବ । ମନେହୁଏ, ଏ ବିଷୟରେ ସେ ହିତୋପଦେଶର ଏହି ନୀତିଟି ସର୍ବଦା ସ୍ମରଣ ରଖୁଥିଲେ ।

ଅନନ୍ତପାରଂ କିଲ ଶବ୍ଦଶାସ୍ତ୍ରଂ ସ୍ୱଳ୍ପଂ ତଥାୟୁର୍ବହବଶ୍ଚ ବିଘ୍ନାଃ ।<br>
ସାରଂ ତତୋ ଗ୍ରାହ୍ୟମପାସ୍ୟ ଫଲ୍ଗୁ ହଂସୈର୍ଯଥା କ୍ଷୀରମିବାମ୍ବୁମଧ୍ୟାତ୍ ॥

## (ଙ) ଉତ୍କଳ ସାହିତ୍ୟ ସମାଜର ଉତ୍ପତ୍ତି

କଟକ ଟ୍ରେନିଂ ସ୍କୁଲକୁ ଆସିବାର କେତେ ମାସ ମଧ୍ୟରେ ମଧୁସୂଦନ ଛାତ୍ରମାନଙ୍କ ରଚନାଶକ୍ତି ଓ ସେମାନଙ୍କ ଅନ୍ତରରେ ଉଚ୍ଚଭାବ ବିକାଶର ସାହାଯ୍ୟ ପାଇଁ ଗୋଟିଏ ଆଲୋଚନା ସଭା ସ୍ଥାପନର ପ୍ରୟୋଜନୀୟତା ଉପଲବ୍ଧି କଲେ । କେତେଜଣ ସାହିତ୍ୟାନୁରାଗୀ ବନ୍ଧୁ ଙ୍କୁ ନେଇ ୧୮୯୮ ଖ୍ରୀଷ୍ଟାବ୍ଦରେ ଟ୍ରେନିଂ ସ୍କୁଲରେ ଗୋଟିଏ ଆଲୋଚନା ସଭା ସେ ପ୍ରତିଷ୍ଠା କଲେ । ସାହିତ୍ୟ ବିଶେଷତଃ ଓଡ଼ିଆ-ସାହିତ୍ୟର ଅନୁଶୀଳନ ହିଁ ଏହାର ମୁଖ୍ୟ

ଉଦ୍ଦେଶ୍ୟ ଥିଲା । ପ୍ରତି ଶନିବାର ଏହାର ଅଧିବେଶନ ହେଉଥିଲା । ଚନ୍ଦ୍ରମୋହନ ମହାରଣା ଏହାର ପ୍ରଥମ ସମ୍ପାଦକ । ଟ୍ରେନିଂ ସ୍କୁଲର ସମସ୍ତ ଶିକ୍ଷକ ଓ ଛାତ୍ର ଏହାର ସଭ୍ୟ ହୋଇଥିଲେ । କ୍ରମଶଃ ଟ୍ରେନିଂ ସ୍କୁଲର ବହିର୍ଭୂତ ଯେଉଁ ସାହିତ୍ୟାମୋଦିଗଣ ଏହାର ସଭ୍ୟ ହୋଇଥିଲେ, ସେମାନଙ୍କ ମଧ୍ୟରେ ବିଶ୍ୱନାଥ କର, ରାଜମୋହନ ବସୁ, ନନ୍ଦ କିଶୋର ବଳ, ମିଷ୍ଟୁ ନନ୍ଦ, କୃଷ୍ଣ ପ୍ରସାଦ ଚୌଧୁରୀ ପ୍ରଭୃତିଙ୍କ ନାମ ଉଲ୍ଲେଖଯୋଗ୍ୟ । ଏହି ଆଲୋଚନା ସଭା ଟ୍ରେନିଂ ସ୍କୁଲର ବହୁ ଛାତ୍ରଙ୍କ ରଚନା ଶକ୍ତିର ଉଦ୍‌ବୋଧନରେ ଯଥେଷ୍ଟ ସାହାଯ୍ୟ କରିଅଛି । ଟ୍ରେନିଂ ସ୍କୁଲ ସହିତ ସଂଶ୍ଳିଷ୍ଟ ଥିଲେ ମଧ୍ୟ ଏହା ତତ୍କାଳୀନ କଟକନଗରର ଏକମାତ୍ର ଉଲ୍ଲେଖ-ଯୋଗ୍ୟ ସାହିତ୍ୟ ସଭା ଥିଲା । ପ୍ରତିଷ୍ଠାତା ମଧୁସୂଦନ ପ୍ରାୟ ୯ ବର୍ଷ କାଳ ଏହାର ସଭାପତିର କାର୍ଯ୍ୟ ସୁଚାରୁରୂପେ ସମ୍ପନ୍ନ କରିଥିଲେ । ତତ୍ପରେ ଗଞ୍ଜାମରେ ଆହୂତ ଉତ୍କଳ ସମ୍ମିଳନୀରୁ ଫେରିଆସି କେତେଜଣ ସାହିତ୍ୟାନୁରାଗୀ ଭଦ୍ରବ୍ୟକ୍ତି ଉତ୍କଳରେ ଗୋଟିଏ ସାହିତ୍ୟ ସଭାର ଆବଶ୍ୟକତା ଉପଲବ୍ଧି କରି ନବୀନ ଉତ୍ସାହରେ ଗୋଟିଏ ବଡ଼ ସାହିତ୍ୟ ସଭା ସ୍ଥାପନ କରିବାର ପରାମର୍ଶ କଲେ । ତଦନୁସାରେ ୧୯୦୩ ଖ୍ରୀଷ୍ଟାବ୍ଦ ମେ ୨୭ ତାରିଖରେ କଟକ ଟ୍ରେନିଂ ସ୍କୁଲର ଏହି ଆଲୋଚନା ସଭା ପ୍ରଶସ୍ତତର ଭିତ୍ତିରେ ସ୍ଥାପିତ ହୋଇ 'ଉତ୍କଳ ସାହିତ୍ୟ ସମାଜ' ନାମରେ ଅଦ୍ୟାବଧି ପରିଚିତ ହୋଇ ଆସୁଅଛି । ଏହାର ନାମକରଣ, ସଙ୍ଗଠନ, ନିୟମାବଳୀ ପ୍ରଣୟନ ପ୍ରଭୃତି ସମସ୍ତ ବିଷୟରେ ମଧୁସୂଦନ ଅଗ୍ରଣୀ ଥିଲେ; ଆମରଣ ରୋଗଜୀର୍ଣ୍ଣ ଦେହରେ ଏହାର ସଭାପତିର କାର୍ଯ୍ୟ ସୁଚାରୁରୂପେ ସମ୍ପନ୍ନ କରିଯାଇଛନ୍ତି ।

## (ଚ) 'ମହାଯାତ୍ରା' ଆନ୍ଦୋଳନ

ଊନବିଂଶ ଶତାବ୍ଦୀର ଶେଷ ଭାଗରେ (୧୮୯୮) କୌଣସି ଈର୍ଷାପରବଶ ବ୍ୟକ୍ତି କବିବର ରାଧାନାଥ ରାୟଙ୍କ ଲିଖିତ 'ମହାଯାତ୍ରା' ନାମକ ମହାକାବ୍ୟର କୌଣସି କୌଣସି ଅଂଶ ରାଜଦ୍ରୋହମୂଳକ ବା ବ୍ରିଟିଶ ଶାସନର ଗ୍ଳାନିକର ବୋଲି ରାଜପୁରୁଷମାନଙ୍କ ଗୋଚରକୁ ଆଣିଲେ ।

ଅଷ୍ଟାଦଶ ସର୍ଗରେ ଏହି ମହାକାବ୍ୟ ଖଣ୍ଡିକ ଶେଷ କରିବେ, କବିଙ୍କର ଏହିପରି କଳ୍ପନା ଥିଲା । ଏହାର ସାତ ସର୍ଗ ପୁସ୍ତକାକାରେ ଛପା ହୋଇଥିଲା

ଏବଂ ଅନ୍ତର ପାଞ୍ଚ ସର୍ଗ ପାଣ୍ଡୁଲିପି ମୁଦ୍ରଣ ପାଇଁ ପ୍ରସ୍ତୁତ ଥିଲା । ପ୍ରଥମ ଖଣ୍ଡ (ସାତ ସର୍ଗ) ପ୍ରକାଶିତ ହେବାପରେ ଏହା ବିରୁଦ୍ଧରେ ସଂଗଠିତ ଆନ୍ଦୋଳନ ହେବା ଫଳରେ ଉଦ୍‌ଭୂତ ରାଜରୋଷରୁ ଅବ୍ୟାହତି ଲାଭ ନିମିତ୍ତ ସ୍ଥାନେ ସ୍ଥାନେ ରାଧାନାଥ ଏହାର ପରିବର୍ତ୍ତନ ଓ କେତେକାଂଶ ପରିବର୍ଜନ କରି ଦ୍ୱିତୀୟ ସଂସ୍କରଣ ପ୍ରକାଶ କରିବାକୁ ବାଧ୍ୟ ହେଲେ । ତାହାପରେ ନିତାନ୍ତ କ୍ଷୁବ୍ଧ ଓ ବ୍ୟଥିତ ଚିତ୍ତରେ ସେ ଅବଶିଷ୍ଟ ପାଞ୍ଚ ସର୍ଗର ଖସଡ଼ା ପୋଡ଼ି ପକାଇଲେ । ଏହିପରି ପରାଧୀନ ଜାତିର ଏକ ଚରମ ଦୁର୍ଭାଗ୍ୟ ଫଳରେ ଓଡ଼ିଆ ସାହିତ୍ୟ ଓ ଓଡ଼ିଆ ଜାତି ଏକ ଅମୂଲ୍ୟ ସମ୍ପଦରୁ ଚିରକାଳ ବଞ୍ଚିତ ହେଲା । ଏହି ଗ୍ରନ୍ଥର ପ୍ରଥମ ସଂସ୍କରଣର ଭୂମିକାରେ ଭକ୍ତକବି ମଧୁସୂଦନ ଅଭିମତ ପ୍ରକାଶ କରିଅଛନ୍ତି ଯେ ଏହି କାବ୍ୟ ଖଣ୍ଡିକ ଓଡ଼ିଆ ଭାଷାର ଅମିତ୍ରାକ୍ଷର ଛନ୍ଦରେ ରଚିତ ପ୍ରଥମ ପ୍ରୟାସ ହେଲେ ମଧ୍ୟ ଉକ୍ତ ଛନ୍ଦର ଯଥାଯଥ ପ୍ରୟୋଗରେ ରାଧାନାଥ ବିଶେଷ ଦକ୍ଷତା ଦେଖାଇଛନ୍ତି । ଛନ୍ଦର ନୂତନତ୍ୱକୁ ଛାଡ଼ି ମଧ୍ୟ କାବ୍ୟ ଖଣ୍ଡିକର ଅଧିକତର ମୂଲ୍ୟ ଏଇଥିପାଇଁ ଯେ ରାଧାନାଥଙ୍କ କବିପ୍ରତିଭାରୁ ଏହା ସମ୍ୟକ୍ ବିକାଶ ଲାଭ କରିଅଛି ଏବଂ ଏହା ତାଙ୍କ ଦେଶଭକ୍ତିର ସମୁଜ୍ଜ୍ୱଳ ନିଦର୍ଶନ ।

ସୂଚନାରେ କବି ଯେପରି ଦେଖା ସାରଳା (ଉତ୍କଳ ଭାରତୀ)ଙ୍କ ବନ୍ଦନା କରି କାବ୍ୟାରମ୍ଭ କରିଅଛନ୍ତି । ତାହା ବଙ୍ଗୀୟ ବର୍ଗଙ୍କୁ ଅବଶ୍ୟ ହିଁ ପୂର୍ବସୂରି ମାଇକେଲ ମଧୁସୂଦନଙ୍କ 'ମେଘନାଦ ବଧ' କାବ୍ୟ କଥା ସ୍ମରଣ କରାଇ ଦେବ :

> ପଙ୍କଜବାସିନୀ ଦେବୀ ଉତ୍କଳ ଭାରତୀ,
> ସାରଳେ, କି କଲେ, କହ, କୁରୁଚୂଡ଼ାମଣି
> ଶୁଣିଲେ ଯେ କାଳେ ଘୋର ବାର୍ତ୍ତାବହ ମୁଖେ
> ପ୍ରଭାସେ ଯାଦବଙ୍କର ଜ୍ଞାତି କ୍ଷୟକାରୀ
> ମହାହବ । ........

ପ୍ରଭାସରେ ଆତ୍ମ କଳହରେ ଲିପ୍ତ ଯଦୁବଂଶର ଶୋଚନୀୟ ବିନାଶ ବାର୍ତ୍ତା ଓ ଶ୍ରୀକୃଷ୍ଣ ଦେହତ୍ୟାଗର ବିବରଣୀ ଦୂତମୁଖରୁ ଶ୍ରବଣ କରି ଯୁଧିଷ୍ଠିର ସଂସାର ତ୍ୟାଗ କରିବାକୁ ଦୃଢ଼ସଂକଳ୍ପ ହୋଇ ଦ୍ରୌପଦୀ ଓ ଭ୍ରାତୃମାନଙ୍କ ସହ ଯେତେବେଳେ ମହାପ୍ରସ୍ଥାନ କଲେ ସେତେବେଳେ କବି ପାଣ୍ଡବମାନଙ୍କୁ

ଓଡ଼ିଶା ଆସିବାର ଲେଖିଛନ୍ତି । ସେମାନଙ୍କର ଶୁଭାଗମନରେ ଓଡ଼ିଶାର ବହୁ ସ୍ଥାନ ପୌରାଣିକ ମହିମାରେ ମଣ୍ଡିତ ହୋଇ ପୁଣ୍ୟମୟ ତୀର୍ଥକ୍ଷେତ୍ର ରୂପେ "ମହାଯାତ୍ରା" କାବ୍ୟରେ ସ୍ଥାନଲାଭ କରିଅଛି । ତାହାପରେ ଯୁଧିଷ୍ଠିରଙ୍କ ଜ୍ଞାନୋଜ୍ଜ୍ୱଳ ଦିବ୍ୟଜ୍ୟୋତି ଦୃଷ୍ଟିରେ ଆସନ୍ନପ୍ରାପ୍ତ କଳିଯୁଗର ସ୍ୱରୂପଚିତ୍ର ଫୁଟାଇ କବି ଦେଖାଉଛନ୍ତି—ଭାରତର ସୁପ୍ରାଚୀନ ମହିମା ଧ୍ୱଂସମୁଖରେ ଆପତିତ, ଧର୍ମ, ସତ୍ୟ, ନ୍ୟାୟ, ତପସ୍ୟା ଜ୍ଞାନ, ଦୟା, କ୍ଷମା, ସରଳତା ତ୍ୟାଗ – ମୈତ୍ରୀ, ବୈରାଗ୍ୟ, ସନ୍ତୋଷାଦି ଆର୍ଯ୍ୟ ସଭ୍ୟତାର ସଦ୍‌ଗୁଣାବଳୀ ଭାରତରୁ ବିଦାୟ ଗ୍ରହଣ କରୁଅଛି । ତାହା ପରିବର୍ତ୍ତେ ଆସୁଅଛି—କାମ, କ୍ରୋଧ, ଲୋଭ, ମୋହ, ମଦ ମାତ୍ସର୍ଯ୍ୟ, ହିଂସା, ଚୌର୍ଯ୍ୟ, ଆଳସ୍ୟ, ପ୍ରବଞ୍ଚନା, ମିଥ୍ୟା, ଶଠତା, ହତ୍ୟା ଇତ୍ୟାଦି ପାପରାଜିପୁଞ୍ଜ ।

ଦୁର୍ଦ୍ଦଶାଗ୍ରସ୍ତ ଭବିଷ୍ୟ ଭାରତର ଦୁର୍ଭାବନାରେ କାତର ଯୁଧିଷ୍ଠିର ଅଗ୍ନିଦେବଙ୍କୁ ଜିଜ୍ଞାସା କରୁଅଛନ୍ତି,

> ପ୍ରଭୁ ତ୍ରିକାଳ ଦରଶୀ
> ତୁମ୍ଭେ ଯେଣୁ, କହ ମୋତେ କି ରୂପେ ଭାରତେ
> ଘଟିବ ଏ ମହାନର୍ଥ-ସୁଜଳା, ସୁଫଳା,
> ଏ ଶସ୍ୟ-ଶ୍ୟାମଳା ଧରା ପର ହାତେ ଦେଇ
> ପରପାଦାନତ କିହେ ହେବେ ଆର୍ଯ୍ୟସୁତେ !

ଜଣେ ବିଶିଷ୍ଟ ରାଜକର୍ମଚାରୀଙ୍କ ଲେଖମାରୁ ଏହିପରି ରଚନା ବାହାରୁଛି ଜାଣି ସରକାରଙ୍କର ଘୋର ସନ୍ଦେହ ଏବଂ ବିରକ୍ତି, ରାଧାନାଥଙ୍କ ଉପରେ ବର୍ଷିତ ହେବାକୁ ଲାଗିଲା । ମଧୁସୂଦନ ଏହି ସମୟରେ 'ମହାଯାତ୍ରା'ର ଅଯଥା ନିନ୍ଦିତ ସେ ସମସ୍ତ ଅଂଶର ନିର୍ଦ୍ଦୋଷ ବ୍ୟାଖ୍ୟା ପ୍ରଦାନ କରି କବିଙ୍କ ସଦଭିପ୍ରାୟ ପ୍ରତିପାଦନରେ ଯଥେଷ୍ଟ ସାହାଯ୍ୟ କରିଥିଲେ । ଏହି କାରଣରୁ କୌଣସି କୌଣସି ରାଜକର୍ମଚାରୀ ମଧୁସୂଦନଙ୍କୁ ମଧ୍ୟ ସନ୍ଦେହଭାଜନ କରିଥିଲେ । ୧୮୯୯ ଖ୍ରୀଷ୍ଟାବ୍ଦରେ ଶିକ୍ଷା ବିଭାଗର ଡ଼ିରେକ୍ଟର ପେଡ଼ଲର ସାହେବ (Sir Alexander Pedlar) ପରିଦର୍ଶନ କରିବା ନିମିତ୍ତ କଟକ ଆସିଲେ । ତାହାଙ୍କ ମନରେ ମଧୁସୂଦନଙ୍କ ସମ୍ବନ୍ଧରେ ଉକ୍ତ ସନ୍ଦେହ ଜାଗ୍ରତ ଥିବାରୁ ସାହେବ ବିରକ୍ତ ମନରେ ଟ୍ରେନିଂ ସ୍କୁଲ ପରିଦର୍ଶନ କରି ଅସନ୍ତୋଷର

କୌଣସି କାରଣ ନ ପାଇଲେ ମଧ୍ୟ, କୌଣସି କୌଣସି ବିଷୟରେ ଅନଧିକାର ଚର୍ଚ୍ଚା କରୁଥିଲେ । ମଧୁସୂଦନଙ୍କ ପ୍ରତି ଏହି ପ୍ରକାର ଦୋଷାରୋପ କଲେ । କିନ୍ତୁ ମଧୁସୂଦନ ଦୃଢ଼ ଭାବରେ ନିଜର ନିର୍ଦ୍ଦୋଷତାର ପ୍ରମାଣ ଦେଇ ସାହେବଙ୍କ ବିରକ୍ତି ଏପରି ଦୂର କରିଥିଲେ ଯେ, ଦ୍ୱିତୀୟ ଥର ସ୍କୁଲ ପରିଦର୍ଶନରେ ଆସି ପେଡ୍‌ଲର ସାହେବ ମଧୁସୂଦନଙ୍କୁ ସମସ୍ତ କାର୍ଯ୍ୟର ସୁଖ୍ୟାତି କରି ସହାନୁଭୂତି ଜ୍ଞାପନ କରିଥିଲେ । ଉକ୍ତ ମହାଯାତ୍ରା ଆନ୍ଦୋଳନ ଏହାପରେ ବନ୍ଦ ହୋଇଗଲା ।

୧୯୦୦ ଖ୍ରୀଷ୍ଟାବ୍ଦରେ ରାଧାନାଥ ରାୟ ବର୍ଦ୍ଧମାନ ବିଭାଗର ଇନସ୍‌ପେକ୍ଟର ପଦରେ ନିଯୁକ୍ତ ହୋଇଯିବାରୁ ଜଗଚ୍ଚନ୍ଦ୍ର ଶାହା ଓଡ଼ିଶାକୁ ଇନସ୍‌ପେକ୍‌ଟର ହୋଇ କଟକ ଆସିଲେ । ତତ୍ପରେ ରୁଥର ସାହେବ ଓଡ଼ିଶାର ଇନସ୍‌ପେକ୍‌ଟର ହୋଇଆସିଲେ । ସେ ଅଳ୍ପ କେତେ ମାସ ମାତ୍ର ଏହି ପଦରେ ଅଧିଷ୍ଠିତ ଥିଲେ କିନ୍ତୁ ସେହି ସ୍ୱଳ୍ପକାଳ ମଧ୍ୟରେ ମଧୁସୂଦନଙ୍କୁ ତାଙ୍କ ଅସଦ୍ ବ୍ୟବହାର ଯୋଗୁଁ ଅତ୍ୟନ୍ତ ଅଶାନ୍ତି ଭୋଗ କରିବାକୁ ହୋଇଥିଲା ।

ଏହି ସମୟରେ ସେ ତାଙ୍କ ଜ୍ୟେଷ୍ଠ ଜାମାତା ବିଜୟ ଚନ୍ଦ୍ର ମଜୁମଦାରଙ୍କ ପାଖକୁ ସମ୍ବଲପୁରକୁ ଯେଉଁ ପତ୍ର ଲେଖିଥିଲେ ତାହାର କେତେକାଂଶ ନିମ୍ନରେ ଉଦ୍ଧୃତ । ଏହି ପତ୍ରରେ ମଧୁସୂଦନଙ୍କ ତତ୍କାଳୀନ ଅଶାନ୍ତିର କାରଣ ସମ୍ୟକ୍ ବ୍ୟକ୍ତ ହୋଇଅଛି ।

କଟକ<br>୧୪ । ୧୧ । ୧୯୦୦

ପ୍ରାଣାଧିକେଷୁ

ବାବା, ପତ୍ର ପାଇଅଛି । ଏକେତ ଶରୀର ଶୂଳାଦି ରୋଗରେ କାତର । ତା' ଉପରେ ସଂସାରର ଜଞ୍ଜାଳ ହୃଦୟକୁ ଦିନକୁ ଦିନ ଅଭିଭୂତ କରି ପକାଉଛି । ବର୍ତ୍ତମାନ ଯେ ସ୍କୁଲ ଇନସ୍‌ପେକ୍‌ଟର ହୋଇଅଛନ୍ତି, ସେ ଏକ ଅଦ୍ଭୁତ ଜୀବ । ସେ ପ୍ରଥମେ-ପ୍ରଥମେ ମୋ ଦ୍ୱାରା ମାନୁଏଲ ରିପୋର୍ଟ ପ୍ରଭୃତି କଠିନ କାମ କରାଇ ନେଇ ମୋ ଉପରେ ଖୁବ୍ ପ୍ରସନ୍ନତା ପ୍ରକାଶ କରିଥିଲେ । ବର୍ତ୍ତମାନ ତାଙ୍କର ସ୍ୱାର୍ଥ ସହିତ ମୋର କର୍ତ୍ତବ୍ୟର ସଂଘର୍ଷ

ଦେବାରୁ ମୋ ସ୍କୁଲର ଜଣେ ମୁସଲମାନ ଶିକ୍ଷକର ଷଡ଼ଯନ୍ତ୍ର ପ୍ରଭାବରେ ବଶୀଭୂତ ହୋଇ ସେ ମୋ ସ୍କୁଲ କାର୍ଯ୍ୟରେ ହସ୍ତକ୍ଷେପ କରି ମୋତେ ଅପଦସ୍ଥ କରିବାକୁ ଚେଷ୍ଟା କରୁଅଛନ୍ତି । ସେ ଯେ ମୋର କିଛି ଅନିଷ୍ଟ କରିପାରିବେ ତାହା ନୁହେଁ, କିନ୍ତୁ ଦୁଃଖର ବିଷୟ ଏହି ଯେ ଏଭଳି ଦୁର୍ନୀତି ପରାୟଣ ଲୋକଙ୍କ ଅଧୀନରେ କାମ କରିବାକୁ ହେଉଅଛି । ମୁଁ ତିନି ମାସ ଛୁଟି ପାଇଁ ଆବେଦନ କରିଅଛି ଏବଂ ଅତିଶୀଘ୍ର ଇସ୍ତଫା ଦେବା ବିଷୟ ଭାବୁଅଛି । ଆର୍ଥିକ ଅବସ୍ଥା ଅତ୍ୟନ୍ତ ପ୍ରତିକୂଳ, ଅଥଚ ଶରୀର ଓ ମନ ଉଭୟ ଆଉ ଏଭଳି ସର୍ଭିସରେ ରହିବାକୁ ପରାଙ୍ମୁଖ ।

—ଶ୍ରୀ ମଧୁସୂଦନ

ଯାହାହେଉ ରୁଥାର ସାହେବ ଅଳ୍ପଦିନ ପରେ ଓଡ଼ିଶାର କାର୍ଯ୍ୟରୁ ଅବସର ଗ୍ରହଣ କଲେ । ସେତେବେଳେ ସେ ମଧୁସୂଦନଙ୍କ ପ୍ରତି ଯେଉଁ ଅବିବେଚନା କରିଥିଲେ, ତାହା ବୁଝିପାରି ଅନୁତପ୍ତ ଚିତ୍ତରେ ସ୍ୱୟଂ ମଧୁସୂଦନଙ୍କ ଗୃହକୁ ଆସି କ୍ଷମା ଭିକ୍ଷା କରିଥିଲେ ।

ଏହି ଘଟଣା ଗୋଟିଏ ଦିଗରେ ଯେପରି ମଧୁସୂଦନଙ୍କ ଚରିତ୍ରର ଶୁଦ୍ଧତା ଓ ସତ୍ୟନିଷ୍ଠାର ପରିଚାୟକ ସେହିପରି ଅପର ଦିଗରେ ଏହା ଇଂରାଜୀ ଚରିତ୍ରର ନ୍ୟାୟନିଷ୍ଠାର ମଧ୍ୟ ଅପୂର୍ବ ଉଦାହରଣ ଅଟେ । କାରଣ ଅଧସ୍ତନ କର୍ମଚାରୀଙ୍କ ପ୍ରତି ଅନ୍ୟାୟ ଦୁର୍ବ୍ୟବହାର ସଂସାରରେ ବହୁସ୍ଥଳରେ ଘଟିଥାଏ । କିନ୍ତୁ ତାହା ବୁଝିପାରି ଅକପଟରେ ତ୍ରୁଟି-ସ୍ୱୀକାର ଓ କ୍ଷମା ପ୍ରାର୍ଥନା କରିବା କଦାଚିତ୍ ଦେଖିବାକୁ ମିଳେ ।

ଟ୍ରେନିଂ ସ୍କୁଲରେ ହେଡ୍‌ମାଷ୍ଟର ଥିବା ସମୟରେ ମଧୁସୂଦନ ୧୮୯୮ ଖ୍ରୀଷ୍ଟାବ୍ଦ ଜାନୁୟାରିରୁ ଏପ୍ରିଲ ୧୫ ତାରିଖ ପର୍ଯ୍ୟନ୍ତ ଅସ୍ଥାୟୀ ଭାବରେ ଓଡ଼ିଶାର ଜଏଣ୍ଟ ଇନସ୍‌ପେକ୍‌ଟର କାର୍ଯ୍ୟ କରିଥିଲେ । ଏକାବେଳକେ ଏହିଭଳି ଦୁଇଟି ଦାୟିତ୍ୱପୂର୍ଣ୍ଣ କାର୍ଯ୍ୟଭାର ବହନ କରିବା ତାଙ୍କ ଜୀବନରେ କେତେଥର ଘଟିଅଛି ।

## (ଛ) ଓଡ଼ିଶା ବିଭାଗର ଜଏଣ୍ଟ ଇନସ୍‌ପେକ୍ଟର

୧୯୦୧ ଖ୍ରୀଷ୍ଟାବ୍ଦ ନଭେମ୍ବର ମାସରେ ସେ ବଙ୍ଗୀୟ ପ୍ରାଦେଶିକ ଶିକ୍ଷା ବିଭାଗର ସରକାରୀ କାର୍ଯ୍ୟର (ବେଙ୍ଗଲ ଏଜୁକେଶନ ସର୍ଭିସ) ସପ୍ତମ ଶ୍ରେଣୀକୁ

(ବେତନ ୨୫୦ ଟଙ୍କା) ଉନ୍ନୀତ ହେଲେ । ୧୯୦୫ ଖ୍ରୀଷ୍ଟାବ୍ଦରେ ଶିକ୍ଷା ବିଭାଗୀୟ ନୂତନ ବ୍ୟବସ୍ଥାନୁଯାୟୀ ଷଷ୍ଠ ଶ୍ରେଣୀରେ ସ୍ଥାନ ଲାଭ କଲେ । ସେତେବେଳେ ତାଙ୍କର ବେତନ ୩୫୦ ଟଙ୍କା । ତତ୍ପରେ ୧୯୦୭ ଖ୍ରୀଷ୍ଟାବ୍ଦ ଏପ୍ରିଲରୁ ଜୁଲାଇ ପର୍ଯ୍ୟନ୍ତ ଅସ୍ଥାୟୀ ଭାବରେ ଓଡ଼ିଶାର ସ୍କୁଲ ସମୂହର ଇନସ୍‌ପେକ୍ଟର କାର୍ଯ୍ୟ କରିଥିଲେ । ୧୯୦୭ ଖ୍ରୀଷ୍ଟାବ୍ଦ ଅକ୍ଟୋବର ୭ ତାରିଖରେ ସେ ବିଭାଗୀୟ ପଞ୍ଚମ ଶ୍ରେଣୀକୁ ଉନ୍ନୀତ ହୋଇ ମାସିକ ୪୦୦ ଟଙ୍କା ବେତନ ପାଇଲେ ଏବଂ ୧୯୦୭ ଖ୍ରୀଷ୍ଟାବ୍ଦ ଅକ୍ଟୋବର ୧୦ ତାରିଖରୁ ୧୯୦୮ ମାର୍ଚ୍ଚ ପର୍ଯ୍ୟନ୍ତ ୫ ମାସ ଅସ୍ଥାୟୀ ଭାବେ ବିଭାଗୀୟ ଇନସ୍‌ପେକ୍ଟର କାର୍ଯ୍ୟ କଲେ । ଏହି କେତେ ମାସ ସେ ଭାରତୀୟ ଶିକ୍ଷା ବିଭାଗର (Indian Educational Service) କର୍ମଚାରୀଶ୍ରେଣୀଭୁକ୍ତ ହୋଇ ମାସକୁ ଶହେ ଟଙ୍କା ଅତିରିକ୍ତ ଭତ୍ତା ପାଇଲେ । ୧୪ ମାର୍ଚ୍ଚ ୧୯୦୮ରୁ ସେ ଓଡ଼ିଶାର ଜଏଣ୍ଟ ଇନସ୍‌ପେକ୍ଟର ରୂପେ ସ୍ଥାୟୀ ଭାବରେ ନିଯୁକ୍ତ ହେଲେ । କିନ୍ତୁ ଏହି ସମୟରେ ବିଭାଗୀୟ ଇନସ୍‌ପେକ୍ଟର ପଦରେ ନିଯୁକ୍ତ ହୋଇ କେହି ନ ଆସିବା ପର୍ଯ୍ୟନ୍ତ ସେ ଉଭୟ କାର୍ଯ୍ୟ ସୁରୁଖୁରୁରୂପେ ପରିଚାଳନା କରିଥିଲେ ।

ବିଦ୍ୟାଳୟ ପରିଦର୍ଶନରେ ମଧୁସୂଦନଙ୍କ ପରିଦର୍ଶନ ରୀତି ସମ୍ପୂର୍ଣ୍ଣ ସ୍ୱତନ୍ତ୍ର ଥିଲା । ପରିଦର୍ଶନ ଶବ୍ଦର ଅର୍ଥ —ସବୁ ଦିଗରେ ଦର୍ଶନ । ମଧୁସୂଦନଙ୍କ ଏହିପ୍ରକାର ପରିଦର୍ଶନ ଦ୍ୱାରା ଛାତ୍ର ଏବଂ ଶିକ୍ଷକ ଉଭୟଙ୍କର ପରୀକ୍ଷା ହୁଏ ବୋଲି ତାଙ୍କ ପରିଦର୍ଶନର ପରଠୁ ବିଦ୍ୟାଳୟର ଛାତ୍ର ତଥା ଶିକ୍ଷକ ସନ୍ତ୍ରସ୍ତ ହୋଇ ପଡୁଥିଲେ । ସେ ଯେ କେବଳ ଶିକ୍ଷକମାନଙ୍କ କାର୍ଯ୍ୟ ଓ ଶିକ୍ଷାଦାନ ପ୍ରଣାଳୀ ପ୍ରତି ତୀକ୍ଷ୍ଣ ଦୃଷ୍ଟି ରଖୁଥିଲେ ତାହା ନୁହେଁ, ପ୍ରତ୍ୟେକ ଶ୍ରେଣୀର ଛାତ୍ରମାନଙ୍କ ଆଚରଣ ପ୍ରତି ମଧ୍ୟ ଲକ୍ଷ୍ୟ ରଖୁଥିଲେ । ଛାତ୍ରମାନଙ୍କ ପୋଷାକ ପରିଚ୍ଛଦ, ବସିବା, ଠିଆ ହେବା ଓ ପୁସ୍ତକ ଧରିବାର ଭଙ୍ଗୀ ଏବଂ ପଠନରୀତି ମଧ୍ୟରେ କୌଣସି ତ୍ରୁଟି ଲକ୍ଷ୍ୟ କଲେ ସଙ୍ଗେ ସଙ୍ଗେ ସେ ତାହାର ସଂଶୋଧନ କରୁଥିଲେ । ଶିକ୍ଷକମାନଙ୍କ ବୁଦ୍ଧି ବିଚକ୍ଷଣତା, ଶିକ୍ଷାଦାନ କ୍ଷମତା, ଶାସନପଟୁତା ପ୍ରଭୃତି ବିଷୟରେ ତ୍ରୁଟି ଦେଖିଲେ ପରିଦର୍ଶନ ପରେ ନିର୍ଜନରେ ସେମାନଙ୍କୁ ଡକାଇ ଆଣି ସେ ସେହି ବିଷୟରେ ସେମାନଙ୍କ ସହିତ ଆଲୋଚନା କରି ସଂଶୋଧନର ବ୍ୟବସ୍ଥା କରୁଥିଲେ ଏବଂ ଅନେକ ସମୟରେ

ଶ୍ରେଣୀ ମଧ୍ୟରେ ସୁବୁଦ୍ଧିପରିଚାୟକ ନାନା ପ୍ରଶ୍ନ ଦ୍ୱାରା ଛାତ୍ରମାନଙ୍କ ନିକଟରୁ ସନ୍ତୋଷଜନକ ଉତ୍ତର ଆଦାୟ କରି ନୂତନ ପଠନ-ସ୍ତରର ସଙ୍କେତ ଦେଖାଇଥିଲେ ।

ଓଡ଼ିଶାର ଇନସ୍‌ପେକ୍ଟର ରୂପେ କାର୍ଯ୍ୟ କରିବା ବେଳେ ମଧୁସୂଦନଙ୍କୁ ମୋଗଲବନ୍ଦୀ ଛଡ଼ା ଗଡ଼ଜାତର ବିଦ୍ୟାଳୟଗୁଡ଼ିକ ମଧ୍ୟ ପରିଦର୍ଶନ କରିବାକୁ ପଡ଼ୁଥିଲା ।* ସେହି ସୁଯୋଗରେ ସେ ଗଡ଼ଜାତର ଦେଶୀୟ ରାଜ୍ୟଗୁଡ଼ିକରେ ଭ୍ରମଣ କରି କେବଳ ଯେ ରାଜ୍ୟମାନଙ୍କ ସହିତ ସମ୍ପର୍କ ଯୋଗରେ ଯୁକ୍ତ ହୋଇଥିଲେ ତାହା ନୁହେଁ, ପରନ୍ତୁ ଉତ୍କଳ ପ୍ରକୃତିର ଶୋଭା-ସୌନ୍ଦର୍ଯ୍ୟ ଦର୍ଶନ କରି ତାଙ୍କର କବିଚିତ୍ତ ଅଶେଷ ଆନନ୍ଦ ଓ ପରିତୃପ୍ତି ଲାଭ କରିଥିଲା ।

ଏହିପରି ସମଗ୍ର ଉତ୍କଳର ଘରେ ଘରେ ସାଧୁଚରିତ୍ର ଉଦାରଚେତା ଶିକ୍ଷାଗୁରୁ ମଧୁସୂଦନଙ୍କ ନାମ ସୁପରିଚିତ ହୋଇଥିଲା । ତାହାର ଅନ୍ୟତମ ପ୍ରଧାନ କାରଣ ଏହି ଯେ ପ୍ରାଥମିକ ବିଦ୍ୟାଳୟରୁ ଆରମ୍ଭ କରି ଉଚ୍ଚ ଇଂରାଜୀ ବିଦ୍ୟାଳୟ ପର୍ଯ୍ୟନ୍ତ ଅଧିକାଂଶ ଶ୍ରେଣୀର ଓଡ଼ିଆ-ସାହିତ୍ୟ, ପ୍ରବନ୍ଧ ଓ କବିତା ସମ୍ବନ୍ଧୀୟ ପାଠ୍ୟପୁସ୍ତକ ସେ ରଚନା କରିଥିଲେ । ତାହାଙ୍କ ପ୍ରଣୀତ ବର୍ଣ୍ଣବୋଧ, ଶିଶୁବୋଧ, ବିଜ୍ଞାନପାଠ, ଅଙ୍କ ପୁସ୍ତକ ପ୍ରଭୃତି ଓଡ଼ିଶାର ସମସ୍ତ ବିଦ୍ୟାଳୟରେ ଅତି ଆଦରର ସହିତ ପଢ଼ା ହେଉଥିଲା ।

ତାଙ୍କ ଚରିତ୍ରର ମାଧୁର୍ଯ୍ୟ, କର୍ମ ଦକ୍ଷତା ଓ କର୍ତ୍ତବ୍ୟ ପରାୟଣତାରେ ସନ୍ତୁଷ୍ଟ ହୋଇ ୧୯୦୭ ଖ୍ରୀଷ୍ଟାବ୍ଦରେ ସରକାର ତାହାଙ୍କୁ 'ରାୟବାହାଦୁର' ଉପାଧିରେ ଭୂଷିତ କରିଥିଲେ । କିନ୍ତୁ ତଦପେକ୍ଷା ଅଧିକ ମୂଲ୍ୟବାନ ଏବଂ ଉଚ୍ଚତର ଉପାଧି ତାହାଙ୍କ ଗୁଣମୁଗ୍ଧ ଦେଶବାସୀ ତରଫରୁ ତାହାଙ୍କୁ

---

*ମୋଗଲବନ୍ଦୀ—ସମୁଦ୍ର ଉପକୂଳବର୍ତ୍ତୀ ତିନୋଟି ଜିଲ୍ଲା ଯଥା :- କଟକ, ପୁରୀ, ବାଲେଶ୍ୱର । ଏହି ଅଞ୍ଚଳରେ ପ୍ରଥମେ ମୁସଲମାନ ଶାସନ (ପରେ ମରହଟ୍ଟା ଏବଂ ଇଂରେଜ ଶାସନ) ପ୍ରବର୍ତ୍ତିତ ହୁଏ ବୋଲି ଏହି ଅଞ୍ଚଳକୁ ମୋଗଲବନ୍ଦୀ କୁହାଯାଉଥିଲା । ଓଡ଼ିଶାର ଦୁର୍ଗମ ପାର୍ବତ୍ୟ ଅଞ୍ଚଳ ବହୁ ବର୍ଷ ପର୍ଯ୍ୟନ୍ତ ଦେଶୀୟ ରାଜନ୍ୟବର୍ଗଙ୍କ ଦ୍ୱାରା ଶାସିତ ହେଉଥିଲା । ଏହି ଶେଷୋକ୍ତ ଅଞ୍ଚଳ 'ଗଡ଼ଜାତ' ନାମରେ ପରିଚିତ ।

ପ୍ରଦାନ କରିଥିଲେ; ତାହାହେଲା 'ଉତ୍କଳବନ୍ଧୁ' । ଏହି ଆଖ୍ୟା ଦ୍ୱାରା ସେ ସମଗ୍ର ଉତ୍କଳରେ ସୁପରିଚିତ ଓ ସମାଦୃତ ।

ଏହିପରି ନିଷ୍ଠାର ସହିତ ମାତୃଭାଷା ଓ ଉତ୍କଳୀୟ ଛାତ୍ର ଏବଂ ଶିକ୍ଷକ ସଂପ୍ରଦାୟର ସେବା କରୁ କରୁ ୧୯୦୯ ଖ୍ରୀଷ୍ଟାବ୍ଦ ଜୁଲାଇ ୨୮ ତାରିଖରେ ମଧୁସୂଦନ ସରକାରୀ ଚାକିରିରୁ ଅବସର ଗ୍ରହଣ କଲେ ।

ଶିକ୍ଷା ବିଭାଗର ଜଣେ ଉଚ୍ଚପଦସ୍ଥ କର୍ମଚାରୀ ହୋଇ ମଧ୍ୟ ସ୍ୱାଧୀନଚେତା ମଧୁସୂଦନ କୌଣସି ବିଦେଶୀ ସରକାରଙ୍କ ତୁଷ୍ଟିସାଧନ ପାଇଁ ଦେଶର ଅନିଷ୍ଟକର କୌଣସି କାର୍ଯ୍ୟ କରିନାହାନ୍ତି । ତାଙ୍କର ଯତ୍ନରେ ପ୍ରାଥମିକ ଓ ମଧ୍ୟଶ୍ରେଣୀର ବିଦ୍ୟାଳୟର ଶିକ୍ଷକମାନଙ୍କ ସମ୍ମେଳନ ଆହୂତ ହୋଇଥିଲା । ନୈଶ ବିଦ୍ୟାଳୟ, ବାଳିକା ବିଦ୍ୟାଳୟ ଓ ଅସ୍ପୃଶ୍ୟ ଜାତି ସମୂହଙ୍କ ପାଇଁ ବିଦ୍ୟାଳୟ ଇତ୍ୟାଦି କେତେ ଯେ ସଦନୁଷ୍ଠାନ ସେ ନାନା ସ୍ଥାନରେ କରିଯାଇଛନ୍ତି, ତାହାର ଇୟତ୍ତା ନାହିଁ । ଏ ଦିଗରେ ତାଙ୍କ ଜୀବନର ସର୍ବଶ୍ରେଷ୍ଠ କୀର୍ତ୍ତି "ଟାଉନ୍ ଭିକ୍ଟୋରିଆ ହାଇସ୍କୁଲ୍" ଏ ବିଷୟ ସ୍ୱତନ୍ତ୍ର ଭାବରେ ଅତଃପର ଉଲ୍ଲେଖିତ ହେଲା ।

## (କ) ଟାଉନ ଭିକ୍ଟୋରିଆ ହାଇସ୍କୁଲ

ପୂର୍ବରୁ ବର୍ଣ୍ଣିତ ହୋଇଅଛି ଯେ, ଆଦର୍ଶ ଶିକ୍ଷାର ଦୃଷ୍ଟାନ୍ତ ଦେଖାଇବା ପାଇଁ ମଧୁସୂଦନ ୧୮୮୧ ଖ୍ରୀଷ୍ଟାବ୍ଦରେ କଟକରେ ଟାଉନ ସ୍କୁଲ ନାମରେ ଯେଉଁ ବିଦ୍ୟାଳୟଟି ସ୍ଥାପନ କଲେ ୧୮୮୯ ଖ୍ରୀଷ୍ଟାବ୍ଦରେ ଏହାକୁ ହାଇସ୍କୁଲରେ ଉନ୍ନୀତ କରି ଅଳ୍ପକାଳ ପରେ ପୁନର୍ବାର ଏହାକୁ ପୂର୍ବାବସ୍ଥାରେ ଅର୍ଥାତ୍ ମଧ୍ୟଇଂରାଜୀ ବିଦ୍ୟାଳୟରେ ପରିଣତ କରିବାକୁ ବାଧ୍ୟ ହେଲେ । ବିଂଶ ଶତାବ୍ଦୀର ପ୍ରାରମ୍ଭରେ ମଧୁସୂଦନ ପୁଣି ଏହି ବିଦ୍ୟାଳୟଟିକୁ ହାଇସ୍କୁଲରେ ଉନ୍ନୀତ କରିବାକୁ ପ୍ରୟାସୀ ହେଲେ । ସେହି ସମୟରେ ଓଡ଼ିଶାରେ ଇଂରାଜୀ ଶିକ୍ଷା ପ୍ରତି ଜନସାଧାରଣଙ୍କ ଆଗ୍ରହ ବର୍ଦ୍ଧିତ ହେଉଥାଏ । କିନ୍ତୁ ଉଚ୍ଚ ଇଂରାଜୀ ବିଦ୍ୟାଳୟର ସଂଖ୍ୟା ସମଗ୍ର ପ୍ରଦେଶରେ ନିତାନ୍ତ ଅଳ୍ପ ଥାଏ । ଏହି ସମସ୍ତ ବିଦ୍ୟାଳୟ ସରକାରୀ ସାହାଯ୍ୟ ପ୍ରାପ୍ତ ଥିଲା ବୋଲି ବିଭାଗୀୟ ନିୟମାନୁଯାୟୀ ଏଗୁଡ଼ିକର ଛାତ୍ର ବେତନର ହାର ଦରିଦ୍ର ଛାତ୍ରଙ୍କ ପକ୍ଷରେ ପ୍ରତିକୂଳ ଥିଲା ।

ବିନା ବେତନରେ ବା ଅର୍ଦ୍ଧ ବେତନରେ ଛାତ୍ରଗ୍ରହଣ-ସମ୍ବନ୍ଧୀୟ ନିୟମାବଳୀ ମଧ୍ୟ ସରକାରୀ ବିଦ୍ୟାଳୟରେ କଠୋର ଥିଲା । ଉକ୍ତ କାରଣରୁ ଅନେକ ଦରିଦ୍ର ଛାତ୍ର ମଫସଲ ଏବଂ ନିକଟସ୍ଥ ଗଡଜାତ ଅର୍ଥାତ୍ ଦେଶୀୟ ରାଜ୍ୟ ଅଞ୍ଚଳରୁ କଟକ ଆସି ଉଚ୍ଚ ଇଂରାଜୀ ବିଦ୍ୟାଳୟରେ ଭର୍ତ୍ତି ହେବା ପାଇଁ ଇତସ୍ତତଃ ଦୌଡ଼ାଦୌଡ଼ି କରି ବିଫଳ ମନୋରଥ ହେଉଅଛନ୍ତି ଦେଖି ବିଦ୍ୟୋତ୍ସାହୀ ଓ ଛାତ୍ରବନ୍ଧୁ ମଧୁସୂଦନ ପ୍ରଧାନତଃ ଦରିଦ୍ର ଛାତ୍ରମାନଙ୍କ ସାହାଯ୍ୟ କଲେ । ୧୯୦୧ ଖ୍ରୀଷ୍ଟାବ୍ଦ ଫେବୃଆରୀ ୪ ତାରିଖ ସୋମବାର ଦିନ ତାଙ୍କ ମଧ୍ୟ ଇଂରାଜୀ ବିଦ୍ୟାଳୟଟିକୁ ଶୁଭବସନ୍ତ ଉଚ୍ଚ ଇଂରାଜୀ ବିଦ୍ୟାଳୟରେ ଉନ୍ନୀତ କଲେ । ଏହାର ଅଳ୍ପ କେତେଦିନ ପୂର୍ବେ ତଦାନୀନ୍ତନ ଭାରତ-ସାମ୍ରାଜ୍ଞୀ ଭିକ୍ଟୋରିଆ (୧୯୦୧ ଜାନୁଆରୀ ୨୨ ତାରିଖ) ପରଲୋକ ଗମନ କରିଥିଲେ । ମହାରାଣୀଙ୍କ ପ୍ରତି ସାଧାରଣ ଭାରତବାସୀଙ୍କ ପରି ମଧୁସୂଦନଙ୍କର ପ୍ରଗାଢ଼ ଭକ୍ତି ଓ ଶ୍ରଦ୍ଧା ଥିଲା । ସେହି ଶ୍ରଦ୍ଧା ଭକ୍ତିକୁ ସ୍ମରଣୀୟ କରିବା ପାଇଁ ମଧୁସୂଦନ ଏହି ସମୟରେ ତାହାଙ୍କ ସ୍କୁଲଟି ସହିତ ସାମ୍ରାଜ୍ଞୀ ଭିକ୍ଟୋରିଆଙ୍କ ନାମ ସଂଯୁକ୍ତ କରି ଏହାର ନୂତନ ନାମକରଣ କଲେ— ଟାଉନ ଭିକ୍ଟୋରିଆ ହାଇସ୍କୁଲ ।

କଟକ ଚାନ୍ଦନୀଚୌକ ଥାନାର ନିକଟବର୍ତ୍ତୀ ଫାଦର ବକ୍ସିଙ୍କ ପକ୍କା ଘରର ଦ୍ୱିତଳରେ ମଧୁସୂଦନ ୧୧ ଜଣ ଶିକ୍ଷକବନ୍ଧୁବର୍ଗଙ୍କୁ ନେଇ ଓ ତାଙ୍କର ବିଦ୍ୟାଳୟର ଦ୍ୱାରୋଦ୍‌ଘାଟନ କରିବାକୁ ଉପସ୍ଥିତ ହେଲେ । ତଦ୍‌ଗତଚିତ୍ତରେ ବ୍ରହ୍ମୋପାସନା ପୂର୍ବ ପୂର୍ବକ "ଅୟମାରମ୍ଭ ଶୁଭାୟ ଭବତୁ" କହି ଭଗବାନଙ୍କ ନିକଟରୁ ଶକ୍ତି ଓ ଆଶୀର୍ବାଦ ଭିକ୍ଷା କରି ସେଦିନ ମଧୁସୂଦନ ଯେଉଁ ପ୍ରାଣସ୍ପର୍ଶୀ ଉପାସନା କରିଥିଲେ ଉପସ୍ଥିତ ବ୍ୟକ୍ତିବର୍ଗଙ୍କ ମଧ୍ୟରୁ ଅନେକଙ୍କ ସ୍ମୃତିରେ ତାହାର କଥା ଓ ଉପାସନାକାଳୀନ ମଧୁସୂଦନଙ୍କ ଦିବ୍ୟଜ୍ୟୋତି ଉଦ୍ଭାସିତ ମୁଖଶ୍ରୀ ଆଜୀବନ ଜାଗରୂକ ଥିଲା ।

ଏହା ପୂର୍ବରୁ ଶ୍ରୀଯୁକ୍ତ ବିଶ୍ୱନାଥ କର ଏହି ସ୍କୁଲର ପ୍ରଧାନଶିକ୍ଷକତା ତ୍ୟାଗ କରି 'ଉତ୍କଳ ସାହିତ୍ୟ' ପତ୍ରିକା ସମ୍ପାଦନାରେ ଆତ୍ମନିୟୋଗ କରିଥିଲେ । ନିମ୍ନଲିଖିତ ଶିକ୍ଷକମାନଙ୍କୁ ନେଇ ନୂତନ ବିଦ୍ୟାଳୟର କାର୍ଯ୍ୟ ଆରମ୍ଭ ହେଲା—ଶ୍ରୀଯୁକ୍ତ ଧୀରେନ୍ଦ୍ରନାଥ ଚୌଧୁରୀ ଏମ୍.ଏ. (ହେଡ୍‌ମାଷ୍ଟର);

ଶ୍ରୀଯୁକ୍ତ ରାଜକୃଷ୍ଣ ଉକିଲ ବାବୁ, ଶ୍ରୀଯୁକ୍ତ ଅମୃତଲାଲ ରାୟ (ସହସମ୍ପାଦକ), ଶ୍ରୀଯୁକ୍ତ ଚନ୍ଦ୍ରଶେଖର ନନ୍ଦ, ଶ୍ରୀଯୁକ୍ତ ମାଧବାନନ୍ଦ କାବ୍ୟତୀର୍ଥ, ଶ୍ରୀଯୁକ୍ତ ମିତ୍ର ନନ୍ଦ, ଶ୍ରୀଯୁକ୍ତ ମୃତ୍ୟୁଞ୍ଜୟ ଦାସ, ଶ୍ରୀଯୁକ୍ତ ଦାମୋଦର ପ୍ରସାଦ ଚୈତ୍ର, ଶ୍ରୀଯୁକ୍ତ ଚୈତନ୍ୟପ୍ରସାଦ ଜେନା, ମୌଲବୀ ବସିରୁଦ୍ଦୀନ ।

ଶ୍ରୀଯୁକ୍ତ ଅମୃତଲାଲ ରାୟ ନବବିଧାନ ବ୍ରାହ୍ମସମାଜର ପ୍ରଚାରକ ଉପାଧ୍ୟାୟ ଗୌରଗୋବିନ୍ଦ ରାୟ ମହାଶୟଙ୍କ ଜ୍ୟେଷ୍ଠ ପୁତ୍ର ଏବଂ ମଧୁସୂଦନଙ୍କ ସହୋଦର ଜଗନ୍ନାଥ ରାଓଙ୍କ କନିଷ୍ଠ ଜାମାତା ଥିଲେ । ସେ ବିନା ବେତନରେ ଏହି ସ୍କୁଲର ଶିକ୍ଷକତା ଏବଂ ସହକାରୀ ସମ୍ପାଦକଙ୍କ କାର୍ଯ୍ୟ ନିଷ୍ଠାର ସହିତ କରୁଥିଲେ । ବିଦ୍ୟାଳୟର ପ୍ରଥମ ଅବସ୍ଥାରେ ତାଙ୍କର ଏହି ପ୍ରକାର ତ୍ୟାଗ ଓ ସାହାଯ୍ୟଦାନ ସର୍ବଥା ପ୍ରଶଂସାଯୋଗ୍ୟ ।

ଦେଖୁ ଦେଖୁ ବିଦ୍ୟାଳୟଟି ସମସ୍ତ ଶ୍ରେଣୀ ଛାତ୍ରରେ ପୂର୍ଣ୍ଣ ହୋଇଗଲା । ଛାତ୍ରସଂଖ୍ୟା ବୃଦ୍ଧି ପାଇଲେ ମଧ୍ୟ ସ୍କୁଲର ଆୟ ସେହି ତୁଳନାରେ ବଢିଲା ନାହିଁ । କାରଣ ଛାତ୍ର ବେତନର ହାର ଅତ୍ୟଳ୍ପ । ତଦୁପରି ବହୁ ଦରିଦ୍ର ଛାତ୍ର ମଧୁସୂଦନଙ୍କ ନିକଟରେ ସ୍କୁଲରେ ପଢିବା ପାଇଁ ଆବେଦନ କରିବାକୁ ଲାଗିଲେ । ମଧୁସୂଦନ ମଧ୍ୟ ସେମାନଙ୍କୁ ଅର୍ଦ୍ଧ ବେତନରେ କାହାକୁ ବା ବିନା ବେତନରେ ପଢିବା ପାଇଁ ଆଦେଶ ଦେବାକୁ ଲାଗିଲେ । ଏଥିରେ ସ୍କୁଲର ଯେଉଁ କ୍ଷତି ହେଉଥିଲା ତାହା ସେ ନିଜେ ପୂରଣ କରିବାକୁ ଲାଗିଲେ । ସେ ସମୟରେ ପ୍ରତି ଶନିବାରରେ ଛାତ୍ରମାନଙ୍କୁ କିଛି ନୀତିଶିକ୍ଷା ଦେବାର ରୀତି ଥିଲା । ତତ୍ପରେ ସ୍କୁଲର କାର୍ଯ୍ୟ ପରିଚାଳନା କରିବା ପାଇଁ ଶିକ୍ଷକ-ମାନଙ୍କର ଯେଉଁ କମିଟି ଥିଲା, ତାହାର ଅଧିବେଶନ ହେଉଥିଲା । ଏହି କମିଟିରେ ମଧୁସୂଦନ ଆଜୀବନ ସଭାପତି ଥିଲେ ଓ ନିୟମିତ ଭାବରେ କମିଟିର କାର୍ଯ୍ୟ କରୁଥିଲେ । କମିଟି ଅନେକ ସମୟରେ ଅବୈତନିକ ଛାତ୍ର ବୃଦ୍ଧି ବିଷୟରେ ଆପତ୍ତି କରୁଥିଲେ, କିନ୍ତୁ ମଧୁସୂଦନ ଦରିଦ୍ର ଛାତ୍ରମାନଙ୍କୁ ସାହାଯ୍ୟଦାନରୁ ବିରତ ହୋଇ ପାରିନାହାନ୍ତି ।

ସେତେବେଳେ ଶିକ୍ଷକମାନେ ଅଳ୍ପ ବେତନରେ କାର୍ଯ୍ୟ କଲେ ମଧ୍ୟ ସ୍କୁଲର ମାସିକ ବ୍ୟୟ ପ୍ରାୟ ତିନି ଶତ ଟଙ୍କା ଅନ୍ଦାଜ ଥିଲା । ଛାତ୍ରଦତ୍ତ ବେତନରେ ଆୟ ମାସିକ ୨୦୦ ପ୍ରାୟ ଦୁଇ ଶତ ଟଙ୍କା ହେଉଥିଲା ଏବଂ

ବାମଣ୍ଡାର (ଦେଶୀୟ ରାଜ୍ୟ) ମହାରାଜ ସଚ୍ଚିଦାନନ୍ଦ ତ୍ରିଭୁବନଦେବ ମାସିକ ଚାଳିଶ ଟଙ୍କା କରି ସାହାଯ୍ୟ ଦେଉଥିଲେ । ତଥାପି ମଧୁସୂଦନଙ୍କୁ ମାସିକ ପ୍ରାୟ ୫୦ ଟଙ୍କା ସାହାଯ୍ୟ ଦେବାକୁ ପଡ଼ୁଥିଲା । ମଧୁସୂଦନ ସେତେବେଳେ ଟ୍ରେନିଂ ସ୍କୁଲର ପ୍ରଧାନଶିକ୍ଷକ, ବେତନ ୨୦୦ (ଦୁଇଶତ ଟଙ୍କା) । ସୁତରାଂ ତାଙ୍କ ପକ୍ଷରେ ମାସିକ ପଚାଶ ଟଙ୍କା ସାହାଯ୍ୟ ଦେବା କଷ୍ଟକର ଥିଲା । ଛାତ୍ରମାନଙ୍କ ବେତନ କିଛି ବଢ଼ାଇ ଦେଲେ ଆୟ ବଢ଼ନ୍ତା, କିନ୍ତୁ ସେଥିରେ ସେ ସ୍ୱୀକୃତ ହୋଇନଥିଲେ । କୌଣସି କୌଣସି ବନ୍ଧୁ ସ୍କୁଲ ପାଇଁ ସରକାରୀ ସାହାଯ୍ୟ ଗ୍ରହଣ କରିବାକୁ ତାଙ୍କୁ ପୁନଃ ପୁନଃ ଅନୁରୋଧ କରିଥିଲେ, ସେଥିରେ ମଧ୍ୟ ଅସମ୍ମତ ହୋଇ ମଧୁସୂଦନ କହିଲେ "ସାମାନ୍ୟ ଅର୍ଥ ଲୋଭରେ ସମସ୍ତ ସ୍ୱାଧିକାର ଓ ସ୍ୱାଧୀନତା ହରାଇବା ବୁଦ୍ଧିର କାର୍ଯ୍ୟ ନୁହେଁ ।

ସରକାରୀ ସାହାଯ୍ୟ ଗ୍ରହଣ କରାଗଲା ନାହିଁ ଦେଖି କେହି କେହି ମନେ କରିଥିଲେ ଯେ ଏହି ସ୍କୁଲ ବିଶ୍ୱବିଦ୍ୟାଳୟର ଅନୁମୋଦନ ଲାଭ କରିବ ନାହିଁ । କିନ୍ତୁ ସେଥିରେ ଅନୁମୋଦନ ଲାଭରେ କୌଣସି ବାଧା ହୋଇନାହିଁ ।

ପ୍ରଥମ ବର୍ଷର ଶେଷରେ ଅର୍ଥାତ୍ ୧୯୦୨ ଖ୍ରୀଷ୍ଟାବ୍ଦରେ ଏହି ସ୍କୁଲର ପ୍ରବେଶିକା ପରୀକ୍ଷା ପାଇଁ ଯେଉଁ କେତେଜଣ ଛାତ୍ର ପ୍ରେରିତ ହୋଇଥିଲେ ତନ୍ମଧ୍ୟରୁ ନିମ୍ନଲିଖିତ ଛଅ ଜଣ ଛାତ୍ର ପରୀକ୍ଷାରେ କୃତକାର୍ଯ୍ୟ ହୋଇଥିଲେ । ଉମାକାନ୍ତ ମହାପାତ୍ର, ପ୍ରଶାନ୍ତ ରାଓ (ମଧୁସୂଦନଙ୍କ ଦ୍ୱିତୀୟ ପୁତ୍ର), ନରେନ୍ଦ୍ରନାଥ ଶୀଳ, ଅଂଶୁବନ୍ଧୁ ମହାନ୍ତି ଓ ବୈଦ୍ୟନାଥ ପଟ୍ଟନାୟକ ।

ପ୍ରଥମ ବର୍ଷରେ ଏହି ପ୍ରକାର ସଫଳତା ଲାଭ ଶିକ୍ଷକ ଓ ପରିଚାଳକବର୍ଗଙ୍କ ଆନନ୍ଦର ବିଷୟ ହୋଇଥିଲା ।

ପୂର୍ବୋକ୍ତ ଯେଉଁ ପକ୍କା ଘରଟିରେ ସ୍କୁଲ ଚାଲୁଥିଲା, ଛାତ୍ରସଂଖ୍ୟା ବର୍ଦ୍ଧିତ ହେବାରୁ ସେଠାରେ ସ୍ଥାନାଭାବ ବଶତଃ ମଧୁସୂଦନଙ୍କ କାଳୀଗଳିସ୍ଥ ନିଜ ଗୃହକୁ ସ୍କୁଲଟି କେତେ ମାସ ପାଇଁ ସ୍ଥାନାନ୍ତରିତ ହେଲା । ତତ୍ପରେ ସେଠାରୁ ଜଗନ୍ନାଥ ରାଓ ମହାଶୟଙ୍କ ଅଧିକୃତ ବାଙ୍କା ବଜାରସ୍ଥିତ ଶ୍ରୀହାଟ ନାମକ ପରିଚିତ ସ୍ଥାନକୁ ଉଠି ଆସିଲା । ସ୍କୁଲର ନିଜସ୍ୱ ଗୃହ ପ୍ରସ୍ତୁତ ନହେବା ପର୍ଯ୍ୟନ୍ତ ସ୍କୁଲଟି ଏଠାରେ ଚାଲୁଥିଲା ।

୧୯୦୯ ଖ୍ରୀଷ୍ଟାବ୍ଦ ଜୁଲାଇ ୨୮ ତାରିଖରେ ମଧୁସୂଦନ ଓକିଲରୁ ଅବସର ଗ୍ରହଣ କରି ତାଙ୍କ ପ୍ରାଣପ୍ରିୟ କଟକ ଭିକ୍ଟୋରିଆ ହାଇସ୍କୁଲ ପାଇଁ ଏକ ନିଜସ୍ୱ ଗୃହ-ନିର୍ମାଣ କାର୍ଯ୍ୟରେ ବିଶେଷ ଭାବେ ଆତ୍ମନିୟୋଗ କଲେ । ଏହି ଗୃହ ନିର୍ମାଣରେ ପନ୍ଦର ହଜାର ଟଙ୍କା ବ୍ୟୟ ହୋଇଥିଲା । ଧନୀ ଦରିଦ୍ର ନିର୍ବିଶେଷରେ ଜନସାଧାରଣଙ୍କ ମଧ୍ୟରୁ ଅର୍ଥ ସଂଗୃହୀତ ହୋଇଥିଲା । ଦରିଦ୍ରର ସାମାନ୍ୟତମ ଦାନ ମଧ୍ୟ ସେ କୃତଜ୍ଞତା ଓ ଧନ୍ୟବାଦ ସହ ଗ୍ରହଣ କରୁଥିଲେ । ଅର୍ଥ ସଂଗ୍ରହ ପାଇଁ ବାର୍ଦ୍ଧକ୍ୟ ଓ ଦୁର୍ବଳ ଅସୁସ୍ଥ ହେବା ସତ୍ତ୍ୱେ କଟକ ସହର ଓ ତତ୍‌ପାର୍ଶ୍ୱବର୍ତ୍ତୀ ବହୁ ଗ୍ରାମ ସେ ଏକାକୀ ବୁଲୁଥିଲେ । କିନ୍ତୁ ପ୍ରୟୋଜନୀୟ ଅର୍ଥ ସଂଗୃହୀତ ନ ହେବାରୁ, ତାହାଙ୍କୁ ସମ୍ବଲପୁରଠାରୁ ଗଞ୍ଜାମ ପର୍ଯ୍ୟନ୍ତ ଓଡ଼ିଶାର ରାଜନ୍ୟବର୍ଗଙ୍କ ଠାରୁ ଅର୍ଥାନୁକୂଲ୍ୟ ଭିକ୍ଷା କରିବାକୁ ପଡ଼ିଥିଲା ।

ଏହିପରି ଅକ୍ଳାନ୍ତ ପରିଶ୍ରମ ଦ୍ୱାରା ପ୍ରାପ୍ତ ଚଉଦ ହଜାର ଟଙ୍କା ସଂଗ୍ରହ କରି କଟକ ସହରର ମଧ୍ୟବର୍ତ୍ତୀ କାଜିବଜାର ଅଞ୍ଚଳରେ ସେ ସ୍କୁଲ ପାଇଁ ଗୋଟିଏ ଇଷ୍ଟକ ନିର୍ମିତ ନୂତନ ଗୃହ ନିର୍ମାଣ କଲେ । ୧୯୧୧ ଖ୍ରୀଷ୍ଟାବ୍ଦ ଫେବ୍ରୁୟାରୀ ୨ ତାରିଖରେ ସ୍କୁଲ ଗୃହର ଦ୍ୱାର ଉଦ୍‌ଘାଟନ କାର୍ଯ୍ୟ ଓଡ଼ିଶାର ତତ୍କାଳୀନ କମିଶନର ଲେଭିଞ୍ଜ ସାହେବଙ୍କ ଦ୍ୱାରା ସମାହିତ ହେଲା । ସେଦିନ ଭକ୍ତ, ବିଶ୍ୱାସୀ, ଭଗବାନରେ ନିରନ୍ତର ନିର୍ଭରଶୀଳ ମଧୁସୂଦନଙ୍କ କଣ୍ଠରୁ ଯେଉଁ ପ୍ରାର୍ଥନାବାଣୀ ନିଃସୃତ ହୋଇଥିଲା, ତାହା ଉପସ୍ଥିତ ଜନଗଣଙ୍କ ଅନ୍ତରକୁ ଦ୍ରବିତ କରି ସ୍କୁଲ ପ୍ରତି ସ୍ଥାୟୀ ସହାନୁଭୂତି ଜଗାଇଥିଲା ।

୧୮୮୧ ଖ୍ରୀଷ୍ଟାବ୍ଦରେ ସ୍କୁଲଟି ସ୍ଥାପନ କରି ତିରିଶ ବର୍ଷ ବ୍ୟାପି ଏହାର ଉନ୍ନତି ପାଇଁ ଆପ୍ରାଣ ଚେଷ୍ଟା ଓ ସଂଗ୍ରାମ କରିବା ଫଳରେ ଏତେଦିନରେ ତାଙ୍କ ଚିରପୋଷିତ ଆକାଙ୍‌କ୍ଷା ଭଗବତ୍ କୃପାରୁ ପୂର୍ଣ୍ଣ ହେଲା ।

ଗୃହ ନିର୍ମାଣ କାର୍ଯ୍ୟ ସମାପ୍ତ ହେଲେ ମଧ୍ୟ ସ୍କୁଲର ଉନ୍ନତି ପାଇଁ ମଧୁସୂଦନଙ୍କ ଚେଷ୍ଟାରେ ବିରାମ ହୋଇନାହିଁ । ସରକାରୀ ସାହାଯ୍ୟ ଗ୍ରହଣରେ ଅଥବା ବିଦ୍ୟାଳୟର ବେତନ ହାର ବୃଦ୍ଧିରେ ସେ ଅସମ୍ମତ ହେବାରୁ ସ୍କୁଲର ଆର୍ଥିକ ଅନାଟନ ଦୂରୀକରଣ ପାଇଁ ଶିକ୍ଷୋନ୍ନତିବିଧାନ

ହାଇ ବିଦ୍ୟାଳୟଟିକୁ ଆକର୍ଷଣୀୟ କରି ଗଢିବା ତାଙ୍କର ପ୍ରଧାନ କାର୍ଯ୍ୟ ଥିଲା । ତଦୁଦ୍ଦେଶ୍ୟରେ ସେ ଉପଯୁକ୍ତ ଶିକ୍ଷକ ନିଯୋଗ ପ୍ରତି ବିଶେଷ ମନୋଯୋଗ ଦେଇଥିଲେ । ଛାତ୍ରମାନଙ୍କ ଚରିତ୍ର ଗଠନ ପ୍ରତି ବିଶେଷ ଦୃଷ୍ଟି ରଖି ସେ ବଙ୍ଗ ଦେଶରୁ ଆଦର୍ଶବାନ ଅଭିଜ୍ଞତା ଓ ଖ୍ୟାତିସମ୍ପନ୍ନ, ସୁଦକ୍ଷ ପ୍ରଧାନ ଶିକ୍ଷକମାନଙ୍କୁ କ୍ରମାନ୍ୱୟରେ ଆଣିବାକୁ ସମର୍ଥ ହୋଇଥିଲେ । ନିଜେ ମଧ୍ୟ ମଝିରେ ମଝିରେ ସ୍କୁଲକୁ ଯାଇ ଶିକ୍ଷାର ତତ୍ତ୍ୱାବଧାନ ଓ ପ୍ରୟୋଜନ ମୁତାବକ ଶିକ୍ଷକ ଓ ଛାତ୍ରମାନଙ୍କୁ ସଦୁପଦେଶ ଦାନ କରୁଥିଲେ । ଅଧିକନ୍ତୁ କେବେ କେବେ କିଛିଦିନ ପ୍ରତ୍ୟହ ସ୍କୁଲକୁ ଯାଇ ନିୟମିତ ରୂପେ ଉଚ୍ଚ ଶ୍ରେଣୀରେ ଇଂରାଜୀ ପଢ଼ାଇବାର ଭାର ମଧ୍ୟ ଗ୍ରହଣ କରୁଥିଲେ । ତାଙ୍କ ନିକଟରୁ ଶିକ୍ଷାଲାଭ କରିବାର ସୁଯୋଗ ଆଶାରେ ଅନେକ ଛାତ୍ର ଆଗ୍ରହାନ୍ୱିତ ହୋଇ ସ୍କୁଲରେ ଭର୍ତ୍ତି ହେଉଥିଲେ ଏବଂ ବହୁ ଅଭିଭାବକ ସ୍କୁଲ ପ୍ରତି ତାଙ୍କର ଯତ୍ନ ଦେଖି ସ୍ୱ ସ୍ୱ ସନ୍ତାନମାନଙ୍କୁ ଆନନ୍ଦରେ ତାଙ୍କ ସ୍କୁଲକୁ ପ୍ରେରଣ କରୁଥିଲେ । ଏହାପର ତାଙ୍କ ମୃତ୍ୟୁ ବେଳକୁ ଏହି ସ୍କୁଲର ଛାତ୍ର ସଂଖ୍ୟା ପ୍ରାୟ ପାଞ୍ଚ ଶହ ହୋଇଥିଲେ ।



# ଚତୁର୍ଥ ପରିଚ୍ଛେଦ

## ଭକ୍ତକବିଙ୍କ ସାହିତ୍ୟ-ସାଧନା

(ଶ୍ରୀ ପ୍ରିୟରଞ୍ଜନ ସେନ୍)

ବର୍ତ୍ତମାନ ଯୁଗର ଓଡ଼ିଆ ସାହିତ୍ୟ ଯେଉଁ କେତେ ଜଣ ମନୀଷୀଙ୍କ ଚେଷ୍ଟାରେ ସମ୍ଭବ ହୋଇଅଛି, ଭଞ୍ଜଯୁଗୀୟ ଋତିର ପ୍ରଭାବ ଅତିକ୍ରମ କରି ଯେଉଁମାନେ ନବଯୁଗର ନବସାହିତ୍ୟ ଗଢ଼ିଛନ୍ତି—ନୂତନ ଛନ୍ଦ ଓ ନୂତନ ପଦବିନ୍ୟାସରେ ସାହିତ୍ୟର ପ୍ରକାଶଭଙ୍ଗୀକୁ ବୃହତ୍ତର ବ୍ୟଞ୍ଜନା ଦେଇଛନ୍ତି, ନବ ଭାବନାକୁ ରୂପ ଦେଇଛନ୍ତି—ମଧୁସୂଦନ ସେମାନଙ୍କ ମଧ୍ୟରେ ଅନ୍ୟତମ ଅଗ୍ରଣୀ । ଭାଷା ଓ ସାହିତ୍ୟର ଅଗ୍ରଗତି ସମ୍ମୁଖରେ ଅବଶ୍ୟ ଜନତାଦନର ସାଧାରଣ ପାଠକ ଅତୀତକୁ ଭୁଲି ବର୍ତ୍ତମାନ ପ୍ରତି ଦୃଷ୍ଟି ନିବଦ୍ଧ କରେ, କିନ୍ତୁ ଇତିହାସ ପୂର୍ବସୂରୀମାନଙ୍କୁ ଭୁଲି ପାରେନାହିଁ । ତାହାର ପୃଷ୍ଠାରେ ପୃଷ୍ଠାରେ ସେମାନଙ୍କର କୀର୍ତ୍ତିକଥା ଲେଖି ରଖିବାକୁ ଚାହେଁ, ତାହାର ପ୍ରାଣସଞ୍ଚାରରେ ଯେଉଁମାନଙ୍କର ଅସ୍ତିତ୍ୱ ମିଶିଅଛି, ସେମାନଙ୍କ ନାମ ଭବିଷ୍ୟ ବଂଶୀୟମାନଙ୍କ ସମ୍ମୁଖରେ ଧରି ରଖିବାକୁ ଚାହେଁ, କହିବାକୁ ଇଚ୍ଛା କରେ—"ଏମାନଙ୍କୁ ଦେଖ, ଏମାନଙ୍କ ରଚନା ଦ୍ୱାରା ହିଁ ତୁମ୍ଭମାନଙ୍କର ବର୍ତ୍ତମାନ ସମୃଦ୍ଧି ସମ୍ଭବ ହୋଇଅଛି ।" ଏହିପରି ଜଣେ ସୂରୀ ଥିଲେ ମଧୁସୂଦନ ରାଓ । ବର୍ତ୍ତମାନ ମଧ୍ୟ ଓଡ଼ିଶାର ଗ୍ରାମାଞ୍ଚଳ ପର୍ଯ୍ୟନ୍ତ ମଧୁସୂଦନଙ୍କ କଥା ଲୋକେ ଭକ୍ତି ସହିତ ସ୍ମରଣ କରନ୍ତି । ଭକ୍ତକବି ନାମରେ ସେ ପରିଚିତ ।

୧୯୧୨ ଖ୍ରୀଷ୍ଟାବ୍ଦରେ ମଧୁସୂଦନଙ୍କ ଦେହାନ୍ତ ହେବାର ତିନି ବର୍ଷ ପରେ ୧୯୧୫ ଖ୍ରୀଷ୍ଟାବ୍ଦରେ ତାଙ୍କ ଗ୍ରନ୍ଥାବଳୀ ପ୍ରକାଶିତ ହେଲା । ମଧୁସୂଦନଙ୍କ ଛାତ୍ରମାନଙ୍କ ମଧ୍ୟରେ ଅନ୍ୟତମ ପଣ୍ଡିତ ମୃତ୍ୟୁଞ୍ଜୟ ରଥ ଗ୍ରନ୍ଥାବଳୀର ପୂର୍ବଭାଗରେ ତାଙ୍କର ସଂକ୍ଷିପ୍ତ ଜୀବନ ବୃତ୍ତାନ୍ତ ଓ ମଧୁସୂଦନ ଦାଶ ମହାଶୟ ତାହାର ଭୂମିକା ଲେଖିଛନ୍ତି । ଦାଶ-ମହାଶୟ ଭୂମିକାର ଶେଷ ଭାଗରେ, କବି ଯେ ନବଯୁଗର ସୁରୁଚି ଶିକ୍ଷା ବିଷୟରେ ଉତ୍କୃଷ୍ଟ ଆଦର୍ଶ ସ୍ଥାପନ

କରିଅଛନ୍ତି । ତାହା ବିଶେଷ ଭାବରେ ଉଲ୍ଲେଖ କରିଅଛନ୍ତି । ବିଭିନ୍ନ ଗ୍ରନ୍ଥ-ରଚନାର କାଳାନୁକ୍ରମ ମଧ୍ୟ ଭୂମିକାରେ ଦିଆଯାଇଛି ।

ଭକ୍ତକବି ସାହିତ୍ୟ ରଚନାରେ ପ୍ରବୃତ୍ତ ହେଲେ, କେବଳ ଅନ୍ତରର ପ୍ରେରଣାରେ ନୁହେଁ, ପ୍ରୟୋଜନର ଅନୁରୋଧରେ ମଧ୍ୟ । ଇଂରାଜୀ ସାହିତ୍ୟରେ ଶିଶୁ-ସାହିତ୍ୟର ସୃଷ୍ଟି ସେତେବେଳେ ବିଶେଷ କିଛି ହୋଇନାହିଁ । ଏ ଦେଶରେ ଶିଶୁସାହିତ୍ୟର ଜନ୍ମ ଓ ପରିପୁଷ୍ଟି ଆଧୁନିକ କାଳରେ ହିଁ ଘଟିଛି; ଶିଶୁସାହିତ୍ୟ, ଅର୍ଥାତ୍ ଶିଶୁମାନେ ଯାହା ବୁଝିପାରନ୍ତି, ଯାହା ଆବୃତ୍ତି କରିପାରନ୍ତି, ପ୍ରଭାତ ଓ ସନ୍ଧ୍ୟାର ସୌନ୍ଦର୍ଯ୍ୟ ଏବଂ ଈଶ୍ୱରଙ୍କର ସର୍ବ ସ୍ତବ-ସ୍ତୁତିକୁ ଆମ୍ଭେମାନେ କୋମଳମତି ଶିଶୁମାନଙ୍କର ଅବଶ୍ୟ ବା ନିଶ୍ଚୟ ବୋଧଗମ୍ୟ ବୋଲି ମନେକରୁଁ ଏବଂ ସେମାନଙ୍କର ପାଠ୍ୟପୁସ୍ତକରେ ଏହିପ୍ରକାର ରଚନା ପାଇଁ ଗୋଟିଏ ସ୍ଥାନ ମଧ୍ୟ ରଖିଦେଉଁ । କିନ୍ତୁ ସ୍ଥାନ ରଖିଲେ କ'ଣ ହେବ, ବିଷୟବସ୍ତୁର ତ ପ୍ରୟୋଜନ ? ତତ୍କାଳୀନ ଓଡ଼ିଆ ସାହିତ୍ୟରେ ଏପରି କବିତାର ନିତାନ୍ତ ଅଭାବ ଥିଲା । ସେ ଏ ବିଷୟରେ ପଥ ଦେଖାଇ ଦେଲେ— ତେଣୁ 'ପଥିକୃତ୍' ନାମ ତାହାଙ୍କୁ ଭଲ ମାନେ । ଗ୍ରନ୍ଥାବଳୀର ଭୂମିକା-ଲେଖକ କହିଛନ୍ତି କବିତାଗୁଡ଼ିକ ମଧ୍ୟରେ ନିବେଦିତ ଭକ୍ତି ଓ ପ୍ରୀତି କେବଳ ଶିଶୁ କାହିଁକି, ବୟସ୍କମାନଙ୍କର ମଧ୍ୟ ଉପଭୋଗ୍ୟ ଓ ଅନୁଭବଯୋଗ୍ୟ । ଆମ୍ଭର ମନେହୁଏ, କବିଙ୍କର ବୃହତ୍ତର ଉଦ୍ଦେଶ୍ୟର ବୀଜ ଏଥିରେ ନିହିତ ଥିଲା—ପ୍ରକୃତି ସୌନ୍ଦର୍ଯ୍ୟରେ ମଗ୍ନ ହୋଇ ବିଶ୍ୱପିତାଙ୍କ ଜୟଗାନ କରିବା ଛଳରେ ।

ତାଙ୍କର 'ଛାନ୍ଦମାଳା'ର ଦୁଇ ଭାଗ ଏକ ଉଦ୍ଦେଶ୍ୟରେ ରଚିତ । ଶିଶୁ ଏବଂ କିଶୋର ଅଧିକାଂଶ ସମୟରେ ସ୍ତବ ଓ ପ୍ରାର୍ଥନାକୁ ହିଁ କାବ୍ୟଶିକ୍ଷାର ବା କାବ୍ୟପାଠର ଅର୍ଥ ବୋଲି ଜାଣେ । ରବୀନ୍ଦ୍ରନାଥଙ୍କ କିଛି କାବ୍ୟକୁ ଇଂରାଜୀରେ ଅନୁବାଦ କରି ନାମ ଦିଆହୋଇଥିଲା— Prayers । ସୁତରାଂ ମଧୁସୂଦନ ତାଙ୍କ କବିତାରେ ସ୍ତୁତିପାଠ ଯେଉଁ ପ୍ରକୃତି ବର୍ଣ୍ଣନା, ତାହା ଭଗବାନଙ୍କର ଉଦ୍ଦେଶ୍ୟରେ ସ୍ତବସ୍ତୁତିର ଉତ୍ତର ହୋଇ କରିଥାଆନ୍ତି, ତାହାହେଲେ ସନ୍ଧ୍ୟାଭିମୁଖରେ ହିଁ ଅଗ୍ରସର ହୋଇଛନ୍ତି । ତାଙ୍କ 'ଛାନ୍ଦମାଳା' ତୃତୀୟ-ଭାଗରେ ପ୍ରକୃତି ଯେଉଁମାନେ ବାଲ୍ୟକାଳରେ କଣ୍ଠସ୍ଥ କରିଥିଲେ, ପ୍ରୌଢ଼ାବସ୍ଥାରେ ମଧ୍ୟ ତାର କେତୋଟି ସ୍ତବକକୁ ସେମାନେ ବାରମ୍ବାର ଆବୃତ୍ତି କରି ତାର ରସାସ୍ୱାଦନ କରିଥାଆନ୍ତି; ଯଥା :—

'ହେ ଆନନ୍ଦମୟ, କୋଟି ଭୁବନପାଳକ,
ଅଧମ ଅକ୍ଷମ ମୂର୍ଖ ଅବୋଧ ବାଳକ,
ଜ୍ଞାନଦାତା ଭଗବାନ,
ଦିଅ ମୋତେ ଶୁଭବୁଦ୍ଧି ଦିଅ ଦିବ୍ୟଜ୍ଞାନ ।
ସତ୍ୟପଥେ ଧର୍ମପଥେ ଘେନିଯାଅ ମୋତେ,
ଭସାଅ ପରାଣ ମୋର ତବ ପ୍ରେମସ୍ରୋତେ,
ପ୍ରଭୋ ପରମଶରଣ,
ଏ ଜୀବନ ଶ୍ରୀଚରଣେ କଲି ସମର୍ପଣ ।'

ଛନ୍ଦମାଳା ସମ୍ବନ୍ଧରେ ଆଉ ଗୋଟିଏ ବିଷୟ ଲକ୍ଷ୍ୟ କରିବା ଉଚିତ । ପ୍ରଥମତଃ, ଦେଶଭକ୍ତି ବା ଦେଶପ୍ରେମ ଅନ୍ୟାନ୍ୟ ପ୍ରସଙ୍ଗରେ ସମାନ ପର୍ଯ୍ୟାୟରେ ସ୍ଥାନ ପାଇଅଛି ।

ଜୟ ମା ଜନମଭୂମି ଉତ୍କଳ ଭାରତଭୂମି
ତୋହର ସନ୍ତାନ ଆମ୍ଭେ ଅଟୁଁ ସରବେ;
ତୋର ଶ୍ରୀଚରଣ ସେବା ଲାଗି ମନ ପ୍ରାଣ ଦେବା
ଗାଇବା ତୋହର ନାମ ଆନନ୍ଦ ରବେ ।
ତୋ ଆନନ୍ଦେ ହୋଇବୁ ସୁଖୀ,
କାନ୍ଦିବା ଦୁଃଖରେ ତୋର ହୋଇଣ ଦୁଃଖୀ ।

ଦ୍ୱିତୀୟତଃ, କବି ଏଠାରେ ପୂର୍ବପ୍ରଚଳିତ ଓଡ଼ିଆ ଛନ୍ଦ ଓ ରାଗରାଗିଣୀରୁ ନିଜକୁ ବିମୁକ୍ତ କରିନାହାନ୍ତି-ଗୀତି ତାର ଦୃଷ୍ଟାନ୍ତ । କଳହଂସ କେଦାର, କେଦାରା, ଚକ୍ରକେଳି ପ୍ରଭୃତି ବୃତ୍ତକୁ ଅବଲମ୍ବନ କରି ସେ କବିତା ରଚନା କରିଅଛନ୍ତି । କବିତା ସ୍ୱର ଲୟରେ ଗାଇବା ଲାଗି ମଧ୍ୟ ଉଦ୍ଦିଷ୍ଟ । ଏକଦା ଗୀତକାବ୍ୟ ଗାନହିଁ ଥିଲା ଜାତିର ପ୍ରାଣ । ଏବେ ସେ ପ୍ରାଣ ସ୍ଥାନରେ ଆସିଅଛି ଅନ୍ୟ ପ୍ରାଣ; କବିତା ଗାଇବାକୁ ହେବନାହିଁ, ଆବୃତ୍ତି ହେବ, ପଢ଼ା ହେବ । 'ଛନ୍ଦମାଳା'ରେ ଉକ୍ତ ଦୁଇଟି ପ୍ରବୃତ୍ତି ଆସି ମିଶିଅଛି ।

ତୃତୀୟତଃ, ବିଷୟବସ୍ତୁ—ମହାଭାରତର 'କର୍ଣ୍ଣବଧ' ଅବଲମ୍ବନରେ କାବ୍ୟ ରଚନା—ଏହା ମଧ୍ୟ କବିଙ୍କ ରଚନା ଦିଗରୁ ଗୁରୁତ୍ୱପୂର୍ଣ୍ଣ । ନବଯୁଗର

ସାହିତ୍ୟ-ସାଧନା ପ୍ରାଚୀନ ଭାରତୀୟ ସଭ୍ୟତାର ମେରୁଦଣ୍ଡ ସ୍ୱରୂପ ରାମାୟଣ ଓ ମହାଭାରତକୁ ବାଦ ଦେଇ ନୁହେଁ । ତାହାର ଉପାଖ୍ୟାନ ଅବଲମ୍ବନରେ ଭାରତୀୟ ଭାବଧାରାର ନୂତନ ରୂପ ପ୍ରଦାନ ମଧ୍ୟ କବିଙ୍କର ଏକ ନିଜସ୍ୱ ପଥ ।

ଚତୁର୍ଥତଃ, ଋତୁ ବର୍ଣ୍ଣନା । ବଙ୍ଗଳାରେ ବାରମାସୀ ବର୍ଣ୍ଣନା କବିମାନଙ୍କର ସ୍ୱଭାବସିଦ୍ଧ; ଓଡ଼ିଶାରେ ବିଭିନ୍ନ ଋତୁର ବର୍ଣ୍ଣନା ସାହିତ୍ୟରେ ନାନା ଅଧ୍ୟାୟରେ ବିକ୍ଷିପ୍ତ ଅଛି । ତାହା ପାର୍ଶ୍ୱରେ ଛନ୍ଦମାଳାର ବସନ୍ତରୁ ଶିଶିର ପର୍ଯ୍ୟନ୍ତ ଛଅ ଋତୁର ସରଳ ସୁନ୍ଦର ବର୍ଣ୍ଣନା କେବଳ ଶିଶୁମାନଙ୍କର ନୁହେଁ, ସାହିତ୍ୟାମୋଦୀ ପାଠକର ମଧ୍ୟ ଆନନ୍ଦ ବର୍ଦ୍ଧନ କରିଅଛି ଓ କରିବ ।

ଏହାର ପରବର୍ତ୍ତୀ ବାଳ ରାମାୟଣରେ ବାଳକାଣ୍ଡ ନଅ ଅଧ୍ୟାୟରେ ଓ ଅଯୋଧ୍ୟା କାଣ୍ଡ (ଅସମ୍ପୂର୍ଣ୍ଣ) ଏକ ଅଧ୍ୟାୟରେ ରଚିତ । ବାଳକାଣ୍ଡର ପ୍ରତି ଅଧ୍ୟାୟର ଶେଷରେ ସଂସ୍କୃତ କାବ୍ୟରୀତି ଅନୁଯାୟୀ ଭଣିତା ବା ଅଧ୍ୟାୟ-ପରିଚୟ-'ଇତି ଶ୍ରୀ ବାଳ ରାମାୟଣେ ବାଳ କାଣ୍ଡେ ଅହଲ୍ୟା-ଉଦ୍ଧାର ନାମ ଚତୁର୍ଥ ଅଧ୍ୟାୟ' ବା 'ଇତି ଶ୍ରୀ ବାଳ ରାମାୟଣେ ବାଳ କାଣ୍ଡେ ପରଶୁରାମ-ପରାଜୟ ନାମ ସପ୍ତମ ଅଧ୍ୟାୟ', ବା 'ଇତି······ବାଳ କାଣ୍ଡେ ଭରତ ମାତୁଳାଳୟ-ଗମନ ନାମ ଅଷ୍ଟମ ଅଧ୍ୟାୟ' ଲେଖାଅଛି ।

ଏହା ଉତ୍ତାରେ ରହିଅଛି ଦୁଇ ଭାଗରେ ସମସ୍ତ କବିତାବଳୀ—ପ୍ରଥମ ଭାଗରେ ସାତୋଟି ଓ ଦ୍ୱିତୀୟ ଭାଗରେ ଛଅୋଟି । 'I am the monarch of all I survey' ନାମରେ Alexander Selkirkଙ୍କର Soliloquy ଇଂରାଜୀ କବିତା ଓଡ଼ିଆ ଅନୁବାଦର ପ୍ରଥମ ଭାଗର ଅନ୍ତର୍ଗତ ଅଛି । ଦ୍ୱିତୀୟ ଭାଗର ଛଅୋଟି କବିତା ମଧ୍ୟରେ 'ଅଯୋଧ୍ୟା-ପ୍ରତ୍ୟାଗମନ'-ରଘୁବଂଶରୁ ଅନୂଦିତ । ଏହି ସମସ୍ତ ରଚନାରୁ ସଂସ୍କୃତ ଓ ଇଂରାଜୀ ଉଭୟ ଭାଷାର ସାହିତ୍ୟ ପ୍ରତି ଲେଖକଙ୍କର ଯେ ଅନୁରାଗ ଥିଲା ତାହା ପ୍ରମାଣିତ ହୁଏ ।

'କୁସୁମାଞ୍ଜଳି' ୧୯୦୩ ଖ୍ରୀଷ୍ଟାବ୍ଦରେ ପ୍ରକାଶିତ । ଅଞ୍ଜଳି ଅର୍ପଣ କବି ରାଧାନାଥ ରାୟଙ୍କ ଚରଣରେ ପ୍ରଦତ୍ତ, ଅର୍ଥାତ୍ ଉତ୍ସର୍ଗ ପତ୍ର ରାଧାନାଥ ରାୟ

ମହାଶୟଙ୍କୁ ଉଦ୍ଦେଶ୍ୟ କରି ଲିଖିତ : ମୋର ସନ୍ମାନ୍ୟପାଦ କୈଶୋର ସୁହୃଦ ପରମାତ୍ମୀୟ ଯୌବନ ସଖା / ଚିର ଜୀବନର ପରମହିତୈଷୀ / ଉତ୍କଳ-ସାହିତ୍ୟ-ସେବା-ବ୍ରତରେ ପଥ ପ୍ରଦର୍ଶକ / ବନ୍ଦନୀୟ କବି ଶ୍ରୀ ରାଧାନାଥ ରାୟ ମହୋଦୟଙ୍କ ଶ୍ରୀଚରଣ କମଳରେ / ଏ କୁସୁମାଞ୍ଜଳି ଶ୍ରଦ୍ଧା ଭକ୍ତିରେ ଉତ୍ସର୍ଗ କଲି । କବିତାଗୁଡ଼ିକ ୧୮୯୪ରୁ ୧୯୦୧ ମଧ୍ୟରେ ବିଭିନ୍ନ ସମୟର ରଚନା । ଏଗାରଟି କବିତା ମଧ୍ୟରୁ ଶେଷ ଦୁଇଟି ଶୋକ-ଗାଥା :—ଗୋଟିଏ ମହାରାଣୀ ଭିକ୍ଟୋରିଆଙ୍କର ଏବଂ ଅନ୍ୟଟି ବାମଣ୍ଡାଧିପତି ସୁଚଳ ଦେବଙ୍କର ପରଲୋକ ଗମନରେ ଶୋକ-ପ୍ରକାଶ । କିନ୍ତୁ ଅନ୍ୟ ନଅଟି ନୂତନ ଭାବରେ ଲିଖିତ, ଅଥବା ନୂତନ ଓ ପୁରାତନର ଯୋଗସୂତ୍ର । 'ଏ ସୃଷ୍ଟି ଅମୃତମୟ ହେ'—ମଧ୍ୟରେ ଆନନ୍ଦର ଝଙ୍କାର ଅଛି । 'ନବଯୁଗର ଅଭିଷେକ' କବିତାରେ ନବୀନ ଯୁଗକୁ ସ୍ୱାଗତ କରାହୋଇଛି, ମାନବ ସନ୍ତାନ ଯେ ବ୍ରହ୍ମସୁତ, ସେହି କଥାଟିକୁ ଘୋଷଣା କରିବାକୁ ହେବ; ସତ୍ୟ ଶିବ ସୁନ୍ଦରଙ୍କ ଆଲୋକରେ ଦିଗ୍‌ଦିଗ ସମୁଜ୍ଜ୍ୱଳ, ବିଶ୍ୱକବିମାନେ ଅମର ବୀଣା ଯେଉଁ ଅମୃତଜୟୀ ଅଭିନନ୍ଦନ ଗାଉଅଛନ୍ତି, ସେମାନଙ୍କ ସ୍ୱରରେ ସ୍ୱର ମିଳାଇବାକୁ ହେବ ।

କିନ୍ତୁ 'କୁସୁମାଞ୍ଜଳି'ର ଦୁଇଟି କବିତା ପାଠକଙ୍କ ଦୃଷ୍ଟି ନିଶ୍ଚୟ ଆକର୍ଷଣ କରିବ—ଗୋଟିଏ ହେଲା 'ଭାରତ ଭାବନା'-ଦେଶଭକ୍ତି ବା ଅତୀତ ଭାରତ ପ୍ରତି ଶ୍ରଦ୍ଧା ଜ୍ଞାପନ ଓ ସଙ୍ଗେ ସଙ୍ଗେ ବର୍ତ୍ତମାନ ପ୍ରତି ଦୃଷ୍ଟି ଆକର୍ଷଣ; ଦ୍ୱିତୀୟଟି ହେଲା, ଉପନିଷଦର ପ୍ରସଙ୍ଗ—'ଋଷି ପ୍ରାଣେ ଦେବାବତରଣ'; 'ଭାରତ ଭାବନା' କବିତାଟି ୯ ପଂକ୍ତିର ଏକାଦଶ ସ୍ତବକରେ ରଚିତ; ପ୍ରତି ସ୍ତବକର ଶେଷ ଅର୍ଥାତ୍ ନବମ ପଂକ୍ତିଟି ଅନ୍ୟଗୁଡ଼ିକ ଅପେକ୍ଷା କିଞ୍ଚିତ୍ ଦୀର୍ଘ; ଯେପରି ସ୍ପେନସରଙ୍କ 'ଫେୟାରି କୁଇନ୍'—ରେ ଅଛି, ଠିକ୍ ସେହିପରି । 'ଋଷିପ୍ରାଣେ ଦେବାବତରଣ'—ପୌଷ ମାସୀ ଜ୍ୟୋତ୍ସ୍ନା ଧବଳିତ ଭୁବନରେ ପବିତ୍ର ଊଷାକାଳରେ ପବିତ୍ର ଋଷିହୃଦୟରେ ଜାତ ସେହି ସ୍ତବକର ପ୍ରାଣରେ କି ଅମୃତବାଣୀ ! କେଉଁଠାରୁ କିପରି ସେହି ବାଣୀର ଆବିର୍ଭାବ ହେଲା, କିଏ କହିବ ? ଚକ୍ଷୁ ଉନ୍ମୀଳନ କରି ଋଷି ଦେଖିଲେ ଏକ ନିର୍ମଳ ଜ୍ୟୋତି, ଯାହାରେ ଜଗତରେ ସବୁରି ତାହାରି ଦୀପ୍ତି :

> କ୍ଷିତି ଅପ୍ ମରୁତ୍ ବ୍ୟୋମ ତେଜ ଏକାକାର,
> ନିରେଖନ୍ତି ଋଷି ଅହା ଚିନ୍ମୟ ସଂସାର ।

ମୃତ ଜଡ଼ ଆଜ ଆହା କି ଅମୃତମୟ !
ବ୍ରହ୍ମନିଃଶ୍ୱସିତେ ପୂର୍ଣ୍ଣ ବ୍ରହ୍ମାଣ୍ଡ ହୃଦୟ ।

ଏହି କବିତା ସମ୍ବନ୍ଧରେ 'ସାଧନା'ରେ ରବୀନ୍ଦ୍ରନାଥଙ୍କ ଅକୁଣ୍ଠିତ ପ୍ରଶଂସା ବାହାରି ଥିଲି । 'ସଂରଙ୍ଗ ଭାବନା'ର ଦୃପ୍ତ ଛନ୍ଦ ମଧ୍ୟରେ ଓ ଶବ୍ଦ ମଧ୍ୟରେ ବଙ୍ଗୀୟ କବି ହେମଚନ୍ଦ୍ରଙ୍କୁ ମନେ କରାଯାଇପାରେ, କିନ୍ତୁ ବ୍ରହ୍ମୋପଲବ୍ଧିର ଏହି ଚିତ୍ର ବାସ୍ତବିକ୍ ଦୁର୍ଲଭ, ଏହା ଭକ୍ତ କବିଙ୍କ ନିଜସ୍ୱ ଅନୁଭୂତି ।

ତା'ପରେ 'ବସନ୍ତ ଗାଥା'—ସଂଗ୍ରହର ଅଧିକାଂଶ କବିତା ବସନ୍ତ କାଳରେ ରଚିତ ବୋଲି ଏହି ନାମ ଦିଆହୋଇଛି । ଏହା କେତେଗୁଡ଼ିଏ ଚତୁର୍ଦ୍ଦଶପଦୀ କବିତାର ସମଷ୍ଟି, ଗଣନାରେ ସତେଇଶଟି; ବିଷୟରେ ଗଣ୍ଡୀ ବୃହତ୍ । ଏହା କବିଙ୍କ କଳ୍ପନା ଓ ଆଗ୍ରହର ପ୍ରସାର ସୂଚିତ କରେ । ବ୍ୟକ୍ତିବିଶେଷର ପ୍ରଶସ୍ତି ସଙ୍ଗେ ଆସି ମିଳିଅଛି ବସନ୍ତ ପୂର୍ଣ୍ଣିମାର ଅର୍ଦ୍ଧରାତ୍ରି, ଏକାମ୍ର କାନନର ମାହାତ୍ମ୍ୟ, ନବ ବର୍ଷର ଅଭିନନ୍ଦନ, ଯୌବନର ସ୍ୱପ୍ନ, ଆହୁରି କେତେ କ'ଣ । ମିଳନର ଅବଶ୍ୟ ବହୁ ପ୍ରକାର ଭେଦ ଅଛି—କକ, ଖଖ, ଗଗ, ଘଘ,........ ଅଥବା କଖକଖ, ଗଘଗଘ .... ଇତ୍ୟାଦି ।

ତା'ପରେ ଉତ୍କଳ-ଗାଥା'ର ଅନ୍ତର୍ଗତ ସାତୋଟି କବିତା । ବଙ୍ଗ ଭଙ୍ଗର ପରବର୍ତ୍ତୀ ସ୍ୱଦେଶୀ ଆନ୍ଦୋଳନର ସ୍ରୋତ ସେତେବେଳ ପର୍ଯ୍ୟନ୍ତ ଅବରୁଦ୍ଧ ହୋଇନାହିଁ । କିନ୍ତୁ ଏଗୁଡ଼ିକ ବୃହତ୍ତର ଭାରତ ଭୂମିକୁ ନେଇ ରଚିତ ନୁହେଁ, ଏକମାତ୍ର ଧର୍ମକ୍ଷେତ୍ର ଉତ୍କଳର ହିଁ ବନ୍ଦନା; ସୁତରାଂ ନାମ ମଧ୍ୟ ଦେଇଛନ୍ତି 'ଉତ୍କଳ-ଗାଥା' । କେବଳ ଗୋଟିକରେ (ପଞ୍ଚମ କବିତା) ଭାରତ କନ୍ୟାଗଣଙ୍କ ଉଦ୍ଦେଶ୍ୟରେ କୁହାଯାଇଅଛି । ମନେହୁଏ, ବିଭିନ୍ନ ସମୟରେ ବିଭିନ୍ନ ଉପଲକ୍ଷ୍ୟେ କବିତାଗୁଡ଼ିକ ରଚିତ ହୋଇଥିଲି । 'ହିମାଚଳେ ଉଦୟା-ଉତ୍ସବ' ଟିକିଏ ଅନ୍ୟ ପ୍ରକାରର କବିତା—କାଞ୍ଚନଜଙ୍ଘାର ସୂର୍ଯ୍ୟୋଦୟ ଦେଖି କବିଙ୍କ ସମ୍ମୁଖରେ ବିସ୍ତୀର୍ଣ୍ଣ ଦୃଷ୍ଟିପଟରେ ଭାସି ଉଠେ, ଶଙ୍କର ଓ ପରମେଶ୍ୱରଙ୍କ ମିଳନ ଦୃଶ୍ୟ, ବର୍ଣ୍ଣର ଅଳଙ୍କାରରେ ସେ ଦୃଶ୍ୟ ପରମ ମନୋହର ।

ମଧୁସୂଦନଙ୍କ ରଚିତ 'ଶୋକ ଶ୍ଳୋକ' ମୟୂରଭଞ୍ଜାଧିପତି ଶ୍ରୀରାମଚନ୍ଦ୍ରଙ୍କ ପରଲୋକ ଗମନରେ ରଚିତ; ବ୍ରହ୍ମପ୍ରାଣ, ବ୍ରହ୍ମସଖା, ତତ୍ତ୍ୱଦର୍ଶୀ ବ୍ରହ୍ମଭକ୍ତ

ବ୍ରହ୍ମନନ୍ଦନ ମହର୍ଷି ଦେବେନ୍ଦ୍ରନାଥ ଠାକୁରଙ୍କ ଉଦ୍ଦେଶ୍ୟରେ ରଚିତ କବିତାଟିର ମଧ୍ୟ ସେହି ଏକ ଉପଲକ୍ଷ୍ୟ । ବାମଣ୍ଡାବିଜୟପ୍ରଶସ୍ତି ଓ ଜୟମଙ୍ଗଳାଷ୍ଟକ ଅବଶ୍ୟ ଅନ୍ୟ ଉପଲକ୍ଷ୍ୟରେ ରଚିତ ।

ତାଙ୍କର 'ସଙ୍ଗୀତମାଳା' ୧୦୪ଟି ସଙ୍ଗୀତର ସମଷ୍ଟି । ସମାଜରେ ଈଶ୍ୱର ପ୍ରୀତି ଉନ୍ମେଷିତ କରିବା ପାଇଁ ଏଗୁଡ଼ିକର ରଚନା । ତନ୍ମଧ୍ୟରେ ଅଧିକାଂଶ ବଙ୍ଗଳା ଓ ଓଡ଼ିଆ ରାଗିଣୀ ଅନୁସାରେ, କେତେକ-ତିନୋଟି ସଂସ୍କୃତ ଛନ୍ଦରେ ଏବଂ ତିନୋଟି ସୌରାଷ୍ଟ୍ର ଅଞ୍ଚଳର 'ବନ୍ଦନା' ଗୀତ ଅନୁସାରେ ରଚିତ ।

ଏହି ପ୍ରସଙ୍ଗରେ କବି ଲେଖିଅଛନ୍ତି, 'ବଙ୍ଗୀୟ ସଙ୍ଗୀତ ଲେଖକମାନେ ଅନ୍ୟାନ୍ୟ ଭାଷାର ରାଗିଣୀ ଓ ବୃତ୍ତ ପ୍ରଭୃତି ଗ୍ରହଣ କରି ସେହି ଅନୁସାରେ ଯେତେବେଳେ ନିଜ ଭାଷାରେ ସଙ୍ଗୀତ ରଚନା କରିଅଛନ୍ତି, ଆଶାକରେ ସେତେବେଳେ ଓଡ଼ିଆ ଭାଷାରେ ଅନ୍ୟ ଭାଷାର ରାଗିଣୀ ସଂସୃଷ୍ଟ ସଙ୍ଗୀତ ଲେଖିବା ମୋ ପକ୍ଷରେ ଦୋଷ ବୋଲି ବିବେଚିତ ହେବନାହିଁ । ସଙ୍ଗୀତ-ମାଳାର ଦୁଇଟି ସଙ୍ଗୀତ ବଙ୍ଗଳାର ଅନୁବାଦ ବୋଲି ସେ ସ୍ପଷ୍ଟ ନିର୍ଦ୍ଦେଶ ମଧ୍ୟ କରିଅଛନ୍ତି । ତାଙ୍କ ବ୍ୟଙ୍ଗ କବିତା—'ଭଣ୍ଡ ରସାୟନ'ରେ ଓ ଅନ୍ୟ କବିତାଟିରେ ହେମଚନ୍ଦ୍ରଙ୍କ ପ୍ରତିଛବି ଅସ୍ୱୀକାର କରାଯାଏ ନାହିଁ, ଯଥା— 'ସାବାସ୍ ସାହିତ୍ୟ ଚର୍ଚ୍ଚା, ସାବାସ୍-ସାବାସ୍'—ହେମଚନ୍ଦ୍ରଙ୍କ 'ସେଲାମ ଟେମ୍ପଲ୍ ସ୍ୱର୍ଗ, ସେଲାମ୍'—ସଙ୍ଗେ ତୁଳନୀୟ । ସେହିପରି, ସରଳାଦେବୀଙ୍କ 'ବନ୍ଦି ତୋମାରେ ଭାରତ ଜନନୀ ବିଦ୍ୟାବିନୟ ଦାୟିନୀ... ଉପମାନକ୍ଷିତ ଜୁଡ଼ାଇବେ ମାତଃ ଖର୍ପରିକରବାଳନୀ' ଏବଂ ରବୀନ୍ଦ୍ରନାଥଙ୍କ 'ଆଠକୋଟି ସନ୍ତାନେରେ ହେ ବଙ୍ଗ ଜନନୀ, ରେଖେଛ ବାଙ୍ଗାଲି କରେ, ମାନୁଷ କରନି'- ଏମାନଙ୍କର ପ୍ରତିଧ୍ୱନି ମଧ୍ୟ ମଧୁସୂଦନଙ୍କ କାବ୍ୟର ଦୁଇ ଏକ ସ୍ଥଳରେ ମୁଁ ପାଇଅଛୁ । ଯଥା, ବସନ୍ତ ଗାଥାର 'ଜୟଗାନରେ'—'ଯୁଗଯୁଗାନ୍ତ ମୋହ ଅନ୍ତେ ଜାଗ ମା ସର୍ପଶାଳନୀ, ତବ ପ୍ରସାଦେ ଜ୍ୟୋତିର୍ମୟୀ ହୁଅ ମା ମ୍ଳାନ-ମାଳନୀ' । ବୋଲିବା ବାହୁଲ୍ୟ, ଏଥିରେ ତାଙ୍କର କବିଯଶଃ ମ୍ଳାନ ହୋଇନାହିଁ । କବି ଭବଭୂତିଙ୍କ ଉତ୍ତର-ରାମଚରିତର ଗମ୍ଭୀର ଶବ୍ଦଗୁଡ଼ିକର ଝଙ୍କାରର ଅନୁବାଦ କରିବା ସହଜ କଥା ନୁହେଁ । 'ପ୍ରଣୟର ଅଦ୍ଭୁତ ପରିଣାମ' ଓ 'ହେମମାଳା' ଏହି ଦୁଇଟି ହେଲା ତାଙ୍କର ଓଡ଼ିଆ ଭାଷାରେ କଥା ସାହିତ୍ୟର ମଧ୍ୟ ସୂତ୍ର ଧରିଇବାର ପ୍ରୟାସ ଏବଂ ଭାଷାର ଅଗ୍ରଗତିରେ

କେତେ ସୂତ୍ର ଖୋଲି ଦେବେ, ତାହାର ଚେଷ୍ଟା ଯେ ସେ କରିବାର କରିଅଛନ୍ତି, ତାହାର ନିଦର୍ଶନ 'ପ୍ରତ୍ୟୟର ଅଦ୍ଭୁତ ପରିଣାମ'ର କଥାବସ୍ତୁ ସିସିଲିର ଏକ କାହାଣୀ ଅବଲମ୍ବନରେ ରଚିତ। 'ହେମମାଳା' ତେଲୁଗୁରୁ ଅନୁବାଦିତ ବୋଲି ବର୍ଣ୍ଣିତ ହୋଇଅଛି।

ଆମ୍ଭେମାନେ ଏ ପର୍ଯ୍ୟନ୍ତ ମଧୁସୂଦନ ଗ୍ରନ୍ଥାବଳୀର କ୍ରମ ଅନୁସାରେ କବିଙ୍କ ସାହିତ୍ୟ-ସାଧନାର ସଂକ୍ଷିପ୍ତ ପରିଚୟ ଦେଲୁଁ। କବିଙ୍କ ରଚନାର ସମଗ୍ରତା ବୁଝିବା ପାଇଁ ଏହାର ପ୍ରୟୋଜନ ଅଛି। ସାହିତ୍ୟଜନମଣର କେତୋଟି କଥା ଏଠାରେ ବାଦ୍ ପଡ଼ିଅଛି। ପ୍ରଥମ ହେଉଛି ରାଧାନାଥ ଓ ଫକୀର ମୋହନଙ୍କ ସଙ୍ଗରେ ତାଙ୍କର ଘନିଷ୍ଠ ଯୋଗ। ରାଧାନାଥ ରାୟ ଯେତେବେଳେ ବିଦ୍ୟାଳୟର ଶିକ୍ଷକ ହିସାବରେ ଜୀବନ ଆରମ୍ଭ କରିଥିଲେ, ସେତେବେଳେ ସେ ଛାତ୍ର ରୂପେ ପାଇଲେ ମଧୁସୂଦନଙ୍କୁ। ମଧୁସୂଦନ ଗମ୍ଭୀର ପ୍ରକୃତିର ଥିଲେ, ତାଙ୍କର ଦୃଷ୍ଟି ଥିଲା ତତ୍ତ୍ୱାନ୍ୱେଷୀ। ସେ ଅଳ୍ପ ସମୟ ମଧ୍ୟରେ ଶିକ୍ଷକତା ଆରମ୍ଭ କରନ୍ତି। ବାଲେଶ୍ୱରରେ ଶିକ୍ଷକତା କାଳରେ ମଧୁସୂଦନ, ରାଧାନାଥ ଓ ଫକୀରମୋହନ ଉଭୟଙ୍କ ଘନିଷ୍ଠ ସମ୍ପର୍କରେ ଆସନ୍ତି। ଦ୍ୱିତୀୟ କଥା, ବାଲେଶ୍ୱରରୁ ସେତେବେଳେ 'ଉତ୍କଳ-ଦର୍ପଣ' ନାମରେ ପତ୍ରିକା ବାହାରୁ ଥିଲା। ରାଧାନାଥ, ଫକୀରମୋହନ, ଚତୁର୍ଭୁଜ ଓ ଅନ୍ୟାନ୍ୟ ଲେଖକମାନଙ୍କ ସଙ୍ଗେ ମଧୁସୂଦନ ନାନା ପ୍ରବନ୍ଧ ଓ କବିତାରେ ଦର୍ପଣର କଳେବର ପୁଷ୍ଟ ହେବାକୁ ଲାଗିଲା। ରାଧାନାଥଙ୍କ ମେଘଦୂତ, ପବନ, ଇଟାଲୀୟ ଯୁବା, ବିବେକୀ, କାଳିଦାସ ପ୍ରଭୃତି ରଚନା ସାଙ୍ଗକୁ ମଧୁସୂଦନଙ୍କ ଶ୍ମଶାନ, ନିଶୀଥଚିନ୍ତା, ନିର୍ବାସିତର ବିଳାପ, ଅଯୋଧ୍ୟା ପ୍ରତ୍ୟାଗମନ, ବୁଦ୍ଧଦେବ, ସୂର୍ଯ୍ୟ, ଉଲ୍କାପିଣ୍ଡ ପ୍ରଭୃତି ପଦ୍ୟ ଓ ପ୍ରବନ୍ଧ ପ୍ରକାଶିତ ହେଲା। ମଧୁସୂଦନଙ୍କ ପ୍ରବନ୍ଧଗୁଡ଼ିକ ପରେ 'ପ୍ରବନ୍ଧମାଳା' ନାମରେ ଏକତ୍ର ପ୍ରକାଶିତ ହୋଇଥିଲା। ସୁତରାଂ ଆଧୁନିକ ଓଡ଼ିଆ ସାହିତ୍ୟର ପୁଷ୍ଟିସାଧନ ଯେଉଁମାନଙ୍କ ଦ୍ୱାରା ହୁଏ, ମଧୁସୂଦନ ସେମାନଙ୍କ ମଧ୍ୟରେ ଅବଶ୍ୟ ଜଣେ। ତୃତୀୟ କଥା, ରବୀନ୍ଦ୍ରନାଥଙ୍କ 'ସାଧନା' ସମାଲୋଚନା ପତ୍ରରେ ଅନୁକୂଳ ସମାଲୋଚନା ଲାଭ କରିବା ତାଙ୍କ ପକ୍ଷରେ ସମ୍ଭବ ହୋଇଥିଲା। ରବୀନ୍ଦ୍ରନାଥ ସ୍ପଷ୍ଟ କରି କହିଥିଲେ "ପ୍ରାଚୀନ ଭାରତ ସମ୍ବନ୍ଧରେ ବଙ୍ଗଳାର ଅଧିକାଂଶ ଲେଖକ ଯାହା ଲେଖନ୍ତି, ତାହା ମଧ୍ୟରେ ପ୍ରାଚୀନତ୍ୱର ପ୍ରକୃତ ଆସ୍ୱାଦ ମିଳେନାହିଁ।

କିନ୍ତୁ 'ଋଷି ଚିତ୍ତ' କବିତା ମଧ୍ୟରେ ଗୋଟିଏ ପ୍ରାଚୀନ ଧ୍ରୁପଦର ସ୍ୱର ବାଜୁଅଛି ।" ସାଧନା, ପୌଷ ୧୨୯୮ । ମାର୍ଗଶୀରର ନବ୍ୟ ଭାରତରେ କବିତା ପ୍ରକାଶିତ ହେଲା । ଆଉ ପୌଷ ମାସରେ ବାହାରିଲା ରବୀନ୍ଦ୍ରନାଥଙ୍କ ସମାଲୋଚନା ।

କିନ୍ତୁ ନବ୍ୟଭାରତରେ ଯେଉଁ କବିତାଟି ବଙ୍ଗଳାରେ ପ୍ରକାଶିତ ହୋଇଥିଲା, ତାହା ଏବଂ ଓଡ଼ିଆ କବିତାଟି ଯେପରି ଅଁମ୍ଭେ ଗ୍ରନ୍ଥାବଳୀରେ ପାଉ, ସର୍ବତୋଭାବେ ଏକ ନୁହେଁ—ବଙ୍ଗଳା କବିତାରେ ତାହାର ଆଉ ଏକ ସ୍ତବକ ଅଛି; ଛଅ ପଂକ୍ତି ବଢ଼ିଅଛି, ଆହୁରି ପରିବର୍ତ୍ତନ ହେଲା ଏହି ଯେ, 'ଉଦ୍‌ବୋଧନ' ଓ 'ଋଷି ପ୍ରାଣେ ଦେବାବତରଣ' ଗ୍ରନ୍ଥାବଳୀରେ ଦୁଇଟି ପାଖାପାଖି, କିନ୍ତୁ ପୃଥକ୍ କବିତା; ପରନ୍ତୁ ନବ୍ୟଭାରତରେ 'ଉଦ୍‌ବୋଧନ' ଦେବାବତରଣର ହିଁ ଉଦ୍‌ବୋଧନ,ଆଉ ଚକ୍ତ ପ୍ରସ୍ତାବରେ ତାହା ହିଁ ହେବା ଉଚିତ ।

ସବୁ କବିତାଗୁଡ଼ିକ ଏକତ୍ର ଦେଖିଲେ ଅଥବା କାବ୍ୟପୁସ୍ତକ ଦେଖିଲେ, ବସନ୍ତଗାଥା ଓ କୁସୁମାଞ୍ଜଳିର କଥା ବେଶୀ ମନେପଡ଼େ । ଶ୍ରୀ ଅନ୍ନଦାଶଙ୍କର ରାୟ ସମାଲୋଚନା କରିବାକୁ ଯାଇ ଯାହା କହିଛନ୍ତି (ଉତ୍କଳ ସାହିତ୍ୟ, ପୌଷ-ମାଘ, ୧୩୩୨ ବଙ୍ଗାବ୍ଦ) ତାର ସାରମର୍ମ ଏହିପରି :— "ଓଡ଼ିଆ ସାହିତ୍ୟରେ 'ବସନ୍ତ ଗାଥା' ଓ 'କୁସୁମାଞ୍ଜଳି'ର ତୁଳନା ନାହିଁ । କିନ୍ତୁ ଏହି ଦୁଇଟି ସଂଗ୍ରହ ମଧ୍ୟରେ ପୁଣି କବିଙ୍କ ମନର ସୌନ୍ଦର୍ଯ୍ୟ, ଚିତ୍ତର ପ୍ରସାର, ହୃଦୟର ଅନୁଭୂତି, କଳ୍ପନାର ବିଳାସ, ପ୍ରକାଶର ସ୍ୱତଃସ୍ଫୂର୍ତ୍ତି ଲୀଳା ଓ ଭାଷାର ଝଙ୍କାର 'କୁସୁମାଞ୍ଜଳି'ରେ ଯେପରି ସର୍ବତ୍ର ଲକ୍ଷିତ, ସୁପରିସ୍ଫୁଟ, ସୁଲଭ— 'ବସନ୍ତ ଗାଥା'ରେ ସେପରି ନୁହେଁ । 'ଋଷି ପ୍ରାଣେ ଦେବାବତରଣ'ର ବୈଦିକ ମନ୍ତ୍ର ସଦୃଶ ସାରଲ୍ୟ, ସାମଗାଥାତୁଲ୍ୟ ଗାମ୍ଭୀର୍ଯ୍ୟ, ଭାଷାର ଓଜସ୍ୱିତା ଓ ଦୃଷ୍ଟିର ମହାମହିମତା (Grandeur) କେବଳ 'ବସନ୍ତ ଗାଥା'ରେ କାହିଁକି ମଧୁସୂଦନଙ୍କ ଅନ୍ୟ କୌଣସି ଗ୍ରନ୍ଥରେ ନାହିଁ । ମଧୁସୂଦନଙ୍କ ବାଣୀ ଏତେବେଶୀ ଉଚ୍ଚଭାବପୂର୍ଣ୍ଣ ଅନ୍ୟ କେଉଁଠି ହୋଇନାହିଁ । "ନବ ବସନ୍ତ-ଭାବନା"ର ଯେ ଭାବନା ତାହାର ତୁଳନା କାହିଁ ? 'ଏ ସୃଷ୍ଟି ଅମୃତମୟ ହେ', 'ନବଯୁଗ ଅଭିଷେକ', 'ଆଶା' — କାହାକୁ ଛାଡ଼ି କାହାର ନାମ କରିବ ? ବସ୍ତୁତଃ, 'କୁସୁମାଞ୍ଜଳି'ରେ ଏପରି କେତୋଟି କବିତା ଅଛି, ଯାହା

ଦେଶକାଳର ଅତୀତ, ଯାହା ସର୍ବଦେଶର, ସର୍ବକାଳର, ସାର୍ବଜନୀନ, ଚିରନ୍ତନ । 'ଋଷି ପ୍ରାଣେ ଦେବାବତରଣ' ଓ 'ନବ ବସନ୍ତ ଭାବନା' ଯେ କୌଣସି ଦେଶର, ଯେ କୌଣସି କାଳର କବି ଲେଖନୀର ଉପଯୁକ୍ତ ।''

୧୯୨୫-୨୬ ସାଲର ଉତ୍କଳ ସାହିତ୍ୟ ପତ୍ରିକାରେ ଅନ୍ନଦାବାବୁଙ୍କ ଏହି ଓଡ଼ିଆ ଆଲୋଚନାଟି ପ୍ରକାଶିତ ହୋଇଥିଲା । ସେତେବେଳେ ତାଙ୍କର ବୟସ କମ୍ ଥିଲା; କିନ୍ତୁ ଅର୍ଦ୍ଧଶତ ପରେ ପଢ଼ି ମଧ୍ୟ ଏହି ସକଳ ମନ୍ତବ୍ୟ କେଉଁଠି ଅସଙ୍ଗତ ବୋଲି ମନେହେଲା ନାହିଁ । ଅନ୍ନଦାବାବୁ କହିଛନ୍ତି, ଯେଉଁମାନେ କବିମାନସର ଉଚ୍ଚତମ-ସ୍ତର ଦେଖିବାକୁ ଚାହାନ୍ତି, ସେମାନେ କୁସୁମାଞ୍ଜଳି ପଢ଼ନ୍ତୁ । କିନ୍ତୁ ବୈଚିତ୍ର୍ୟର ସନ୍ଧାନ କରିବାକୁ ଗଲେ 'କୁସୁମାଞ୍ଜଳି' ଅପେକ୍ଷା 'ବସନ୍ତ ଗାଥା' ଭଲ ଲାଗିବ । ଆହୁରି କିଛି ଆଲୋଚନା ପରେ ସେ କହିଛନ୍ତି, ''ଯାବତ୍ ଉତ୍କଳ ସାହିତ୍ୟ, ତାବତ୍ 'ବସନ୍ତ ଗାଥା', 'କୁସୁମାଞ୍ଜଳି' । 'ହିମାଚଳେ ଉଦୟ-ଉତ୍ସବ', ବିଶ୍ୱ ସାହିତ୍ୟରେ ଉତ୍କଳ ସାହିତ୍ୟର ଦାନ ଜାଣିବାକୁ ହେଲେ 'ଋଷି ପ୍ରାଣେ ଦେବାବତରଣ', 'ନବ ବସନ୍ତ ଭାବନା', 'ହିମାଚଳେ ଉଦୟ-ଉତ୍ସବ' ଓ 'ବିଚ୍ଛେଦ' ଅବଶ୍ୟ ଦେଖିବାକୁ ହେବ ।'' ଅନ୍ନଦାବାବୁଙ୍କ ଏହି ତାଲିକା ସଙ୍ଗେ 'ଭାରତ-ଭାବନା'କୁ ମଧ୍ୟ ମୁଁ ଯୋଗ କରିବାକୁ ଚାହେଁ । ଏହାର ଗୋଟିଏ ସ୍ତବକର ଇଂରାଜୀ ଅନୁବାଦ ଭାରତ ସରକାରଙ୍କ 'ଯୋଜନା'ରେ ପ୍ରକାଶିତ ହୋଇଥିଲା, ଏବଂ ତାହା ସମାଦୃତ ମଧ୍ୟ ହୋଇଥିଲା ବୋଲି ମନେହୁଏ ।

ମଧୁସୂଦନ ଶିକ୍ଷକ ଥିଲେ, ଶିକ୍ଷାକର୍ମୀ ଥିଲେ, ପତ୍ରକାର ଥିଲେ, ଧର୍ମ ସଂସ୍କାରକ ଥିଲେ, କିନ୍ତୁ କେଉଁଠି ହେଲେ ତାଙ୍କର କବିପ୍ରାଣ ଚାପି ହୋଇଯାଇ ନାହିଁ । ତାଙ୍କ ସ୍ୱଭାବଗମ୍ଭୀର ରଚନା ସାଙ୍ଗକୁ ବ୍ୟଙ୍ଗ କବିତା ସେତେଦୂର ମାନନାହିଁ ବୋଲି ମୋର ଧାରଣା । କିନ୍ତୁ ତାଙ୍କ 'ସଙ୍ଗୀତମାଳା'ର ମଧ୍ୟ ଗୋଟିଏ ସ୍ଥାନ ଅଛି, ତାହା ମଧ୍ୟରେ ଦେଖିପାରୁଛି —ବର୍ଜନ କରି ନୁହେଁ, ଗ୍ରହଣ କରି ହିଁ ବଡ଼ଲୋକ ହୋଇପାରେ, ଏହିପରି ଗୋଟିଏ ମନୋଭାବ । ସଂସ୍କୃତରୁ ଅନୁବାଦ କରି ଅଥବା ରାମାୟଣ-ମହାଭାରତରୁ ଅନୁପ୍ରେରଣା ଲାଭ କରି, ଇଂରାଜୀ, ବଙ୍ଗଳା ଓ ତେଲୁଗୁ ସାହିତ୍ୟର ମଧ୍ୟ ଚର୍ଚ୍ଚା କରି ମାତୃଭାଷାର ଉନ୍ନତି ସାଧନାରେ ସେ ଆଗ୍ରହଶୀଳ ଥିଲେ ।

ସାହିତ୍ୟର ଆଉ ଗୋଟିଏ ଦିଗରେ ମଧୁସୂଦନଙ୍କ ଦାନର କଥା ସ୍ମରଣଯୋଗ୍ୟ । ସେ'ଟି ସଙ୍ଗଠନର ଦିଗ । ସାହିତ୍ୟ ସଙ୍ଗଠନର ଅନ୍ୟତମ ମାଧ୍ୟମ ହେଲା ପତ୍ରିକା । ଯେତେବେଳେ ସେ ବାଲେଶ୍ୱରରେ ଥିଲେ, 'ଉତ୍କଳ ଦର୍ପଣ'ର ସମ୍ପର୍କରେ ଆସି ତାହା ମାଧ୍ୟମରେ ରାଧାନାଥବାବୁଙ୍କ ସହଯୋଗରେ ସେ ଓଡ଼ିଆ ଲେଖକମାନଙ୍କୁ ଗଠନ କଲେ । ତାଙ୍କର ସହଯୋଗିତା ଉତ୍କଳ ଦର୍ପଣ ପକ୍ଷରେ ସାମାନ୍ୟ ନଥିଲା । ତା'ଛଡ଼ା ମଧୁସୂଦନ ବାଲେଶ୍ୱରରେ ଥିବା ସମୟରେ ଆହୁରି ଦୁଇଖଣ୍ଡି ମାସିକ ପତ୍ରିକା ଆରମ୍ଭ କରନ୍ତି । ଅବଶ୍ୟ ଦୁଇଟିର ଆୟୁ ବେଶୀ ନଥିଲା । ଗୋଟିକର ନାମ 'ଶିକ୍ଷକ' ଅନ୍ୟଟିର ନାମ 'ଧର୍ମବୋଧିନୀ' । ମଧୁସୂଦନଙ୍କର ବରାବର ଶିକ୍ଷାଦାନରେ ଏବଂ ଜାତିର ଗୌରବ ପ୍ରଚାରରେ ଆଗ୍ରହ ଓ ନିଷ୍ଠା ଥିଲା; ମୃତ୍ୟୁଞ୍ଜୟ ରଥ ମହାଶୟ ଊନବିଂଶ ଶତାବ୍ଦୀର ଉତ୍କଳୀୟ ପତ୍ର-ପତ୍ରିକାର ପରିଚୟ ଦେବାକୁ ଯାଇ ମଧୁବାବୁଙ୍କୁ ଏହି ଦୁଇଟିର 'ଜନ୍ମଦାତା' ଓ 'ପ୍ରଧାନ ପୋଷକ' କହିଛନ୍ତି । 'ସମ୍ବାଦକ ଓ ସେବକ' ପତ୍ରିକା ମଧ୍ୟ ତାଙ୍କର ସମର୍ଥନ ପାଇଥିଲା; 'ଶିକ୍ଷାବନ୍ଧୁ', 'ଆଶା' ଏବଂ ତତ୍ପରବର୍ତ୍ତୀ 'ନବସମ୍ବାଦ' ଓ ବ୍ରାହ୍ମ ପତ୍ରିକା ଗୁଡ଼ିକର ସେ ପ୍ରବର୍ତ୍ତକ ଥିଲେ । ଏଗୁଡ଼ିକ ପ୍ରାୟଶଃ ସ୍ୱଳ୍ପାୟୁ ହେଲେ ମଧ୍ୟ 'ସମ୍ବାଦକ' ଓ 'ଶିକ୍ଷାବନ୍ଧୁ' ଅପେକ୍ଷାକୃତ ଦୀର୍ଘସ୍ଥାୟୀ ହୋଇ ବିଭିନ୍ନ କ୍ଷେତ୍ରରେ ନାନାବିଧ ସମ୍ବାଦ ଆନୟନରେ ସହାୟକ ହୋଇଥିଲା ।

ସଙ୍ଗଠନର ଆଉ ଗୋଟିଏ ଦିଗ ସାହିତ୍ୟ ପ୍ରତିଷ୍ଠାନ ସ୍ଥାପନ କରିବା ।* କଟକର ଉତ୍କଳ ସାହିତ୍ୟ ସମାଜ ମଧୁସୂଦନଙ୍କ ଅନ୍ୟତମ କୀର୍ତ୍ତି । ପୁଣି ଉତ୍କଳ ସାହିତ୍ୟ ସମାଜର ମୁଖପତ୍ର ହିସାବରେ 'ଉତ୍କଳ ସାହିତ୍ୟ' ପତ୍ରିକାର ଅଭ୍ୟୁଦୟ । ଉତ୍କଳ ସାହିତ୍ୟ ସମାଜର ସୃଷ୍ଟି ଏବଂ ପ୍ରତିଷ୍ଠା-ମୂଳରେ ସବୁ ଯେପରି ଥିଲା ମଧୁସୂଦନଙ୍କ ଏକାନ୍ତ ଆଗ୍ରହ, ଯତ୍ନ ଏବଂ ନେତୃତ୍ୱ । 'ଉତ୍କଳ ସାହିତ୍ୟ' ପତ୍ରିକାର ଜନ୍ମ ମଧ୍ୟ ତଦ୍ରୂପ ପ୍ରଧାନତଃ ତାଙ୍କର ଆଗ୍ରହ ଓ ଆକାଂକ୍ଷା ଫଳରେ ଘଟିଥିଲା । ତାଙ୍କ ନିକଟରୁ ଆଶା, ଭରସା ଓ ଉତ୍ସାହ ଲାଭ କରି ୧୮୯୭ ଖ୍ରୀଷ୍ଟାବ୍ଦରେ ତାଙ୍କର ପ୍ରିୟତମ ଶିଷ୍ୟ ବିଶ୍ୱନାଥ କର ଏହି ପତ୍ରିକା ପ୍ରବର୍ତ୍ତନ କରନ୍ତି । ଟ୍ରେନିଂ ସ୍କୁଲର ଅଧ୍ୟକ୍ଷ

---

* ଉତ୍କଳ ସାହିତ୍ୟ ୧୩୨୭ ମାର୍ଗଶୀର ଦ୍ରଷ୍ଟବ୍ୟ ।

ମଧୁସୂଦନଙ୍କ ଦ୍ୱାରା ପ୍ରତିଷ୍ଠିତ ଉକ୍ତ ବିଦ୍ୟାଳୟର ଆଲୋଚନା ସଭା ଓଡ଼ିଶାରେ ପ୍ରଥମ ସାହିତ୍ୟ ଚର୍ଚ୍ଚାର କେନ୍ଦ୍ରସ୍ଥଳ ଥିଲା । ଏହି ସଭାରେ ପଠିତ ଏବଂ ଆଲୋଚିତ ପ୍ରବନ୍ଧାବଳୀର ଅଧିକାଂଶ ବେଶ ବହୁକାଳ ପର୍ଯ୍ୟନ୍ତ 'ଉତ୍କଳ ସାହିତ୍ୟ'ର କଳେବର ପୁଷ୍ଟ କରିଥିଲା । ଏହି ଆଲୋଚନା ସଭା ହିଁ ପ୍ରଧାନତଃ ମଧୁସୂଦନଙ୍କ ଉଦ୍ୟୋଗରେ ୧୯୦୩ ଖ୍ରୀଷ୍ଟାବ୍ଦରେ ଉତ୍କଳ ସାହିତ୍ୟ ସମାଜ ରୂପେ ପରିଣତି ଲାଭ କରେ । ଆମରଣ ସେ ଏହି ସମାଜର ସଭାପତି ପଦରେ ଅଧିଷ୍ଠିତ ରହି ନବ୍ୟଓଡ଼ିଶାର ସାହିତ୍ୟିକ ପ୍ରକୃତ ସଙ୍ଗଠନରେ ଓ ସାହିତ୍ୟରୁଚିର ଉନ୍ନୟନରେ ପ୍ରାଣପଣେ ଚେଷ୍ଟା କରିଅଛନ୍ତି ।

୧୮୫୩ ଖ୍ରୀଷ୍ଟାବ୍ଦରେ ତାଙ୍କର ଜନ୍ମ, ୧୯୧୨ ଖ୍ରୀଷ୍ଟାବ୍ଦରେ ତାଙ୍କର ଦେହାନ୍ତ ହୁଏ । ସେତେବେଳର ଓଡ଼ିଆ ସାହିତ୍ୟ ଅବସ୍ଥା ସ୍ମରଣ କଲେ ଓଡ଼ିଆ ସାହିତ୍ୟରେ ମଧୁସୂଦନଙ୍କ ସ୍ଥାନର କଥା କଳ୍ପିତା ବୁଝି ହେବ । ସେ କେବଳ ସାହିତ୍ୟର ଇତିହାସ ସମ୍ପର୍କରେ ସ୍ମରଣୀୟ ନୁହନ୍ତି । ଅର୍ଥାତ୍ କେବଳ ଐତିହାସିକ ବ୍ୟକ୍ତି ନୁହନ୍ତି । ଅବଶ୍ୟ ଐତିହାସିକ ସ୍ଥାନ ମଧ୍ୟ ଉପେକ୍ଷାର ବସ୍ତୁ ନୁହେଁ । ୭୦ ବର୍ଷର ବନ୍ଧୁ ଫକୀର ମୋହନ ସେନାପତି ମଧୁସୂଦନଙ୍କ ବିୟୋଗରେ ବିଳାପ କରିବାକୁ ଯାଇ କହିଅଛନ୍ତି—"ଦରିଦ୍ର ଉତ୍କଳ ଭାଷା ମଧୁ ଠାରେ ଋଣୀ ।" ମଧୁସୂଦନ ଦାଶ ମହାଶୟ ଏହା କହି ତାଙ୍କର ଗ୍ରନ୍ଥାବଳୀର ଭୂମିକା ଶେଷ କରିଅଛନ୍ତି :—"ଆଧୁନିକ ସାହିତ୍ୟ କ୍ଷେତ୍ରରେ ଆମ୍ଭମାନଙ୍କର କବିଙ୍କର ସ୍ଥାନ ସୂଚି । ତାହାଙ୍କର କବିତାଗୁଡ଼ିକ ଏହି ନବଯୁଗରେ ସ୍ତୁତି ଶିକ୍ଷା ବିଷୟରେ ଉତ୍କୃଷ୍ଟ ଆଦର୍ଶ ଏବଂ ସେଗୁଡ଼ିକ ଲାଭ କରି ଅଧୁନା ଅତି ହୀନସ୍ଥାନ ଉତ୍କଳ ସାହିତ୍ୟ ଯେ ପୁଷ୍ଟ ହୋଇଅଛି ଏବଂ ସ୍ୱକୀୟ ସୌରଭ ଚତୁର୍ଦ୍ଦିଗରେ ବିସ୍ତାର କରିବା ଲାଗି କିୟତ୍ ପରିମାଣରେ ହେଲେ କ୍ଷମ ହୋଇଅଛି । ଏହା କହିବା ବାହୁଲ୍ୟ ମାତ୍ର ।"

ପଣ୍ଡିତ ମୃତ୍ୟୁଞ୍ଜୟ ରଥ ମଧ୍ୟ ମଧୁସୂଦନ ଗ୍ରନ୍ଥାବଳୀରେ କବିଙ୍କ ଜୀବନ କଥା ପ୍ରସଙ୍ଗରେ ଲେଖିଅଛନ୍ତି—"ତାଙ୍କର ପ୍ରତ୍ୟେକ କବିତା ଓ ପ୍ରବନ୍ଧ ପୁଣ୍ୟଶ୍ରୀ ମଣ୍ଡିତ ଏବଂ ମାର୍ଜିତ ରୁଚିସମ୍ପନ୍ନ । ମଧୁସୂଦନ ଶୁଦ୍ଧ ଭାବକାବ୍ୟର ପ୍ରଧାନ କବି ।" ମାର୍ଜିତ ରୁଚିସମ୍ପନ୍ନ ସାହିତ୍ୟର ସେତେବେଳେ ଖୁବ୍ ଅଭାବ ଥିଲା । ଜଟିଳରୁ ଜଟିଳତର ଅଳଙ୍କାରରେ ପ୍ରାଚୀନ କାବ୍ୟଲକ୍ଷ୍ମୀ ଭାରାକ୍ରାନ୍ତା ହୋଇ ପଡ଼ିଥିଲେ । ମଧୁସୂଦନଙ୍କ ଅଳଙ୍କାର ସ୍ୱାଭାବିକ ଭାବରେ କାବ୍ୟଲକ୍ଷ୍ମୀଙ୍କ

ଦେହରେ ସନ୍ନିବେଶିତ ହୋଇଅଛି । ସେଥିରେ ସମାଜର ସଂଶୋଧନ ଓ ସାହିତ୍ୟରୁଚିର ପରିବର୍ତ୍ତନ ଏକ ସଙ୍ଗରେ ହୋଇଅଛି । ଆଜି ସେହି ପରିବର୍ତ୍ତନର ଫଳ ଓଡ଼ିଆ ସାହିତ୍ୟ ଉପଭୋଗ କରୁଅଛି; ସାହିତ୍ୟର ଏହି ନୀରବ ଅଥଚ ସୁଦୂରପ୍ରସାରୀ ବିପ୍ଳବର ମୂଲ୍ୟକୁ ତୁଚ୍ଛ କରିବାର ନୁହେଁ । ଊନବିଂଶ ଶତାବ୍ଦୀର ପ୍ରାକ୍‌କାଳରେ ଇଂରେଜୀ ସାହିତ୍ୟରେ ଅନୁରୂପ ପରିବର୍ତ୍ତନ ଘଟାଇବା ପାଇଁ ଓ୍ୱାର୍ଡ଼ସ୍‌ୱର୍ଥ ଓ କୋଲରିଜ ପ୍ରମୁଖ କବି ସମାଲୋଚକଙ୍କ ଚେଷ୍ଟାର କଥା ମୁଁ ସ୍ମରଣ କରେ । ଆଜି ବିଶ୍ୱ ସାହିତ୍ୟର ପଛଭୂମିକାରେ ସ୍ମରଣ କରେ—"ଏକଃ ଶବ୍ଦଃ ସୁଷ୍ଠୁ ଜ୍ଞାତଃ ସମ୍ୟକ୍ ପ୍ରଯୁକ୍ତଃ ସ୍ୱର୍ଗେ ଲୋକେ ଚ କାମଧୁକ୍ ଭବତି - ଭାଷ୍ୟକାର ଗୋଟିଏ ମାତ୍ର ଶବ୍ଦ ସମ୍ବନ୍ଧରେ ଯାହା କହିଅଛନ୍ତି, ମଧୁସୂଦନଙ୍କ କୌଣସି କୌଣସି କବିତା ସେହି ହେତୁ ଅଳ୍ପ ପରିସର ମଧ୍ୟରେ ଥାଇ ସୁଦ୍ଧା ସ୍ୱୀୟ ସୌନ୍ଦର୍ଯ୍ୟ ଓ ସରଳ ରଚନା ଗୁଣରେ ସମୃଦ୍ଧ ହୋଇ ବିଶ୍ୱ ସାହିତ୍ୟରେ ସମାଦର-ଯୋଗ୍ୟ ବୋଲି କଣ ବିବେଚିତ ହୋଇପାରିବ ନାହିଁ ?



# ପଞ୍ଚମ ପରିଚ୍ଛେଦ

## ପାରିବାରିକ ଜୀବନ

### (କ) ମାତା ପିତାଙ୍କ ପ୍ରତି ଭକ୍ତି

ଜ୍ଞାନୀ, ଭକ୍ତ, ପ୍ରେମିକ, ସାଧକ ପିତୃଦେବଙ୍କ ପାରିବାରିକ ଜୀବନ କଥା ଲେଖିବସି ମୁଁ ସତେ ଯେପରି ପ୍ରକାଶ କରିବାର ଉପଯୁକ୍ତ ଭାଷା ଖୋଜି ପାଉନାହିଁ । ଶୈଶବରେ ପାଞ୍ଚବର୍ଷ ବୟସରେ ମାତୃହୀନ ସନ୍ତାନଙ୍କ ଅନନ୍ୟସାଧାରଣ ମାତୃଭକ୍ତି କଥା କହିବାକୁ ଯାଇ ମୁଁ ଅଭିଭୂତ ହୋଇ ପଡ଼ୁଅଛି । ସୌଭାଗ୍ୟକ୍ରମେ ମୁଁ ମୋର ଭକ୍ତିଭାଜନ ଶ୍ୱଶୁର ମହାଶୟଙ୍କ ଓ ମାତାଠାକୁରାଣୀଙ୍କ ସହିତ ଏକତ୍ର ବାସ ସମୟରେ ତାଙ୍କ ଅସାଧାରଣ ମାତୃଭକ୍ତିର ବହୁ ପରିଚୟ ପାଇଅଛି । ତାଙ୍କ ମୁଖରୁ ଈଶ୍ୱର ଚନ୍ଦ୍ର ବିଦ୍ୟାସାଗର ମହାଶୟଙ୍କ ମାତୃଭକ୍ତି କଥା ଅନୁପ୍ରାଣନମୟୀ ଭାବରେ ବର୍ଣ୍ଣିତ ହେବାର ଶୁଣିଅଛି । 'ରାମତନୁ ଲାହିଡ଼ୀ ଓ ତତ୍କାଳୀନ ବଙ୍ଗସମାଜ' ପୁସ୍ତକରେ— ଭକ୍ତିଭାଜନ ଲାହିଡ଼ୀ ମହାଶୟଙ୍କର ତାଙ୍କ ମାତାଙ୍କ ରୋଗ ଶଯ୍ୟାରେ ଅପୂର୍ବ ସେବା ଓ ମାତୃଭକ୍ତି କଥା ମୁଁ ପଢ଼ିଅଛି । ଏମାନେ ସମସ୍ତେ ଦୀର୍ଘକାଳ ଅଜସ୍ର ଭାବରେ ମାତୃସ୍ନେହ ସମ୍ଭୋଗ କରିବାର ସୌଭାଗ୍ୟ ପାଇଥିଲେ । କିନ୍ତୁ ଯେତେବେଳେ ଭାବେ, ମୋର ପିତା ଶୈଶବରେ ମାତ୍ର ପାଞ୍ଚ ବର୍ଷ ବୟସରେ ମାତୃହୀନ ହୋଇଥିଲେ, ସଜ୍ଞାନ ଅବସ୍ଥାରେ ମାତାଙ୍କ ସ୍ନେହାଦର ସମ୍ଭୋଗ କରିବାର ସୌଭାଗ୍ୟ ତାଙ୍କର ଘଟିନାହିଁ ବୋଲି କହିଲେ ଚଳେ—ତାଙ୍କ 'ମୋ ଜନନୀ' କବିତାରେ ଉଲ୍ଲିଖିତ ମାତାଙ୍କ ସମ୍ବନ୍ଧରେ ତାଙ୍କ ଶୈଶବର ସ୍ମୃତିଟିକି ମାତ୍ର ଅବଲମ୍ବନ—ଏତିକି ସମ୍ବଳ ଘେନି କିପରି ତାଙ୍କ ଭିତରେ ଏତେ ଗଭୀର ମାତୃଭକ୍ତିର ସଞ୍ଚାର ହେଲା, ଭାବି ମୁଁ ଅବାକ୍ ହୋଇଯାଏ । ତାଙ୍କ ଅସାଧାରଣ ମାତୃଭକ୍ତିର ପରିଚୟ, କେବଳ ଏହି କବିତାରେ ନୁହେଁ, ତାଙ୍କ ସମଗ୍ର ଜୀବନରେ ଆମ୍ଭେମାନେ ଦେଖିଆସିଅଛୁ । ଆମ୍ଭେମାନେ ବାଲ୍ୟକାଳରେ ଏହି ପିତାମହୀଙ୍କ ସମସାମୟିକା ଆମ୍ଭମାନଙ୍କର ଜେଜେମା-ଆଈମାମାନଙ୍କ ନିକଟରୁ ଶୁଣିଅଛୁ—



ଭକ୍ତ କବିଙ୍କ ସହଧର୍ମିଣୀ - ପଦ୍ମାବାଇ

ଜନ୍ମ - ସେପ୍ଟେମ୍ବର ୧୮୫୫ ଖ୍ରୀଷ୍ଟାବ୍ଦ, ମୃତ୍ୟୁ - ୧୩ ଡିସେମ୍ବର ୧୯୩୫ ଖ୍ରୀଷ୍ଟାବ୍ଦ

ପିତାମହୀ ଅମ୍ବିକା ବାଈ ରୂପରେ ଲକ୍ଷ୍ମୀ, ଗୁଣରେ ସରସ୍ୱତୀ ଥିଲେ । ସେମାନେ ଏହାଙ୍କ କଥା କହିବା ବେଳେ ଅଶ୍ରୁଳ ହୋଇପଡ଼ୁଥିଲେ । ପିତୃଦେବ ମଧ୍ୟ ତାଙ୍କ 'ମୋ ଜନନୀ' କବିତାରେ ଉଲ୍ଲିଖିତ ଶୈଶବର କରୁଣ ସ୍ମୃତିର କଥା ଅନେକ ସମୟରେ ଆମ୍ଭମାନଙ୍କ ପାଖେ ଅଶ୍ରୁସିକ୍ତ ନୟନରେ କହୁଥିଲେ । ପ୍ରତିବର୍ଷ ଜନନୀଙ୍କ ମୃତ୍ୟୁବାର୍ଷିକ-ଦିବସଟି ତାଙ୍କ ଆକୁଳ ପ୍ରାଣର ଉପାସନାରେ, ଜନନୀଙ୍କ ପବିତ୍ର ସ୍ମୃତିସ୍ମରଣରେ ଓ ଦୀନ-ଦରିଦ୍ରମାନଙ୍କୁ ଅନ୍ନଦାନ, ବସ୍ତ୍ରଦାନ, ପ୍ରଭୃତି କାର୍ଯ୍ୟ ମଧ୍ୟରେ କଟୁଥିଲା । ମାତୃଭକ୍ତ ସନ୍ତାନଙ୍କର ସେଦିନର ସେହି ପବିତ୍ର ସୁନ୍ଦର ପୁଣ୍ୟାଭ ମୁଖଚ୍ଛବି ବର୍ତ୍ତମାନ ମଧ୍ୟ ମୋ ସ୍ମୃତିପଟରେ ଉଜ୍ଜ୍ୱଳ ହୋଇ ରହିଅଛି । ଏହି ମାତୃଭକ୍ତ ସନ୍ତାନ ମାତାଙ୍କର ସେହି ସ୍ୱଳ୍ପ ପରିମିତ ସ୍ମୃତିଟିକୁ କିପରି ଅମୂଲ୍ୟ ସମ୍ପଦ ପରି ସଞ୍ଚୟ କରି ରଖିଥିଲେ, ଏବଂ ଏଥି ମଧ୍ୟରେ ତାଙ୍କ ଭକ୍ତପ୍ରାଣ ପରମ ଜନନୀଙ୍କ ସ୍ପର୍ଶ ପାଇ କିପରି ସାର୍ଥକ ହୋଇଥିଲା, ତାହା ତାଙ୍କ 'ମୋ ଜନନୀ' କବିତା ପଢ଼ିଲେ ଅନୁଭୂତ ହୁଏ । କବିତାଟି ପୂର୍ବରୁ ଉଲ୍ଲିଖିତ ହୋଇଛି (୧୩-୧୪ ପୃଷ୍ଠା) । 'ମା' ନାମଟି ତାଙ୍କର ବଡ଼ ପ୍ରିୟ ଥିଲା । ରୋଗ-ଯନ୍ତ୍ରଣା ମଧ୍ୟରେ ବାରମ୍ବାର 'ମା' ନାମ ଉଚ୍ଚାରଣ କରି ସେ ଶାନ୍ତି ଅନୁଭବ କରୁଥିଲେ । କନ୍ୟା ଓ ବଧୂଗଣଙ୍କୁ ପତ୍ର ଲେଖିବା ସମୟରେ 'ମା ମୋର' ବୋଲି ସମ୍ବୋଧନ କରୁଥିଲେ ।

ମଧୁସୂଦନଙ୍କ ପିତୃଭକ୍ତି ମଧ୍ୟ ଖୁବ୍ ସାଧାରଣ ନଥିଲା । ରଘୁନାଥ ରାଓ ଦୀର୍ଘଜୀବୀ ଥିଲେ । ସେ ପୁରୀରୁ ବର୍ଷରେ ଦୁଇ ତିନିଥର କଟକ ଆସି ବେଶ୍ କିଛିଦିନ ପୁତ୍ର, ବଧୂ, ନାତି,-ନାତୁଣୀମାନଙ୍କ ସହିତ କଟାଇ ଯାଉଥିଲେ । ସେ ସମୟରେ କେତେ ଦୃଶ୍ୟ, କେତେ ଘଟଣାର କଥା ମୋର ମନେପଡ଼େ । କଟକରେ ତାଙ୍କ ଅବସ୍ଥାନ ସମୟରେ ତାଙ୍କ ଦୈନନ୍ଦିନ ଜୀବନଯାତ୍ରାର ନିତ୍ୟଅଭ୍ୟସ୍ତ ରୀତିଗୁଡ଼ିକ ଯେପରି ତାଙ୍କୁ ସୁଖକର ପ୍ରୀତିଦାୟକ ହୁଏ, ତାଙ୍କ ପୂଜା-ଉପବାସ ପ୍ରଭୃତି ଯେପରି ଶୃଙ୍ଖଳାପୂର୍ବକ ସମ୍ପନ୍ନ ହୁଏ, ସେ ସମସ୍ତ ବିଷୟରେ ମା', ବାପା, ନନେଇ, ଖୁଡ଼ୀ ସର୍ବଦା ଅବହିତ ରହୁଥିଲେ । 'ପିତାଙ୍କ ଗୋଡ଼ରେ କୌଣସି କାରଣରୁ ବେଦନା ହୋଇଅଛି ଜାଣିପାରି, ବହୁ ଭୃତ୍ୟ ଥିବା ସତ୍ତ୍ୱେ ମଧୁସୂଦନ ନିଜେ ତେଲଗିନା ନେଇ ପିତାଙ୍କ ପାଦତଳେ ବସି ବେଦନା ସ୍ଥାନରେ ତୈଳମର୍ଦ୍ଦନ କରିବାକୁ ଲାଗିଲେ; ପୁତ୍ରର କୋମଳ କର ସ୍ପର୍ଶରେ ପିତା ବୃଦ୍ଧି ଦେଖାନ୍ତି, ପୁତ୍ର ପ୍ରସନ୍ନମନରେ ପଦସେବା କରୁଅଛନ୍ତି ।

୧୮୯୭ ଖ୍ରୀଷ୍ଟାବ୍ଦରେ ପ୍ରକାଶିତ 'ଛନ୍ଦମାଳା' ନାମକ ତାଙ୍କ କବିତା-ପୁସ୍ତକରେ ଦ୍ୱିତୀୟ ଖଣ୍ଡ ସେ ପିତୃଦେବଙ୍କୁ ହିଁ ଉତ୍ସର୍ଗ କରିଥିଲେ । ଉତ୍ସର୍ଗ ପତ୍ରରେ ସେ ଲେଖିଅଛନ୍ତି, "ଏହି ପୃଥିବୀରେ ପରମାରାଧ୍ୟ, ପରମତୀର୍ଥରୂପ ଶ୍ରୀପିତୃଦେବ - ଶ୍ରୀପାଦପଦ୍ମରେ ଏହି କ୍ଷୁଦ୍ରଗ୍ରନ୍ଥ ଭକ୍ତି ସହକାରେ ଅର୍ପିତ ହେଲା ।"

ତାଙ୍କ ପିତୃଭକ୍ତି ସମ୍ବନ୍ଧରେ ବାଲ୍ୟଜୀବନର ଗୋଟିଏ ଘଟଣା କଥା ଲେଖୁଅଛୁ । ମଧୁସୂଦନଙ୍କ ଜ୍ୟେଷ୍ଠ ମାତୁଳ ନାରାୟଣଜୀ ମାତୃହୀନ ଭଗିନେୟ ଦୁହିଁଙ୍କୁ ଅତ୍ୟନ୍ତ ସ୍ନେହ କରୁଥିଲେ । ପରେ କୌଣସି କାରଣରୁ ତାଙ୍କ ସହିତ ଭଗୀରଥି ରାଓଙ୍କର ମନାନ୍ତର ହେବାରୁ, ଭଗୀରଥି ପୁତ୍ରକୁ ମାମୁଁ ଘରକୁ ଯିବାକୁ ନିଷେଧ କଲେ । ଏହି ନିଷେଧ ବାକ୍ୟ ପୁତ୍ରର ଅନ୍ତରରେ ଦାରୁଣ ବ୍ୟଥା ଦେଇଥିଲା, କିନ୍ତୁ ପିତାଙ୍କ ଆଦେଶ ସେ ଅମାନ୍ୟ କରିପାରିନଥିଲେ । ଏହି ସମୟରେ ପୁରୀ ବଡ଼ଦାଣ୍ଡରେ ମଧୁସୂଦନଙ୍କୁ ଦେଖି ନାରାୟଣଜୀ ଭଗିନେୟଙ୍କୁ କୁଣ୍ଢେଇ 'ତୁ କାହିଁକି ମୋ ଘରକୁ ଯାଉନୁ' କହି କାନ୍ଦିବାକୁ ଲାଗିଲେ; ବଡ଼ମାମୁଁଙ୍କ ଛାତିରେ ମୁଣ୍ଡରଖି ଭଗିନେୟ ମଧ୍ୟ କାନ୍ଦିବାକୁ ଲାଗିଲେ । କିନ୍ତୁ ପିତାଙ୍କ ଆଦେଶ ନପାଇବା ପର୍ଯ୍ୟନ୍ତ ସେ ମାମୁଁ ଘରକୁ ଯାଇନଥିଲେ ।

ଭଗୀରଥି ରାଓ ଅତ୍ୟନ୍ତ ସ୍ନେହଶୀଳ ଥିଲେ । ମଧୁସୂଦନଙ୍କ ଜ୍ୟେଷ୍ଠା କନ୍ୟା ବାସନ୍ତୀ ଓ ଜଗନ୍ନାଥଙ୍କ ପ୍ରଥମା କନ୍ୟା ରେବା ଏହି ଦୁଇଟି ପୌତ୍ରୀଙ୍କ ଜନ୍ମ ପରେ ସେ ପୌତ୍ର ମୁଖ ଦର୍ଶନ ନିମିତ୍ତ ବ୍ୟାକୁଳ ହେଲେ । ସେତେବେଳ ପର୍ଯ୍ୟନ୍ତ ଭଗୀରଥି ଦାଢି ରଖିନଥିଲେ । ପୌତ୍ର ଜନ୍ମିଲେ ଦାଢି ରଖିବେ ବୋଲି ସଂକଳ୍ପ କରିଥିଲେ । ଜ୍ୟେଷ୍ଠ ପୌତ୍ର ଜୟନ୍ତ ଜନ୍ମ ହେବା ଦିନରୁ, ଏହି ସଂକଳ୍ପ କାର୍ଯ୍ୟରେ ପରିଣତ ହେଲା । ଆମ୍ଭେମାନେ ବାଲ୍ୟାବଧି ତାଙ୍କର ଲମ୍ବାଦାଢି ଦେଖିଆସିଅଛୁ ।

ପୂର୍ବରୁ କହିଛୁ, ଆମ୍ଭମାନଙ୍କର ଶୈଶବରେ ସେ ପୁରୀରୁ କଟକ ଆସି ବେଶ୍ କିଛି ଦିନ କଟାଇ ଯାଉଥିଲେ । ସେତେବେଳେ ଆମେ ଭାଇଭଉଣୀ ଯେଉଁ ଆନନ୍ଦରେ ଦିନଗୁଡ଼ିକୁ କଟାଉଥିଲୁ, ତାହାର କେତେ ଛବି ମନରେ ବର୍ତ୍ତମାନ ସୁଦ୍ଧା ପ୍ରାଣକୁ ସ୍ନିଗ୍ଧ, ସରସ କରିଦିଏ । ଜପମାଳଧାରୀ ସେହି

ସୌମ୍ୟଦର୍ଶନ ବୃଦ୍ଧଙ୍କର ସ୍ନାନାନ୍ତେ ବିଷ୍ଣୁନାମ ସ୍ମରଣ କରୁ କରୁ ବୃକ୍ଷରେ ଜଳସେଚନ, ପୂଜାହ୍ନିକ, ନିର୍ମାଲ୍ୟ-ସେବନ ପ୍ରଭୃତି ଭିତର ଦେଇ ତାଙ୍କ ଧର୍ମନିଷ୍ଠାର ପରିଚୟଟି ହୃଦୟଙ୍ଗମ କରିବା ଭଳି ବୟସ ସେତେବେଳେ ଆମର ହୋଇନଥିଲା । କିନ୍ତୁ ଏହି ଭକ୍ତି ଗଦ୍‌ଗଦ ଚିତ୍ତର ଇଷ୍ଟଦେବତାଙ୍କ ପୂଜା, ଜପ, ପ୍ରଣାମ ପ୍ରଭୃତି ଦେଖି ଆମ୍ଭମାନଙ୍କର ଅନ୍ତରରେ ମଧ୍ୟ ଭକ୍ତି ସମ୍ଭ୍ରମ ଜାଗି ଉଠୁଥିଲା । ତାଙ୍କର ଏହି ଛବିଟି ଆମ୍ଭମାନଙ୍କ ଅନ୍ତରରେ ଚିରମୁଦ୍ରିତ ହୋଇ ରହିଅଛି । ଆମ୍ଭମାନଙ୍କ ନିକଟରେ ତାଙ୍କର ସଙ୍ଗ ବଡ଼ ମଧୁର ଥିଲା । ପଢାପଢି ଓ ସ୍କୁଲଯିବା ପ୍ରଭୃତି ଭିତରେ ସମୟ ପାଇଲେ ଆମେ ତାଙ୍କ ପାଖକୁ ଯାଉଥିଲୁ । ଆମେ ତାଙ୍କର କୌଣସି କାମରେ ଲାଗିପାରିଲେ ବଡ଼ ଆନନ୍ଦବୋଧ କରୁଥିଲୁ । ପ୍ରତିଦିନ ସନ୍ଧ୍ୟାରେ ଆମେ ଭାଇଭଉଣୀ ତାଙ୍କୁ ଘେରି ବସୁଥିଲୁ । ସେ ତାଙ୍କ ଜୀବନର କଥା ଏବଂ ଅନ୍ୟାନ୍ୟ ଅନେକ କାହାଣୀ ଆମକୁ କହୁଥିଲେ । ସେହି ଅବସରରେ ଆମେ ସାଧ୍ୟାନୁଯାୟୀ ତାଙ୍କର ସେବା କରିବା ପାଇଁ ବ୍ୟଗ୍ର ହେଉଥିଲୁ । ଗୋଡ଼ରେ ହାତ ବୁଲାଇ ଦେବା, ଘଷିଦେବା, ପଙ୍ଖାରେ ବିଞ୍ଚି ଦେବା ପ୍ରଭୃତି କାର୍ଯ୍ୟ ଦ୍ୱାରା ଜ୍ୟେଷ୍ଠମାନେ କୋଳରେ ବସିବା ପାଇଁ କଳିଗୋଳ କରୁଥିଲେ । ସର୍ବଶେଷରେ ସେ ଆମ୍ଭମାନଙ୍କୁ ବ୍ରହ୍ମସଙ୍ଗୀତ ଗାଇବାକୁ କହୁଥିଲେ । ସରସ୍ୱତୀ ଦିଦିଙ୍କ (ମୋର କକା ଜଗନ୍ନାଥ ରାଉଙ୍କ ଜ୍ୟେଷ୍ଠଝିଅ) କଣ୍ଠ ବେଶ୍ ଭଲ ଥିଲା । ସେ ଗାଉଥିଲେ, ଆମେ ମଧ୍ୟ ତାଙ୍କ ସଙ୍ଗେ ଯୋଗ ଦେଉଥିଲୁ । "ମନ ଏକବାର ହରିବଲ୍, ହରିବଲ୍" ଏହି ଗୀତଟି ତାଙ୍କର ଅତି ପ୍ରିୟ ଥିଲା । ବୃଦ୍ଧ ପିତାମହଙ୍କ ସଙ୍ଗେ ବାଲ୍ୟଜୀବନରେ ସମସ୍ୱରରେ ଏହି ଗୀତଟି ଗାଉଗାଉ ଆମ୍ଭମାନଙ୍କ ଶିଶୁଚିତ୍ତ ଏକ ଅପାର୍ଥିବ ଭାବରେ ପୂର୍ଣ୍ଣ ହୋଇ ଉଠୁଥିଲା । "ହରିମୟ ଏହି ଭୂମଣ୍ଡଳ" ଏହି ପଦଟି ଗାଇବା ସମୟରେ ବିଶ୍ୱାସରେ ତାଙ୍କର ଚକ୍ଷୁ ପ୍ରଦୀପ୍ତ ହୋଇ-ଉଠୁଥିଲା । ଆଜୀବନ ତାହାଙ୍କର ଏହି ପୁଣ୍ୟସ୍ମୃତି ଆମ୍ଭମାନଙ୍କୁ କେତେ ବଳ ଓ ଆନନ୍ଦ ଦେଇ ଆସୁଅଛି ।

ପୁଲିସ ବିଭାଗରେ କର୍ମ କଲେ ମାନବ ହୃଦୟରେ ସ୍ନେହ, ପ୍ରେମ ପ୍ରଭୃତି କୋମଳ ବୃତ୍ତିର ବିକାଶରେ ବାଧା ଜନ୍ମିଥାଏ, ହୃଦୟ କଠିନ ହୋଇଯାଏ, ଏହିପରି ଧାରଣା ଜନସମାଜରେ ପ୍ରଚଳିତ; କିନ୍ତୁ ଭଗୀରଥିଙ୍କ ଜୀବନରେ ମୁଁ ଏହାର ଆଶ୍ଚର୍ଯ୍ୟ ବ୍ୟତିକ୍ରମ ଦେଖିଅଛି । ସେ କର୍ମୋପଲକ୍ଷ୍ୟେ ଯେତେବେଳେ ଯେଉଁଠାରେ ବାସ କରୁଥିଲେ, ସେଠାର ଅଧିବାସୀମାନଙ୍କୁ

ପ୍ରଗାଢ଼ ସ୍ନେହ ବନ୍ଧନରେ ବାନ୍ଧି ଦେଉଥିଲେ । ଧର୍ମ-ଧର୍ମ ନିର୍ବିଶେଷରେ ସମସ୍ତଙ୍କ ସଙ୍ଗରେ ତାଙ୍କର ସଦ୍‌ଭାବ ଥିଲା ।

ଭଗୀରଥିଙ୍କ ଦ୍ୱିତୀୟା ପତ୍ନୀ ତୁଳସୀବାଈ ମଧ୍ୟ ଦୀର୍ଘକାଳ ବଞ୍ଚି ନଥିଲେ । ଦ୍ୱିତୀୟ ବିବାହର ପୁତ୍ର କନ୍ୟାମାନଙ୍କ ମଧ୍ୟରେ କନିଷ୍ଠ ପୁତ୍ରଟିର ଛଅ ବର୍ଷ ବୟଃକ୍ରମ କାଳରେ ତାଙ୍କର ମୃତ୍ୟୁ ହେଲା । ଏହି ପୁତ୍ରଗୁଡ଼ିକ ବଡ ହୋଇ ବିବାହିତ ହେଲେ, ଭଗୀରଥି ବାଳିକା ବଧୂମାନଙ୍କର ଯଥୋଚିତ ଯତ୍ନ ନେଇଥିଲେ । ବଧୂଗଣ ମଧ୍ୟ କନ୍ୟାତୁଲ୍ୟ ତାଙ୍କ ସହିତ ଅସଙ୍କୋଚ ବ୍ୟବହାର କରୁଥିଲେ ।

ଭଗୀରଥିଙ୍କ ଜୀବଦ୍ଦଶାରେ ଜଗନ୍ନାଥ ଜ୍ୟେଷ୍ଠ ଭ୍ରାତାଙ୍କ ପଦାଙ୍କ ଅନୁସରଣ କରି ବ୍ରାହ୍ମସମାଜରେ ଯୋଗଦାନ କଲେ ମଧ୍ୟ, ଭଗୀରଥି ଆଜୀବନ ବଧୂମାନଙ୍କ ହସ୍ତରେ ଅନ୍ନ ଗ୍ରହଣ କରୁଥିଲେ । କିନ୍ତୁ ଯେଉଁସବୁ ପୌତ୍ରୀଙ୍କର ବ୍ରାହ୍ମସମାଜରେ ଅସବର୍ଣ୍ଣ ବିବାହ ହୋଇଥିଲା; ବିବାହ ଉତ୍ତାରେ ଆଉ ସେମାନଙ୍କ ହସ୍ତରେ ସେ ଅନ୍ନଗ୍ରହଣ କରିନାହାନ୍ତି ।

୮୨ ବର୍ଷ ବୟସରେ ୭ ଜ୍ୟେଷ୍ଠ, ୧୯୦୯ ଖ୍ରୀଷ୍ଟାବ୍ଦରେ, ପୁରୀ ସହରରେ ଭଗୀରଥି ଦେହତ୍ୟାଗ କଲେ । ତାଙ୍କ ଗୁରୁତର ପୀଡ଼ାର ସମ୍ବାଦ ପାଇ ମଧୁସୂଦନ, ପତ୍ନୀ, କନିଷ୍ଠା କନ୍ୟା ସାନ୍ତ୍ୱନା ଓ ଜ୍ୟେଷ୍ଠାଭ୍ରାତୃବଧୂ ଶ୍ରୀ-ରେବାଙ୍କୁ ନେଇ ପୁରୀ ଗଲେ ଏବଂ ଶେଷମୁହୂର୍ତ୍ତ ପର୍ଯ୍ୟନ୍ତ ପିତାଙ୍କ ଶଯ୍ୟା ପାର୍ଶ୍ୱରେ ବସି ତାଙ୍କ ସେବାରେ ନିଯୁକ୍ତ ଥିଲେ ।

ସେ ସମୟରେ ଜଗନ୍ନାଥ ରାଓ ଗଡ଼ଜାତରେ 'ବଉଦ' ନାମକ ଦେଶୀୟ ରାଜ୍ୟର ଦେଓ୍ୱାନ କାର୍ଯ୍ୟରେ ନିଯୁକ୍ତ ଥିଲେ । ପିତାଙ୍କ ଅନ୍ତିମ ସମୟରେ ସେ ତାଙ୍କ ନିକଟକୁ ଆସିପାରି ନାହାନ୍ତି । ଶୋକାତୁର ମଧୁସୂଦନଙ୍କ ଅନୁଜଙ୍କୁ ଲିଖିତ ତତ୍କାଳୀନ ପତ୍ରରୁ କିୟଦଂଶ ଉଦ୍ଧୃତ କରୁଅଛୁ :—

"ସମାଧିସ୍ଥଭାବେ ପ୍ରସନ୍ନ ବଦନରେ ଊର୍ଦ୍ଧ୍ୱନେତ୍ର ହୋଇ ବାପା କେତେବେଳେ ଏକାକୀ, କେତେବେଳେ ବା ମୋ ସଙ୍ଗରେ ଅନବରତ ହରିନାମ ବା ଗୀତାର ଶ୍ଳୋକ ଆବୃତ୍ତି କରୁଥିଲେ । ପ୍ରାଣତ୍ୟାଗର ୫।୬ ମିନିଟ

ପୂର୍ବ ପର୍ଯ୍ୟନ୍ତ ଏହିଭଳି ଆନନ୍ଦରେ ହରିନାମ କରି ପ୍ରାୟ ୧୦୫ ଘଣ୍ଟିକା ସମ୍ପୂର୍ଣ୍ଣ ସହଜ ଓ ସୁନ୍ଦର ଭାବରେ ସଂସାର ସମୁଦ୍ର ପାର ହୋଇଗଲେ । ସେହି ଆନନ୍ଦଜ୍ୟୋତିପୂର୍ଣ୍ଣ ଚକ୍ଷୁ ମୁଦ୍ରିତ ହୋଇଗଲା । କେବଳ ଓଷ୍ଠ ଦୁଇଟି ସର୍ବଶେଷପର୍ଯ୍ୟନ୍ତ ଆତୁର ହରିନାମ କହିବା ପାଇଁ ଈଷତ୍ ଉନ୍ମୁକ୍ତ ହେଲା । ଏହି ରୂପେ ଆମ୍ଭମାନଙ୍କ ପିତୃଦେବ ଆନନ୍ଦରେ ଚାଲିଗଲେ । ଆମେ କାହିଁକି ଅସାର ଶୋକ କରିବା; ପ୍ରଭୁଙ୍କ ଇଚ୍ଛା ପୂର୍ଣ୍ଣ ହେଲା ବାପା ମୋକ୍ଷଧାମ ହରିପାଦପଦ୍ମ ପାଇଲେ । ଆଉ ଅଧିକ କ'ଣ ଲେଖିବି । ଚକ୍ଷୁପୂର୍ଣ୍ଣ, ହୃଦୟ ବ୍ୟାକୁଳ, ପୁଣି ସଂସାରର କର୍ମଜାଲରେ ଜୀବନ ଆବଦ୍ଧ ।

"ତୁମେ ସତ୍‌ପୁତ୍ର ହୋଇ ତାଙ୍କର କେତେ ଆକାଂକ୍ଷା ପୂର୍ଣ୍ଣ କରିଛ । ମୁଁ ତ ସେପରି କିଛି କରିପାରି ନାହିଁ । ତେଣୁ ବ୍ୟାକୁଳ ହୃଦୟରେ କାନ୍ଦୁଅଛି । ତେବେ ଏହି ମାତ୍ର ଭରସା ଯେ ସେହି କ୍ଷମାପୂର୍ଣ୍ଣ ସନ୍ତାନବତ୍ସଳ ପିତା ମୋର ଶତଶତ ଅପରାଧ କ୍ଷମା କରିଅଛନ୍ତି ।

"ବାପା,[୧] ପ୍ରାଣ ଅତ୍ୟନ୍ତ ବ୍ୟାକୁଳ ହେଉଅଛି, ତୁମକୁ କୁଣ୍ଢେଇ 'ବାପା' ବୋଲି ଡାକିବା ପାଇଁ କାନ୍ଦୁଅଛି । ପିତୃଦେବଙ୍କ ଆକାଂକ୍ଷା ପୂର୍ଣ୍ଣ କରିବା ପାଇଁ ଓ ତାଙ୍କର ଦୁଃଖ ଦୂର କରିବା ପାଇଁ ତୁମେ ଯାହା କରିଅଛ, ତାହା ସ୍ମରଣ କରି ମୋର ପ୍ରାଣ ତୁମକୁ ଧନ୍ୟ ଧନ୍ୟ କହୁଅଛି । ତୁମେ ତାଙ୍କ ଶେଷ ବୟସରେ ସତ୍‌ପୁତ୍ରର କାମ କେତେ କରିଅଛ ।"

୧୨ । ୬ । ୧୯୦୯

"ବାପା,[୨] ତୁମର ୪ ତାରିଖର ପତ୍ର ୬ ଦିନ ପରେ ପାଇଅଛି । ସେତେବେଳେ ଅଶ୍ରୁପୂର୍ଣ୍ଣ ନୟନରେ ତାହା ପଢିଅଛି; ବର୍ତ୍ତମାନ କାନ୍ଦି କାନ୍ଦି

---

୧ । "ଜ୍ୟେଷ୍ଠ ଭ୍ରାତା ସମୋ ପିତୃଃ" ଏହି ବାକ୍ୟଟି ଭ୍ରାତୃବତ୍ସଳ ମଧୁସୂଦନଙ୍କ ଜୀବନରେ ସାର୍ଥକ ହୋଇଥିଲା । ସେ ଏହି ଭାବରେ ବଶବର୍ତ୍ତୀ ହୋଇ କନିଷ୍ଠମାନଙ୍କୁ ସନ୍ତାନ-ତୁଲ୍ୟ ମନେ କରି 'ବାପା' ସମ୍ବୋଧନ କରୁଥିଲେ ।

୨ । ଜଗନ୍ନାଥ ପ୍ରଭୂତ ଅର୍ଥ ବ୍ୟୟ କରି ପିତାଙ୍କ ତୀର୍ଥ ଦର୍ଶନ ଅଭିଳାଷ ପୂର୍ଣ୍ଣ କରିଥିଲେ । ପିତାଙ୍କ ପ୍ରିୟ କର୍ମସ୍ଥଳ ବଉଦକୁ ସେବକଯାଇ ଆନ୍ତରିକ ସେବା ଯତ୍ନ ଦ୍ୱାରା ପରିତୃପ୍ତ କରିଥିଲେ । ଏହା ମଧ୍ୟ ଉଲ୍ଲେଖଯୋଗ୍ୟ ଯେ, ପିତାଙ୍କ ଇଚ୍ଛାନୁଯାୟୀ ତାଙ୍କର ଆଦ୍ୟ ଶ୍ରାଦ୍ଧ ସମୟରେ ଜଗନ୍ନାଥ ଏକ ହଜାର ବ୍ରାହ୍ମଣ-ଭୋଜନ କରାଇ, ପ୍ରତ୍ୟେକଙ୍କୁ ଉପଯୁକ୍ତ ଦକ୍ଷିଣା ଦେବାର ବ୍ୟବସ୍ଥା କରିଥିଲେ ।

ଏ ପତ୍ର ଲେଖୁଅଛୁ । ଆମ୍ଭମାନଙ୍କର ଯାହାକିଛି ଉନ୍ନତି, ସେ କେବଳ ପିତୃଦେବଙ୍କ ଆଶୀର୍ବାଦ ଯୋଗୁଁ । ଆମ୍ଭମାନଙ୍କ ପିତୃଦେବଙ୍କ ସ୍ନେହ ଅପେକ୍ଷା ସଂସାରରେ କେଉଁ ପିତାଙ୍କ ସ୍ନେହ ଅଧିକ ମଙ୍ଗଳକର ଓ ଆଶୀର୍ବାଦମୟ ? ହାୟ ହାୟ, ସେ ଯେତେବେଳେ ଜୀବିତ ଥିଲେ, ତାଙ୍କର ମୂଲ୍ୟ ବୁଝିନାହିଁ । ଏକମାତ୍ର ସାନ୍ତ୍ୱନା, ସେ ପରଲୋକଗତ ହେଲେ ମଧ୍ୟ ଆମେ ତାଙ୍କ ଠାରୁ ଦୂରରେ ନାହୁଁ । ଦୁଃଖର ଦିନରେ ତାହାଙ୍କୁ ମୁଁ ନିକଟରେ ବୋଲି ଅନୁଭବ କରୁଅଛୁ । ପରମପିତାଙ୍କ ମୁକ୍ତାତ୍ମା ପିତୃଦେବ, ପରମପିତାଙ୍କ କୋଳରେ ଥାଇ, ତାହାଙ୍କ ପୁଣ୍ୟ ସ୍ନେହାମୃତମୟ ନୟନରେ ଆମ୍ଭମାନଙ୍କ ଆଡ଼କୁ ଚାହିଁ ରହିଅଛନ୍ତି । ସେ ଆମ୍ଭମାନଙ୍କ ପ୍ରାଣରେ ଅଛନ୍ତି । ତାହାଙ୍କ ପାଦପଦ୍ମରେ ଆମ୍ଭମାନଙ୍କ ମତି ସ୍ଥିର ରହୁ ।"

## (ଖ) ଭ୍ରାତୃ ସ୍ନେହ

ଜଗନ୍ନାଥଙ୍କ ପ୍ରତି ମଧୁସୂଦନଙ୍କ ଭ୍ରାତୃସ୍ନେହ ଏକ ଦିବ୍ୟାନନ୍ଦରସରେ ପୂର୍ଣ୍ଣ ଥିଲା । ତାହାର ଆଭାସ ପୂର୍ବେ ଦେଇଛୁ । ଅତି ଶୈଶବରେ ମାତୃହୀନ ହେବାଠାରୁ ଏହି କନିଷ୍ଠ ସହୋଦରଟି ସହିତ ଏକତ୍ର ଶୟନ, ଭୋଜନ, ଅଧ୍ୟୟନ, ଭ୍ରମଣ କରି ସେ ବଡ଼ ହୋଇଥିଲେ । ସେତେବେଳେ ଏହି କନିଷ୍ଠ ପ୍ରତି ତାଙ୍କର ସ୍ନେହ ମାତୃସ୍ନେହ ଅପେକ୍ଷା କିଛି ଅଳ୍ପ ନଥିଲା । କୌଣସି ଦିନ ଜଗନ୍ନାଥଙ୍କର ଗୃହକୁ ଫେରିବାରେ ବିଳମ୍ବ ହେଲେ ସେ ସେଦିନ ଅନାହାରରେ ସଜଳ ନୟନରେ ଜଗନ୍ନାଥଙ୍କ ଅପେକ୍ଷାରେ ବସି ରହୁଥିଲେ । ଅଧିକ ବିଳମ୍ବ ହେଲେ, ସହପାଠୀମାନଙ୍କ ନିକଟରେ ବାଳକବତ୍ ରୋଦନ କରୁଥିଲେ ଓ ଖୋଜି ବୁଲୁଥିଲେ । ଏହି ଭାଇଟିର ପାଠରେ ଅମନୋଯୋଗ ଓ ଗର୍ହିତ ଆଚରଣ ଦେଖି ମଧ୍ୟ ସେ କଦାପି ତାଙ୍କୁ କଠୋର ଶାସନ ବା ତିରସ୍କାର କରୁନଥିଲେ, କେବଳ ଅବିରଳ ଅଶ୍ରୁପାତ କରୁଥିଲେ । ଜ୍ୟେଷ୍ଠ ଭ୍ରାତାଙ୍କର ଏହି ଅପୂର୍ବ ଭ୍ରାତୃସ୍ନେହରେ, ପରବର୍ତ୍ତୀ କାଳରେ ଜଗନ୍ନାଥଙ୍କ ପ୍ରକୃତି ପରିବର୍ତ୍ତିତ ହୋଇଯାଇଥିଲା । କାର୍ଯ୍ୟକ୍ଷେତ୍ରରେ ପ୍ରବେଶ କରି ଜଗନ୍ନାଥ ଯେତେବେଳେ ସ୍ଥାନାନ୍ତରରେ ରହିବାକୁ ବାଧ୍ୟ ହେଲେ, ସେତେବେଳେ ମଧୁସୂଦନ ଯେଉଁସବୁ ପତ୍ର ତାହାଙ୍କୁ ଲେଖୁଥିଲେ, ସେଥିରେ କେବଳ ଦର୍ଶନ ପାଇଁ ଉତ୍କଣ୍ଠା ଓ ସସ୍ନେହ ଆଲିଙ୍ଗନ ପାଇଁ ପ୍ରାଣର ବ୍ୟାକୁଳତା ପ୍ରକାଶ ପାଉଥିଲା । ଖଣ୍ଡିଏ ପତ୍ରରେ ସେ ଲେଖିଥିଲେ—

"ତୁମେ ଯେ ମୋର କି ଧନ, ତାହା କଣ ଭାଷାରେ ପ୍ରକାଶ କରିପାରିବି ? ଆଜି ତୁମେ ଯେ ମୋତେ କେଉଁ ଦୃଷ୍ଟିରେ ଦେଖ, ତାହା କଣ ପ୍ରଭୁ ମୋତେ ବୁଝାଇ ଦେଇନାହାନ୍ତି ? ଆଉ ଅଧିକ କଣ ଲେଖିବି, ପରମପିତା ଆମ ଦୁଇଜଣଙ୍କୁ ଏକାନ୍ତ ଏକନିଷ୍ଠ ଭାବରେ ତାଙ୍କ ପାଦପଦ୍ମ ଆଡ଼କୁ ଉନ୍ମୁଖ କରି ରଖନ୍ତୁ, ଏହି ପ୍ରାର୍ଥନା ।"

ଜଗନ୍ନାଥଙ୍କ ପଚିଶ ବର୍ଷ ପୂର୍ତ୍ତିର ଜନ୍ମଦିନରେ 'ଆଶୀର୍ବାଦ' ନାମକ ଯେଉଁ କବିତା ଲେଖି ସେ ତାଙ୍କୁ ଆଶୀର୍ବାଦ କରିଥିଲେ, ସେହି କବିତାଟି ୯୦.ରେ ଉଦ୍ଧୃତ ହେଲା ।

## ଆଶୀର୍ବାଦ

ଅର୍ଦ୍ଧଶତ ବର୍ଷ ପାରି ଅଶେଷ ଆଶିଷ
ବରଷିଛୁ ତୋ ମସ୍ତକେ, ବତ୍ସ ! ଅହର୍ନିଶ,

ସ୍ୱରଗର ପ୍ରେମ-ସୁଧାଧାର ଅକାତରେ,
ରଖିଛୁ ଆଦରେ ତୋତେ ଏ ମହାଜଗତେ;

ସେହି ବିଶ୍ୱଜନନୀର ଶ୍ରୀଚରଣ ପ୍ରାନ୍ତେ
ଆଜି ତୋ ଜନମଦିନେ କରିଣ ଏକାନ୍ତେ

ଆକୁଳ ଅଗ୍ରଜ ତୋର କୃତଜ୍ଞ ଅନ୍ତରେ,
ଆଜନ୍ମ ଜୀବନ-ବାଞ୍ଛା ପୂରି ଭକ୍ତିଭରେ;

ସ୍ନେହର ପ୍ରତିମା ତୋର ତୋତେ ପ୍ରାଣେ ଧରି,
ପିତୃ-ମାତୃ-ଭ୍ରାତୃ ସ୍ନେହ ଆଲିଙ୍ଗନ କରି
ସ୍ନେହର ଚୁମ୍ବନ ଦେଇ ଆନନେ ତୋହର,
ବନ୍ଦଇ ଆନନ୍ଦେ ବିଶ୍ୱଜନନୀ ପଦ୍ମର ।

ବ୍ୟାକୁଳେ ମାଗଇ ସେହି ଅଭୟ ଚରଣେ,
ରଖ ମା, ରଖ ମା, ମୋର ଅନୁଜ-ଜୀବନେ

ଅନନ୍ତ ମଙ୍ଗଳମୟୀ ସ୍ନେହଛାୟା ତଳେ,
ଦିବ୍ୟାଲୋକ ଦିଅ ମାତା ହୃଦଶତ ଦଳେ;

ଅନନ୍ତ ପ୍ରେମର ମଧୁମୟ ଆଲିଙ୍ଗନେ,
ଅନନ୍ତ ସ୍ନେହର ପୁଣ୍ୟ ଅମୃତ ଚୁମ୍ବନେ
ସାର୍ଥକ ସଫଳ ଧନ୍ୟ କର ତା ଜୀବନ—
ଶ୍ରୀପଦେ ମାଗଇ ଭିକ୍ଷା ଏ ଅଧମ ଜନ ।

ପ୍ରକୃତରେ କନିଷ୍ଠକୁ ଯେଉଁ ପିତୃ-ମାତୃ-ଭ୍ରାତୃ ସ୍ନେହର ଆଲିଙ୍ଗନ ଓ ସ୍ନେହଚୁମ୍ବନ ସେ ଦେଇ ଅଛନ୍ତି । ସେହି ପବିତ୍ର ଦୃଶ୍ୟ ଦେଖିବାର ସୌଭାଗ୍ୟ ପାଇ ଆମ୍ଭେମାନେ ଧନ୍ୟ ହୋଇଅଛୁ ।

## (ଗ) ଦାମ୍ପତ୍ୟ ଜୀବନ

ଅନୁମାନ ୧୨ ବର୍ଷ ବୟସରେ ବୋଲଗମଣାଙ୍କ ୯ ବର୍ଷ ବୟସ୍କା କନ୍ୟା ଚମ୍ପା—ଓରଫ ପଦ୍ମା ବାଈଙ୍କ ସହିତ ମଧୁସୂଦନଙ୍କର ବିବାହ ହୋଇଥିଲା । ଓଡ଼ିଶାରେ ବାଲ୍ୟବିବାହ ପ୍ରଚଳିତ ଥିଲା, କିନ୍ତୁ ବୟଃପ୍ରାପ୍ତ ନହେବା ପର୍ଯ୍ୟନ୍ତ ପତି-ପତ୍ନୀଙ୍କର ଦେଖା ସାକ୍ଷାତ୍ ହୁଏନାହିଁ । ବଧୂ ବୟଃପ୍ରାପ୍ତା ହେଲା ପରେ ପୁନର୍ବିବାହ ନାମକ ମାଙ୍ଗଳିକ ଅନୁଷ୍ଠାନ ଅନୁଷ୍ଠିତ ହେଲେ, ଏମାନେ ପରସ୍ପର ସାନ୍ନିଧ୍ୟ ଲାଭ କରନ୍ତି । ଏହି ମିଳନର ପ୍ରଥମ ରାତ୍ରିଟି ମଧୁସୂଦନଙ୍କ କବିପ୍ରାଣରେ କି ଆବେଗ ଆଣିଦେଇଥିଲା ତାହା ତାଙ୍କ 'ଯୌବନର ସ୍ୱପ୍ନ' କବିତାରେ ବର୍ଣ୍ଣିତ ଅଛି । ତାହାର ଶେଷ ସ୍ତବକଟି ନିମ୍ନରେ ଉଦ୍ଧୃତ ହେଲା ।

"ସହସା ଦେଖିଲି ପୁଣି ଚମକି ପୁଲକେ
ଷୋଡ଼ଶୀ ସୁନ୍ଦରୀ-ମୂର୍ତ୍ତି ସମ୍ମୁଖେ ମୋହର ।
ଶୋଭିତ ଆନନ-ପଦ୍ମ ଲଳିତ ଅଳକେ,
ସର୍ବାଙ୍ଗେ ପତିତ ଶୁଭ୍ର ରଶ୍ମି ଚନ୍ଦ୍ରିକାର,
ଅମଣ୍ଡିତା, ହୀନବସ୍ତ୍ରେ, ମନୋଜ୍ଞ ମଣ୍ଡନା;
ଅର୍ଦ୍ଧ ମୁକୁଳିତ ନେତ୍ରୀ, ଲଜ୍ଜା ମୂର୍ତ୍ତିମତୀ;
ନିଜ ପାଶେ ଅନୁଭବ ମୋ ପ୍ରାଣ କାମନା,
ସ୍ୱରଗରୁ ଆସିଛନ୍ତି ଯେସନ୍ତେ ମୋର ସତୀ ।

ହୃଦୟର ଲକ୍ଷ୍ମୀ ମୋର ପ୍ରାଣ-ସୀମନ୍ତିନୀ,
ଚାହିଁଲି ନିମେଷେ ସେହି ନୀରବ ଭାଷିଣୀ,
ବାନ୍ଧି ପ୍ରେମାବେଗେ ମୃଣ୍ଡି ବାହୁର ବନ୍ଧନେ
କହିଲି 'ପରାଣ ସଖି, ଏ ପ୍ରାଣ ଭ୍ରମର' ।
ନୀରବେ ଅର୍ପିଲା ବାଳା ଜୀବନ ଯୌବନ
ହୃଦୟ-କୁଟୀର-ରାଣୀ ପ୍ରେୟସୀ ମୋହର ।

ଏହି କବିତାର ଶେଷ କେତେକ ପଂକ୍ତିରେ ସେ ତାଙ୍କ 'ହୃଦୟ-କୁଟୀର ରାଣୀ', ନୀରବ-ଭାଷିଣୀ', 'ପରାଣ-ସଖୀ'ର ଯେଉଁ ଛବିଟି ଆଙ୍କି ଅଛନ୍ତି, ସେଥିରେ କିଶୋରୀ ପଦ୍ମାର ଅନାଡମ୍ବର ଲଜ୍ଜାରୁଣ ମୂର୍ତ୍ତିଟି ପ୍ରକାଶିତ । ମଧୁସୂଦନ ଶିକ୍ଷାର ଆଲୋକପ୍ରାପ୍ତ ନବୀନ ଯୁବକ, ପତ୍ନୀ ନିରକ୍ଷରା, କିନ୍ତୁ ପ୍ରାଚୀନ ଭାରତର ଆଦର୍ଶରେ ଗଠିତା । ଏହି କିଶୋରୀଟିର କଥା ମନେକଲେ, "ପତି-ପ୍ରିୟା ହିତେ ରତା ସ୍ୱାସ୍ଥ୍ୟବ୍ରତ ଫସଚେନ୍ଦ୍ରିୟା"—ଏହି ଉକ୍ତିଟି ମନର ସମ୍ମୁଖରେ ଜାଗି ଉଠେ । ପୂର୍ବେ କହିଅଛୁ, ମଧୁସୂଦନ ଯେତେବେଳେ ଯାଜପୁର ଗଲେ, ସେତେବେଳେ ତାଙ୍କର ଉଦାରହୃଦୟ ପିତା ଦେଶ ପ୍ରଚଳିତ ରୀତି ଅମାନ୍ୟ କରି ପୁତ୍ରବଧୂଙ୍କୁ ମଧ୍ୟ ପୁତ୍ରଙ୍କ ସହିତ ପଠାଇଲେ । ଏହି ବଧୂଙ୍କର ଜୀବନଟିକୁ ସବୁ ଦିଗରେ ଫୁଟାଇବା ପାଇଁ ମଧୁସୂଦନଙ୍କର ପ୍ରୟାସ ଥିଲା । ବଧୂଙ୍କର ମଧ୍ୟ ସ୍ୱାମୀଙ୍କ ମନୋମତ ହେବା ପାଇଁ ଚେଷ୍ଟା ଥିଲା । ଏହାଙ୍କର ପରବର୍ତ୍ତୀ ଜୀବନ ତାହାର ଅନେକ ସାକ୍ଷ୍ୟ ଦିଏ । ସ୍ୱାମୀ ଯେତେବେଳେ ବ୍ରାହ୍ମଧର୍ମ ଗ୍ରହଣ କଲେ, ଏବଂ ସେହି ଆଦର୍ଶରେ ଜୀବନଟିକୁ ଗଢ଼ିତ କରିବାକୁ ଲାଗିଲେ, ପତ୍ନୀ ପଦ୍ମା ତାଙ୍କ ସରଳ ସ୍ୱଚ୍ଛପ୍ରାଣରେ ମଧ୍ୟ ସେହି ଉଚ୍ଚ ଆଦର୍ଶର ଆଭାସ ଅନୁଭବ କଲେ । ପତିଙ୍କ ଅବଲମ୍ବିତ ପଥରେ ସେ ଅଗ୍ରସର ହେବାକୁ ଲାଗିଲେ । ସ୍ୱାମୀଙ୍କ ପ୍ରତି ଗଭୀର ପ୍ରୀତି ଓ ଶ୍ରଦ୍ଧା ତାହାଙ୍କୁ ଧୀରେ ଧୀରେ ସ୍ୱାମୀଙ୍କ ସମସ୍ତ କାର୍ଯ୍ୟ ମଧ୍ୟରେ ସହଯୋଗିତା କରିବା ପାଇଁ ପ୍ରସ୍ତୁତ କରି, ତାହାଙ୍କୁ ଉପଯୁକ୍ତ ସହଧର୍ମିଣୀ ହେବା ପଥରେ ଅଗ୍ରସର କରିଦେଲା । ସ୍ୱାମୀଙ୍କ ନିକଟରେ ସେ ଓଡ଼ିଆ ଓ ବଙ୍ଗଳା ଲେଖି-ପଢ଼ି ଶିଖିଲେ । ବହୁ ସନ୍ତାନଙ୍କ ଜନନୀ ଏବଂ ବୃହତ୍ ପରିବାରର ଗୃହିଣୀ ହେବା ଯୋଗୁଁ ତାଙ୍କ ବିଦ୍ୟାଶିକ୍ଷା ବେଶୀଦୂର ଅଗ୍ରସର ହୋଇପାରି ନାହିଁ । କିନ୍ତୁ ଭକ୍ତ, ବିଶ୍ୱାସୀ ବଳରାମଙ୍କ ଓ ତତ୍‌ପତ୍ନୀ ନିଷ୍ଠାବତୀ ମିତ୍ର ବାଈଙ୍କର ଏହି

କନ୍ୟା ପିତାମାତାଙ୍କର ବହୁ ଗୁଣରେ ଉତ୍ତରାଧିକାରିଣୀ ଥିଲେ । ମଧୁସୂଦନଙ୍କ ଉଚ୍ଚ ଆଦର୍ଶ ଗ୍ରହଣ କରିବା ପକ୍ଷରେ ପ୍ରକୃତ ଅନୁକୂଳ ଥିଲା ।

୧୯୧୨ ଖ୍ରୀଷ୍ଟାବ୍ଦ, ଡିସେମ୍ବର ୨୮ ତାରିଖରେ ମଧୁସୂଦନ ପରଲୋକ ଗମନ କଲେ । ତାଙ୍କ ସହଧର୍ମିଣୀ ତତ୍ପୂର୍ବରୁ ଚକ୍ଷୁ ରୋଗରେ ଆକ୍ରାନ୍ତ ହୋଇଥିଲେ । ପ୍ରଥମେ ଗୋଟିଏ ଚକ୍ଷୁ ଏବଂ କେତେବର୍ଷ ପରେ ଅନ୍ୟ ଚକ୍ଷୁଟି ନଷ୍ଟ ହୋଇଗଲା । ଅନ୍ଧ ଅବସ୍ଥାରେ ଦୀର୍ଘକାଳ କଟାଇ, ୧୯୩୫ ଖ୍ରୀଷ୍ଟାବ୍ଦ ଡିସେମ୍ବର ୨୩ ତାରିଖରେ ଆମ୍ଭମାନଙ୍କ ଜନନୀଦେବୀ ପରଲୋକ ଗମନ କଲେ ।

ମଧୁସୂଦନ ଥିଲେ ପିତାଙ୍କ ଜ୍ୟେଷ୍ଠ ସନ୍ତାନ । ୧୮ ବର୍ଷ ବୟସରୁ ସେ ସଂସାରର ଦାୟିତ୍ୱ ନେଇ ପିତାଙ୍କ ଭାର ଲାଘବ ପାଇଁ ସର୍ବଦା ବ୍ୟଗ୍ର ରହୁଥିଲେ । ସ୍ୱୋଟ ଭାଇଗୁଡ଼ିକୁ ଶିକ୍ଷିତ କରି କର୍ମକ୍ଷେତ୍ରରେ ପ୍ରତିଷ୍ଠିତ କରିବା, ଭଗିନୀମାନଙ୍କୁ ବିବାହ ଦେବା ଏବଂ ଏ ସମସ୍ତଙ୍କ କଲ୍ୟାଣ ପାଇଁ ସର୍ବଦା ଚେଷ୍ଟିତ ରହିବାର କେତେ ଦୃଶ୍ୟ ମନେପଡ଼େ । ଏଠାରେ ଏହା ଉଲ୍ଲେଖ ଖୁବ୍ ଅପ୍ରାସଙ୍ଗିକ ହେବନାହିଁ ଯେ, ଆମ୍ଭମାନଙ୍କର ମାତୃଦେବୀ ଆଜୀବନ ପିତୃଦେବଙ୍କ ସହଧର୍ମିଣୀ ଓ ସହକର୍ମିଣୀ ହୋଇ, ପିତୃଦେବଙ୍କ ପରଲୋକ ଗମନର ପରେ ମଧ୍ୟ, ଜୀବନର ଶେଷ ଦିନ ପର୍ଯ୍ୟନ୍ତ ଏହି ବୃହତ୍ ରାଓ ପରିବାରର ସମସ୍ତଙ୍କ ସହିତ ସଂଯୁକ୍ତ ଥାଇ, ପ୍ରାଚୀନ କାଳର ଏକାନ୍ନବର୍ତ୍ତୀ ପରିବାରର ଏକ ଗୃହିଣୀ ରୂପେ ଆଦର୍ଶ ଜୀବନଯାପନ କରି ଯାଇଅଛନ୍ତି ।

## (ଘ) ମଧୁସୂଦନଙ୍କ ଦୈନନ୍ଦିନ ଜୀବନଯାତ୍ରାର କର୍ମସୂଚୀ

ପ୍ରତ୍ୟୁଷରେ ଉଠିବା ମଧୁସୂଦନଙ୍କ ଆବାଲ୍ୟ ଅଭ୍ୟାସ ଥିଲା । ଆମ୍ଭେମାନେ ଜ୍ଞାନୋନ୍ମେଷର ସମୟଠାରୁ ଦେଖିଅଛୁ, ସେ ପ୍ରାତଃକାଳରେ ସର୍ବାଗ୍ରେ ଈଶ୍ୱର ସ୍ମରଣ କରୁଥିଲେ;

୧ ।　　ଜାଗ ସକଳେ ଏବେ, ଅମୃତର ଅଧିକାରୀ,
　　ନୟନ ମେଲିଇ ଦେଖ କରୁଣା-ନିଧାନ, ପାପତାପହାରୀ ।

୨ । ଜଗତମୋହିନୀ ଉଷା ଆଗତ ଅବନୀତଳେ
ନୟନ ମେଲିରେ ମନ ଜୟ ଜଗଦୀଶ ବୋଲି ।

୩ । ଅୟି ସୁଷମୟୀ ଉଷେ, କେ ତୁମକୁ ନିରମିଲା
ବାଳାର୍କ ସିନ୍ଦୂର ଫୋଟା କେ ତୁମ କପାଳେ ଦେଲା ।

ପ୍ରଭୃତି ପ୍ରିୟ ସଙ୍ଗୀତଗୁଡ଼ିକ ତାହାଙ୍କର କଣ୍ଠରେ ଗୀତ ହୋଇ ସତେ ଯେପରି ପରିବାରସ୍ଥ ସମସ୍ତଙ୍କ ଅନ୍ତରକୁ ବିଶ୍ୱ ମହିମା-ସ୍ମରଣରେ ନୂତନ ଦିବସର କାର୍ଯ୍ୟରେ ଉଦ୍‌ବୁଦ୍ଧ କରୁଥିଲା ।

ପ୍ରାତଃକୃତ୍ୟ ସମାପନାନ୍ତେ କିଛିକ୍ଷଣ ତୈଳମର୍ଦ୍ଦନ କରିବା ପରେ ସେ ସ୍ନାନ କରୁଥିଲେ । ତତ୍ପରେ ଅଳ୍ପ ଅଦା ଲୁଣ ଖାଇବା ତାଙ୍କର ଅଭ୍ୟାସ ଥିଲା । ସ୍ନାନାନ୍ତେ ପାରିବାରିକ ଉପାସନା । ଅଧିକାଂଶ ସମୟ ସେ ସଙ୍ଗୀତ ରଚନା କରି ଏକତାରି ନେଇ ଗୀତ ଗାଇଯାଆନ୍ତି । ଏହି ଗୀତ ଅନେକ ସମୟରେ କନ୍ୟାମାନେ ଲେଖି ରଖନ୍ତି । ମନର ଯେଉଁ ଭାବଟି ସଙ୍ଗୀତ ମଧ୍ୟରେ ପ୍ରକାଶିତ ହେଉଥିଲା ଆରାଧନା ପ୍ରାର୍ଥନା ମଧ୍ୟରେ ସେହି ସ୍ୱରଟି ବାଜୁଥିଲା । ଏହାଛଡ଼ା ଅନ୍ୟାନ୍ୟ ବହୁ ବ୍ରହ୍ମସଙ୍ଗୀତ ତାଙ୍କର ଅତି ପ୍ରିୟ ଥିଲା ।

ଉପାସନାନ୍ତେ ସେ କିଛି ଜଳଯୋଗ କରୁଥିଲେ । ମଧୁସୂଦନ ନିରାମିଷାଶୀ ଥିଲେ । ତତ୍କାଳରେ ବହୁ ବ୍ରାହ୍ମ ନିରାମିଷ ଆହାର କରୁଥିଲେ । ମୋର ମନେହୁଏ, ମଧୁସୂଦନ ମଧ୍ୟ ୨୦।୨୧ ବର୍ଷ ବୟସରୁ ଆମିଷ-ଭୋଜନ ତ୍ୟାଗ କରିଥିଲେ । ଆମ୍ଭମାନଙ୍କ ଜନନୀଦେବୀ ମଧ୍ୟ ପିତାଙ୍କ ପଦାନୁସରଣ କରି ଆମିଷ-ଭୋଜନ ତ୍ୟାଗ କରିଥିଲେ । ଆମେ ତାଙ୍କୁ ମାଛ ଖାଇବାର ଦେଖିନାହୁଁ । ଆମେ ଭାଇଭଉଣୀ ସମସ୍ତେ ବାଲ୍ୟକାଳରୁ ନିରାମିଷ ଖାଉଥିଲୁ । ବଡ଼ ହେବା ପରେ କେହି ଆମିଷ-ଭୋଜନରେ ଅଭ୍ୟସ୍ତ ହୋଇଅଛନ୍ତି । ଗୃହରେ ମାଛ, ମାଂସ ରନ୍ଧା ହେବାର କୌଣସି ବାଧା ନଥିଲା । ଖୁଡ଼ୀ, ପିଉସୀମାନେ ଓ ଅନ୍ୟ ଆତ୍ମୀୟ, ଯେଉଁମାନେ ଆମିଷ ଖାଉଥିଲେ, ସେମାନଙ୍କ ପାଇଁ ଆମିଷ ରନ୍ଧା ହେଉଥିଲା । ଏ ବିଷୟରେ ମଧୁସୂଦନ କାହାର ସ୍ୱାଧୀନତାରେ ହସ୍ତକ୍ଷେପ କରିନାହାନ୍ତି ।

ଜଳଯୋଗ ପରେ ଅନ୍ନଗ୍ରହଣରେ ପୂର୍ବ ପର୍ଯ୍ୟନ୍ତ ପୁତ୍ର, କନ୍ୟା, ଭ୍ରାତୃଷ୍ପୁତ୍ରୀ ଓ ଅନ୍ୟାନ୍ୟ ଯେଉଁ ଆତ୍ମୀୟ ବାଳକ ତାଙ୍କ ପରିବାରରେ ଥାଇ ବିଦ୍ୟାଧ୍ୟୟନ କରୁଥିଲେ । ସେମାନଙ୍କର ପଢ଼ାଶୁଣା ସେ ଦେଖୁଥିଲେ ଓ ଗୃହଆଶ୍ରମର ତତ୍ତ୍ୱାବଧାନ କରୁଥିଲେ ।

ହୁକାରେ ତମାଖୁ ଖାଇବା ଅଭ୍ୟାସ ତାଙ୍କର ଥିଲା, କିନ୍ତୁ ସାରା ଦିନରେ ୩।୪ ଥରରୁ ଅଧିକ ଖାଉନଥିଲେ ।

ଆହାରାନ୍ତେ କର୍ମସ୍ଥଳକୁ ଯିବା ପୂର୍ବରୁ ଅଧିକାଂଶ ସମୟ ତାଙ୍କର ସମ୍ବାଦପତ୍ର ପଢ଼ିବାର ଅଭ୍ୟାସ ଥିଲା, ଅପରାହ୍ଣରେ କର୍ମସ୍ଥଳରୁ ଫେରି, କିଞ୍ଚିତ୍ ଜଳଯୋଗ କରି ଗୃହସଂଲଗ୍ନ ଉଦ୍ୟାନର ତତ୍ତ୍ୱାବଧାନ ସେ କରୁଥିଲେ ।

କବି ମଧୁସୂଦନ ଫୁଲ ପ୍ରତି ଯଥେଷ୍ଟ ଆକୃଷ୍ଟ ଥିଲେ । ତାଙ୍କ ବଗିଚାରେ ଗୋଲାପ, ମଲ୍ଲୀ, କାମିନୀ, ଟଗର, ଗନ୍ଧରାଜ, ମାଳତୀ, ଗଙ୍ଗଶିଉଳି ପ୍ରଭୃତି ଫୁଲ ବିଭିନ୍ନ ଋତୁରେ ପ୍ରସ୍ଫୁଟିତ ହୋଇ ଶୋଭା ଓ ସୁଗନ୍ଧରେ ପ୍ରାଣ-ମନ ହରଣ କରୁଥିଲା । ଶୀତଦିନରେ ଗେଣ୍ଡୁଫୁଲ ବଗିଚାକୁ ସୁନ୍ଦର କରି ଫୁଟିଥାଏ । ଅଶୋକ ଫୁଲ ତାଙ୍କର ବଡ଼ ପ୍ରିୟ ଥିଲା, ତାଙ୍କ ରୋପିତ ଅଶୋକବୃକ୍ଷ ବର୍ତ୍ତମାନ ସୁଦ୍ଧା ଗୃହପ୍ରାଙ୍ଗଣରେ ଅଛି । ଆମ୍ବ, ଜାମୁ, କରମଙ୍ଗା, ସପେଟା, ନଡ଼ିଆ, ଜାମରୁଲ, ବେଲ, ଗୋଲାପଜାମୁ, ଅମୃତଭଣ୍ଡା, ଲେମ୍ବୁ, ବାତାପି, କଦଳୀ, ଆତ ପ୍ରଭୃତି ନାନାବିଧ ଫଳଗଛ ତାଙ୍କ ବଗିଚାରେ ଥିଲା । ତାଙ୍କ ରୋପିତ କୌଣସି କୌଣସି ଫଳଗଛରେ ବର୍ତ୍ତମାନ ମଧ୍ୟ ଫଳ ହେଉଅଛି । ଶାକ୍-ସବଜିର ବଗିଚାରେ ମଧ୍ୟ ବିଭିନ୍ନ ଋତୁରେ ନାନାବିଧ ପନିପରିବା ହେଉଥିଲା ।

ଅନେକ ଦିନର ପୁରାତନ ଜଗୁ ତପସ୍ୱୀ ପ୍ରଧାନତଃ ଏହି ବଗିଚାରେ କାମ କରୁଥିଲା । ଦୀର୍ଘ ୩୭ ବର୍ଷ କାଳ ଆମ୍ଭମାନଙ୍କ ପରିବାରରେ ରହି ସେ ଏହି ପରିବାରର ଜଣେ ହୋଇଯାଇଥିଲା ।

ଉପରବେଳା ଦର୍ଶନାର୍ଥୀ କେହି କେହି ଆସିଲେ, ସେମାନଙ୍କ ସଙ୍ଗେ ଆଳାପାଦି କରୁଥିଲେ । ସନ୍ଧ୍ୟାରେ ପୁଣି ପାରିବାରିକ ଉପାସନା ହେଉଥିଲା, ତତ୍ପରେ ରାତି ୯ଟା ସମୟ ପର୍ଯ୍ୟନ୍ତ ଲେଖାପଢ଼ାରେ କଟୁଥିଲା ।

ଏଥିମଧ୍ୟରେ ସୁବିଧାନୁସାରବିକ ସେ ପୁତ୍ରକନ୍ୟାଙ୍କ ସହିତ ନିଜ ଜୀବନର ବହୁ କଥା, ଦେଶ-ବିଦେଶ ଭ୍ରମଣକାଳର ଅଭିଜ୍ଞତା, ଯେଉଁସବୁ ଶ୍ରଦ୍ଧେୟବ୍ୟକ୍ତିଙ୍କ ସଂସ୍ପର୍ଶରେ ସେ ଆସିଥିଲେ, ଯେଉଁମାନଙ୍କ ଉପାସନା ଓ ସଙ୍ଗୀତରେ ଯୋଗ-ଦେଇସେ ଉପକୃତ ହୋଇଥିଲେ, ସେହି ସମସ୍ତ କଥା ସେ ଗଳ୍ପଚ୍ଛଳରେ କହୁଥିଲେ । ରାତିରେ ଆହାର କରିବା ସମୟରେ ପ୍ରାପ୍ତ ପୁତ୍ରକନ୍ୟାମାନଙ୍କୁ ସଙ୍ଗରେ ନେଇ ସେ ଭୋଜନରେ ବସୁଥିଲେ । ସେଦିନଟି କାହା'ର କି ଭାବରେ କଟିଅଛି, ସେ ବିଷୟରେ ଆଲୋଚନା ମଧ୍ୟରେ ହାସ ପରିହାସ ଓ ଆନନ୍ଦ ମଧ୍ୟରେ ଭୋଜନକ୍ରିୟା ସମାପ୍ତ ହେଉଥିଲା । ତତ୍ପରେ କିଛିକ୍ଷଣ ଶଯ୍ୟାରେ ଶାନ୍ତିତ ଅବସ୍ଥାରେ ପଢୁପଢୁ ନିଦ୍ରା ଯାଉଥିଲେ । କିନ୍ତୁ ବୟୋବୃଦ୍ଧି ସଙ୍ଗେ ସଙ୍ଗେ ନାନା ରୋଗର ଆକ୍ରମଣରେ ଓ ଅନିଦ୍ରା ରୋଗରେ ସେ ପ୍ରାୟ କଷ୍ଟ ପାଉଥିଲେ । ଶୂଳରୋଗର ଆକ୍ରମଣ ତାହାଙ୍କୁ ବଡ଼ କଷ୍ଟ ଦେଉଥିଲା । ଜୀବନର ଶେଷ କେତେ ବର୍ଷ ଏହି ଦୁଇ ରୋଗରେ ସେ ଅତ୍ୟନ୍ତ କଷ୍ଟ ପାଉଥିଲେ । ତାଙ୍କର ଦୈନନ୍ଦିନ କାର୍ଯ୍ୟସୂଚୀର ଯେଉଁ ବିବରଣୀ ଦେଲି, ଏହି ଦୁଇ ରୋଗରେ ଆକ୍ରାନ୍ତ ହେବା ପରଠାରୁ ଅନେକ ସମୟରେ ତାହାର ବ୍ୟତିକ୍ରମ ଘଟୁଥିଲା ।

ମଧୁସୂଦନଙ୍କ ଦୈନନ୍ଦିନ ପାଠ୍ୟର ଅନ୍ତର୍ଭୁକ୍ତ ପୁସ୍ତକଗୁଡ଼ିକର ସଂକ୍ଷିପ୍ତ ତାଲିକା :– ଗୀତା, ବାଇବେଲ୍, କୋରାନ, ଉପନିଷଦ, ବୌଦ୍ଧଧର୍ମ ଓ ବ୍ରାହ୍ମଧର୍ମର ବିବିଧ ସାହିତ୍ୟ, ଧର୍ମଗ୍ରନ୍ଥ ଓ ଜୀବନଚରିତ ପ୍ରଭୃତି ସେ ବାରମ୍ବାର ପଢୁଥିଲେ । ଏହା ଛଡ଼ା ବିଭିନ୍ନ ଭାଷାର ପ୍ରସିଦ୍ଧ ଲେଖକମାନଙ୍କର ଯେଉଁସବୁ ପୁସ୍ତକ ତାଙ୍କୁ ଭଲ ଲାଗୁଥିଲା, ତାହାର ନାମୋଲ୍ଲେଖ କରୁଅଛି :—

୧ । ଇଂରାଜୀରେ—ମାର୍ଟିନୋ (Martineau), ରସ୍କିନ (Reskin), ଇମର୍ସନ (Emerson), ଭଏସୀ (Voysey), ଭିକ୍ଟର ହ୍ୟୁଗୋ (Victor Hugo), ମ୍ୟାଥିଉ ଆର୍ନଲ୍ଡ (Mathew Arnold), ଆର୍ମଷ୍ଟ୍ରଙ୍ଗ (Armstrong) ପ୍ରଭୃତି ମନୀଷିମାନଙ୍କର ଦାର୍ଶନିକ ପ୍ରବନ୍ଧ, ଉପନ୍ୟାସ ପ୍ରଭୃତି ଏବଂ ଟେନିସନ (Tennyson) ଓ୍ୱାର୍ଡସ ଓ୍ୱାର୍ଥ (Words Worth) ଗେଟେ (Goethe), ଶେକ୍ସପିୟର (Shakcspeare), ଶେଲି (Shelley) ପ୍ରଭୃତି ପ୍ରତିଭାଶାଳୀ କବିମାନଙ୍କର କାବ୍ୟ ଓ ସାହିତ୍ୟ ।

୨ । ସଂସ୍କୃତ ଭାଷାରେ :— ଭବଭୂତିଙ୍କ 'ଉତ୍ତରରାମଚରିତ', 'ମାଳତୀ ମାଧବ', କାଳିଦାସଙ୍କ 'କୁମାରସମ୍ଭବ', 'ରଘୁବଂଶ', 'ଅଭିଜ୍ଞାନଶକୁନ୍ତଳମ୍' ବାଲ୍ମୀକି ରାମାୟଣ, ଶ୍ରୀମଦ୍‌ଭାଗବତ, ବେଦାନ୍ତଦର୍ଶନ, ପ୍ରଭୃତି ।

୩ । ବଙ୍ଗ ଭାଷାରେ :– ଈଶ୍ୱର ଚନ୍ଦ୍ର ବିଦ୍ୟାସାଗର, ମାଇକେଲ ମଧୁସୂଦନ ଦତ୍ତ, ଭୂଦେବ ମୁଖୋପାଧ୍ୟାୟ, ହେମଚନ୍ଦ୍ର, ନବୀନଚନ୍ଦ୍ର, ବଙ୍କିମଚନ୍ଦ୍ର, ରଙ୍ଗଲାଲ ଓ ଜ୍ଞାନେନ୍ଦ୍ରନାଥ ପ୍ରଭୃତିଙ୍କ ରଚନାବଳୀ, କାଳୀପ୍ରସନ୍ନ ସିଂହଙ୍କ ମହାଭାରତ ଇତ୍ୟାଦି ।

୪ । ଓଡ଼ିଆ ଭାଷାରେ :—ସାରଳା ଦାସଙ୍କ ମହାଭାରତ, ଜଗନ୍ନାଥ ଦାସଙ୍କ ଭାଗବତ, ଦୀନକୃଷ୍ଣଙ୍କ ରସକଲ୍ଲୋଳ, ବଳରାମ ଦାସଙ୍କ ରାମାୟଣ ପ୍ରଭୃତି ।

୫ । ମରାଠୀ ଭାଷାରେ :— ଭକ୍ତ ତୁକାରାମଙ୍କ ଉପଦେଶାବଳୀ ଏବଂ ଆଧୁନିକ କେତେଜଣ ପଣ୍ଡିତଙ୍କ ରଚନାବଳୀ ।

୬ । ଏହା ବ୍ୟତୀତ ବହୁ ବଙ୍ଗଳା, ଇଂରାଜୀ, ଓଡ଼ିଆ ଓ ମରାଠୀ ଭାଷାର ସମ୍ବାଦପତ୍ର ଓ ସାମୟିକ ପତ୍ରିକାର ସେ ଗ୍ରାହକ ଥିଲେ । ବ୍ରାହ୍ମସମାଜର ୩ ଶାଖାରୁ (ଆଦି, ଭାରତବର୍ଷୀୟ ଓ ସାଧାରଣ) ଯେଉଁସବୁ ପୁସ୍ତକ-ପୁସ୍ତିକା ଓ ପତ୍ରିକାଦି ପ୍ରକାଶିତ ହେଉଥିଲା, ସେଗୁଡ଼ିକୁ ପ୍ରାୟ ସେ ନେଉଥିଲେ ଏବଂ ସେଗୁଡ଼ିକ ମଧ୍ୟ ତାଙ୍କର ଦୈନିକ ପାଠର ଅନ୍ତର୍ଗତ ଥିଲା ।

## (ଙ) ସନ୍ତାନ-ବାତ୍ସଲ୍ୟ ଓ ସନ୍ତାନମାନଙ୍କ ଶିକ୍ଷା ବ୍ୟବସ୍ଥା

ସ୍ତ୍ରୀ ଶିକ୍ଷାରେ ଅନୁରାଗୀ ମଧୁସୂଦନ କନ୍ୟାମାନଙ୍କୁ କିପରି ଶିକ୍ଷା ଦେଇଥିଲେ, ତାହାର କିଞ୍ଚିତ୍ ବିବରଣୀ ଏଠାରେ ଦେଉଛୁ :—କଟକରେ ସେତେବେଳେ ରେଭେନ୍‌ଶା ବାଳିକା ବିଦ୍ୟାଳୟରେ ଓଡ଼ିଆ ଓ ବଙ୍ଗଳାରେ ମଧ୍ୟଛାତ୍ରବୃତ୍ତି ପର୍ଯ୍ୟନ୍ତ ପଢ଼ା ହେଉଥିଲେ । ସେ କନ୍ୟାମାନଙ୍କୁ ଓ ଭ୍ରାତୃଷ୍ପୁତ୍ରୀ ରେବାଙ୍କୁ ଏହି ସ୍କୁଲରେ ନାମ ଲେଖାଇ ଉଚ୍ଚଶ୍ରେଣୀରେ ବର୍ଷେ ବଙ୍ଗଳା ଓ ବର୍ଷେ ଓଡ଼ିଆ ପଢ଼ାଇବା ଦ୍ୱାରା ଦୁଇଟି ଭାଷାରେ ଏମାନଙ୍କର ସମ୍ୟକ୍ ଅଧିକାର ଜନ୍ମିଥିଲା । ୧୧ ବର୍ଷ ବୟସ ମଧ୍ୟରେ ଏମାନଙ୍କର ଏହି ସ୍କୁଲର ଶିକ୍ଷା ସମାପ୍ତ ହୋଇଥିଲା ଏବଂ ବାସନ୍ତୀ, ରେବା ଓ ଅବନ୍ତୀ ବିଭିନ୍ନ ଛାତ୍ରବୃତ୍ତି ପରୀକ୍ଷାରେ ଉଚ୍ଚସ୍ଥାନ ଅଧିକାର କରି ସରକାରୀ ବୃତ୍ତି ପାଇଥିଲେ । କିନ୍ତୁ

ସେତେବେଳେ କଟକରେ ବାଳିକାମାନଙ୍କ ପାଇଁ ଅତି ଉଚ୍ଚଶିକ୍ଷାର ବ୍ୟବସ୍ଥା ନଥିବାରୁ, ସେମାନଙ୍କ ସ୍କୁଲର ଶିକ୍ଷା ଆଉ ଅଧିକଦୂର ଅଗ୍ରସର ହେଉନାହିଁ । କିନ୍ତୁ ମଧୁସୂଦନ କନ୍ୟାମାନଙ୍କ ଅନ୍ତରକୁ ଶିକ୍ଷାରେ ଉନ୍ନତ କରିବା ପାଇଁ ସର୍ବଦା ଚେଷ୍ଟିତ ଥିଲେ । ବଙ୍ଗ ଦେଶରେ ସେ ସମୟରେ ଯେଉଁ ମହାକବି-ମାନଙ୍କର କାବ୍ୟ ଓ କବିତା ଏବଂ ଯେଉଁ ମନୀଷିମାନଙ୍କର ଚିନ୍ତାପୂର୍ଣ୍ଣ ପ୍ରବନ୍ଧ ଓ ପୁସ୍ତକମାନ ପ୍ରକାଶିତ ହେଉଥିଲା, ସେସବୁ ସେ ଅଣାଉଥିଲେ ମଧ୍ୟ ଛାତ୍ରବୃତ୍ତି ପରୀକ୍ଷୋତ୍ତୀର୍ଣ୍ଣା ଏହି କନ୍ୟାମାନଙ୍କୁ କ୍ରମେ କ୍ରମେ ପଢ଼ିବାକୁ ଦେଉଥିଲେ ଏବଂ ନିଜେ ଆଲୋଚନା କରି ବୁଝାଇ ଦେଉଥିଲେ । ନିମ୍ନୋକ୍ତ ବହିଗୁଡ଼ିକର କଥା ଏହି ସୂତ୍ରରେ ଉଲ୍ଲେଖଯୋଗ୍ୟ :—କବିବର ହେମଚନ୍ଦ୍ର, ନବୀନଚନ୍ଦ୍ର ଓ ମାଇକେଲ ମଧୁସୂଦନ ଦତ୍ତଙ୍କ ସମସ୍ତ ରଚନା, ଭୂଦେବ ମୁଖୋପାଧ୍ୟାୟଙ୍କର 'ପାରିବାରିକ ପ୍ରବନ୍ଧ', ଢାକାର 'ବାନ୍ଧବ' ପତ୍ରିକାର ସମ୍ପାଦକ କାଳୀପ୍ରସନ୍ନ ଘୋଷଙ୍କ 'ନାରୀଜାତି-ବିଷୟକ ପ୍ରସ୍ତାବ' ।

ବ୍ରାହ୍ମସମାଜ 'ତତ୍ତ୍ୱବୋଧିନୀ', 'ଧର୍ମତତ୍ତ୍ୱ', 'ତତ୍ତ୍ୱକୌମୁଦୀ' ଏହି ତିନି ପତ୍ରିକାର ସେ ଗ୍ରାହକ ଥିଲେ । ମହର୍ଷି ଦେବେନ୍ଦ୍ରନାଥ ଠାକୁର, ବ୍ରହ୍ମାନନ୍ଦ କେଶବଚନ୍ଦ୍ର ଓ ଶିବନାଥ ଶାସ୍ତ୍ରୀ ମହାଶୟଙ୍କର ଯାହା କିଛି ରଚନା ପ୍ରକାଶିତ ହେଉଥିଲା, ସେସବୁ ସେ ଅଣାଉଥିଲେ । ଏତଦ୍‌ଭିନ୍ନ ଆଦି, ନବବିଧାନ ଓ ସାଧାରଣ ବ୍ରାହ୍ମସମାଜର ବିଶିଷ୍ଟ ବ୍ୟକ୍ତିମାନଙ୍କ ଦ୍ୱାରା ଲିଖିତ ପୁସ୍ତକମାନ ସେ କିଣୁଥିଲେ । ବ୍ରାହ୍ମଧର୍ମର ବ୍ୟାଖ୍ୟାନ, ମହର୍ଷି ଆତ୍ମଜୀବନୀ, ଉପାଧ୍ୟାୟ ଗୌରଗୋବିନ୍ଦ ରାୟ ମହାଶୟଙ୍କ ଲିଖିତ ଭଗବଦ୍ ଗୀତା, କେଶବଚନ୍ଦ୍ରଙ୍କ ସୁବୃହତ୍ ଜୀବନୀ-ତିନି ଖଣ୍ଡ ଓ ଅନ୍ୟାନ୍ୟ ବହୁ ମହତ୍‌ବ୍ୟକ୍ତିଙ୍କ ଜୀବନୀ ଆମ୍ଭମାନଙ୍କୁ ସେ ପଢ଼ିବାକୁ ଦେଉଥିଲେ । ଶିବନାଥ ଶାସ୍ତ୍ରୀ ମହାଶୟଙ୍କ ବହୁ କବିତା ବାଲ୍ୟକାଳରେ ଆମ୍ଭମାନଙ୍କୁ କଣ୍ଠସ୍ଥ କରାଇ ସେ ଆବୃତ୍ତି କରାଉଥିଲେ । ୧୯।୨୦ ବର୍ଷ ବୟସ ପୂର୍ବରୁ ମୁଁ କଲିକତା ଯାଇନାହିଁ । ତତ୍‌ପୂର୍ବରୁ ବ୍ରାହ୍ମସମାଜର ବହୁ ବିଶିଷ୍ଟ ବ୍ୟକ୍ତିଙ୍କ ସାକ୍ଷାତଲାଭର ସୁଯୋଗ ମଧ୍ୟ ପାଇନାହିଁ । କିନ୍ତୁ ଉପରୋକ୍ତ ପୁସ୍ତକ ପୁସ୍ତିକା ଓ ପତ୍ରିକାଦି ନିୟମିତ ପଢ଼ିବା ଫଳରେ ଶ୍ରଦ୍ଧେୟ ବିଶିଷ୍ଟ ବ୍ୟକ୍ତିମାନେ ମୋତେ ଅପରିଚିତ ବୋଧ ହେଉନଥିଲେ । ବ୍ରାହ୍ମସମାଜର ଇତିହାସ ସମ୍ବନ୍ଧରେ ମଧ୍ୟ ମୋର ମୋଟା-ମୋଟି ଜ୍ଞାନ ହୋଇଥିଲା । ଟିକିଏ ବଡ଼ ହେବା ପରେ ବଙ୍କିମଚନ୍ଦ୍ରଙ୍କ

ଉପନ୍ୟାସ, ଦୀନବନ୍ଧୁ ମିତ୍ରଙ୍କ ଗ୍ରନ୍ଥାବଳୀ, ମାଇକେଲ ମଧୁସୂଦନ ଦତ୍ତଙ୍କ ଲିଖିତ ନାଟକ ପ୍ରହସନ, ସ୍ୱର୍ଣ୍ଣକୁମାରୀ ଦେବୀଙ୍କ ଉପନ୍ୟାସ ପ୍ରଭୃତି ପଢ଼ିବାକୁ ପାଇଥିଲି, ମୁଁ ଯେତେବେଳେ ମଧ୍ୟଛାତ୍ରବୃତ୍ତି ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ସ୍କୁଲରୁ ପାରିତୋଷିକ ପାଇଲି, ସେତେବେଳେ ପିତୃଦେବଙ୍କ ଅନୁମୋଦନରେ ମହିଳା-କବି କାମିନୀ ସେନ (ପରେ ରାୟଙ୍କ "ଆଲୋକ ଓ ଛାୟା" ଗିରୀନ୍ଦ୍ରମୋହିନୀ ଦାସୀଙ୍କ 'ଅଶ୍ରୁକଣା' ଓ ଦେବେନ୍ଦ୍ରନାଥଙ୍କ 'ଦ୍ରୁତ-ସଙ୍ଗୀତ' ପାରିତୋଷିକ ରୂପେ ପାଇଥିଲି । ବାଲ୍ୟକାଳରେ ପଠିତ ଏହି କବିତାଗୁଡ଼ିକ ଆଜୀବନ ମୋର ଅନ୍ତରକୁ ସ୍ନିଗ୍ଧ ସରସ କରି ମହତ୍ତ୍ୱର ପ୍ରେରଣା ଯୋଗାଇ ଆସୁଅଛି ।

କନ୍ୟାମାନଙ୍କୁ ସଂସ୍କୃତ ଶିକ୍ଷା ଦେବାପାଇଁ ସେ ସଚେଷ୍ଟ ଥିଲେ । ପିତୃଦେବଙ୍କ ନିକଟକୁ ବହୁ ସଂସ୍କୃତଜ୍ଞ ପଣ୍ଡିତ ଆସୁଥିଲେ । ମହାକବି କାଳିଦାସ ଓ ଭବଭୂତି ପ୍ରଭୃତିଙ୍କ କାବ୍ୟାଲୋଚନା ହେଉଥିଲା । ପ୍ରଭାକର ମିଶ୍ର ନାମକ ଜଣେ ସଂସ୍କୃତଜ୍ଞ ପଣ୍ଡିତ କାଳୀତଳରେ ମୋ ପିତାଳୟ ନିକଟସ୍ଥ ଯେଉଁ ବର୍ଦ୍ଧମାନ ରାଜବାଟୀ ବର୍ତ୍ତମାନ ସୁଦ୍ଧା ପୁରାତନ ଅବସ୍ଥାରେ ଅଛି, ତତ୍ସଂଲଗ୍ନ ଜମିରେ ଅବସ୍ଥିତ ଗୃହରେ ବାସ କରୁଥିଲେ । ତାଙ୍କର ବହୁ ଉଦ୍ଭଟ ଶ୍ଳୋକ ମୁଖସ୍ଥ ଥିଲା । ଶୁଣି ଶୁଣି ମୋର ମଧ୍ୟ ବହୁ ଶ୍ଳୋକ କଣ୍ଠସ୍ଥ ହୋଇଯାଇଥିଲା-କିଛି କିଛି ଏବେ ସୁଦ୍ଧା ମନେପଡ଼େ ।

୧) ଯା ରାକା ଶଶି-ଶୋଭନା ଗତଘନା ସା ଯାମିନୀ ଯାମିନୀ,
ଯା ସୌନ୍ଦର୍ଯ୍ୟ-ଗୁଣାନ୍ୱିତା ପତିରତା ସା କାମିନୀ କାମିନୀ,
ଯା ଗୋବିନ୍ଦ-ରସ-ପ୍ରମୋଦ-ମଧୁରା ସା ମାଧୁରୀ ମାଧୁରୀ,
ଯା ଲୋକଦ୍ୱୟ-ସାଧନୀ ତନୁଭୃତାଂ ସା ଚାତୁରୀ ଚାତୁରୀ,

୨) ପ୍ରାରଭ୍ୟତେ ନ ଖଳୁ ବିଘ୍ନଭୟେନ ନୀଚୈଃ,
ପ୍ରାରଭ୍ୟ ବିଘ୍ନ-ନିହତା ବିରମନ୍ତି ମଧ୍ୟାଃ ।
ବିଘ୍ନୈଃ ପୁନଃ ପୁନରପି ପ୍ରତିହନ୍ୟମାନାଃ,
ପ୍ରାରବ୍ଧ ମୁତ୍ତମଗୁଣାଃ ନ ପରିତ୍ୟଜନ୍ତି ।

ଚାଣକ୍ୟ ଶ୍ଳୋକ ଓ ମୋହମୁଦ୍‌ଗରର ଅଧିକାଂଶ ଶ୍ଳୋକ ମୋର କଣ୍ଠସ୍ଥ ଥିଲା ।

ନଅ ଦଶ ବର୍ଷ ବୟସରୁ ଘରେ ବିଦ୍ୟାସାଗରଙ୍କ 'ଉପକ୍ରମଣିକା' ବ୍ୟାକରଣ ଦ୍ୱାରା ଆମ୍ଭମାନଙ୍କର ସଂସ୍କୃତ ଶିକ୍ଷା ଆରମ୍ଭ ହେଲା । ହାଇସ୍କୁଲରେ ସେ ଯୁଗରେ ଯେଉଁସବୁ ସଂସ୍କୃତ ବହି ପଢ଼ା ହେଉଥିଲା, ତାହା ମଧ୍ୟ ଧୀରବାବୁଙ୍କ ପାଖରେ ମୁଁ ପଢ଼ିଅଛି । ତତ୍ପରେ ରଘୁବଂଶ, ଉତ୍ତର-ରାମଚରିତ, କୁମାରସମ୍ଭବ, ଅଭିଜ୍ଞାନ ଶକୁନ୍ତଳମ୍ ପ୍ରଭୃତି ବାବାଙ୍କ ନିକଟରେ ପଢ଼ିଅଛି । ସଂସ୍କୃତ ଉଚ୍ଚାରଣ ତାଙ୍କର ଅତି ବିଶୁଦ୍ଧ ଥିଲା ।

ସଂସ୍କୃତ ଛନ୍ଦାନୁଯାୟୀ (ଅନୁଷ୍ଟୁଭ, ଶାର୍ଦ୍ଦୁଳ-ବିକ୍ରିଡ଼ିତ, ସ୍ରଗଧାରା, ଭୁଜଙ୍ଗପ୍ରୟାତ, ମାଳିନୀ ବୃତ୍ତ) ପ୍ରଭୃତିର ଆବୃତ୍ତି ମନପ୍ରାଣକୁ ମୁଗ୍ଧ କରି ଦେଉଥିଲା । ଏହିସବୁ କାବ୍ୟପାଠ ସମୟରେ, ରଚନାଗୁଡ଼ିକର ସମାଲୋଚନା ସହିତ କବିମାନଙ୍କ ଜୀବନୀ ଓ ସେମାନଙ୍କ ସମ୍ବନ୍ଧରେ ଯେଉଁ ଜନଶ୍ରୁତିମାନ ଭାରତବର୍ଷରେ ପ୍ରଚଳିତ ହୋଇ ଆସୁଅଛି, ସେଗୁଡ଼ିକ ଗଳ୍ପଛଳରେ ଆମ୍ଭମାନଙ୍କ ନିକଟରେ ସେ କହୁଥିଲେ । ଏହା ଭିତରେ ପୁରାତନ ସ୍ୱାଧୀନ ଭାରତର ରାଜା ଓ ସେମାନଙ୍କର ସଭାସ୍ଥିତ ପଣ୍ଡିତମାନଙ୍କର ତଥା ତତ୍କାଳୀନ ଦେଶର ଅବସ୍ଥା ଆମ୍ଭମାନଙ୍କ କିଶୋର-ଜୀବନକୁ କିଛି ପରିମାଣରେ ଅନୁପ୍ରାଣିତ କରୁଥିଲା ।

ଆମ୍ଭେମାନେ ବାଲ୍ୟକାଳରୁ ଓଡ଼ିଆ ଓ ବଙ୍ଗଳା ଭାଷା ଏକସଙ୍ଗରେ ପଢ଼ିଅଛୁ । ଏହି ଦୁଇଟି ଆମ୍ଭମାନଙ୍କ ନିକଟରେ ମାତୃଭାଷା ହୋଇଯାଇଛି । ଓଡ଼ିଆ ପାଠ୍ୟପୁସ୍ତକର ମାଧ୍ୟମରେ ନିମ୍ନଶ୍ରେଣୀରୁ ମଧ୍ୟ ଛାତ୍ରବୃତ୍ତିଶ୍ରେଣୀ ପର୍ଯ୍ୟନ୍ତ ରାଧାନାଥ ଓ ମଧୁସୂଦନଙ୍କ ଗଦ୍ୟ ପଦ୍ୟ ରଚନା ଆମେ ପଢ଼ିଆସୁଥିଲୁ । ସ୍କୁଲ ପରିତ୍ୟାଗ କରିବା ପରେ ଓଡ଼ିଆ ଭାଷାରେ ଏ ଦୁହିଁଙ୍କର ଯାହାକିଛି ରଚନା ପ୍ରକାଶିତ ହେଉଥିଲା ସେସବୁ ପଢ଼ୁଥିଲୁ । ରାଧାନାଥଙ୍କ ନନ୍ଦିକେଶ୍ୱରୀ, ଚନ୍ଦ୍ରଭାଗା, କେଦାର-ଗୌରୀ, ଦରବାର, ମହାଯାତ୍ରା ପ୍ରଭୃତିର କେତେ ଅଂଶ ଆମର କଣ୍ଠସ୍ଥ ହୋଇଯାଇଥିଲା । ବର୍ତ୍ତମାନ ସୁଦ୍ଧା ସେସବୁ ମଧ୍ୟରୁ କିଛି କିଛି ସ୍ମୃତିପଥରେ ଉଦିତ ହୁଏ । ମଧୁସୂଦନଙ୍କ କବିତା ମଧ୍ୟରେ ଯେଉଁ ନୀତି, ଧର୍ମ ଓ ସତ୍ୟପଥରେ ଚାଲିବାକୁ ଆହ୍ୱାନ ରହିଛି ଏବଂ କବିଙ୍କ ଅନ୍ତରର ଜଡ଼-ଜୀବ-ଚୈତନ୍ୟ ମଧ୍ୟରେ ମହାସୌନ୍ଦର୍ଯ୍ୟର ଯେଉଁ ଅନୁଭୂତି ରହିଛି ତାହା ଆମ୍ଭମାନଙ୍କ ଜୀବନ ପଥରେ ଆଲୋକସ୍ତମ୍ଭ ରୂପେ ଦଣ୍ଡାୟମାନ ରହିଅଛି ।

କବି ଫକୀର ମୋହନଙ୍କ ଲିଖିତ ପଦ୍ୟ ଓ ହାସ୍ୟରସର ବହି ଆମ୍ଭେମାନେ ଅନେକ ଥର ପଢିଅଛୁ । କବିଙ୍କ ରଚନା ମଧ୍ୟରେ ତାଙ୍କର ପରିହାସ-କୁଶଳତା ଆମ୍ଭମାନଙ୍କୁ ବାଲ୍ୟକାଳରେ ହସର ଖୋରାକ ଯୋଗାଇଛି । ମଧୁସୂଦନଙ୍କ ସମ୍ବନ୍ଧରେ ତାଙ୍କର ଶ୍ରଦ୍ଧାପୂର୍ଣ୍ଣ ଉକ୍ତି :—

"ଆଦର୍ଶ ମନୁଷ୍ୟ ଯେବେ ଦେଖିବାକୁ ଚାହିଁ
ଧାଇଁଆସି ଥରେ ଦେଖିଯାଅ ମଧୁ ରାଓ ।"

ଏହାର ଶେଷ ଦୁଇ ପଂକ୍ତି :—

"ଓଡ଼ିଶାରେ ହେବ ମଧୁ ଅଢ଼େଇ ପଶୁରି,[୧]
କେମନ୍ତେ ରଖିଛୁ ଏତେ ଗୁଣ ପେଟେ ଭରି ?"

ଏହି ଦୁଇ ଧାଡ଼ି କହି ଆମ୍ଭେମାନେ ବାଲ୍ୟକାଳରେ କେତେ ଆମୋଦ ଉପଭୋଗ କରିଅଛୁ ।

ଟିକିଏ ବଡ଼ ହେବାରୁ ତାଙ୍କର ଲିଖିତ "ଛ'ମାଣ ଆଠଗୁଣ୍ଠ" ପ୍ରଭୃତି ବହି ପଢି ତତ୍କାଳୀନ ଓଡ଼ିଶାର ଗ୍ରାମ୍ୟଛବି ଆମ ଆଖି ସାମନାରେ ଜାଗି ଉଠୁଥିଲା । ରାମଶଙ୍କର ରାୟଙ୍କ ଓଡ଼ିଆ ନାଟକ ଓଡ଼ିଶାର ନବୀନ ଲେଖକମାନଙ୍କର ବହୁ ରଚନା-ପୁସ୍ତକ, ସମ୍ବାଦପତ୍ର ଓ ମାସିକ-ପତ୍ରର ମାଧ୍ୟମରେ ଯାହା ପ୍ରକାଶିତ ହେଉଥିଲା, ତାହା ଆମେ ପଢୁଥିଲୁ ।

ମୋର ଅନୁମାନ ଓଡ଼ିଶାର ପ୍ରାଚୀନ କବିମାନଙ୍କ ଲିଖିତ ବହୁ ପୁସ୍ତକ ଆମ୍ଭମାନଙ୍କର ବାଲ୍ୟକାଳରେ ମୁଦ୍ରିତ ହୋଇନାହିଁ । ତାଳପତ୍ର ପୋଥିରୁ ପରବର୍ତ୍ତୀ କାଳରେ କ୍ରମେ କ୍ରମେ ତାହା ମୁଦ୍ରିତ ହୋଇଅଛି । 'କେଶବ-କୋଇଲି', 'ଦାର୍ଢ୍ୟତା ଭକ୍ତି', 'ଜଣାଣ' (ଦେବଦେବୀମାନଙ୍କ ସ୍ତୁତି ବନ୍ଦନା) ଭାଗବତ (ଏକାଦଶ ସ୍କନ୍ଧ) ପ୍ରଭୃତି ମୁଁ ପଢିଅଛି, ମନେପଡ଼େ । କବି ଉପେନ୍ଦ୍ର ଭଞ୍ଜଙ୍କର କବିତା କିଛି କିଛି ପିତୃଦେବଙ୍କ ମୁଖରୁ ଅନେକ ସମୟରେ ଶୁଣିଅଛି, କିନ୍ତୁ ସବୁ କବିତା ପଢିବାକୁ ପାଇନାହିଁ । ଏହାଙ୍କ ରଚନା ସମ୍ବନ୍ଧରେ ଯାହା ଶୁଣିଅଛି, ତହିଁରୁ ମୋର ମନେହୁଏ, ସେ ପ୍ରଧାନତଃ ଆଦିରସର କବି ଥିଲେ । ତେଣୁ ସୁମାର୍ଜିତରୁଚିସମ୍ପନ୍ନ ମଧୁସୂଦନ ସେସବୁ ଆମ୍ଭମାନଙ୍କୁ ପଢିବାକୁ ଦେଇନାହାନ୍ତି ।

---

୧ । ଏ ସେର ଓଜନର ବଟକରା ।

ଆମ୍ଭେମାନେ ସ୍କୁଲରେ ପଢ଼ିବା ସମୟରେ, ବଙ୍ଗଳା ଏବଂ ଓଡ଼ିଆ ପଢ଼ା ହେଉଥିଲା । ଇଂରେଜୀ ଆଦୌ ନଥିଲା, ଘରେ ପ୍ୟାରୀଚରଣ ସରକାରଙ୍କକୃତ **First Book of Reading, Second Book of Reading** ପ୍ରଭୃତି ଅଳ୍ପ ଅଳ୍ପ ପଢ଼ିଥିଲୁ, ସ୍କୁଲ ଛାଡ଼ିବା ପରେ ବାପା ଘରେ ଇଂରେଜୀ ପଢ଼ାର ବ୍ୟବସ୍ଥା କଲେ । ଅଧିକାଂଶ ସମୟ ସେ ନିଜେ ପଢ଼ାଉଥିଲେ । ସେ ନାନା କାମରେ ବ୍ୟସ୍ତ ରହୁଥିଲେ । କଟକର ବାହାରକୁ ମଧ୍ୟ କେବେ କେବେ ତାଙ୍କୁ ଯିବାକୁ ପଡୁଥିଲା । ଏହିସବୁ କାରଣରୁ ନିୟମିତ ଭାବେ ପ୍ରତିଦିନ ପଢ଼ାପଢ଼ି ହେଉନଥିଲା, କିଛିଦୂର ଅଗ୍ରସର ହେବାପରେ ସେ ସେକ୍ସପିୟର, ଟେନିସନ, ବାଇରନ, ଗେଟେ ପ୍ରଭୃତି ମହାକବିଙ୍କ ରଚନାରୁ କିଛି କିଛି ଅଂଶ ଆମ୍ଭମାନଙ୍କୁ ପଢ଼ାଇବାକୁ ବସାଇ ତାହାର ବ୍ୟାଖ୍ୟା କରୁଥିଲେ । ତାଙ୍କ ଅଧ୍ୟାପନା ଶୈଳୀରେ ଏହି ବିଦେଶୀୟ କବି-ମାନଙ୍କ ରଚନାର ରସ ଓ ସୌନ୍ଦର୍ଯ୍ୟ ଆମ୍ଭମାନଙ୍କ ପ୍ରାଣକୁ ଚମତ୍କୃତ କରୁଥିଲା ।

ସନ୍ତାନମାନଙ୍କ ଚରିତ୍ର ଗଠନ ବିଷୟରେ ମଧ୍ୟ ତାଙ୍କର ଦୃଷ୍ଟି ସଜାଗ ରହୁଥିଲା । ଟିକିଏ ବଡ଼ ହୋଇଗଲେ ସେ ସେମାନଙ୍କର ଦୈନନ୍ଦିନ ରୁଟିନ୍ କରିଦେଉଥିଲେ । ସେଥିମଧ୍ୟରେ ନିଜେ ନିଜେ ଈଶ୍ୱର-ସ୍ମରଣ, ପାଠପଢ଼ିବା, ଗୃହକର୍ମ ପ୍ରଭୃତିର ସମୟ ନିର୍ଦ୍ଦିଷ୍ଟ ରହୁଥିଲା । ମୋତେ ୧୬ ବର୍ଷ ପୂର୍ଣ୍ଣହେବା ଜନ୍ମଦିନର ଉପାସନା ପରେ ପ୍ରତିଦିନ ଏକାକୀ ପ୍ରାର୍ଥନା କରିବାକୁ ସେ କହିଥିଲେ । ମଝିରେ ମଝିରେ ଏହି ଖାତା ଦେଖୁଥିଲେ ଓ ମୋ ସହିତ ସେ ବିଷୟରେ ଚର୍ଚ୍ଚା କରୁଥିଲେ । ମୋର ଅପା ବାସନ୍ତୀ ଦେବୀ ଓ ଭାଇ ଜୟନ୍ତ ଭାଉଙ୍କ ଧର୍ମଚେତନା ଉଦ୍‌ବୁଦ୍ଧ କରିବା ପାଇଁ ତାଙ୍କର ପ୍ରୟାସ ବିଷୟ ଶୁଣିଅଛି ।

ବଡ଼ ଭଉଣୀଙ୍କର ଚଉଦ ବର୍ଷ ପୂର୍ଣ୍ଣ ହେବାର ପରଦିନ ହିଁ ବିବାହ ହୋଇଥିଲା । ତାହା ପୂର୍ବରୁ ତାଙ୍କୁ ବ୍ରାହ୍ମଧର୍ମ-ସମ୍ବନ୍ଧୀୟ ପୁସ୍ତକମାନ ପଢ଼ାଇ ବ୍ରାହ୍ମଧର୍ମରେ ଦୀକ୍ଷା ଦେଇଥିଲେ । ଭାଇଙ୍କୁ ମଧ୍ୟ ଅନୁରୂପ ଶିକ୍ଷା ଦେଇ, ବୋଧହୁଏ ୧୬।୧୭ ବର୍ଷ ବୟସରେ ବ୍ରାହ୍ମଧର୍ମରେ ଦୀକ୍ଷିତ କରିଥିଲେ । ମୁଁ ମଧ୍ୟ ପ୍ରାୟ ୨୦ ବର୍ଷ ବୟସରେ ବ୍ରାହ୍ମଧର୍ମରେ ଦୀକ୍ଷା ଗ୍ରହଣ କରିଅଛି । ସନ୍ତାନମାନଙ୍କୁ ଦୀକ୍ଷା ଦେବା ପୂର୍ବରୁ ସେ ନିଜେ ଓ ଧର୍ମବନ୍ଧୁମାନଙ୍କ

ସାହାଯ୍ୟରେ ଧର୍ମ ଶିକ୍ଷା ଦିଅନ୍ତି । ବଡ଼ ହେବା ସଙ୍ଗେ ସଙ୍ଗେ ଆମ୍ଭେମାନେ ଯେ ବ୍ରାହ୍ମଧର୍ମସମ୍ବନ୍ଧୀୟ ପୁସ୍ତକ, ପତ୍ରିକା ପ୍ରଭୃତି ପଢୁଥିଲୁ, ତାହା ମଧ୍ୟ ତାଙ୍କର ଆଗ୍ରହରେ । ମୋର ୧୪।୧୫ ବର୍ଷ ବୟସ ସମୟରେ ନବବିଧାନ ସମାଜର ଗୃହସ୍ଥ-ପ୍ରଚାରକ, ଭକ୍ତଭାଜନ ବ୍ରଜମୋହନ ବସୁ ମହାଶୟ ସପରିବାର କଟକ ଆସି ବାସ କଲେ । ଏହି ସମଦର୍ଶୀ ସାଧୁ ବ୍ରଜମୋହନଙ୍କ ସଙ୍ଗରେ ମଧୁସୂଦନଙ୍କର ଘନିଷ୍ଠତା ଜନ୍ମିଲା ଏବଂ ତାହା ଗଭୀର ଧର୍ମବନ୍ଧୁତାରେ ପରିଣତ ହେଲା । ପିତୃଦେବଙ୍କ ଅନୁମୋଦନରେ ଆମ୍ଭେମାନେ ତାଙ୍କ ନିକଟରେ ବହୁ ସମୟ ଧର୍ମଶିକ୍ଷା ପାଉଥିଲୁ । ଏତଦ୍‌ବ୍ୟତୀତ କଲିକତା, ବାଲେଶ୍ୱର ପ୍ରଭୃତି ସ୍ଥାନରୁ ସାଧାରଣ ଓ ନବବିଧାନ ବ୍ରାହ୍ମସମାଜର ପ୍ରଚାରକ ଓ ବିଶିଷ୍ଟ ବ୍ରାହ୍ମମାନେ ମଧ୍ୟ ମଧ୍ୟେ ମଧ୍ୟେ କଟକ ଆସି ଆମ ଘରେ ଅତିଥି ହେଉଥିଲେ । ସେତେବେଳେ ସଙ୍ଗୀତ, କୀର୍ତ୍ତନ, ଉପାସନା ଓ ଆଲୋଚନାଦିରେ ଗୃହ ସତେ ଯେପରି ଉତ୍ସବମୟ ହୋଇଉଠୁଥିଲା । ଏମାନଙ୍କ ସଙ୍ଗର ଦୈବ ପ୍ରଭାବରେ ଆମ୍ଭମାନଙ୍କର ବାଲ୍ୟ ଓ କୈଶୋର ଜୀବନ କଟିଅଛି । ଭକ୍ତ, ପ୍ରେମିକ, ସାଧୁ ବ୍ରଜମୋହନ ବସୁ ମହାଶୟଙ୍କ ଦ୍ୱାରା ମୁଁ ବ୍ରାହ୍ମଧର୍ମରେ ଦୀକ୍ଷିତ ହେଲି ।

ମଧୁସୂଦନଙ୍କ ଜୀବନ ଏକଦିଗରେ ଯେପରି ଅମୃତମୟ, ଅପରଦିଗରେ ସେହିପରି ତେଜୋମୟ ଥିଲା । ଏହି ପ୍ରେମିକ ଜୀବନରେ ଯେପରି ପ୍ରେମାମୃତର ରସ ପ୍ରବାହିତ ହୋଇ ଚାଲିଥିଲା, ସେହିପରି ସତ୍ୟନିଷ୍ଠ, ନ୍ୟାୟପରାୟଣ, ତେଜସ୍ୱୀ ଜୀବନର ତେଜର ପ୍ରଭାବ ନିକଟସ୍ଥ ସମସ୍ତେ ଅନୁଭବ କରୁଥିଲେ । ପୁତ୍ରକନ୍ୟାମାନଙ୍କ ଜୀବନ ଯେପରି ଏହି ଅମୃତମୟ ଓ ତେଜୋମୟ ପଥରେ ଚାଳିତ ହୁଏ, ତାହା ତାଙ୍କ ଜୀବନର ଆକାଂକ୍ଷା ଥିଲା । ସେ ଏହି ଆକାଂକ୍ଷାକୁ ସନ୍ତାନମାନଙ୍କ ଜୀବନରେ ରୂପାୟିତ କରିବାକୁ କେତେ ଭାବରେ କେତେ ଚେଷ୍ଟା କରିଯାଇଛନ୍ତି ।

ପରିବାରରେ ବାଳକ-ବାଳିକାମାନଙ୍କ ମନର ସଦ୍‌ଭାବଗୁଡ଼ିକୁ ଫୁଟାଇବା ପାଇଁ ତାଙ୍କର ଯେଉଁ ଅବିରାମ ଚେଷ୍ଟା ଥିଲା, ତାହା ଯେପରି ଗୋଟିଏ ଦିଗରୁ ଆନ୍ତରିକତାପୂର୍ଣ୍ଣ, ପ୍ରେମସରସ ଓ ସ୍ନେହ-କୋମଳ ଥିଲା, ଅପରଦିଗରେ ସେମାନେ ଯେପରି ଦୈନନ୍ଦିନ ଜୀବନରେ ସତ୍ୟପଥରେ ଚାଳିତ ହୁଅନ୍ତି ଏବଂ ଶୃଙ୍ଖଳିତ ଓ ନିୟମାନୁବର୍ତ୍ତୀ ହୋଇ ଦୃଢ଼ପଦରେ ଅଗ୍ରସର

ହୁଅନ୍ତି, ସେଥିପାଇଁ ତାଙ୍କର ସେହିପରି ଦୃଢ଼ତା ଥିଲା । ମୋର ଶ୍ୱଶୁରଦେବ ପଣ୍ଡିତ ଶିବନାଥ ଶାସ୍ତ୍ରୀ ମହାଶୟଙ୍କର ମାନବ ଜୀବନରେ ଆଦର୍ଶ-ସମ୍ବନ୍ଧରେ ଯେଉଁ ଅମୂଲ୍ୟ ଉକ୍ତି ଅଛି—"ଜ୍ଞାନରେ ଗମ୍ଭୀରତା, ପ୍ରେମରେ ଉଦାରତା, ଚରିତ୍ରରେ ସଂଯମ, କର୍ତ୍ତବ୍ୟରେ ଦୃଢ଼ତା, ମାନବ ପ୍ରତି ପ୍ରେମ ଓ ଭଗବାନଙ୍କ ପ୍ରତି ଭକ୍ତି"—ମୋର ମନେହୁଏ ପିତୃଦେବ ସେହି ଆଦର୍ଶ ନିଜ ସମ୍ମୁଖରେ ରଖି ତାହାର ସାର୍ଥକତା ନିଜ ଜୀବନରେ ଦେଖାଇଅଛନ୍ତି ଏବଂ ତାଙ୍କର ନିଜ ପରିବାର-ପରିଜନ, ବନ୍ଧୁ, ଛାତ୍ର ଯେ କେହି ତାଙ୍କ ନିକଟ-ସଂସର୍ଗକୁ ଆସିଅଛନ୍ତି, ସେମାନଙ୍କୁ ମଧ୍ୟ ସେ ଏହି ପଥରେ ଟାଣିଅଛନ୍ତି ।

ପୁତ୍ର କନ୍ୟାମାନେ ଯେପରି ବାଲ୍ୟକାଳରୁ ସତ୍‌ସଙ୍ଗରେ, ସଦ୍‌ଭାବ ମଧ୍ୟରେ ବର୍ଦ୍ଧିତ ହୁଅନ୍ତି ସେ ବିଷୟରେ ତାଙ୍କର ପ୍ରଖର ଦୃଷ୍ଟି ଥିଲା । ଗୃହର ବାହାରକୁ ଯାଇ ଖେଳିବା ପାଇଁ ସେମାନଙ୍କୁ ଅନୁମତି ନଥିଲା । ଗୃହ ମଧ୍ୟରେ ସେମାନଙ୍କ ପାଇଁ ଖେଳିବା ସ୍ଥାନ ନିର୍ଦ୍ଦିଷ୍ଟ ଥିଲା । ପରିଚିତ କେତୋଟି ଆତ୍ମୀୟ ବନ୍ଧୁ ଗୃହ ବ୍ୟତୀତ ଏମାନେ ଅନ୍ୟ କୁଆଡ଼େ ଯାଇପାରୁନଥିଲେ; ସେଥିରେ ମଧ୍ୟ ଅନୁମତି ନେଇ ଯିବାକୁ ପଡ଼ୁଥିଲା ଏବଂ ତାଙ୍କ ନିର୍ଦ୍ଧାରିତ ସମୟ ମଧ୍ୟରେ ଫେରି ଆସିବାକୁ ହେଉଥିଲା । ଆଜିକାଲି ପରି ସିନେମା, ଥିଏଟର ପ୍ରଭୃତିର ପ୍ରାଚୁର୍ଯ୍ୟ ସେତେବେଳେ ନଥିଲା, ସିନେମାର ନାମ ସୁଦ୍ଧା ଆମ୍ଭେମାନେ ଶୁଣିନାହୁଁ । ପରେ 'ସାଂଗଲି ଥିଏଟର' (କେବଳ ପୁରୁଷମାନଙ୍କ ଦ୍ୱାରା ଅଭିନୀତ) ନାମରେ ଗୋଟିଏ ନଟ-ସଂପ୍ରଦାୟ କଟକରେ ଅଭିନୟ ଦେଖାଉଥିଲେ । ତାହାର ପ୍ରଧାନ ଚାଳକ ମହାରାଷ୍ଟ୍ରୀୟ ଥିଲେ । ତାଙ୍କର ବିଶେଷ ଅନୁରୋଧରେ ମଧୁସୂଦନ କନିଷ୍ଠା କନ୍ୟା, ଦୌହିତ୍ରୀ ଓ ଗୋଟିଏ ବାଳକ ପୁତ୍ରଙ୍କୁ ନେଇ ଅଭିନୟ ଦେଖିବାକୁ ଯାଆନ୍ତି । କିଛିକ୍ଷଣ ଅଭିନୟ ଦେଖିବା ଉତ୍ତାରେ, କୌଣସି ଦୃଶ୍ୟ ସୁନୀତିପରିପନ୍ଥୀ ମଧୁସୂଦନଙ୍କ ଦୃଷ୍ଟିରେ ସୁରୁଚି-ବିଗର୍ହିତବୋଧ ହେବାରୁ ସେ ପୁତ୍ର, କନ୍ୟା ଓ ଦୌହିତ୍ରୀଙ୍କୁ ନେଇ ଉଠିଆସିଲେ । ମଧୁସୂଦନଙ୍କ ଘୃଣା-ବ୍ୟଞ୍ଜକ ଦୃଷ୍ଟି ଏବଂ ଅକାଳ-ନିଷ୍କ୍ରମଣରେ ଅଭିନେତାଗଣ କିଛି ସଙ୍କୋଚବୋଧ କରିଥିଲେ, ଏପରି ମନେ ହୋଇଥିଲା । ଦର୍ଶକଗଣ ମଧ୍ୟ ମଧୁସୂଦନଙ୍କ ପବିତ୍ରତା ଓ ସୁନୀତି ପ୍ରତି ଆଦର ଓ ଚରିତ୍ରହୀନତା ପ୍ରତି ଘୃଣା ମଧ୍ୟରେ ମଧୁସୂଦନଙ୍କ ତେଜସ୍ୱିତାର ପ୍ରମାଣ ପାଇଥିଲେ । ସେତେବେଳେ ବାଳକ-ବାଳିକାଗୁଡ଼ିକ ଅଳ୍ପବୟସ୍କ ହେଲେ ମଧ୍ୟ, ଏହି ଦୃଶ୍ୟ ସେମାନଙ୍କ ଅନ୍ତରରେ ଚିର-ଜାଗ୍ରତ ଅଛି ।

ମଧୁସୂଦନଙ୍କ ବାଲ୍ୟବନ୍ଧୁ ଭଗବତୀ ଚରଣ ଓ ବିପ୍ରଚରଣ—ଏହି ଦୁଇ ଭାଇଙ୍କ କର୍ମସ୍ଥଳ ଗଞ୍ଜାମ-ବ୍ରହ୍ମପୁରରେ ଥିଲା । ସେଠାରେ ବାଙ୍ଗାଳୀ ବାଳକମାନଙ୍କୁ ଉପଯୁକ୍ତ ଭାବେ ଶିକ୍ଷା ଦେବାର ଅସୁବିଧା ଦେଖି, ସେମାନେ ମଧୁସୂଦନଙ୍କ ସଙ୍ଗେ ପରାମର୍ଶ କଲେ । କଟକରେ ମଧୁସୂଦନଙ୍କ ବାସଗୃହର ସନ୍ନିକଟରେ ଗୋଟିଏ ଛୋଟିଆ ଘର ଭଡ଼ା ନିଆଗଲା । ଭଗବତୀ ଚରଣଙ୍କ ବିଧବା ଶାଶୁ ନାତିମାନଙ୍କୁ ଘେନି ଏହି ଘରେ ରହିଥିଲେ । ମଧୁସୂଦନଙ୍କ ଅଭିଭାବକତ୍ୱରେ ଏହି ବାଳକଗୁଡ଼ିକ ବହୁ ବର୍ଷ କଟକ ସ୍କୁଲରେ ପଢ଼ିଥିଲେ । ବାପାଙ୍କ ବାଲ୍ୟବନ୍ଧୁ ବଳରାମ ଦାସଙ୍କ କର୍ମସ୍ଥଳ ବାଙ୍କିରେ (କଟକ ଜିଲ୍ଲାର ଅନ୍ତର୍ଗତ ଗୋଟିଏ ମହକୁମା ସହର) ଥିଲା । ତାଙ୍କ ଜ୍ୟେଷ୍ଠପୁତ୍ର ଦେବେନ୍ଦ୍ର ମଧୁସୂଦନଙ୍କ ପରିବାରରେ ରହି ସ୍କୁଲରେ ପଢ଼ୁଥିଲେ । ଫକୀର ମୋହନ ସେନାପତିଙ୍କର ପତ୍ନୀ ବିୟୋଗ ହେବା ପରେ କିଶୋର ପୁତ୍ର ମୋହିନୀ ମୋହନ ଓ ବାଳିକା କନ୍ୟା ସରୋଜିନୀଙ୍କୁ ସେ ମଧୁସୂଦନଙ୍କ ପରିବାରରେ କିଛିକାଳ ରଖିଥିଲେ । ବ୍ରାହ୍ମବନ୍ଧୁ ଶ୍ରୀନାଥ ଦତ୍ତ ଓଡ଼ିଶାରେ କନିକା, ବାରିପଦା (ମୟୂରଭଞ୍ଜ) ପ୍ରଭୃତି ରାଜାମାନଙ୍କ ରାଜ୍ୟରେ କେତେବର୍ଷ କାର୍ଯ୍ୟ କରିଥିଲେ । ତାଙ୍କର ମଧ୍ୟ କେତୋଟି ପୁତ୍ର କଟକରେ ଅନ୍ୟ ଜଣେ ବ୍ରାହ୍ମବନ୍ଧୁଙ୍କ ଘରେ ରହି ସ୍କୁଲରେ ପଢ଼ୁଥିଲେ । ମଧୁସୂଦନ ଏମାନଙ୍କର ମଧ୍ୟ ଅଭିଭାବକ ଥିଲେ । ଏହି ସମସ୍ତ ପିତୃ-ବନ୍ଧୁଗଣଙ୍କ ସନ୍ତାନମାନଙ୍କ ସହିତ ଆମ୍ଭମାନଙ୍କର ଯେଉଁ ସୌହାର୍ଦ୍ଦ୍ୟ ଜନ୍ମିଥିଲା, ବର୍ତ୍ତମାନ ମଧ୍ୟ ତାହା ସ୍ମରଣ କଲେ ଆନନ୍ଦ ହୁଏ । ଏମାନଙ୍କ ମଧ୍ୟରେ ଅନେକେ ଆଜି ଇହଜଗତରେ ନାହାନ୍ତି ।

## (ଚ) ପାରିବାରିକ ଜୀବନର ବିଚିତ୍ର ଅଭିଜ୍ଞତା

ପାରିବାରିକ ଜୀବନର କେତେ ଘଟଣା ମନେପଡ଼େ । ପିତୃଦେବ ପରିବାରର କର୍ତ୍ତା, ପରିବାରସ୍ଥ ଜନସମୂହ ତାହାଙ୍କୁ ଗଭୀର ଶ୍ରଦ୍ଧାଭକ୍ତି କରୁଥିଲେ । କିନ୍ତୁ ମନୁଷ୍ୟ ବେଳେ ବେଳେ ଭ୍ରାନ୍ତ ବୁଦ୍ଧିରେ ଚାଳିତ ହୋଇଥାଏ; ବେଳେବେଳେ କେତେ ଭୁଲ ବୁଝାବୁଝି ମନୁଷ୍ୟର ଧାରଣାକୁ ବିପଥକୁ ଘେନିଯାଏ । ଏହିପରି ଭ୍ରାନ୍ତ ଧାରଣାରୁ ଉଦ୍ଭୂତ କେତେ ଅପମାନ ତାଙ୍କୁ ବେଳେବେଳେ ଜର୍ଜରିତ କରୁଥିଲା । କିନ୍ତୁ ପ୍ରେମପୂର୍ଣ୍ଣ କ୍ଷମାଶୀଳ ପ୍ରାଣ

ତାଙ୍କର ସମସ୍ତ ବେଦନାକୁ ନୀରବରେ ବହନ କରି, ଅମୋନକାଶୀ କନିଷ୍ଠ ଦେଲେ ମଧ ତାହାକୁ ଆଲିଙ୍ଗନ କରି, ନିଜ ଅଶ୍ରୁଜଳ ସହିତ ସେହି ଅମୋନକାଶୀର ଅଶ୍ରୁଜଳକୁ ମିଶାଇ ସମସ୍ତ ବିରୋଧର ସେ ସମାଧାନ କରୁଥିଲେ; ସମସ୍ତ ଜଟିଳତା ଅଚିରେ ସରଳତାରେ ରୂପାନ୍ତରିତ ହୋଇ ଯାଉଥିଲା । ମୋର ଭକ୍ତିଭାଜନ ଗୁରୁଦେବ— ପଣ୍ଡିତ ଶିବନାଥ ଶାସ୍ତ୍ରୀ ମହାଶୟଙ୍କର ଗୋଟିଏ କବିତା, ଯାହାକୁ ପିତୃଦେବଙ୍କ ଆଗ୍ରହରେ ମୁଁ ବାଲ୍ୟାବସ୍ଥାରେ କଣ୍ଠସ୍ଥ କରି ଆବୃତ୍ତି କରୁଥିଲି, ତାହାର ଦୁଇ ପଂକ୍ତି—

"ଯାର ଖରତର ଶରେ ଜର ଜର,
ତାହାରି କଲ୍ୟାଣ ଅନ୍ତରର ଧ୍ୟାନ
ନିରନ୍ତ୍ର ଦେବନ୍ତୁ ଏକସାଥେ ତାର ।"

ପିତୃଦେବଙ୍କ ଏହି ପ୍ରେମପୂର୍ଣ୍ଣ ଆଚରଣ ଦେଖି ମୋ ମନରେ ଜାଗି-ଉଠିଥିଲା ଏହି ସ୍ୱର୍ଗୀୟ ଦୃଶ୍ୟର ସ୍ମୃତି, ଏବେ ସୁଦ୍ଧା ଆମ୍ଭମାନଙ୍କ ଜୀବନରେ ଅନୁରୂପ ମର୍ମବେଦନାରେ ତାହା ଶକ୍ତି ଯୋଗାଇ ଆସୁଅଛୁ ।

ମନେପଡ଼େ, ଆମ୍ଭମାନଙ୍କ ବାଲ୍ୟ ଓ କୈଶୋର କାଳର କଥା । ପିତୃଦେବଙ୍କ ସଙ୍ଗରେ ପୁରୀ, ଭୁବନେଶ୍ୱର, ଖଣ୍ଡଗିରି, ଉଦୟଗିରି ପ୍ରଭୃତି ଦେଖିବାକୁ ଯାଇଥିଲୁ । ଏହି ସ୍ଥାନଗୁଡ଼ିକର ଏବଂ ତା' ସଙ୍ଗେ ଉତ୍କଳର ଐତିହାସିକ ଓ ଭୌଗୋଳିକ ତଥ୍ୟଗୁଡ଼ିକର କଥା ଏବେ ମନେପଡ଼େ । ଅତୀତ ଉତ୍କଳର ମହିମା ସେହି ଭକ୍ତକବିଙ୍କ କଣ୍ଠରେ ଯେଉଁ ଉଦ୍ଦୀପନ ମୟୀ ବାଣୀ ଆଣି ଦେଉଥିଲା, ସେହି ବାଣୀ ଆମ୍ଭମାନଙ୍କ କିଶୋର ପ୍ରାଣରେ ଝଂକୃତ ହୋଇ କି ଅପୂର୍ବ ଅନୁଭୂତିରେ ମନପ୍ରାଣକୁ ପୂର୍ଣ୍ଣ କରି ଦେଉଥିଲା ।

ସ୍କୁଲ-ପରିଦର୍ଶନ-କାର୍ଯ୍ୟରେ ତାହାଙ୍କୁ ସମଗ୍ର ଓଡ଼ିଶା ପ୍ରଦେଶ— ଦକ୍ଷିଣରେ ଗଞ୍ଜାମର ଉତ୍ତର ସୀମାଠାରୁ ସମଗ୍ର ମୋଗଲବନ୍ଦୀ ଓ ଗଡ଼ଜାତ୧ ଭ୍ରମଣ କରିବାକୁ ହେଉଥିଲା ।

ଥରେ ଏହିପରି ଗଡ଼ଜାତ ଭ୍ରମଣ ସମୟରେ ବଉଦରୁ (ତତ୍କାଳୀନ ଓଡ଼ିଶାର ଗୋଟିଏ କରଦ ରାଜ୍ୟ) କଟକସ୍ଥ ଭ୍ରାତୃଷ୍ପୁତ୍ରୀ ଓ ପୁତ୍ରକନ୍ୟାମାନଙ୍କ

୧ । ମୁସଲମାନ ତଥା ବ୍ରିଟିଶ ସରକାରଙ୍କ ପ୍ରତ୍ୟକ୍ଷ ଶାସନାଧୀନ କଟକ, ପୁରୀ, ବାଲେଶ୍ୱର ଏହି ୩ ଜିଲ୍ଲାକୁ ଓଡ଼ିଶାରେ 'ମୋଗଲବନ୍ଦୀ' ଓ ଦେଶୀୟ ରାଜନ୍ୟବର୍ଗଙ୍କ ଶାସିତ କରଦ ରାଜ୍ୟଗୁଡ଼ିକୁ ଗଡ଼ଜାତ କୁହାଯାଉଥିଲା ।

ପାଖକୁ କବିତାରେ ସେ ଯେଉଁ ପତ୍ର ଲେଖିଥିଲେ, ତାହା ନିମ୍ନରେ ଉଦ୍ଧୃତ ହେଲା :—

ସରସ୍ୱତୀ, କୃଷ୍ଣା, ଶାନ୍ତି, ପ୍ରଶାନ୍ତ, ସାନ୍ତ୍ୱନା,
ସୁଖେ ଥାଅ, ଈଶ-ପଦେ କର ଏ ପ୍ରାର୍ଥନା ।
ଦମ୍ପତ୍ତି ବନ୍ଧୀତା ମୋତେ ହୋଇଣ ସହାୟ,
ନେଇ ଯାଉଛନ୍ତି ମୋତେ 'ବାସନ୍ତୀ' ଆଳୟ ।

ପଥେ ଦେଖୁଅଛୁ କେତେ ବିଟପ ସୁନ୍ଦର
ଗିରି ନଦନଦୀ ତରୁଲତା ମନୋହର ।

ଆମେ ପ୍ରଫୁଲ୍ଲ ମନରେ ଏ ପାର୍ବତ୍ୟଦେଶେ
ବୁଲୁଅଛୁ ପ୍ରତିଦିନ ସ୍ମରି ପରମେଶେ

ଆଶାକରେ ତୁମେ ମଧ୍ୟ ସ୍ମରୁଛ ତାହାରେ
ପ୍ରତିଦିନ ସାୟଂକାଳେ ପୁଣ୍ୟ ପ୍ରାର୍ଥନାରେ

ଭୁଲନା ତାହାଙ୍କୁ କେବେ, ଭୁଲନା, ଭୁଲନା,
ସରସ୍ୱତୀ, କୃଷ୍ଣା, ଶାନ୍ତି, ପ୍ରଶାନ୍ତ, ସାନ୍ତ୍ୱନା !

ବୌଦ
୧୮-୫-୧୪		ଶ୍ରୀ ମଧୁସୂଦନ

ଜ୍ୟେଷ୍ଠା କନ୍ୟା-ବାସନ୍ତୀ ଦେବୀ ସେତେବେଳେ ବିବାହିତା ହୋଇ ସ୍ୱାମୀଙ୍କ ନିକଟରେ ସମ୍ବଲପୁରରେ ରହୁଥିଲେ । ପ୍ରଥମା ଭ୍ରାତୃଷ୍ପୁତ୍ରୀ ରେବା ମଧ୍ୟ ବିବାହିତା ହୋଇ ଯାଇଥିଲେ । ସରସ୍ୱତୀ ଦ୍ୱିତୀୟା ଭ୍ରାତୃଷ୍ପୁତ୍ରୀଙ୍କ ନାମ । ଦ୍ୱିତୀୟା କନ୍ୟା କୃଷ୍ଣାର ଅପର ନାମ ଅବନ୍ତୀ ।

ଗଡ଼ଜାତ ଭ୍ରମଣର ପଥ ସେ ସମୟରେ ଅତ୍ୟନ୍ତ ଦୁର୍ଗମ ଥିଲା । ମୋ ଭାଗ୍ୟରେ ସେ ସମସ୍ତ ସ୍ଥାନ ଦେଖିବାର ସୁଯୋଗ ହୋଇନାହିଁ । କିନ୍ତୁ ସେ ସମସ୍ତ ସ୍ଥାନର ରମଣୀୟ ପ୍ରାକୃତିକ ଦୃଶ୍ୟ ଓ ରାଜା, ପ୍ରଜା, ଆଦିବାସୀ ପ୍ରଭୃତିଙ୍କ ଜୀବନ ଯାତ୍ରାର କଥା ବାପା ଏପରି ସୁନ୍ଦର ଓ ସୁସ୍ପଷ୍ଟ ଭାବରେ ଆମ୍ଭମାନଙ୍କ ପାଖରେ ବର୍ଣ୍ଣନା କରୁଥିଲେ ଯେ, ସେସବୁ ସ୍ଥାନ ଆଉ ଆମ ପାଖରେ ଅପରିଚିତ ବୋଧ ହେଉନଥିଲା ।

ମୋର ମନେଅଛି, ମୋର ଅନୁମାନ ୯।୧୦ ବର୍ଷ ବୟସରେ, ବାପା ଥରେ ଦୁଇ ତିନ ମାସ ଛୁଟି ନେଇ, ଜ୍ୟେଷ୍ଠ ଜାମାତା ବିଜୟ ଚନ୍ଦ୍ର ମଜୁମଦାରଙ୍କ ସଙ୍ଗରେ ଦେଶ ଭ୍ରମଣରେ ବାହାରି ଥିଲେ । ସେତେବେଳେ ଓଡ଼ିଶାରେ ରେଳପଥ ସ୍ଥାପିତ ହୋଇନାହିଁ, ଜଳପଥରେ କଲିକତା ଆସିବାକୁ ୪।୫ ଦିନ ସମୟ ଲାଗୁଥିଲା । କଟକରୁ କଲିକତା ଆସି ସେମାନେ ଭାରତର ଉତ୍ତର ପଶ୍ଚିମାଞ୍ଚଳ ପରିଭ୍ରମଣ କରିଥିଲେ । ଏହି ଭ୍ରମଣ ପଥରେ ସେ ଯେଉଁସବୁ ବ୍ରାହ୍ମପରିବାରରେ ଅତିଥି ହୋଇଥିଲେ, ସେମାନଙ୍କ ଆତିଥ୍ୟ, ଉପାସନାଶୀଳତା, ପରିବାରଗତ ମାଧୁର୍ଯ୍ୟ ପ୍ରଭୃତିର କଥା ସେ ଫେରିଆସି ଆମ୍ଭମାନଙ୍କ ନିକଟରେ ଗଳ୍ପଛଳରେ କହୁଥିଲେ, ନଳହାଟୀରେ ନୀଳକଣ୍ଠ ସିଦ୍ଧାନ୍ତ[2] ମହାଶୟଙ୍କ ଓ ବାଙ୍କିପୁରର (ପାଟନାର) ପ୍ରକାଶ ଚନ୍ଦ୍ର ରାୟ[3] ମହାଶୟଙ୍କ ଗୃହର କଥା ଶ୍ରଦ୍ଧାସମନ୍ୱିତ ପ୍ରାଣରେ ଏପରି ଭାବରେ ସେ କହିଥିଲେ ଯେ, ଆମ୍ଭମାନଙ୍କ ପ୍ରାଣ ମଧ୍ୟ ଅପରିଚିତ ଏହି ପରିବାରଗୁଡ଼ିକ ପ୍ରତି ଶ୍ରଦ୍ଧା ଓ ସମ୍ଭ୍ରମରେ ପୂର୍ଣ୍ଣ ହୋଇ ଉଠିଥିଲା ।

ପ୍ରୟାଗରୁ (ଏଲାହାବାଦ) ସେ ଆମ୍ଭମାନଙ୍କୁ ଯେଉଁ ପତ୍ର ଲେଖିଥିଲେ, ସେଥିରେ ତାଙ୍କର 'ଅଯୋଧ୍ୟା ପ୍ରତ୍ୟାଗମନ' କବିତାର (ସଂସ୍କୃତ 'ରଘୁବଂଶ'ରୁ ଓଡ଼ିଆରେ ଅନୁବାଦ) ଏହି କେତୋଟି ପଂକ୍ତି ଉଦ୍ଧୃତ ଥିଲା :—

ଜାହ୍ନବୀ ଯମୁନା ଯୋଗ ଦେଖ ଗୋ ସୁନ୍ଦରି,
ଶୁଭ୍ର ନୀଳ ଜଳ ଦିଶେ ରୁଚିର କପରି !

ଇନ୍ଦ୍ରନୀଳ ପରେ ମୋତି ପୁଣି ଇନ୍ଦ୍ରନୀଳ,
ଗୁନ୍ଥାହେଲା ମାଳାପ୍ରାୟେ ଦିଶଇ ସଲିଳ ।

କିମ୍ବା ଇନ୍ଦୀବରେ ମିଶି ଶ୍ୱେତ ଶତଦଳ
ମାଳାପରି ଦିଶେ ଏହି କଳା-ଧଳା ଜଳ ।

---

୨ । ନୀଳକଣ୍ଠ ସିଦ୍ଧାନ୍ତ—କଲିକତା ବିଶ୍ୱବିଦ୍ୟାଳୟର ଭୂତପୂର୍ବ ଭାଇସ-ଚ୍ୟାନ୍‌ସେଲର ଡଃ ନିର୍ମଳ କୁମାର ସିଦ୍ଧାନ୍ତଙ୍କ ପିତା ।

୩ । ପ୍ରକାଶ ଚନ୍ଦ୍ର ରାୟ— ସମ୍ପ୍ରତି ପରଲୋକଗତ ବଙ୍ଗ ଦେଶର ମୁଖ୍ୟମନ୍ତ୍ରୀ ଡାକ୍ତର ବିଧାନ ଚନ୍ଦ୍ର ରାୟ ମହାଶୟଙ୍କ ପିତା ।

କି ଅବା ମାନସଗାମୀ ରାଜହଂସ ପଂକ୍ତି
କାଦମ୍ବିନୀ ସଂଯୋଗେ ଯେମନ୍ତ ଦିଶନ୍ତି ।
ଅଥବା ଅବନୀବର ବଦନେ ରଚିତ
ଚନ୍ଦନ ରଚନା କୃଷ୍ଣ ଅଗୁରୁ ମିଶ୍ରିତ;
କି ଅବା ଯେମନ୍ତ ପ୍ରିୟେ ଶାରଦ ଗଗନ,
ଶୁଭ୍ର ଶରଭ୍ର ରନ୍ଧ୍ରେ ଦିଶଇ ଶୋଭନ ।
ଅବା ଧଳା ଭସ୍ମବୋଳା ଶଙ୍କର-ଶରୀର,
ଅସିତ ଉରଗେ ଯଥା ରାଜଇ ରୁଚିର;
କି ଅବା ଯୁଗ୍ମାରେ ମିଶା ଚନ୍ଦ୍ର ଜ୍ୟୋତ୍ସ୍ନାଚର,
ଦିଶଇ ପ୍ରେୟସି, ଗଙ୍ଗା-ଯମୁନା-ଲହରୀ ।

ପ୍ରେମିକ ମଧୁସୂଦନଙ୍କ ପ୍ରୌଢ଼ ବୟସର ନାତି-ନାତୁଣୀମାନଙ୍କ ସମ୍ବନ୍ଧରେ କିପରି ସାଂଖ୍ୟ ଭାବରେ କହୁଥିଲି, ତାହାର କେତେ କଥା ମନେ ପଡ଼େ । ଜ୍ୟେଷ୍ଠା କନ୍ୟା ବାସନ୍ତୀଙ୍କ ପ୍ରଥମ ସନ୍ତାନ ଦୁଇଟି ଅକାଳରେ ଗୁଲିଯାଇ-ଥିଲେ । ପ୍ରଥମଟି କନ୍ୟା; ତାଙ୍କୁ ଏକ ବର୍ଷ ଋତମାସ ବୟସ ହୋଇଥିଲା । ଦ୍ୱିତୀୟଟି ପୁତ୍ର ସନ୍ତାନ; ଜନ୍ମ ହେବାର କିଛିଦିନ ମଧ୍ୟରେ ସୂତିକା ଗୃହରେ ତାହାର ମୃତ୍ୟୁ ହେଲା । ସେତେବେଳେ ପରିବାରର ସମସ୍ତେ ଯେଉଁ ଦାରୁଣ ଶୋକରେ କାତର ହୋଇଥିଲେ, ତାହା ମୋର ବର୍ତ୍ତମାନ ସୁଦ୍ଧା ମନେ-ପଡ଼େ । କିଛିକାଳ ପରେ ବାସନ୍ତୀ ଦେବୀଙ୍କ ତୃତୀୟ ସନ୍ତାନ-ସୁମିତ୍ର, ସମ୍ବଲପୁରରେ ଜନ୍ମଗ୍ରହଣ କଲା । ଏହାର ନାମକରଣ ଉପଲକ୍ଷେ ମଧୁସୂଦନ ଜ୍ୟେଷ୍ଠ ଜାମାତା ବିଜୟ ଚନ୍ଦ୍ରଙ୍କୁ ଯେଉଁ ପତ୍ର ଲେଖିଥିଲେ, ତାହା ନିମ୍ନରେ ଉଦ୍ଧୃତ ହେଲା :—

କଟକ
୧୦-୧୧-୯୪

ପ୍ରାଣପ୍ରତିମେଷୁ,

ବାବା, ତୁମର ପତ୍ର ପାଇଅଛୁ । ଆଗାମୀ ରବିବାର ଦିନ ଖୁକାର ନାମକରଣ ହେବ ଜାଣି ସୁଖୀ ହେଲି । ... ନାମକରଣ ଉପଲକ୍ଷେ ଏହି ଗୀତଟି ଲେଖିଅଛୁ :—

ଦେଖିନାହିଁ ଚର୍ମ ନେତ୍ରେ ଦେଖିଛୁ ପ୍ରେମ ନୟନେ,
ତବ କରୁଣାର ଦାନ, ମାଗେ, ତବ କନ୍ୟାଧନେ ।

ଅଧା ଅଧା ଭାଷା ତାର ଶୁଣିନ କର୍ଣ୍ଣ ମୋହର,
(ତେବେ) କି ଶବ୍ଦେ ମା ବାଜି ଉଠେ ପ୍ରାଣତନ୍ତ୍ରୀ ତାର ଚରଣେ ।

ସେ କୋମଳ ତନୁ ତାର ଧରି ନାହିଁ ବକ୍ଷେ ମୋର,
କିନ୍ତୁ ମା ଶୀତଳେ ପ୍ରାଣ ସଚେତା ତା ପରଶନେ ।

ଏ କି ମା ଅଦ୍ଭୁତ ଲୀଳା, ଦୁଃଖୀଜନେ ଦେଖାଇଲ,
ଧନ୍ୟ ଧନ୍ୟ ପ୍ରୀତି ତବ ଏ ତବ ଭବ-ଭବନେ ।

କେତେ ଆଶା ଭରି ପ୍ରାଣେ, ଥୁଇଁ ତବ କ୍ରୋଡ଼ସ୍ଥାନେ,
ମାଗୁଅଛୁ କର ଯୋଡ଼ି ଆଶଙ୍କା ବ୍ୟାକୁଳ ମନେ ।

ଶିଶୁରେ ରଖ ତୋହର ପ୍ରେମ କ୍ରୋଡ଼େ ଅନିବାର,
ହର ଦୁଃଖ ପିତା ମାତାର ଏହି ଭିକ୍ଷା ଶ୍ରୀଚରଣେ ।

ଏ ଶିଶୁ ଯେ ପରିବାରେ ଆସିଛୁ ଆଶିଷାକାରେ,
ଜାଗ୍ରତ ରଖ ମା ତହିଁ ପୁଣ୍ୟ 'ସୁମିତ୍ରା' ଯତନେ ।

ବିଧାତାଙ୍କ କୃପାରୁ ଏହି କନ୍ୟା (ସୁମିତ୍ରା) ବର୍ତ୍ତମାନ ସୁଦ୍ଧା ତା' ପିତାମାତାଙ୍କର ଏକମାତ୍ର ସନ୍ତାନରୂପେ ଜୀବିତ ଅଛି ଏବଂ ବିଦୁଷୀ ସୁଲେଖିକା ବୋଲି ପରିଚିତ ଲାଭ କରିଅଛି । ଏହି ଦୌହିତ୍ରୀଟି ତା' ଅଜା, ଆଈ ଓ ମାମୁଁ ଘରର ସମସ୍ତଙ୍କର ଖୁବ୍ ସ୍ନେହାଦର ପାଇଅଛି ।

ସୁମିତ୍ରା ପାଖକୁ ଲିଖିତ ମଧୁସୂଦନଙ୍କର ଖଣ୍ଡିଏ ପତ୍ର ଏଠାରେ ଉଦ୍ଧୃତ କରୁଅଛି ।

କଟକ
୧୫ ଜୁନ୍, ୧୯୦୫

ବିଦ୍ୟମଣି ମୋର,

ଦେଖୁ ଦେଖୁ ପ୍ରାୟ ମାସେ ହୋଇଗଲା । ତୁମେ ସମ୍ବଲପୁର ଗରମରେ ଏପରି ଅଭିଭୂତ ହୋଇପଡ଼ିଅଛ ଯେ, ଖଣ୍ଡିଏ ପତ୍ର ମୋତେ ଲେଖିପାରିନାହଁ କିମ୍ବା ମୋତେ ଏକରକମ ଭୁଲିଯାଇଛ । ମୁଁ କ'ଣ ଏଥିପାଇଁ ଅଭିମାନ

କରିପାରେନା ? କିନ୍ତୁ ମୁଁ ଏପରି ଭଲ ଯେ ଅଭିମାନ କରିବା ଦୂରେଥାଉ, ପ୍ରଥମେ ମୁଁ ଲେଖୁଛି । ଅତଏବ ତୁମକୁ କହିବାକୁଇ ହେବ, ବଡ଼ ଭଲ ଝିଅ ମୋର । ଆଉ ସେ କଥା, ବର୍ତ୍ତମାନ ତୁମ ପାଖରୁ ହିସାବ ତଲବ କରୁଛି । ସମ୍ବଲପୁର ଫେରିଯାଇ ତୁମେ କ'ଣ ପଢ଼ିଛ, କ'ଣ ଶିଖିଛ, କ'ଣ କରିଛ ? ଆଶାକରେ ତୁମେ ଯେଉଁ ହିସାବ ପଠାଇବ, ତାହା ସନ୍ତୋଷଜନକ ହେବ । ମଝି ମଝିରେ ମୋ ନିକଟକୁ ଗୋଟିଏ ହିସାବ ଦେବ । ହିସାବ ନ ଦେଲେ ତୁମ ବାକ୍ସର ଟଙ୍କାଗୁଡ଼ିକ ମୁଁ କୋରଖ କରିନେବି ।

ତୁମର କଲିକତାରେ ରହି ପଢ଼ିବାର ଯେଉଁ ପ୍ରସ୍ତାବ ହୋଇଥିଲା, ସେ ସମ୍ବନ୍ଧରେ କ'ଣ ମୀମାଂସା ହେଲା ? ବୋଧହୁଏ ତୁମର କକା, ଖୁଡ଼ୀ ସମ୍ବଲପୁର ଆସିଛନ୍ତି । ତୁମର ଖୁଡ଼ୀ କିପରି ଅଛନ୍ତି ଜଣାଇବ । ଟୁନୁ ଭଲ ଅଛି ତ ?

ତୁମ ବାବାଙ୍କର ଶରୀର କିପରି ? ତାଙ୍କ ପାଖରେ ପ୍ରତିଦିନ ଦୁଇତିନି ଘଣ୍ଟାଏ ମାତ୍ର ପଢ଼ିଲେ କେତେ ବିଷୟ ଶିଖିପାରିବ । ଆଶାକରେ ସେ ତୁମକୁ କିଛିକ୍ଷଣ ପଢ଼ାଇ ପାରିବେ ।

ତୁମର
ସେହି ପୁରୁଣାକାଳିଆ ଅଜା

ମୋର ଏକମାତ୍ର ସନ୍ତାନ ଅମରନାଥ ୧୯୦୨ ଖ୍ରୀଷ୍ଟାବ୍ଦ ନଭେମ୍ବର ୨୭ ତାରିଖରେ କଟକରେ ଜନ୍ମଗ୍ରହଣ କରିଥିଲା । ୧୯୦୩ ଏପ୍ରିଲ ମାସରେ ପ୍ରାୟ ପାଞ୍ଚ ମାସର ଶିଶୁପୁତ୍ରକୁ ନେଇ ମୁଁ କଲିକତା (ବାଲିଗଞ୍ଜ, ପଦ୍ମପୁକୁର ରୋଡ଼) ଆସିଥିଲି । ସେହି ସମୟରେ ବାପା ମୋତେ ଯେଉଁ ପତ୍ର ଲେଖିଥିଲେ, ତାହାର କିୟଦଂଶ ଉଦ୍ଧୃତ ହେଲା :

କଟକ
୨୯-୪-୧୯୦୩

ମା ମୋର,

"ପ୍ରଥମ କଥା ଖୋକା ସମ୍ବନ୍ଧରେ । ଏଠାରୁ ସେ ଚାଲିଯିବା ପରେ ୩।୪ ଦିନ ପର୍ଯ୍ୟନ୍ତ ଘର ଭିତରେ ପଶିବା ମାତ୍ରକେ ତାହାର ଅଭାବ ଛବି ରୂପେ

ଅନୁଭବ କରୁଥିଲି । ବର୍ତ୍ତମାନ ସେ ଶିବବ୍ରତା ପାଇଛୁ । ସ୍ମୃତି ସାହାଯ୍ୟରେ ତା' ପ୍ରିୟଦର୍ଶନ ମୁଖର ଚମକଭାବ ଓ ତା' ହସର ଅମୃତ କଳତାନ ମଧ୍ୟେ ମଧ୍ୟେ ଉପଲବ୍ଧି କରୁଅଛୁ । ପୁନରପି କେବେ ତାକୁ ଦେଖିବାକୁ ପାଇବ । ମଙ୍ଗଳମୟ ତାକୁ ନିରନ୍ତର ରକ୍ଷା କରନ୍ତୁ ।"

ଅମରନାଥର ମୁଣ୍ଡଟି ବେଶ୍ ବଡ଼ ଥିଲା, ସେଥିପାଇଁ ବୋଧହୁଏ ତାହାର ଚାଲିବାକୁ ଅପେକ୍ଷାକୃତ ବିଳମ୍ବ ହୋଇଥିଲା । ପ୍ରାୟ ଦେଢବର୍ଷ ବୟସରେ ସେ ଚାଲିବାକୁ ଆରମ୍ଭ କଲା । ତାର ଚାଲିବାର ସମ୍ବାଦ ପାଇ ସେ ଯେଉଁ ପତ୍ର ଲେଖିଥିଲେ, ତାହାର କିୟଦଂଶ ଉଦ୍ଧୃତ କଲି :

"ଦାଦାସାହେବ ଅମରନାଥ କୁଆଡ଼େ ଚାଲିବାର ନବଲବ୍ଧ କ୍ଷମତାର ପରୀକ୍ଷାରେ ସର୍ବଦା ବ୍ୟସ୍ତ ରହୁଛନ୍ତି । ମୋ ମନରେ ତାହାର ହେଟିଯିବାଟା ଦେଖିବାକୁ ବଡ଼ ଶ୍ରଦ୍ଧା ଥିଲା, କିନ୍ତୁ ମୋ ଭାଗ୍ୟରେ ତାହା ଘଟିପାରିବ ବୋଲି ବୋଧ ହେଉନାହିଁ । ଯାହାହେଉ, ସେ ଯେ ଏତେଦିନ ପରେ ଚାଲିପାରି ବାପା ମା'ଙ୍କର ଆନନ୍ଦବର୍ଦ୍ଧନ କରୁଅଛନ୍ତି, ସେଥିପାଇଁ ତାହାଙ୍କୁ ଏକଶତ-ଏକ ଚୁମ୍ବନ ଡ଼ାକରେ ପଠାଉଅଛୁ ।"

୧୭ ମେ, ୧୯୦୮

ଆଉ ଗୋଟିଏ ପତ୍ରର କିୟଦଂଶ :

"ଖୋକା ଚାଲିଯିବାରୁ ଘର କିପରି ଅଲଗା ଅଲଗା ଲାଗୁଛି । ସେଠାରେ ପହଞ୍ଚି ସେ କ'ଣ କହୁଛି ? ଆଉ କିଛିଦିନେ ସେ ଆମ୍ଭମାନଙ୍କୁ ଭୁଲିଯିବ । ଯାହାହେଉ, ବର୍ତ୍ତମାନ ତାହାକୁ ଯତ୍ନରେ ରଖିବା ତୁମ୍ଭମାନଙ୍କର ପ୍ରଧାନ କାମ । କଟକରେ ପୋଖରୀ—ସେ ଯେପରି ଏକୁଟିଆ ବାହାରିକୁ ନଯାଏ ।"

ମୋର ଭାଇ ଡାକ୍ତର ଜୟନ୍ତ ରାଓଙ୍କ ପ୍ରଥମ ପୁତ୍ର ସନ୍ତାନ ୭ ମାସ ବୟସରେ କଟକରେ ଦାରୁଣ ରକ୍ତାମାଶୟ ରୋଗରେ ଆକ୍ରାନ୍ତ ହୋଇ ମୃତ୍ୟୁ ମୁଖରେ ପତିତ ହେଲା । ତା'ର ଡ଼ାକନାମ ଥିଲା 'ନାନା' । ମଧୁସୂଦନ ଏହି ପୌତ୍ରର ମୃତ୍ୟୁ ପରେ, ମୋର ପତ୍ର ପାଇ ଯେଉଁ ଉତ୍ତର ଦେଇଥିଲେ, ସେଥିରେ ତାଙ୍କ ଭକ୍ତପ୍ରାଣର କି ସୁନ୍ଦର ପରିଚୟ ମିଳେ ! ଶୋକାହତ ମଧୁସୂଦନଙ୍କ ସେହି ଚିଠିର କିୟଦଂଶ ଉଦ୍ଧୃତ କରୁଅଛି :

କଟକ
୩୦-୬-୧୯୧୦

ମା ମୋର,

ତୋର ପତ୍ର ପାଇଛି । ତାହା ପଢ଼ି ପଢ଼ି ଚକ୍ଷୁ ଅଶ୍ରୁରେ ଭର୍ତ୍ତି ହୋଇଗଲା । ଏହି କେତେଦିନ ସେହି ଦେବକିଶୋର ମୂର୍ତ୍ତି ଓ ମୁଖପ୍ରାପ୍ତ ଚକ୍ଷୁ ସମ୍ମୁଖରେ ନାଚୁଅଛି । ତାହାର ମନୋଜ୍ଜ୍ୱଳ ଚକ୍ଷୁ ଦୁଇଟି ସତେଯେପରି ନିର୍ମଳ ଶାନ୍ତ ବିକୀରଣ କରୁଅଛି । ଆଜ ତାହାକୁ ଏ ଚର୍ମଚକ୍ଷୁରେ ଦେଖି ପାରିବି ନାହିଁ, କିନ୍ତୁ ପ୍ରଭୁ ଏହା କରନ୍ତୁ, ଯେପରି ତାହାର ଶୁଭ୍ର ପବିତ୍ର ଆନନ-ଶ୍ରୀ ମୋ ସ୍ମୃତିକୋଷରେ ସୁରକ୍ଷିତ ଥାଇ ମୋତେ ଏହି ଶୁଦ୍ଧମପାପବିଦ୍ଧମ୍, ସତ୍ୟମ୍ ଶିବମ୍ ସୁନ୍ଦରମ୍ ପରଂବ୍ରହ୍ମଙ୍କ ଆଡ଼କୁ ଅନୁକ୍ଷଣ ଆକର୍ଷଣ କରୁ ..... ।

ଅମରନାଥକୁ ମୋ ପାଖକୁ ପତ୍ର ଲେଖିବାକୁ କହିବୁ । ... ...

ଶ୍ରୀ ମଧୁସୂଦନ

୧୯୧୧ ଖ୍ରୀଷ୍ଟାବ୍ଦ ଅକ୍ଟୋବର ୨୭ ତାରିଖରେ ପ୍ରଥମ ପୁତ୍ର ଜଯନ୍ତ ସିଂହଙ୍କ ଦ୍ୱିତୀୟ ସନ୍ତାନ, ମଧୁସୂଦନଙ୍କ ପ୍ରଥମା ପୌତ୍ରୀର ଜନ୍ମ ହେଲା । ଏହାର ଏକବର୍ଷ-ପୂର୍ତ୍ତି ଜନ୍ମଦିନରେ ମଧୁସୂଦନ ଆତ୍ମୀୟସ୍ୱଜନ, ବନ୍ଧୁ-ବାନ୍ଧବଙ୍କୁ ନେଇ ଏହାର ନାମକରଣ ଅନୁଷ୍ଠାନ ସମ୍ପନ୍ନ କଲେ । ଜନ୍ମାବଧି ବାପା ଏହାକୁ 'ବିବି' ନାମ ଦେଇଥିଲେ । ଏହି 'ବିବି' ନାମରେ ବର୍ତ୍ତମାନ ସୁଦ୍ଧା ତାହାକୁ ଡକାହୁଏ । ତାହାର ନାମକରଣରେ ବାପା ତାହାର ନାମ ରଖିଥିଲେ 'ସୁଜାତା' । ବାପାଙ୍କ ଜୀବଦ୍ଦଶାରେ ପରିବାରରେ ଆନନ୍ଦୋତ୍ସବର ଏହିଟି ଶେଷ ଅନୁଷ୍ଠାନ ।

ଏହି ଉପଲକ୍ଷେ ତାଙ୍କର ରଚିତ ସଙ୍ଗୀତଟି ନିମ୍ନରେ ଉଦ୍ଧୃତ ହେଲା :—

ତୁମର ଆଶିଷ ସୁଧା ବରଷ ଏ ଶିଶୁପ୍ରାଣେ
ବଢ଼ୁ ଜୀବନ ତାର ସେହି ସୁଧା-ରସ-ପାନେ ।
ଆଜ ପ୍ରଭୁ ବହିସ୍ରୋତେ, ତୁମର ଚରଣପ୍ରାନ୍ତେ
କୋମଳ ମୂରତି ତାର, ଗଢ଼ା ତୁମର କଲ୍ୟାଣେ,

ଦେଖିଣ ହରଷଭରେ, ପ୍ରୀତି ପ୍ରଫୁଲ୍ଲ ଅନ୍ତରେ
ଗାଆନ୍ତୁ ସରବେ ତୁମ ମହିମାର ଜୟଗାନେ
ତୁମେ ତାର ପିତାମାତା, ତେଣୁ ହେ ତାଙ୍କୁ 'ସୁଜାତା' ।
ନାମେ ଭୂଷିତ କରିଣ ଗୃହେଁ ତୁମ ଦରଶନେ
ଏ ଗୃହେ, ଏ ଧରାଧାମେ, ସାର୍ଥକ କର ଏ ନାମେ,
ଏ ଶିଶୁରେ ରଖ ସଦା ତବ ମଙ୍ଗଳ ବିଧାନେ ।

ଏହାର ଦୁଇ ମାସ ପରେ ଡିସେମ୍ବର ୨୮ ତାରିଖ ୧୯୧୨ରେ ସେ ପରଲୋକ ଗମନ କଲେ ।

ଦ୍ୱିତୀୟ ପୁତ୍ର ପ୍ରଶାନ୍ତର ପ୍ରଥମ ସନ୍ତାନ ଗୋଟିଏ ପୁତ୍ରକୁ ପ୍ରାୟ ୩ ମାସ ବୟସରେ ରୋଗ ଶଯ୍ୟାରେ ମୃତ୍ୟୁର କତିପଦିନ ମାତ୍ର ପୂର୍ବରୁ ସେ ଦେଖିଥିଲେ; ପରେ ଏହି ସନ୍ତାନଟି ମଧ୍ୟ ଏକବର୍ଷ ବୟସରେ ମେନିନ୍‌ଜାଇଟିସ୍ ରୋଗରେ ପରଲୋକ ଗମନ କଲା ।

ଏହି କେତୋଟି ଦୌହିତ୍ରୀ, ଦୌହିତ୍ର, ପୌତ୍ର ଓ ପୌତ୍ରୀଙ୍କୁ ସେ ଦେଖିଥିଲେ । ଅନ୍ୟମାନଙ୍କୁ ସେ ଦେଖିପାରି ନାହାନ୍ତି ।

ଅନୁଜ ଭ୍ରାତା ଜଗନ୍ନାଥ ରାଓଙ୍କ କନ୍ୟାଦ୍ୱୟ ରେବା ଓ ସରସ୍ୱତୀଙ୍କ ପୁତ୍ରକନ୍ୟା ମଧ୍ୟ ମଧୁସୂଦନଙ୍କ ସ୍ନେହାଦର ଯଥେଷ୍ଟ ସମ୍ଭୋଗ କରିଥିଲେ; ସେମାନଙ୍କ ନାମରେ ମଧ୍ୟ ସେ ପରିହାସପୂର୍ଣ୍ଣ ଶ୍ଳେଷ ଶ୍ଳେଷ କବିତା ବୋଲି ସେମାନଙ୍କୁ ଯେଉଁ କେତେ ଆମୋଦ କରୁଥିଲେ । ତହିଁରୁ କିଛି କିଛି ମନେପଡ଼େ ।

କଟକର 'ଇଦଗା ପଡ଼ିଆ' ନିକଟସ୍ଥ ଜଗନ୍ନାଥ ରାଓଙ୍କ ଗୃହ ସଂଲଗ୍ନ ଉଦ୍ୟାନରେ ତାଙ୍କ ନାତୁଣୀ ଇନ୍ଦିରାକୁ (ରେବା ରାୟଙ୍କ କନ୍ୟା) ନେଇ ମାଧବୀଲତା ସମାଚ୍ଛନ୍ନ ଗୋଟିଏ ଆମ୍ରଗଛ ତଳେ ବସି ସେ କହିଥିଲେ—

"ମାଧବୀ ତରୁତଳେ ବସନ୍ତ ମଧୁ
ପାଶେ ବସିଅଛନ୍ତି ଇନ୍ଦିରା ବଧୂ"

ଇନ୍ଦାବତୀକୁ ଆଦର କରି ସେ ରାଣୀ ବୋଲି ଡାକୁଥିଲେ । ଇନ୍ଦବତୀର ଡାକ ନାମ ଥିଲା ଇନା । ଇନା ମଧ୍ୟ ତା'ର ବଡ ଅଜାଙ୍କୁ ଅତ୍ୟନ୍ତ ଭଲ ପାଉଥିଲା । ମଧୁସୂଦନଙ୍କ କାଳୀଗଳି ଗୃହକୁ ଆସିଲେ ସେ ତାଙ୍କୁ ଛାଡ଼ି ନିଜ ମା'ଙ୍କ ସାଙ୍ଗରେ ମଧ୍ୟ ଘରକୁ ଫେରିବାକୁ ଚାହୁଁ ନଥିଲା । ଆଉ ଗୋଟିଏ କବିତାରେ ତାଙ୍କ ନାତି ନାତୁଣୀମାନଙ୍କ ସମ୍ବନ୍ଧରେ ଅଛି :—

ରବି, ଇନା, ଫୁଟନ, ଚଢ଼େ ଗାଡ଼ି ଫୀଟନ
ଖାଏ ଏଗ୍ ମଟନ, ବୋଲେ ମଧୁସୂଦନ ।

ଜଗନ୍ନାଥ ରାଓଙ୍କ ଜ୍ୟେଷ୍ଠ ଝିଅ ସରସ୍ୱତୀର ପୁତ୍ର ଅଜିତାନନ୍ଦ ୫ ବର୍ଷ ବୟସ୍କ ବାଳକ ଥିବାବେଳେ ମଧୁସୂଦନ ତାହାକୁ କହୁଥିଲେ—

ଅଜିତାନନ୍ଦ ରାୟ
ଘୋଡ଼ାର ଘାସ ଖାୟ ।

ବାଳକ ସଙ୍ଗେ ସଙ୍ଗେ ପ୍ରତ୍ୟୁତ୍ତର କରିଥିଲା—

ମଧୁସୂଦନ ରାଓ
ଘୋଡ଼ା'ର ଘାସ ଖାଓ ।

ମଧୁସୂଦନ ନିଜେ ଜ୍ଞାନୀ ଓ ସୁପଣ୍ଡିତ । କେତେ ଉଚ୍ଚ ବିଷୟମାନ ନିଜେ ଅଧ୍ୟୟନ କରୁଥିଲେ ଓ ବୟସ୍କ ଛାତ୍ରମାନଙ୍କୁ ସେହି ସମସ୍ତ ବିଷୟ ପଢ଼ାଉଥିଲେ; କିନ୍ତୁ ଶିଶୁମାନଙ୍କୁ ପଢାଇବା ବେଳେ କିପରି ସରଳ ଭାବରେ ଶିଶୁଚିତ୍ତର ଉପଯୋଗୀ କରି ସେ ବୁଝାଇ ଦିଅନ୍ତି ତାହାର ଗୋଟିଏ ନିଦର୍ଶନ ଦେଉଛି :

ମୋର ଏକମାତ୍ର ପୁତ୍ର ଅମରନାଥର ବୟସ ଯେତେବେଳେ ଅନୁମାନ ୫ ବର୍ଷ, ମୁଁ ସେତେବେଳେ ପିହାଳପୁରରେ, ତାହାକୁ ବର୍ଣ୍ଣ ପରିଚୟର ଯୁକ୍ତାକ୍ଷର ପଢ଼ାଉଥିଲି । ମୋର ଅଭ୍ୟାସ ଥିଲା, ଯେଉଁ ଶବ୍ଦର ବନାନ ଶିଖାଇଲି ବେଳେ ତାହାର ଅର୍ଥ ମଧ୍ୟ ତାହାକୁ କହିଦେବା । ଦିନେ 'ଏକାଗ୍ର' ଏହି ଶବ୍ଦଟିର ଅର୍ଥ ତାହାକୁ ବୁଝାଇବାକୁ ଯାଇ, କିପରି ବୁଝାଇବି ଭାବୁଭାବୁ

———

ରବି ଓ ଫୁଟନ ରେବା ରାୟଙ୍କ ଦୁଇ ପୁତ୍ର ଏବଂ ଇନା (ବା ଇନ୍ଦିରା) ଏକମାତ୍ର କନ୍ୟା ।

ତାହାକୁ ସଙ୍ଗରେ ନେଇ ବାପାଙ୍କ ପାଖକୁ ଗଲି । ବାପା ସବୁ ଶୁଣି କହିଲେ, "ଖୋକା, ତୋ ଶ୍ରେଷ୍ଠ ମାଉସୀଙ୍କ ପାଖରୁ ଗୋଟିଏ ସୂତାର ଗୋଲି ନେଇ ଆସେ ତ । ସେ ନେଇ ଆସିଲାରୁ, ବାପା ସେହି ସୂତାଗୋଲରୁ ୪।୫ ଖଣ୍ଡି ସୂତା ଛିଣ୍ଡାଇ ନେଲେ । ସେହି ଖଣ୍ଡଗୁଡ଼ିକର ଅଗ୍ରଭାଗକୁ ବଳି ବଳି ମିଶାଇ ଦେଲେ । ତା'ପରେ ସେ ତାହାକୁ ସେଇଟିକୁ ଦେଖାଇ କହିଲେ "ଦେଖେ, ଏହି ୪।୫ ଖଣ୍ଡ ସୂତା ବଳି ହୋଇ ଗୋଟିଏ ସୂତା ହୋଇଯାଇଛି । ସେହିପରି ତୋ ମନରେ କେତେ ଇଚ୍ଛା ଜାଗୁଅଛି—ଖେଳିବା ଇଚ୍ଛା, ଗଳ୍ପ କରିବା ଇଚ୍ଛା, ପଢ଼ିବା ଇଚ୍ଛା, ଦେଖିବା ଇଚ୍ଛା—ଏହିପରି କେତେ ଇଚ୍ଛା ! କିନ୍ତୁ ସବୁଗୁଡ଼ିକୁ ଗୋଟିଏ ଇଚ୍ଛାକୁ ନେଇ ଆସିବାକୁ ହେବ; ଏହି ସୂତାଗୁଡ଼ିକୁ ବଳି କରି ଯେପରି 'ଏକାଗ୍ର' କରିହୋଇଛି, ସେହିପରି ସ୍କୁଲକୁ ଇ କହନ୍ତି ଏକାଗ୍ର ମନରେ !"

ଶିଶୁମାନେ ଗଳ୍ପ ଶୁଣିବାକୁ, ଗଳ୍ପ କହିବାକୁ ଭଲପାଆନ୍ତି । ଗଳ୍ପ କହିବା ବେଳେ ସେମାନଙ୍କର କଳ୍ପନା ଶକ୍ତି କାମ କରେ । ମୋର ପୁଅ ଅମରନାଥର ବୟସ ଯେତେବେଳେ ୬।୭ ବର୍ଷ, ସେତେବେଳେ ତାର ଗଳ୍ପ ଲେଖିବାର ଖୁବ୍ ଝୋଁକ ଥିଲା । ମୋ ବାପାଙ୍କ ପାଖକୁ ଯାଇ "ଦାଦା ମହାଶୟ, ଗଳ୍ପ ଲେଖିବି, ଖାତା ଦିଅ କହିବାରୁ ବାପା ମୁହଁରେ ଗୋଟିଏ କବିତା ରଚନା କରି ଖଣ୍ଡିଏ ଖାତାରେ ଲେଖି ତାକୁ ଦେଇଥିଲେ । ସେହି କବିତା ଏଇଟି :—

କି ଲେଖିବୁ ଖୋକା ଏଇ ନୂତନ ଖାତାରେ
ଭଲ କଥା, ଭଲ ଗଳ୍ପ ପୃଷ୍ଠାରେ ପୃଷ୍ଠାରେ

କାହାକୁ କହନ୍ତି, ଭଲ କଥା, ଭଲ ଗଳ୍ପ କିବା ?
ଯେଥି ପ୍ରକାଶିତ ହୁଏ କଳ୍ପନା ପ୍ରତିଭା ।

କାହାକୁ କହନ୍ତି କଳ୍ପନା, ପ୍ରତିଭା ବା କାରେ ?
କଳ୍ପନା ପ୍ରତିଭା କଥା କହିବି ତୋହରେ !

କଳ୍ପନା ଗଢ଼ଇ ନିତ୍ୟ ନୂତନ ପ୍ରସଙ୍ଗ,
ପ୍ରତିଭା କଳ୍ପନା ପରେ ଢ଼ାଳେ ନବରଙ୍ଗ ।

ଖୋକାଙ୍କୁ ଖାତାଟି ଦେଇ ଦାଦା ମହାଶୟେ,
ବୋଇଲେ ଲେଖି ପକାଅ ଯେତେ ଇଚ୍ଛା ହୁଏ ।
ଇତି ଅଗ୍ରଜ-ମଧୁସୂଦନ-ସମ୍ବାଦେ ପ୍ରଥମ କଳ୍ପ ।

## (ଛ) ମଧୁସୂଦନଙ୍କ ଗୁରୁଭକ୍ତି ଓ ଦେଶପ୍ରେମ

ଛାତ୍ରାବସ୍ଥାରେ ବାପା ଯେଉଁସବୁ ଶିକ୍ଷକ ଓ ଅଧ୍ୟାପକଙ୍କ ନିକଟରେ ପଢିଥିଲେ, ସେମାନଙ୍କ ପ୍ରତି ତାଙ୍କର କପରି ଭକ୍ତିଶ୍ରଦ୍ଧା ଥିଲା, ତାହା ଅନେକ ସମୟରେ କଥା ପ୍ରସଙ୍ଗରେ ତାଙ୍କ ପାଖରୁ ଶୁଣି ଆମ୍ଭେମାନେ ଚମତ୍କୃତ ହେଉଥିଲୁ ।

ସ୍ୱର୍ଗୀୟ କବି ରାଧାନାଥ ରାୟଙ୍କ ପ୍ରତି ବାପାଙ୍କର ଅସାଧାରଣ ଭକ୍ତିର କଥା ଉତ୍କଳରେ ସର୍ବଜନବିଦିତ । ଆମ୍ଭମାନଙ୍କର ମଧ୍ୟ କେତେ ଦୃଶ୍ୟ ମନେପଡ଼େ । ରାଧାନାଥ ଆମ ଘରକୁ ଆସି ଗୃହ ପ୍ରାଙ୍ଗଣରେ ପ୍ରବେଶ କରିବା ପୂର୍ବରୁ 'ମଧୁ ମଧୁ' ବୋଲି ଡ଼ାକିଲେ, ବାପା ଯେଉଁ ଅବସ୍ଥାରେ ଥାଆନ୍ତୁ, ଶୀଘ୍ର ଦୌଡ଼ିଯାଇ ସସମ୍ଭ୍ରମେ ତାହାଙ୍କୁ ଘରକୁ ପାଛୋଟି ଆଣୁଥିଲେ । ବାପାଙ୍କର ସେତେବେଳର ଭକ୍ତି-ବିନମ୍ର ମୁଖଛବି ବର୍ତ୍ତମାନ ସୁଦ୍ଧା ମୋର ମନେପଡ଼େ । ରାଧାନାଥଙ୍କ ସହଧର୍ମିଣୀ ଚରଣମଣି ଦେବୀଙ୍କ ନିକଟକୁ ଗଲେ, ପିତା ଆଗେ ତାଙ୍କ ପାଦ ବନ୍ଦନା କରି ପରେ ବସୁଥିଲେ । ସେ ମୋର ବାପା ଓ ମାଙ୍କୁ ପୁତ୍ର ଓ ପୁତ୍ରବଧୂ ରୂପେ ଦେଖୁଥିଲେ । ଆମ୍ଭମାନଙ୍କ ସହିତ ମଧ୍ୟ ନାତି-ନାତୁଣୀ ସମ୍ପର୍କରେ କେତେ ହସ ଥଟ୍ଟା ଆମୋଦ କରୁଥିଲେ । ଏମାନଙ୍କ ଜ୍ୟେଷ୍ଠପୁତ୍ର ଶଶିଭୂଷଣ (ଡାକନାମ ମଧୁ) ଆଜୀବନ ଏହି ପାରିବାରିକ ସମ୍ପର୍କ ରକ୍ଷା କରି ଆସିଅଛନ୍ତି । ମଧୁସୂଦନଙ୍କ ପ୍ରତି ଶଶିବାବୁଙ୍କର ଯେଉଁ ପ୍ରଗାଢ଼ ଶ୍ରଦ୍ଧା ଥିଲା, ତାହା ତାଙ୍କ ରଚନା ମଧ୍ୟରେ 'ଉତ୍କଳ ସାହିତ୍ୟ' ପତ୍ରିକାରେ ବହୁଥର ପ୍ରକାଶିତ ହୋଇଅଛି ।

୧୯୦୮ ଖ୍ରୀଷ୍ଟାବ୍ଦ ଅପ୍ରେଲ ୧୬ ତାରିଖ ରାତିରେ କଟକରେ ରାଧାନାଥ ରାୟ ପରଲୋକ ଗମନ କଲେ । ଅପ୍ରେଲ ୧୭ ତାରିଖ ଶୁକ୍ରବାର, ପୁରୀରେ ଉତ୍କଳ ସମ୍ମିଳନୀର ପଞ୍ଚମ ଅଧିବେଶନ; ଗୁଡ଼ଫ୍ରାଇଡ଼େ ଛୁଟୀ ଥିବାରୁ

ସମ୍ମିଳନୀରେ ଯୋଗ ଦେବାପାଇଁ ମଧୁସୂଦନ କଟକରୁ পୁରୀ ଯାଇଥିଲେ । ୧୭ ତାରିଖ ପ୍ରାତଃକାଳରେ ରାଧାନାଥଙ୍କ ବିୟୋଗ ବାର୍ତ୍ତା ସମଗ୍ର ପୁରୀ ଟାଉନରେ ବ୍ୟାପିଗଲା । ମଧୁସୂଦନ ଏ ସମ୍ବାଦ ପାଇ ଗୋଟିଏ ଘରେ ଦୁଆର ବନ୍ଦ କରି ପଡିରହିଲେ । ସେଦିନ ଆଉ ସେ ଘରୁ ବାହାରି ନାହାନ୍ତି, ସମ୍ମିଳନୀରେ ମଧ୍ୟ ଯୋଗଦେଇ ନାହାନ୍ତି । ପରଦିନ ସେ ଶଶୀଭୂଷଣ ରାୟଙ୍କୁ (ରାଧାନାଥଙ୍କ ଜ୍ୟେଷ୍ଠପୁତ୍ର) ଯେଉଁ ପତ୍ର ଲେଖିଥିଲେ, ତାହା ନିମ୍ନରେ ଉଦ୍ଧୃତ ହେଲା ।

ବନ୍ଧୁ !

"ମୁଁ ଶୋକ ସମ୍ବାଦ ପାଇ ବଜ୍ରାହତ-ଭୂମି ଏଠାରେ ପଡିରହିଛି । ସେ ମୋର କ'ଣ ନଥିଲେ ! ହାୟ, ଅନ୍ତିମକାଳରେ ତାଙ୍କ ପାଦପଦ୍ମରେ ଏ ମସ୍ତକ ରଖିପାରିଲି ନାହିଁ । ଅଧମ ହତଭାଗ୍ୟ ପାପୀ ମୁଁ, ସେ ପାଦସ୍ପର୍ଶ ମୋ ଭାଗ୍ୟରେ ଘଟିଲା ନାହିଁ ।

ମା'ଙ୍କ କଥା ଭାବି ଓ ତୁମ କଥା ଭାବି ଅତ୍ୟନ୍ତ ଦୁଃଖରେ ଅଛି । ଜନନୀ ବୋଧହୁଏ ବାପାଙ୍କୁ ଶେଷ ସମୟରେ ଦେଖିପାରି ନାହାନ୍ତି । ଆହା ! ତାଙ୍କ ପ୍ରାଣରେ କି ଅବସ୍ଥା ହୋଇଥିବ । ଏ ବିଷମ କାଳରେ ପରମେଶ୍ୱର ପ୍ରଭୁଙ୍କ ବିନା କିଏ ଆଉ ସାନ୍ତ୍ୱନା ଦେଇପାରିବ ? ସେ ଏ ସଙ୍କଟକାଳରେ ତୁମ୍ଭମାନଙ୍କ ଶୋକଦଗ୍ଧ ପ୍ରାଣକୁ ଶୀତଳ କରନ୍ତୁ ଓ ତୁମ୍ଭମାନଙ୍କର ଚିର ସହାୟ ହୁଅନ୍ତୁ ।

ପରମେଶ୍ୱର ପରମାତ୍ମା ବାପାଙ୍କ ଆତ୍ମାକୁ ତାଙ୍କର ସେହି ପରମାଭୟ ଶାନ୍ତିମୟ ପାଦପଦ୍ମର ଛାୟାରେ ନିରନ୍ତର ରକ୍ଷା କରନ୍ତୁ ।

ଓଁ ଶାନ୍ତିଃ ଶାନ୍ତିଃ ହରି ଓଁ ।

ମଧୁସୂଦନ"

ଅବିଳମ୍ବେ ମଧୁସୂଦନ ଯେତେବେଳେ କଟକ ଫେରିଆସିଲେ, ମୁଁ ସେତେବେଳେ ପିତ୍ରାଳୟରେ ଥାଏ । ରାଧାନାଥଙ୍କ ମୃତ୍ୟୁ ପିତୃଦେବଙ୍କୁ କିପରି ଶୋକାହତ କରିଥିଲା ତାହାର ଅନୁପମ ପ୍ରତିଛବି ପରବର୍ତ୍ତୀକାଳରେ ତାଙ୍କର ରଚିତ "ରାଧାନାଥ ବିୟୋଗ" ନାମକ କବିତାର ନିମ୍ନୋକ୍ତ ଦୁଇ ପଂକ୍ତିରେ ଅଭିବ୍ୟକ୍ତ ହେବାର ଦେଖିଥିଲି :—

ଶୋକେ ମୂଢ଼ ମୂର୍ଚ୍ଛାଭୂତ ସ୍ତବ୍ଧ ଶବ୍ଦହୀନ
ସନ୍ତାପମରୁରେ ବାଣୀ-ନର୍ଝର ବିଲୀନ ।

ଗୁରୁ ଶିଷ୍ୟଙ୍କ ସମ୍ପର୍କ ଯେ କେତେ ମଧୁର, କେତେ ଗମ୍ଭୀର ଓ ମର୍ମସ୍ପର୍ଶୀ ହୋଇପାରେ, ତାହା ଉକ୍ତ କବିତାଟିର ନିମ୍ନୋଦ୍ଧୃତ ପଂକ୍ତି ସମୂହରେ ସୁପରିସ୍ଫୁଟ :—

କବି ମାତ୍ର ରାଧାନାଥ ସାଧାରଣଙ୍କର
କିନ୍ତୁ ଦେବୀ, ଜାଣୁ ତୁହି କି ଥିଲେ ମୋହର !
କୈଶୋରର ଶିକ୍ଷାଗୁରୁ, ସଦା ସୁବତ୍ସଳ,
ଯୌବନ୍ରୁ ପ୍ରାଣ-ବନ୍ଧୁ ଏକାନ୍ତ ସରଳ ।
ସାହିତ୍ୟ-ସାଧନା କ୍ଷେତ୍ରେ ଶିକ୍ଷାଦାତା ସଖା,
ଜୀବନେ ସଂସାରଧାମେ ନିଃସ୍ୱାର୍ଥ ତତ୍ପର
ମହୋତ୍ତମ ହିତକାଂକ୍ଷୀ ଥିଲେ ସେ ମୋହର ।
ପିତା, ମାତା, ଗୁରୁ, ସଖା ଯେଙ୍କେ ଏକାଧାରେ
ଲଭିଥିଲି ମାଗୋ ତାଙ୍କୁ ପାଇ ତୋ କୃପାରେ ।

ସେ ଯେ ରାଧାନାଥଙ୍କୁ ପିତା, ମାତା, ଗୁରୁ, ସଖା ବୋଲି ଲେଖିଅଛନ୍ତି, ଏହା ତାଙ୍କ ଅନ୍ତର ଉପଲବ୍‌ଧିର ଅକପଟବାଣୀ । ରାଧାନାଥଙ୍କ ବିୟୋଗରେ ପିତୃଦେବ ମଧ୍ୟ ପୁତ୍ରତୁଲ୍ୟ ଅଶୌଚ ପାଳନ କରିଥିଲେ ।

ଫକୀର ମୋହନ, ରାଧାନାଥ ଓ ମଧୁସୂଦନ ସମସାମୟିକ ଏହି ତିନିଜଣ ଆଧୁନିକ ଓଡ଼ିଆ-ସାହିତ୍ୟର ସ୍ରଷ୍ଟା ବୋଲି ଓଡ଼ିଆ-ସାହିତ୍ୟର ଇତିହାସରେ ଉଲ୍ଲେଖିତ ହୋଇ ଆସୁଅଛି । ଉତ୍କଳର ସୁଯୋଗ୍ୟ ସାହିତ୍ୟିକଗଣ ସେ ବିଷୟରେ ଉପଯୁକ୍ତ ଭାବେ କହିପାରିବେ । ମୁଁ କେବଳ ନିଜେ ଏମାନଙ୍କୁ ଯେତେ ଟିକିଏ ଦେଖିଅଛି ଓ ପିତୃଦେବଙ୍କ ସହିତ ଏମାନଙ୍କର ଯେଉଁ ପ୍ରୀତିର ଯୋଗ ଦେଖିଅଛି, ତାହାହିଁ କହିବାର ଚେଷ୍ଟା କରୁଅଛି ମାତ୍ର ।

ଫକୀର ମୋହନ ଆମ୍ଭମାନଙ୍କର ପିତୃଦେବଙ୍କର ବୟୋଜ୍ୟେଷ୍ଠ । ଆମ୍ଭେମାନେ ବାଲ୍ୟକାଳରୁ ତାହାଙ୍କୁ ବଡ଼ବାପାଙ୍କ ପରି ଭକ୍ତିଶ୍ରଦ୍ଧା କରି

ଆସିଅଛୁ । ସେହି ଦୀର୍ଘାୟତ ଦେହ, ହାସ୍ୟ ପ୍ରଫୁଲ୍ଲ ମୁଖଶ୍ରୀ ଓ ଉଚ୍ଚକଣ୍ଠର ଆହ୍ୱାନ ଆଜି ମଧ୍ୟ ସତେ ଯେପରି ସ୍ମୃତିରେ ଉଜ୍ଜ୍ୱଳ ହୋଇ ରହିଅଛି । ବାପାଙ୍କର କୌଣସି ନୂତନ ରଚନା ପ୍ରକାଶିତ ହେଲେ, ଫକୀର ମୋହନ ତାହା ଦେଖି, ବାପାଙ୍କ ପାଖକୁ ଆସି ଆନନ୍ଦରେ କେତେ ଯେ ଧନ୍ୟ ଧନ୍ୟ କରୁଥିଲେ, ସେସବୁ ଦୃଶ୍ୟ ଯେପରି ଏବେବି ଆଖି ଆଗରେ ଭାସୁଅଛି ।

ବାପା 'ବସନ୍ତ ଗାଥା' କବିତା-ପୁସ୍ତକରେ ଏହାଙ୍କ ସମ୍ବନ୍ଧରେ ଉଲ୍ଲେଖ କରିଛନ୍ତି—ଆଦିକବି ବାଲ୍ମୀକି ଓ ମହର୍ଷି ଦ୍ୱୈପାୟନଙ୍କ ବିଶ୍ୱଜୟୀ ବୀଣା ଏହାଙ୍କ ହସ୍ତରେ ଧୃତ ଏବଂ ଏହି ବୀଣାର ସ୍ୱର ଲହରୀ ଉତ୍କଳକୁ ଅମୃତପ୍ଲାବିତ କରୁଅଛି—

ସରଳ ତରଳ ତବ ସଙ୍ଗୀତ-ତରଙ୍ଗେ
ହରଷେ ଭସାଅ କବି ନାନା ରସ ରଙ୍ଗେ ।

ଉତ୍କଳ-ଧରଣୀ ଜନ-ହୃଦୟ-ହରଣୀ
ଧନ୍ୟ ହେଉ ବିଶ୍ୱବରେ ତବ ସୁଲେଖନୀ ।

ମୋର ଭକ୍ତିଭାଜନ ଦଦେଇଶ୍ୱଶୁର-ସତ୍ୟନିଷ୍ଠ, ତେଜସ୍ୱୀ, ବ୍ରହ୍ମଣ୍ୟ ତେଜର ପ୍ରତୀକ, ପଣ୍ଡିତ ହରିନାଥ ଭଟ୍ଟାଚାର୍ଯ୍ୟ ମହାଶୟ (ସେ ଈଶ୍ୱରଚନ୍ଦ୍ର ବିଦ୍ୟାସାଗର ମହାଶୟଙ୍କ ସମସାମୟିକ ଓ ତାଙ୍କ ବନ୍ଧୁ ଥିଲେ) ଜଗନ୍ନାଥ-ଦର୍ଶନ ପାଇଁ ଓଡ଼ିଶାକୁ ଯାଇ ମୋର ପିତାଙ୍କ ସହିତ ପରିଚିତ ହୋଇଥିଲେ । ଓଡ଼ିଶାରେ ମୋ ପିତୃଦେବଙ୍କ ଜୀବନର ପ୍ରଭାବ ଦେଖି ସେ ଏପରି ଚମତ୍କୃତ ହୋଇଥିଲେ ଯେ, ସେ ଫେରିଆସିବା ଉତ୍ତାରେ ମୋତେ ଡାକି କହିଥିଲେ, 'ବଙ୍ଗ ଦେଶରେ ଜଣେ ବିଦ୍ୟାସାଗର ଦେଖିଥିଲି, ଏଥର ଓଡ଼ିଶାର ବିଦ୍ୟାସାଗର ଦେଖିଆସିଲି । ମୁଁ ତୁମ ପିତାଙ୍କୁ ଦ୍ୱିତୀୟ ବିଦ୍ୟାସାଗର ଆଖ୍ୟା ହେଉଛି ।"

ବଙ୍ଗ ଦେଶରେ ରାମଚନ୍ଦ୍ର ଲାହିଡ଼ୀ ମହାଶୟଙ୍କ ସାଧୁତା ସର୍ବଜନ-ବିଦିତ । ପୂର୍ବେ ଉଲ୍ଲିଖିତ ହୋଇଛି, ସୁକବି, ସୁରସିକ ଦ୍ୱିଜେନ୍ଦ୍ରଲାଲ ରାୟ ରାଜକାର୍ଯ୍ୟୋପଲକ୍ଷେ ଓଡ଼ିଶାକୁ ଆସି ମୋ ପିତୃଦେବଙ୍କ ଗୃହରେ ଅତିଥି ହୋଇଥିଲେ । ସେ ମଧୁସୂଦନଙ୍କ ଚରିତ୍ର-ମାହାତ୍ମ୍ୟରେ ଏତେଦୂର ମୁଗ୍ଧ

ହୋଇଥିଲେ ଯେ, ସର୍ବଦା ମୁକ୍ତକଣ୍ଠରେ କହୁଥିଲେ "ମଧୁସୂଦନ ରାଓ ବ୍ରାହ୍ମସମାଜରେ ଦ୍ୱିତୀୟ ରାମଚନ୍ଦ୍ର ଲହରୀ ।"

ଜ୍ଞାନ, ପ୍ରେମ ଓ କର୍ମ ଏହି ତ୍ରିଧାରାରେ ମିଳିତ ଗୋଟିଏ ସୁସମଞ୍ଜସ ଜୀବନର ପରିଚୟ ସେ ତାଙ୍କ ପାରିବାରିକ ଜୀବନରେ ଦେଶ ଓ ସମାଜସେବା ମଧ୍ୟରେ ରଖିଯାଇଅଛନ୍ତି। ତାଙ୍କ ପ୍ରଗାଢ଼ ସ୍ୱଦେଶଭକ୍ତି 'ଉତ୍କଳ ଗାଥା' ପୁସ୍ତକର କବିତା ଓ ଅନ୍ୟାନ୍ୟ ସଙ୍ଗୀତରେ ପ୍ରକାଶିତ । ଏହି ସମସ୍ତ ଗାଥା ଓ ସଙ୍ଗୀତ ଓଡ଼ିଶାର ଜନହିତକର କେତେ ଅନୁଷ୍ଠାନରେ ଗାନ କରାଯାଇ ସମସ୍ତଙ୍କୁ ପ୍ରେରଣା ଦେଇ ଆସୁଅଛି । ମୋର ମନେଅଛି, ଉତ୍କଳ-ମିଳନ-ମେଳା ପ୍ରବର୍ତ୍ତକ ଉତ୍କଳଗୌରବ ମଧୁସୂଦନ ଦାଶ ମହାଶୟଙ୍କ ପ୍ରବର୍ତ୍ତନାରେ କଟକ ନଗରରେ ୧୯୦୩ ଖ୍ରୀଷ୍ଟାବ୍ଦର ଡିସେମ୍ବର ମାସରେ, 'ଉତ୍କଳ ସମ୍ମିଳନୀ'ରେ ଯେଉଁ ପ୍ରଥମ ଅଧିବେଶନ ହୋଇ-ଥିଲା,ସେହି ସଭାରେପିତୃଦେବଙ୍କ ରଚିତ ସ୍ୱଦେଶୀ ସଙ୍ଗୀତ ଶ୍ରବଣ କରି, କଟକର ବଙ୍ଗାଳୀ ଜମିଦାର, ସର୍ବଜନମାନ୍ୟ ବୃଦ୍ଧ ଲକ୍ଷ୍ମୀନାରାୟଣ ଚୌଧୁରୀ ମହାଶୟ ସଭାରେ କାର୍ଯ୍ୟାନ୍ତେ ପିତୃଦେବଙ୍କୁ ଆଲିଙ୍ଗନ କରି ଆଶୀର୍ବାଦ କରିଥିଲେ ।

ଏହାଙ୍କ ରଚିତ ସ୍ୱଦେଶର ଗୌରବସୂଚକ କେତେ ଗାଥା ଉତ୍କଳ ସନ୍ତାନମାନଙ୍କୁ ଦେଶପ୍ରୀତିରେ ଉଦ୍‌ବୁଦ୍ଧ କରିଅଛି । କିନ୍ତୁ ଏହି ମହୋଦାର ପ୍ରାଣ ସଙ୍କୀର୍ଣ୍ଣତାର ଓ ପ୍ରାଦେଶିକତାର ଊର୍ଦ୍ଧ୍ୱରେ ଥାଇ, ସ୍ୱଦେଶିକତା ସହିତ ଯେ ସାର୍ବଜନୀନତାର ବିରୋଧ ନାହିଁ—ଏହି ବାଣୀ ଶୁଣାଇ ଯାଇଛନ୍ତି :
'ଉତ୍କଳ ଜନନୀ ପ୍ରତି' କବିତାରେ—

ଶୁଣ ମା, ଶୁଣ ମା ବାରେ ଢ଼େଇରି ଶ୍ରବଣ,
ବିପୁଳ ବିଶ୍ୱର ମଧୁମୟ ଆମନ୍ତ୍ରଣ ।
ଓଡ଼ିଆ, ଓଡ଼ିଆ କ୍ଷୁଦ୍ର ହୁରି ଛୁଡ଼ି କ୍ଷଣେ
ପଶନ୍ତୁ ମା, ତୋ ସନ୍ତାନେ ବିଶ୍ୱ-ସଭାଙ୍ଗନେ;
ନିଖିଳ ମାନବ ହୃଦେ ମିଶାଇ ହୃଦୟ,
ଗାଆନ୍ତୁ ବିଶ୍ୱାସଭାରେ-ଜୟ ସତ୍ୟ ଜୟ ।

'ନବଯୁଗ' କବିତାରେ—

ପୃଥିବୀ ଡ଼ାକଇ ସକଳେ ଶୁଣ ଭାରତବାସୀ
ମୋ ଜନନୀ ତୁମ୍ଭ ଜନନୀ, ହୁଅ ପ୍ରେମେ ବିଶ୍ୱାସୀ ।

× × ×

କୋଟି କୋଟି କଣ୍ଠ ମିଳାଇ ଗାଅ ଆନନ୍ଦେ ମାତି
ଏକମାତ୍ର ବିଶ୍ୱ ବିଧାତା, ଏକ ମାନବ ଜାତି ।

## (ଜ) ଜନସାଧାରଣଙ୍କ ସହିତ ମଧୁସୂଦନଙ୍କ ସୌହାର୍ଦ୍ଦ୍ୟପୂର୍ଣ୍ଣ ବ୍ୟବହାର

ବହୁ ଦରିଦ୍ର ଶ୍ରମିକ ପରିବାର ନାନାବିଧ କର୍ମସୂତ୍ରରେ ଆମ୍ଭମାନଙ୍କ ପରିବାର ସହିତ ଯୁକ୍ତ ଥିଲେ । ଗଉଡ଼-ଗଉଡୁଣୀ, ଭଣ୍ଡାରି-ଭଣ୍ଡାରୁଣୀ, ଧୋବା-ଧୋବଣୀ, ଦରିଦ୍ର ପ୍ରତିବେଶୀ ପ୍ରଭୃତି କେତେ ଲୋକଙ୍କ ମୁହଁ ଆଜି ମନେପଡ଼େ । ଶ୍ଚୋଟ ଥିବାବେଳେ ଦେଖିଛି, ବର୍ଷୀୟସୀ ଗଉଡୁଣୀ (ତାର ନାଁ ମୁଗୀ ଥିଲା) ବାପା ଓ କକାଙ୍କୁ ପୁଅ ବୋଲି କହୁଥିଲା ଏବଂ ରାମ-ଲକ୍ଷ୍ମଣ ବୋଲି ଡାକୁଥିଲା । ଓଡିଶାରେ 'ନୂଆଁ' ନାମରେ ଯେଉଁ ଶୁଭଦିନ ପାଳିତ ହୁଏ, (ବଙ୍ଗ ଦେଶରେ ଜମିଦାରମାନଙ୍କ ଦ୍ୱାରା ଅନୁଷ୍ଠିତ 'ପୁଣ୍ୟାହ' ପର୍ବର ଅନୁରୂପ ଏହା ଗୋଟିଏ ବାର୍ଷିକ ଅନୁଷ୍ଠାନ) ସେଦିନ ଖୁବ୍ ସକାଳେ ସେ ହାଣ୍ଡିଏ ଦହି ନେଇ ଆସି ଏହି ଦୁଇ ଭାଇଙ୍କ କପାଳରେ ଟିପା ଦେଇ ଯାଉଥିଲା । ସେ ମୋ ଭାଇ ଜୟନ୍ତ ବାବୁଙ୍କ ଜନ୍ମ ଆଗରୁ ଧବଳେଶ୍ୱର ମହାଦେବଙ୍କ ପାଖରେ ମାନସିକ କରିଥିଲା ଯେ, ମଧୁସୂଦନଙ୍କର ପୁତ୍ରସନ୍ତାନ ହେଲେ, ସେ ପ୍ରତିବର୍ଷ କାର୍ତ୍ତିକ ପୂର୍ଣ୍ଣିମାରେ ଧବଳେଶ୍ୱର ମହାଦେବଙ୍କୁ ପୂଜା ଦେବ । ଯେତେଦିନ ବଞ୍ଚିଥିଲା, ପ୍ରତ୍ୟେକ ବର୍ଷ ସେ ଏହି ମାନସିକ ପାଳନ କରୁଥିଲା । ମୁଗୀର ମୃତ୍ୟୁ ପରେ ମଧ୍ୟ ତାର ଜ୍ୟେଷ୍ଠ ଝିଅ ରାଣୀ ଯେତେଦିନ ବଞ୍ଚିଥିଲା ଏହି ମାନସିକ ପାଳନ କରିଥିଲା । ମୁଗୀର ପୌତ୍ର ରଙ୍ଗିଆର କଟକରେ ଜଳଖିଆ ଦୋକାନ ଥିଲା । ସେ ମଧ୍ୟ ଆଜୀବନ ମୋ ପିତୃଗୃହ ସଙ୍ଗେ ଯୋଗ ରଖିଥିଲା ।

ନର୍ମାଲ ଟ୍ରେନିଂ ସ୍କୁଲରେ ଥିବାବେଳେ ନନ୍ଦ ବେହେରା ନାମରେ ଗୋଟିଏ ଚାକର ଥିଲା, ସେ ବୃଦ୍ଧ ଅସମର୍ଥ ହୋଇପଡ଼ିବାରୁ ଯେତେବେଳେ ନିଜ ଘରକୁ ଗଲା, ମୋ ମା'ଙ୍କ ଇଚ୍ଛାନୁସାରେ ତାକୁ ମାସିକ ୩ ଟଙ୍କା ବୃତ୍ତି ଆଜୀବନ ଦିଆହୋଇଥିଲା । ସେ ମାଂସ ଖାଇବାକୁ ଭଲ ପାଉଥିଲା ବୋଲି ଯେତେବେଳେ ସେ ଗାଁରୁ ଆସୁଥିଲା, ଆମ୍ଭମାନଙ୍କ ଖୁଡ଼ୀ (ଜଗନ୍ନାଥ ବାବୁଙ୍କ ପତ୍ନୀ ରମାବାଈ) ପ୍ରାୟ ମାଂସ ରାନ୍ଧି ତାକୁ ଖୁଆଉଥିଲେ ।

ମଧୁସୂଦନଙ୍କ ଭୁବନେଶ୍ୱର ନିକଟବର୍ତ୍ତୀ ଯାଗମରା ବଗିଚାରେ ଗୋପୀ ସିଂ ନାମରେ ଜଣେ ଲୋକ ରହି ଘର, ବଗିଚା, ଜମି ପ୍ରଭୃତି ଦେଖାଶୁଣା କରୁଥିଲା । ସେ ବୃଦ୍ଧ ହୋଇ କାମ କରିବାକୁ ଅସମର୍ଥ ହେବାରୁ ମୋ ମା'ଙ୍କ ଇଚ୍ଛାନୁସାରେ ତାହାକୁ ମଧ୍ୟ ମାସିକ ୭ ଟଙ୍କା ବୃତ୍ତି ଆଜୀବନ ଦିଆ ହୋଇଥିଲା ।

ଆମ୍ଭମାନଙ୍କ ପିଲାଦିନରୁ ଆମେ ଦେଖିଆସିଛୁ ହରି ମିସ୍ତ୍ରୀକୁ କାଳୀଗଳିରେ (ମୋ ପିତ୍ରାଳୟରେ) ପକ୍କା ଘରର ଭିତ୍ତି ସ୍ଥାପନଠାରୁ ଆରମ୍ଭ କରି ତା' ହାତରେ ଆଜୀବନ ଏହି ଘରର କେତେ ପରିବର୍ତ୍ତନ-ପରିବର୍ଦ୍ଧନ ସମ୍ପନ୍ନ ହୋଇଅଛି । କେବଳ ସେ ନୁହେଁ, ତା' ପୁଅ ଅପର୍ତ୍ତି ମଧ୍ୟ ଏହି ଘରର କାମ ସବୁ ବରାବର କରିଆସିଅଛି । କଟକ 'ସତୀ ଚଉଁରା' ନାମକ ଶ୍ମଶାନ ଘାଟରେ (କାଠଯୋଡ଼ି ନଦୀ ତୀରରେ) ମୋ ବାପା-ମା'ଙ୍କର ଯେଉଁ ସମାଧିସ୍ତମ୍ଭ ଅଛି, ତାହା ମଧ୍ୟ ଏହି ଅପର୍ତ୍ତି ମିସ୍ତ୍ରୀ ହାତରେ ଗଢ଼ା । କେତେ ବର୍ଷ ହେଲା ଏହାର ମୃତ୍ୟୁ ହୋଇଅଛି; କିନ୍ତୁ ବର୍ତ୍ତମାନ ସୁଦ୍ଧା ଏହାର ପରିବାର ସହିତ ମୋ ପିତୃ-ପରିବାରର ଯୋଗ ଠିକ୍ ବଜାୟ ରହିଅଛି ।

ମନେପଡ଼େ, ବାପା ନର୍ମାଲ ଟ୍ରେନିଂ ସ୍କୁଲର ଅଧ୍ୟକ୍ଷ ଥିଲାବେଳେ ଫକୀର ବେହେରା ନାମରେ ଗଉଡ଼-ଜାତିର ଗୋଟିଏ ଚାକର ଥିଲା । ତା' ସ୍ତ୍ରୀର ମୃତ୍ୟୁ ହେବାରୁ, ଏକମାତ୍ର ବାଳକ ପୁଅଟିକୁ ଆଣି ସେ ନିଜ ପାଖରେ ରଖିଥିଲା । ସେହି ପୁଅଟି ୧୦।୧୨ ବର୍ଷ ବୟସରେ ହଇଜାରେ ମରିଗଲା । ଏହି ଶୋକାର୍ତ୍ତ ଫକୀର ବେହେରାକୁ କୁଣ୍ଢାଇ ଧରି ବାପା କାନ୍ଦୁଥିଲେ— ଏହିପରି କେତେ ଦୃଶ୍ୟ ମନେପଡ଼େ ।

କଟକରେ କାଠଯୋଡ଼ି ନଦୀର ଆରପାରି ଗ୍ରାମର ଗୋଟିଏ କୃଷକ ପରିବାରର ଜଣେ ଯୁବତୀ ବଧୂ ଶ୍ୱଶୁର ଘରର ଗଞ୍ଜଣାରେ ଅତିଷ୍ଠ ହୋଇ କୋଳର ଶିଶୁକୁ ଛାଡ଼ି କାନ୍ଦି କାନ୍ଦି ନଦୀ ପାରି ହୋଇ କଟକ ଚାଲିଆସିଲା । ଘଟଣାକ୍ରମେ ସେହିଦିନ ମଧୁସୂଦନଙ୍କ ଜଣେ ଘନିଷ୍ଠ ପ୍ରବୀଣ ବନ୍ଧୁ ତାହାକୁ ପାଇ ମୋ ମା'ଙ୍କ ନିକଟକୁ ଘେନି ଆସିଲେ । ମା' ସେହି ଯୁବତୀଟିର ପାଖରୁ ସମସ୍ତ ବିଷୟ ଶୁଣି ବାପାଙ୍କୁ ଜଣାଇବାରୁ, ବାପା ଅସ୍ଥିର ହୋଇଉଠିଲେ । ବଧୂଟିର ପାଖରୁ ତା' ଶ୍ୱଶୁର-ପରିବାରର ବିଷୟ ଜାଣି ତାକୁ ସଙ୍ଗରେ ନେଇ

ନଦୀ ପାର ହୋଇ ସେହି ଗ୍ରାମକୁ ଗଲେ ଏବଂ ବଧୂଟିର ଶ୍ୱଶୁରକୁ ଡାକଆଣି ଓ ବୁଝାଇ ବଧୂଟିକୁ ତାର ଶ୍ୱଶୁର ଘରେ ରହିବା ବ୍ୟବସ୍ଥା କରି ଆସିଲେ । ବାପାଙ୍କ ପ୍ରତି ଗ୍ରାମର ଅଶିକ୍ଷିତମାନଙ୍କର ମଧ୍ୟ ଏପରି ଭକ୍ତି ଓ ବିଶ୍ୱାସ ଥିଲା ଯେ, ସେ କାଳରେ ଯେତେବେଳେ ଓଡ଼ିଶାରେ ଯୁବତୀ ବଧୂ ଓ କନ୍ୟାର ଗୃହତ୍ୟାଗ ଅମାର୍ଜନୀୟ ଅପରାଧ ବୋଲି ସେମାନଙ୍କ ସମାଜରେ ଓ ଗୃହ-ପରିବାରରେ ଗଣ୍ୟ ହେଉଥିଲା ଏବଂ ସେହି ହେତୁ ଯୁବତୀଟିକୁ ଜାତିଚ୍ୟୁତ ଓ ଗୃହ-ତାଡ଼ିତ ହେବାକୁ ପଡ଼ୁଥାଆନ୍ତା, ସେତେବେଳେ କେବଳ ବାପାଙ୍କ କଥାରେ ଏହି ବଧୂଟିକୁ ତାର ଶ୍ୱଶୁର ଗୃହ ଓ ସେମାନଙ୍କ ସମାଜ ଅମ୍ଳାନ ଚିତ୍ତରେ ଗ୍ରହଣ କରିଥିଲା । ପରବର୍ତ୍ତୀ କାଳରେ ଏହି ବଧୂଟିର ଶ୍ୱଶୁର ବାପାଙ୍କ ପାଖକୁ କେବେ କେବେ ଆସିବାକୁ ଆପଣ ଆମ୍ଭମାନଙ୍କୁ ବଖାଇ ଦେଇଛନ୍ତି, ମୋ ସଂସାର ରକ୍ଷା କରିଛନ୍ତି, କହି କୃତଜ୍ଞତା ଜଣାଇଛନ୍ତି ।

## (୯) ମଧୁସୂଦନଙ୍କ ଅତିଥି-ସତ୍କାର

ପିତୃଦେବଙ୍କ ଗୃହରେ ଅତିଥି-ସତ୍କାର କଥା ବର୍ତ୍ତମାନ ସୁଦ୍ଧା ଅନେକଙ୍କ ମନରେ ଥାଇପାରେ । କେତେ ଯେ ଅତିଥି ଜାତି ଧର୍ମ ନିର୍ବିଶେଷରେ ନିଜ ନିଜ ପ୍ରୟୋଜନରେ ଆସି ଦିନେ ଦୁଇ ଦିନରୁ ଏକମାସ ଦୁଇମାସ ପର୍ଯ୍ୟନ୍ତ ବାସ କରି ଯାଆନ୍ତି । କେତେ ଜ୍ଞାନୀ, ଗୁଣୀ, ସୁଲେଖକ, କବି ତଥା ଧାର୍ମିକ ବ୍ୟକ୍ତିମାନଙ୍କ ଆଗମନରେ ଓ ସେମାନଙ୍କ ସଙ୍ଗ ପ୍ରଭାବରେ ଏ ଗୃହରେ ଏକ ନିର୍ମଳ ପବିତ୍ର ବାୟୁ ପ୍ରବାହିତ ହେଉଥିଲା । କେତେ ସୁଧୀ ଓ ସୁଲେଖକଙ୍କ ଆଳାପ ଆଲୋଚନାରେ ବହୁ ସମୟ ଏ ଗୃହ ମୁଖରିତ ହେଉଥାଏ । ସୁକବି, ହାସ୍ୟରସିକ ଦ୍ୱିଜେନ୍ଦ୍ରଲାଲ ରାୟ କର୍ମୋପଲକ୍ଷେ ଥରେ କଟକ ଆସି ଏ ଗୃହରେ ଆତିଥ୍ୟ ଗ୍ରହଣ କରିଥିଲେ । ତାଙ୍କ ଦେଶଭକ୍ତିସୂଚକ ତଥା ବିଦ୍ରୂପାତ୍ମକ କବିତା ଓ ସଙ୍ଗୀତ ଶୁଣିବା ପାଇଁ ଆମ୍ଭମାନଙ୍କ ଗୃହରେ ସଙ୍ଗୀତ-ସଭା ବସୁଥିଲା । ସେଥିରେ କଟକର ଶିକ୍ଷିତମାନଙ୍କର ସମାବେଶ ହେଉଥିଲା । ମନେଅଛି, ଏହିପରି ସଙ୍ଗୀତ ସଭାରେ ଭକ୍ତିଭାଜନ ଆଚାର୍ଯ୍ୟ ଯୋଗେଶ ଚନ୍ଦ୍ର ରାୟ ବିଦ୍ୟାନିଧି ମହାଶୟ ହାରମୋନିୟମ ବଜାଇବାର ଭାର ନେଉଥିଲେ । ଏହିପରି ମୋ ପୁଣ୍ୟମୟ ପିତୃଗୃହର ଉତ୍ସବମୁଖର କେତେ ସ୍ମୃତି ଏହି ବୃଦ୍ଧାବସ୍ଥାରେ ମଧ୍ୟ ଆମ୍ଭମାନଙ୍କ ମନରେ କେତେ ଆନନ୍ଦ ଆଣି ଦେଉଛି । ବ୍ରାହ୍ମସମାଜର କେତେ ପ୍ରଚାରକ ଓ ଦରିଦ୍ର ସାଧକଙ୍କ ବ୍ରହ୍ମନାମ

କୀର୍ତ୍ତନ ଓ ମର୍ମସ୍ପର୍ଶୀ ଉପାସନା ଆମ୍ଭମାନଙ୍କ ପ୍ରାଣକୁ କପରି ଊର୍ଦ୍ଧ୍ୱମୁଖୀ କରି ଦେଉଥିଲା ! ଏହା ମୂଳରେ ଥିଲା-ପିତୃଦେବଙ୍କ ମହୋଦାର ପ୍ରାଣର ଅପୂର୍ବ ପ୍ରେମ ଓ ମାତୃଦେବୀଙ୍କ ନୀରବ ସେବା, ଯାହା ସର୍ବଦା ନିଜକୁ ପଶ୍ଚାତ୍‌ରେ ରଖି ଅକ୍ଳାନ୍ତ ଭାବରେ, ପ୍ରସନ୍ନ ବଦନରେ କାର୍ଯ୍ୟ କରିଯାଇଛି । ଏହା ବ୍ୟତୀତ ରକ୍ତ ସମ୍ପର୍କିତ ଆତ୍ମୀୟମାନଙ୍କ ରୋଗ-ବ୍ୟାଧିରେ ଚିକିତ୍ସା ପ୍ରୟୋଜନରେ ଏବଂ ଅନ୍ୟାନ୍ୟ ନାନାବିଧ ପ୍ରୟୋଜନରେ ଆସିବା ଓ ରହିବା—ସେତ ନିତ୍ୟକର୍ମ ଥିଲା । ଏହାଛଡ଼ା କେତେ ଅନାତ୍ମୀୟ ମଧ୍ୟ ଏହି ଗୃହରେ ଆତ୍ମୀୟ ଅପେକ୍ଷା ଅଧିକ ସେବାଯତ୍ନ ପାଇ ଯାଇଛନ୍ତି ।

## (ଙ) ମଧୁସୂଦନଙ୍କ ବନ୍ଧୁପ୍ରୀତି

ମଧୁସୂଦନଙ୍କ ପ୍ରାଣସଖା ଦେବାତ୍ମା ପ୍ୟାରୀମୋହନ ଆଚାର୍ଯ୍ୟଙ୍କ କଥା ପୂର୍ବେ କହିଅଛୁ । ତାଙ୍କ ସହପାଠୀ ଓ ବାଲ୍ୟବନ୍ଧୁ-ଭଗବତୀଚରଣ, ବିପ୍ର ଚରଣ, ବଳରାମ ଦାସ ପ୍ରଭୃତିଙ୍କୁ ଆମ୍ଭେମାନେ ବହୁ ସମୟ ଦେଖିଅଛୁ । ଏମାନେ ଆମ୍ଭେମାନଙ୍କ କଟକ ଘରକୁ ଯେତେବେଳେ ଆସୁଥିଲେ, ସେତେବେଳେ ବନ୍ଧୁ-ସହବାସର ବିମଳ ଆନନ୍ଦରେ ଯେଉଁଭଳି ଦିନ କଟାଉ-ଥିଲେ ତାହା ସ୍ମରଣ କରି ମନ ଯେପରି ସେହି ଅତୀତକୁ ଜୀବନ୍ତ ଭାବରେ ଉପଲବ୍ଧି କରିବାକୁ ଚାହେଁ ।

ମାତ୍ର ଦୁଇ ସପ୍ତାହ ବ୍ୟବଧାନରେ ଭଗବତୀଚରଣ ଚଟ୍ଟୋପାଧ୍ୟାୟ ଓ ବିପ୍ର ଚରଣ ଗଞ୍ଜାମ ବ୍ରହ୍ମପୁରରେ ପରଲୋକ ଗମନ କଲେ । ମଧୁସୂଦନ ଏହି ସମ୍ବାଦ ଦେଇ ତାଙ୍କ ଦ୍ୱିତୀୟ ଜ୍ୱାଇଁ ପ୍ରିୟନାଥ ଭଟ୍ଟାଚାର୍ଯ୍ୟଙ୍କୁ ଓ ଦ୍ୱିତୀୟା କନ୍ୟା ଅବନ୍ତୀଙ୍କୁ ଯେଉଁ ଦୁଇଖଣ୍ଡ ପତ୍ର ଲେଖିଥିଲେ, ତାହାର କିୟଦଂଶ ନିମ୍ନରେ ଉଦ୍ଧୃତ ହେଲା ।

କଟକ
୨-୧-୧୯୦୭

ପ୍ରାଣାଧିକେଷୁ,

ଗତ ଦୁଇ ସପ୍ତାହ ମଧ୍ୟରେ ମୋର ଦୁଇଜଣ ପ୍ରିୟତମ ବନ୍ଧୁ ବିପ୍ରଚରଣ ଓ ଭଗବତୀ ଚରଣ ଏ ସଂସାରରୁ ଚାଲିଗଲେ, ତେଣୁ ଅତ୍ୟନ୍ତ ବ୍ୟଥିତ ଓ କାତର ଅଛୁ ।

କଟକ
୭-୧-୧୯୦୭

ମା ମୋର,

ପ୍ରାୟ ୧ ସପ୍ତାହ ହେଲା ଅତ୍ୟନ୍ତ କଷ୍ଟରେ ଦିନ କଟାଉଅଛି । ଭଲକରି କାମଧନ୍ଦା କରିପାରୁ ନାହିଁ । ସ୍ନାୟୁଶକ୍ତିର ବିଲକ୍ଷଣ ଅପଚୟ ହୋଇଅଛି । ମନମୁତାବକ ପତ୍ରାଦି ଲେଖିପାରୁନାହିଁ । ବିପ୍ର ଏବଂ ଭଗବତୀର ମୃତ୍ୟୁ ସମ୍ବାଦ ପାଇଥିବ । ସେମାନଙ୍କୁ ବିଶେଷକରି ବିପ୍ରକୁ ହରାଇ ଦୁଃସହ ଶୋକାଘାତ ପାଇଛି । ସାରଙ୍ଗଗଡ଼ର ସେହି ମାଉସୀ୧ ଗତକାଲି ପରଲୋକ ଗମନ କଲେ । ମୃତ୍ୟୁ ପୂର୍ବରୁ ସେ ଆମ୍ଭମାନଙ୍କୁ ଦେଖିବାକୁ ଚାହିଁଥିଲେ । କିନ୍ତୁ ଦୁର୍ଭାଗ୍ୟବଶତଃ ଟିକିଏ ଶୈଥିଲ୍ୟ ହେବାରୁ ଅତି ବିଳମ୍ବ ହୋଇଗଲା । ଆଉ ତାଙ୍କ ସଙ୍ଗେ ଦେଖା ହୋଇପାରିଲା ନାହିଁ । ହାୟ, ହାୟ ଟିକିଏ ଶୈଥିଲ୍ୟରେ କି ବିଷମୟ ଫଳ ଫଳେ ।

ଆମ୍ଭମାନଙ୍କ ପିତା ବ୍ରାହ୍ମସମାଜର ପ୍ରଚାରକ ନଥିଲେ । ସେ ସରକାରୀ କର୍ମଚାରୀ । ରାଜକାର୍ଯ୍ୟର ଗୁରୁଭାର ତାଙ୍କ ଉପରେ ନ୍ୟସ୍ତ । କିନ୍ତୁ ତାଙ୍କ ଜୀବନର ଆଦର୍ଶରେ ଯେଉଁସବୁ ଯୁବକ ଆକୃଷ୍ଟ ହୋଇ ଆସିଥିଲେ, ବ୍ରାହ୍ମ-ଧର୍ମର ବିଶୁଦ୍ଧଜୀବନବାର୍ତ୍ତା ଯେଉଁ କିଶୋର ଓ ଯୁବକମାନଙ୍କ ପ୍ରାଣକୁ ଉଦ୍‌ବୁଦ୍ଧ କରି, ଦେଶ ପ୍ରଚଳିତ ସାକାର ପୂଜା ମଧ୍ୟରେ ତୃପ୍ତ ରହିବାକୁ ଦେଇନଥିଲା, — ପିତା, ମାତା ଏବଂ ଆତ୍ମୀୟସ୍ୱଜନଙ୍କ ସ୍ନେହ ଓ ଆକୁଳତାକୁ ତଥା ବିଷୟ ସମ୍ପତ୍ତିର ଆକର୍ଷଣକୁ ତୁଚ୍ଛଜ୍ଞାନ କରି, ସମସ୍ତ ବାଧା-ବିଘ୍ନ ଏଡ଼ି ଯେଉଁମାନେ ବ୍ରାହ୍ମଧର୍ମ ଗ୍ରହଣ କରିଥିଲେ, ସେମାନଙ୍କର ଏହି ନିଦାରୁଣ ସଂଗ୍ରାମରେ ବାପା ଆଜୀବନ ସହାୟକ ଥିଲେ । ସେମାନେ ବାପାଙ୍କୁ ଯେଉଁ ଶ୍ରଦ୍ଧାଭକ୍ତି କରୁଥିଲେ, ନିଜ ସନ୍ତାନମାନଙ୍କ ଶ୍ରଦ୍ଧାଭକ୍ତି ତୁଳନାରେ ତାହା କିଛି ଅଳ୍ପ ନଥିଲା ।

---

୧) ମଧୁସୂଦନଙ୍କ ବିମାତା ତୁଳସୀ ବାଈଙ୍କ ଅଗ୍ରଜା ମଧ୍ୟମା ଭଗିନୀ ଯାଜପୁରରେ ପ୍ରହଲ୍ଲାଦ ଓ ବଧୂଦ୍ୱୟଙ୍କୁ ପଠାଇବା ବେଳେ ଭାଗୀରଥି ଏହାଙ୍କୁ ଅଭିଭାବିକା ରୂପେ ଏମାନଙ୍କ ସଙ୍ଗରେ ପଠାଇଥିଲେ । ସେ ଆଜୀବନ ମଧୁସୂଦନ ଓ ଜଗନ୍ନାଥଙ୍କୁ ନିଜ ସନ୍ତାନତୁଲ୍ୟ ଦେଖୁଥିଲେ । ସାରଙ୍ଗଗଡ଼ ବା ବାରଙ୍ଗରୁ କିଛି ସମୟ କଟକ ଆସି ସେ ଆମ୍ଭମାନଙ୍କ ପାଖରେ ରହୁଥିଲେ । ଆମ୍ଭମାନଙ୍କୁ ସେ ଅନେକ ଗଳ୍ପ-କାହାଣୀ ଶୁଣାଉ-ଥିଲେ । ଜେଜେମାଙ୍କ ସ୍ନେହାଦର ଆମ୍ଭେମାନେ ଏହାଙ୍କ ନିକଟରୁ ପାଇଅଛୁ ।

ସାଧୁଚରଣ ରାୟ, ବିଶ୍ୱନାଥ କର, ରଘୁନାଥ ସିଂହ, ଅକ୍ଷୟ କୁମାର ରାୟ ପ୍ରଭୃତିଙ୍କ କଥା ଏହି ସୂତ୍ରରେ ଉଲ୍ଲେଖଯୋଗ୍ୟ । ସାଧୁଚରଣ ମୋ ପିତାଙ୍କ ଜୀବଦ୍ଦଶାରେ ଅକାଳରେ ୧୮୯୮ ଖ୍ରୀଷ୍ଟାବ୍ଦରେ ଇହଧାମ ତ୍ୟାଗ କଲେ । ବିଶ୍ୱନାଥ କର ଓ ରଘୁନାଥ ସିଂହଙ୍କ ପରିବାର ସହିତ ଆମ ପରିବାର ଯୋଗ ରକ୍ତ ସମ୍ପର୍କ ଥିବା ଆତ୍ମୀୟମାନଙ୍କ ଅପେକ୍ଷା କୌଣସି ଅଂଶରେ କମ୍ ନଥିଲା । ପିତୃଦେବଙ୍କ ମୃତ୍ୟୁଶଯ୍ୟା ପାର୍ଶ୍ୱରେ ଶ୍ରଦ୍ଧେୟ ବିଶ୍ୱନାଥ କର ଆମ୍ଭମାନଙ୍କ ସଙ୍ଗେ ଦିନରାତି ଯେପରି ବ୍ୟାକୁଳ ଭାବରେ କଟାଇଅଛନ୍ତି, ତାଙ୍କର ସେହି ଉଦ୍‌ବେଗାକୁଳ ଦୃଷ୍ଟି ଓ ଶୋକକାତର ମୂର୍ତ୍ତିଟି ଆଜି ମଧ୍ୟ ମୋର ମାନସଚକ୍ଷୁରେ ସମୟେ ସମୟେ ଭାସିଉଠେ । ପିତୃଦେବଙ୍କ ମୃତ୍ୟୁପରେ 'ଉତ୍କଳ ସାହିତ୍ୟ' ପତ୍ରିକାର ଯେଉଁ ବିଶେଷ ସଂଖ୍ୟା (୧୩୦୨-ପୌଷ ଓ ମାଘ-ନବମ ଓ ଦଶମ ସଂଖ୍ୟା) 'ମଧୁସୂଦନ ସଂଖ୍ୟା' ନାମରେ ପ୍ରକାଶିତ ହେଲା, ସେଥିରେ ବିଶ୍ୱନାଥଙ୍କ ପ୍ରାଣର ଆକୁଳ କ୍ରନ୍ଦନ ଧ୍ୱନିତ ହୋଇଉଠିଥିଲା । ସେହି ହୃଦୟସ୍ପର୍ଶୀ ଲେଖାଟିର କେତୋଟି ପଂକ୍ତି ଏଠାରେ ଲେଖିଲି :—

"ମଧୁସୂଦନ ଆମ୍ଭମାନଙ୍କ ଜ୍ଞାନଗୁରୁ, କର୍ମଗୁରୁ, ଧର୍ମଗୁରୁ, ସାହିତ୍ୟଗୁରୁ —ସବୁ ବିଷୟରେ ସେ ଆମ୍ଭମାନଙ୍କର ଗୁରୁ ଓ ଜୀବନପଥର ପରମ ସହାୟକ । ଏ ଜୀବନ ତାଙ୍କ ନିକଟରେ ଯେଉଁ ଅପରିଶୋଧ ଋଣରେ ଆବଦ୍ଧ, ତାହା ପ୍ରକାଶ କରିବାର ଶକ୍ତି ମୋର ନାହିଁ । ଏ ଜୀବନ ତାଙ୍କ ଅପାର୍ଥିବ ସ୍ନେହରେ ଚିରଦିନ ପାଇଁ କ୍ରୀତ । ଦେଶ କାଳର ବ୍ୟବଧାନ ଏ ସମ୍ବନ୍ଧ ମଧ୍ୟରେ ନାହିଁ । ମାନବୀୟ ଭାବ, ରକ୍ତମାଂସର ସମ୍ପର୍କ ଏଥିରେ ନାହିଁ । ଏ ସମ୍ପର୍କ ଛିନ୍ନ କରିବାକୁ ମୃତ୍ୟୁର ଶକ୍ତି ନାହିଁ । ମଧୁସୂଦନ ଏ ଜୀବନର ଗତି ଫେରାଇ ଦେଇ ଅନନ୍ତକାଳ ପାଇଁ ଏ ହୃଦୟର ଗୁରୁପଦରେ ପୂଜନୀୟ ଦେବତା ପଦରେ ପ୍ରତିଷ୍ଠିତ ହୋଇଅଛନ୍ତି ।"

ରଘୁନାଥ ସିଂହ ତତ୍କାଳୀନ କଟକ ମେଡିକାଲ ସ୍କୁଲରୁ ଡାକ୍ତରି ପାସ୍ କରି ଅନୁମାନ ୧୯୧୨ ଖ୍ରୀଷ୍ଟାବ୍ଦରେ ବର୍ମାରେ ବୃତ୍ତି ଆରମ୍ଭ କଲେ ଏବଂ ସେଠାରେ ଆଜୀବନ ବାସ କରିଥିଲେ । ସେ ୨।୩ ବର୍ଷ ବ୍ୟବଧାନରେ କଟକ ଆସିଲେ ଆମ୍ଭମାନଙ୍କ ଘରେ ରହୁଥିଲେ । ଆମ୍ଭେମାନେ ତାଙ୍କୁ ବଡ଼ ଦାଦା ଭଳି ମନେ କରୁଥିଲୁ । ମନେପଡ଼େ, ମୋର ବଡ଼ଭାଇ ଜୟନ୍ତ ରାଓ ଏଫ୍. ଏ. ପାସ୍ କରିବା ପରେ କଲିକତା ମେଡିକାଲ କଲେଜରେ

ଡାକ୍ତର ପଢିବା ପାଇଁ ପ୍ରବଳ ଆଗ୍ରହ କଲେ; ଏଣେ ଏହି ତରୁଣ ଯୁବକକୁ ସେ ସମୟର ଷ୍ଟିମର ଓ ଜାହାଜ ଯୋଗେ ୭।୫ ଦିନର ରାସ୍ତାରେ କଲିକତା ପଠାଇବାକୁ ଓ ସେଠାରେ ରଖିବାକୁ ପିତୃଦେବଙ୍କର ଦୁଶ୍ଚିନ୍ତା ଓ ଉଦ୍‌ବେଗ ହେଲା । ଏହି ସମସ୍ୟାରେ ଯେତେବେଳେ ସମସ୍ତେ କିଂକର୍ତ୍ତବ୍ୟବିମୂଢ଼ ସେତେ-ବେଳେ ରଘୁନାଥ ଭାଇ ବାପା-ମା'ଙ୍କର ବଡ଼ପୁଅ ପରି ସେମାନଙ୍କୁ ଉତ୍ସାହ ଓ ପ୍ରବୋଧ ଦେଇ, ଘରର ସମସ୍ତଙ୍କୁ ଭରସା ଦେଇ, ଭାଇଙ୍କୁ (ଜୟନ୍ତ ରାଓ ସଙ୍ଗରେ ନେଇ କଲକତା ଯାଇ ତାଙ୍କ ଡାକ୍ତରୀ ପଢ଼ାର ସବୁ ବ୍ୟବସ୍ଥା କରିଦେଲେ । ଅନୁମାନ ୧୮୯୮ ଖ୍ରୀଷ୍ଟାବ୍ଦରେ ଏହି ଘଟଣା ଘଟିଥିଲା ।

ବାପାଙ୍କ ମୃତ୍ୟୁ ସମୟରେ ରଘୁନାଥ ଭାଇ ବର୍ମାର ବେସିନ ସହରରେ ଥିଲେ । ତାଙ୍କ ପତ୍ନୀ ଶ୍ରୀଯୁକ୍ତା ବନଫୁଲ ସିଂହ ମୋତେ ଲେଖିଛନ୍ତି : "୧୯୧୨ ଖ୍ରୀଷ୍ଟାବ୍ଦର ଡିସେମ୍ବର ୨୮ ତାରିଖରେ ଜୟନ୍ତଙ୍କ ପାଖରୁ ଟେଲିଗ୍ରାମରେ ପିତାଙ୍କ ମୃତ୍ୟୁ ସମ୍ବାଦ ପାଇ ସେ (ରଘୁନାଥ ସିଂହ) ବାଳକଭଳି ଭୂମିରେ ଲୋଟି କାନ୍ଦିଥାଆନ୍ତି । କିଛିକ୍ଷଣ ପରେ ପରିବାରସ୍ଥ ସମସ୍ତଙ୍କୁ ସେହି ପ୍ରାର୍ଥନା କଲେ ଓ ପରିବାରର ସମସ୍ତେ ମିଳି ଅଶୌଚ ପାଳନ ଆରମ୍ଭ କଲେ । ଅଶୌଚ କାଳରେ ସେ ତାଙ୍କ ଧର୍ମପିତା ପରଲୋକଗତ ହୋଇଅଛନ୍ତି ବୋଲି କୋର୍ଟକୁ (Court) ଯିବା ସ୍ଥଗିତ କରିଥିଲେ ।"

ଏହା ଉଲ୍ଲେଖଯୋଗ୍ୟ ଯେ, ଏହି ସମୟରେ ରଘୁନାଥ ଭାଇ ବେସିନରେ ଗଣ୍ୟମାନ୍ୟ ଓ ଲବ୍‌ଧପ୍ରତିଷ୍ଠ ନାଗରିକ ହିସାବରେ ଇଂରେଜ ସରକାର କର୍ତ୍ତୃକ ପ୍ରଥମ ଶ୍ରେଣୀର ଅନରାରୀ ମ୍ୟାଜିଷ୍ଟ୍ରେଟ୍ ପଦରେ ନିଯୁକ୍ତ ଥିଲେ ।

ଅକ୍ଷୟ କୁମାର ରାୟ ଓଡ଼ିଶାବାସୀ ବଙ୍ଗାଳୀ । ସେ ବ୍ରାହ୍ମଣ ବଂଶଜାତ ଥିଲେ । ସେ ମଧ୍ୟ ମଧୁସୂଦନଙ୍କ ପ୍ରଭାବରେ ଯୁବାବସ୍ଥାରେ ବ୍ରାହ୍ମଧର୍ମ ଗ୍ରହଣ କରି, କଲକତାବାସୀ ଗୋଟିଏ ବ୍ରାହ୍ମପରିବାରର କନ୍ୟାକୁ (ବିଦ୍ୟାସାଗର ମହାଶୟଙ୍କ ଜୀବନୀ-ଲେଖକ ଚଣ୍ଡୀଚରଣ ବନ୍ଦୋପାଧ୍ୟାୟଙ୍କର ଏକ ଶାଳୀ) ବିବାହ କଲେ । ଅକ୍ଷୟ କୁମାର ଆଜୀବନ ମଧୁସୂଦନଙ୍କୁ ପିତା ବୋଲି

ସମ୍ବୋଧନ କରୁଥିଲେ ଏବଂ ତାଙ୍କ ସେବାରେ ପୁତ୍ରଭାବରେ ଗୃହୀତ ହୋଇଥିଲେ । ସେ ଦୀର୍ଘକାଳ ଢେଙ୍କାନାଳ (ତତ୍କାଳୀନ ଗୋଟିଏ ଦେଶୀୟ ରାଜ୍ୟ) ସ୍କୁଲରେ ହେଡ୍‌ମାଷ୍ଟର କାର୍ଯ୍ୟ କରିଥିଲେ । ପରେ କଟକ ଟାଉନ ସ୍କୁଲରେ ମଧ୍ୟ ହେଡ୍‌ମାଷ୍ଟର ହୋଇଥିଲେ । ତାହାଙ୍କ ଜ୍ୟେଷ୍ଠା କନ୍ୟାର ନାମ କମଳବାସିନୀ (ଡାକନାମ ବାସି) -ମୋ ମା'ଙ୍କ ନିକଟରେ ରହି ରେଭେନ୍‌ଶା ବାଳିକା ବିଦ୍ୟାଳୟରେ ପଢୁଥିଲା; ପରେ କଲିକତାରେ ଡାୟୋସେସନ କଲେଜରେ ଆଇ. ଏ. ପଢିବା ସମୟରେ, ବଙ୍ଗଦେଶର ଲବ୍ଧପ୍ରତିଷ୍ଠ ଲେଖକ ଶ୍ରୀ ପ୍ରେମାଙ୍କୁର ଆତର୍ଥୀଙ୍କ ସହିତ ତା'ର ବିବାହ ହେଲା । ଦୁଇଟି କନ୍ୟା ରଖି 'ବାସି' ଅସମୟରେ ପରଲୋକ ଗମନ କଲା । କମଳବାସିନୀ ମୋ ମା'ଙ୍କୁ ଜେଜେମା ତୁଲ୍ୟ ଖୁବ୍ ଭକ୍ତିଶ୍ରଦ୍ଧା କରୁଥିଲା । ମୋ ମା' ଚକ୍ଷୁ-ପୀଡ଼ାରେ ଆକ୍ରାନ୍ତ ହୋଇ ଚିକିତ୍ସା ପାଇଁ ୧୯୨୨ ଖ୍ରୀଷ୍ଟାବ୍ଦରେ ମୋ ପାଖରେ ୨୭ ନମ୍ବର ସାଉଥ୍ ଷ୍ଟ୍ରୀଟ ଘରେ କେତେମାସ ଥିଲେ । ସେହି ସମୟରେ ପ୍ରେମାଙ୍କୁରଙ୍କ ପିତା ତଥା ବାସିର ଶ୍ୱଶୁର ମହେଶ ଚନ୍ଦ୍ର ଆତର୍ଥୀ ମହାଶୟ ପୁତ୍ରବଧୂ ଓ ଶିଶୁପୌତ୍ରୀଙ୍କୁ ନେଇ ଆସି ମୋ ମା'ଙ୍କୁ ଦେଖାଇ ଯାଇଥିଲେ, ଏବଂ ସଦାସର୍ବଦା ମୋ ମା'ଙ୍କର ସମ୍ବାଦ ନେଉଥିଲେ ।

ମଧୁସୂଦନ ଆତ୍ମୀୟସ୍ୱଜନଙ୍କ ବିୟୋଗରେ ଶୋକ-କାତର ବନ୍ଧୁମାନଙ୍କୁ ଯେଉଁ ସାନ୍ତ୍ୱନା ଦେଉଥିଲେ, ତାହା ସର୍ବତ୍ର ଦୃଷ୍ଟି ହୁଏନାହିଁ । ବହୁ ଶୋକ-ଦୁଃଖ-ପ୍ରପୀଡ଼ିତ ବନ୍ଧୁମାନଙ୍କ ଅନ୍ତରରେ ସେହି ଆନ୍ତରିକ ସହାନୁଭୂତି ଚିର ଜାଗ୍ରତ ରହିଥିବ । ଉତ୍କଳ ସାହିତ୍ୟ ସମ୍ପାଦକ ବିଶ୍ୱନାଥ କର ମହାଶୟଙ୍କର ଭୋଳାନାଥ ଓ ଲୋକନାଥ ନାମରେ ଦୁଇଟି ସହୋଦର ଭାଇ ଥିଲେ । ଦୁହିଁଙ୍କର ଅକାଳ ମୃତ୍ୟୁ ହୋଇଥିଲା । ଏହି ଭୋଳାଭାଇ ମୋ ବାପାଙ୍କ ନିକଟରୁ ବ୍ରାହ୍ମଧର୍ମ ଗ୍ରହଣ କରିଥିଲେ । ଭ୍ରାତୃ ବିୟୋଗ ବିଧୁର ବିଶ୍ୱନାଥଙ୍କୁ ସାନ୍ତ୍ୱନା ଦେଇ ସେତେବେଳେ ମଧୁସୂଦନ ଯେଉଁ ପତ୍ର ଲେଖିଥିଲେ, ତାହା ନିମ୍ନରେ ପ୍ରଦତ୍ତ ହେଲା :—

ଓଁ

ପରମ ବ୍ରହ୍ମଣେ ନମଃ (?) ପରମ ଗୃହମସ୍ମାକମ୍

ରଘୁନାଥପୁର

ପ୍ରାଣର ବିଶ୍ୱନାଥ,

କି ସାନ୍ତ୍ୱନା ଦେବି ? ଯାହାଙ୍କର ଧନ ସେ ନେଇଗଲେ । ଏକା ସେ

କେବଳ ତୁମକୁ ସାନ୍ତ୍ୱନା ଦେଇପାରନ୍ତି, ତୁମ ପ୍ରାଣେର ଭୋଲାନାଥ ଓ ଲୋକନାଥ ତୁମ ପ୍ରାଣନାଥଙ୍କ କୋଳରେ ସ୍ୱର୍ଗର ଅମୃତ ପାନ କରୁଅଛନ୍ତି । ସମାନେ ଏହି ଉତ୍କଳ ଭୂମିରେ କି ଅପୂର୍ବ ସତ୍ୟନିଷ୍ଠା ଦେଖାଇଗଲେ । ଧନ୍ୟ ସେମାନଙ୍କର ଜୀବନ !

ସେମାନଙ୍କ ଉପରେ ତୁମର କେତେ ଆଶା-ଭରସା ଥିଲା । କିଛି ପୂର୍ଣ୍ଣ ହେଲାନାହିଁ । ଅନ୍ତର୍ଯ୍ୟାମୀ ଭିନ୍ନ ତୁମର ଶୋକ କିଏ ବୁଝିବ ? ଆହା, ଦୟାମୟୀ ମା ତୁମକୁ ତାଙ୍କ କୋଳରେ ବସାଇ ତୁମ ମୁଖ ଚୁମ୍ବନ କରି ତୁମ ଭଗ୍ନ ହୃଦୟକୁ ଆଲିଙ୍ଗନ କରନ୍ତୁ । ମା'ଙ୍କୁ ସର୍ବଦା ଡାକ ତାଙ୍କ ଭିନ୍ନ ଆଉ କିଏ ଅଛି ?

ପ୍ରାଣେର ବିଶ୍ୱନାଥ, ଅଧୀର ହୁଅନାହିଁ । ତୁମର ପିତା ମାତାଙ୍କୁ ତୁମ ଛଡ଼ା ଆଉ କିଏ ସାନ୍ତ୍ୱନା ଦେବ ? ସେମାନଙ୍କର ଶୋକର କଥା ଭାବିପାରୁନାହିଁ । ଭାଇ, ତୁମର ଗୁରୁ କର୍ତ୍ତବ୍ୟଭାର ସ୍ମରଣ କରି ପ୍ରଭୁଙ୍କ ଉପରେ ନିର୍ଭର ରଖି ଉପସ୍ଥିତ କର୍ତ୍ତବ୍ୟ ସାଧନାରେ ଅଗ୍ରସର ହୁଅ ।

ବାଇବେଲର 'ଜୋବ'ଙ୍କ ଚରିତ ତ ପଢ଼ିଅଛ ? ତୁମ ଜୀବନରେ ପ୍ରଭୁ କ'ଣ ସେହିପରି ଭାଗବତ ଲୀଳା ପ୍ରକଟିତ କରୁଅଛନ୍ତି ?

ମୁଁ ତୁମ ଘରକୁ ପତ୍ର ଲେଖୁଅଛି ।

ତୁମର ଅଯୋଗ୍ୟ ଭାଇ
ମଧୁସୂଦନ

## (୫) ମଧୁସୂଦନଙ୍କ ସନ୍ତାନ-ସନ୍ତତି

### ପ୍ରଥମ ସନ୍ତାନ ବାସନ୍ତୀ ଦେବୀ

ମଧୁସୂଦନଙ୍କ ପ୍ରଥମ ସନ୍ତାନ ବାସନ୍ତୀ ଦେବୀ ୧୮୭୪ ଖ୍ରୀଷ୍ଟାବ୍ଦ ଜୁନ ୫ ତାରିଖ, ଆଷାଢ଼ ମାସ କୃଷ୍ଣ ପକ୍ଷର ପଞ୍ଚମୀ ତିଥିରେ ବାଲେଶ୍ୱରରେ ଜନ୍ମଗ୍ରହଣ କରିଥିଲେ । ୧୮୮୮ ଖ୍ରୀଷ୍ଟାବ୍ଦ ଜୁନ ୭ ତାରିଖ ଚଉଦ ବର୍ଷ ପୂର୍ତ୍ତିର ପରଦିନ ବିଜୟ ଚନ୍ଦ୍ର ମଜୁମଦାରଙ୍କ ସହିତ ଏହାଙ୍କର ବ୍ରାହ୍ମମତରେ ବିବାହ

ହୋଇଥିଲା । କଟକରେ ଏହି ବିବାହ ହିଁ ପ୍ରଥମ ବ୍ରାହ୍ମବିବାହ । ଚୈତନ୍ୟବର୍ଷୀୟ ବ୍ରାହ୍ମସମାଜର ପ୍ରଚାରକ ନନ୍ଦଲାଲ ବନ୍ଦୋପାଧ୍ୟାୟ ମହାଶୟ ଏହି ବିବାହରେ ଆଚାର୍ଯ୍ୟର କାର୍ଯ୍ୟ କରିଥିଲେ । ବିଜୟ ଚନ୍ଦ୍ର ମଜୁମଦାର ପରବର୍ତ୍ତୀକାଳରେ ସୁକବି, ଐତିହାସିକ, ପ୍ରତ୍ନତାତ୍ତ୍ୱିକ ଓ ନାନା ଭାଷାରେ ସୁପଣ୍ଡିତ ବୋଲି ବିଦ୍ୱତ୍ ସମାଜରେ ଖ୍ୟାତିଲାଭ କରିଥିଲେ ।

ଫରିଦପୁର ଅନ୍ତର୍ଗତ ଖାଲକୁଲା ଗ୍ରାମର ବାରେନ୍ଦ୍ର ବ୍ରାହ୍ମଣ ଜମିଦାର ବଂଶରେ ବିଜୟ ଚନ୍ଦ୍ର ୧୮୬୧ ଖ୍ରୀଷ୍ଟାବ୍ଦରେ ସେପ୍ଟେମ୍ବର ୨୭ ତାରିଖରେ ଜନ୍ମଗ୍ରହଣ କରିଥିଲେ । ତାଙ୍କ ପିତା ହରିଚନ୍ଦ୍ର ମଜୁମଦାରଙ୍କର ଜମିଦାର ହିସାବରେ ଯଥେଷ୍ଟ ସମ୍ମାନ ସମୃଦ୍ଧି ଓ ପ୍ରତିପତ୍ତି ଥିଲା । ବିଜୟଚନ୍ଦ୍ରଙ୍କ ପ୍ରଥମ ଶିକ୍ଷାରମ୍ଭ ହୋଇଥିଲା କୃଷ୍ଣନଗର କଲେଜିଏଟ୍ ସ୍କୁଲରେ । ପରବର୍ତ୍ତୀକାଳରେ ସୁସାହିତ୍ୟ ଦ୍ୱିଜେନ୍ଦ୍ରଲାଲ ରାୟ ସ୍କୁଲରେ ତାଙ୍କର ସହପାଠୀ ଥିଲେ । ସେହି ସୂତ୍ରରେ ଉଭୟଙ୍କ ମଧ୍ୟରେ ଯେଉଁ ବନ୍ଧୁତ୍ୱ ସ୍ଥାପିତ ହୋଇଥିଲା ତାହା କ୍ରମଶଃ ଗଭୀରତା ଲାଭ କରି ଆଜୀବନ ସ୍ଥାୟୀ ହୋଇଗଲା । ୧୮୮୩ ଖ୍ରୀଷ୍ଟାବ୍ଦରେ କଲିକତା ଜେନେରାଲ ଆସେମ୍ବ୍ଲିଜ୍ ଇନଷ୍ଟିଚ୍ୟୁସନରୁ ବିଜୟଚନ୍ଦ୍ର ବି. ଏ. ପାସ୍ କଲେ । ତତ୍ପରେ ବାମଣ୍ଡା ଓ ସୋନପୁର ନାମକ ଓଡ଼ିଶାର ଦେଶୀୟ ରାଜ୍ୟ ଦୁଇଟିରେ କେତେବର୍ଷ ରାଜକୁମାରମାନଙ୍କର ଶିକ୍ଷକତା କଲେ । ପରେ କିଛିକାଳ ପୁରୀ ଜିଲ୍ଲାସ୍କୁଲର ପ୍ରଧାନଶିକ୍ଷକ ପଦରେ ନିଯୁକ୍ତ ହେଲେ । ଏହି କାର୍ଯ୍ୟରେ ନିଯୁକ୍ତ ଥିବାବେଳେ ୧୮୯୫ ଖ୍ରୀଷ୍ଟାବ୍ଦରେ ବି. ଏଲ୍. ପାସ୍ କରି ସମ୍ବଲପୁରରେ ଓକିଲାତି ଆରମ୍ଭ କଲେ । ବୁଦ୍ଧିମାନ, ବିଚକ୍ଷଣ ଏବଂ ସୁପଣ୍ଡିତ ଆଇନଜ୍ଞ ବୋଲି ଅଚିରେ ସେ ଖ୍ୟାତିଲାଭ କଲେ । ଆଇନ ପରାମର୍ଶଦାତା ରୂପେ ବାମଣ୍ଡା ଏବଂ ସୋନପୁର ଦେଶୀୟ ରାଜ୍ୟ ସହିତ ଘନିଷ୍ଠ ସମ୍ପର୍କ ଆଜୀବନ ବଜାୟ ଥିଲା ।

ଇଂରାଜୀ, ବଙ୍ଗଳା, ଓଡ଼ିଆ, ସଂସ୍କୃତ, ପାଲି, ପ୍ରାକୃତ ଏବଂ ମୁଣ୍ଡା ଭାଷାରେ ବିଜୟ ଚନ୍ଦ୍ର ବିଶେଷ ବ୍ୟୁତ୍ପନ୍ନ ଥିଲେ । ନୃତତ୍ତ୍ୱ, ପୁରାତତ୍ତ୍ୱ ଓ ଭାଷାତତ୍ତ୍ୱର ଶ୍ରମସାଧ୍ୟ ଗବେଷଣାର କାର୍ଯ୍ୟ କରି କରି ତାଙ୍କର ଦୃଷ୍ଟିଶକ୍ତି କ୍ରମଶଃ କ୍ଷୀଣ ହୋଇଆସିଥିଲା । ପ୍ରଥମେ ଦୃଷ୍ଟିଶକ୍ତିର ଏହି କ୍ଷୀଣତାକୁ ସରଳ ପଡ଼ୁଛି ବୋଲି ମନେ କରାଗଲା । କିନ୍ତୁ ପରେ ଜଣାଗଲା ଏହା ସରଳ ନୁହେଁ- ଗ୍ଲୁକୋମା ରୋଗ ଏବଂ ଏଥିପାଇଁ ଅସ୍ତ୍ର ପ୍ରୟୋଗ ଆବଶ୍ୟକ । ସେତେବେଳେ

କଲିକତାରେ ଉପଯୁକ୍ତ ଚକ୍ଷୁ-ଚିକିତ୍ସକଙ୍କର ଅଭାବ ଥିବାରୁ, ଅମୃତସର ଯାଇ ଅପରେସନ୍ କରାଗଲା । ଅପରେସନ୍ ପରେ ଚକ୍ଷୁ ଖୋଲା ହେବାରୁ ଦେଖାଗଲା ଗୋଟିଏ ଚକ୍ଷୁରେ ଦୃଷ୍ଟି ଏକେବାରେ ନାହିଁ, ଅନ୍ୟଟିରେ ଅତି ସାମାନ୍ୟ ଝାପ୍‌ସା-ଝାପ୍‌ସା ଦୃଷ୍ଟି ଅଛି । କିନ୍ତୁ ସେହି ଚକ୍ଷୁରେ ଭୀଷଣ ଯନ୍ତ୍ରଣା ମଧ୍ୟ ଅଛି । ଅଳ୍ପ ଦିନ ମଧ୍ୟରେ ସେ ଚକ୍ଷୁଟି ମଧ୍ୟ ଦୃଷ୍ଟିଶକ୍ତି ସମ୍ପୂର୍ଣ୍ଣ ରୂପେ ହରାଇଲା ।

ଦୀର୍ଘ ୨୮ ବର୍ଷକାଳ ବିଜୟ ଚନ୍ଦ୍ର ଅନ୍ଧ ଅବସ୍ଥାରେ କଟାଇଥିଲେ । କିନ୍ତୁ ଅନ୍ଧତ୍ୱ ତାହାଙ୍କୁ ଜ୍ଞାନାନ୍ୱେଷଣରେ କିଛିମାତ୍ର ନିରୁଦ୍ୟମ କରିପାରିଲା ନାହିଁ । ଅନ୍ଧ ହେବାପରେ, ସେ ଓକିଲାତି ତ୍ୟାଗ କରି ସମ୍ବଲପୁରରୁ କଲିକତା ଚାଲିଆସିଲେ ଏବଂ ଜଣେ ଓଡ଼ିଆ ଓ ଜଣେ ବଙ୍ଗାଳୀ ସହକାରୀଙ୍କ ସାହାଯ୍ୟରେ ସେ ଲିଖନ ଓ ପଠନର ସମସ୍ତ କାର୍ଯ୍ୟ ଚଳାଇବାକୁ ଲାଗିଲେ ।

ଦୃଷ୍ଟିଶକ୍ତି ହରାଇବା ପୂର୍ବରୁ ସେ ବଙ୍ଗ ଭାଷାର ଉତ୍ପତ୍ତି ଓ ବିକାଶ ସମ୍ବନ୍ଧରେ ଖଣ୍ଡିଏ ପାଣ୍ଡିତ୍ୟପୂର୍ଣ୍ଣ ଗ୍ରନ୍ଥ ଲେଖିବାରେ ବ୍ୟାପୃତ ଥିଲେ । କଲିକତା ଆସିବା ପରେ ସେ ସେହି ପୁସ୍ତକର ପାଣ୍ଡୁଲିପି ଟିକ୍ତିକ ସାର୍ ଆଶୁତୋଷ ମୁଖୋପାଧ୍ୟାୟଙ୍କ ନିକଟକୁ ପଠାଇ ଦେଲେ । ଏହି ସମୟରେ କଲିକତା ବିଶ୍ୱବିଦ୍ୟାଳୟରେ ବଙ୍ଗଳା ଭାଷାରେ ଏମ୍. ଏ. ପଢାଇବା ଲାଗି ସାର୍ ଆଶୁତୋଷ ବିଶେଷ ଭାବେ ଉଦ୍ୟୋଗୀ ହୋଇଥିଲେ । ବିଜୟ ଚନ୍ଦ୍ର ମଜୁମଦାରଙ୍କର ପାଣ୍ଡୁଲିପି ଖଣ୍ଡିକରୁ ବଙ୍ଗଳା ଭାଷାରେ ତାଙ୍କ ଗଭୀର ଗବେଷଣାର ପରିଚୟ ପାଇ ସାର୍ ଆଶୁତୋଷ ତାହାଙ୍କୁ ବିଶ୍ୱବିଦ୍ୟାଳୟର ଏମ୍. ଏ. କ୍ଲାସରେ ବଙ୍ଗଳା ଭାଷା ଓ ସାହିତ୍ୟର ଇତିହାସ ସମ୍ପର୍କରେ କେତୋଟି ବକ୍ତୃତା ଦେବାକୁ ନିମନ୍ତ୍ରଣ କଲେ । ବିଜୟ ଚନ୍ଦ୍ରଙ୍କ ଏହି ପାଣ୍ଡିତ୍ୟପୂର୍ଣ୍ଣ ବକ୍ତୃତାଗୁଡ଼ିକ ଛାତ୍ରମାନଙ୍କ ନିକଟରେ ସମାଦୃତ ହେବାରୁ, ବିଶ୍ୱବିଦ୍ୟାଳୟର କର୍ତ୍ତୃପକ୍ଷ ସନ୍ତୁଷ୍ଟ ହୋଇ ତାହାଙ୍କୁ ସ୍ଥାୟୀଭାବରେ ବିଶ୍ୱବିଦ୍ୟାଳୟର ଅଧ୍ୟାପକ ପଦରେ ନିଯୁକ୍ତ କଲେ । ୧୨ ବର୍ଷ କାଳ ଏହି ଅନ୍ଧ ଅବସ୍ଥାରେ ସେ ଅତି ସାଫଲ୍ୟର ସହିତ ନୃତତ୍ତ୍ୱ, ଭାଷାତତ୍ତ୍ୱ ଓ ପ୍ରାଚୀନ ଭାରତୀୟ ସଂସ୍କୃତି ବିଷୟରେ ଅଧ୍ୟାପନା କଲେ । ତାଙ୍କର ଅସାଧାରଣ ଧୀଶକ୍ତି, ସ୍ମୃତିଶକ୍ତି ଓ ଅଧ୍ୟାପନାର କୌଶଳ ଛାତ୍ରମାନଙ୍କୁ ମୁଗ୍ଧ କରୁଥିଲା ।

ଅନ୍ଧତ୍ୱକୁ ବିଜୟଚନ୍ଦ୍ର କେବେହେଲେ ବିଧାତାଙ୍କ ଅଭିଶାପ ମନେକରି ନାହାନ୍ତି ବା ସେଥିପାଇଁ କେବେ ଦୁଃଖ ବା ବିଳାପ କରିନାହାନ୍ତି । ବିଧାତାଙ୍କ ବିଧାନ ବୋଲି କି ଦୃଢ଼ବିଶ୍ୱାସରେ କି ଅସୀମ ନିର୍ଭରତାରେ ଏହି ଅନ୍ଧତ୍ୱକୁ ସେ ଗ୍ରହଣ କରିଥିଲେ, ତାହାର ବହୁ ପରିଚୟ ତାଙ୍କ ୨୮ ବର୍ଷ ବ୍ୟାପୀ ଅଳ୍ପ ଜୀବନକାଳ ମଧ୍ୟରେ ତାଙ୍କ କବିତାରେ, ଗୀତରେ, ବ୍ୟବହାରରେ ଓ ଆଚରଣରେ ଦେଦୀପ୍ୟମାନ ହୋଇ ରହିଅଛି । ଅନ୍ଧାବସ୍ଥାରେ ତାଙ୍କର ପ୍ରଥମ ଗୀତ ଏଇଟି :—

"ଆଗୋ ଦୁଃଖସୁଖର ନିତ୍ୟସାଥୀ, ଆସ ପାଶେ
ପାଇଛ ତୁମରି ଶବ୍ଦ ? ଅନ୍ଧକାର କାରାଗାର ମଧ୍ୟେ ।
ନେଇ ଯାଅ ଭାଙ୍ଗି ଦ୍ୱାର
ଏ ଭୀଷଣ ବିଜନ ଗୃହାର,
(ସେଇଁଠି) ଆକାଶ ତଳେ ବତାସ ଖେଳେ,
ନିତ୍ୟ ସବୁଜ ପତ୍ରର ଭଙ୍ଗରେ ?
ନେଇଯାଅ ଲୋକଙ୍କ ମଝିରେ,
ମଣିଷର ହାଟ ବଜାରେ,
(ସେଇଠି) ପ୍ରୀତିର ବ୍ରତେ ଶୁଣିବି କେତେ
ହସକାନ୍ଦର ବଂଶୀ ବାଜେ
ଆସିଛ, ଟିକଏ ଛୁଇଁଦିଅ
ଧରେ ହାତ-ହାତ ବଢ଼ାଅ,
(ପରଶେ) ଫୁଟିବ ଆଲୁଅ ଆଖିର କୋଣେ,
ରଙ୍ଗାଇ ଧରା ସୁବର୍ଣ୍ଣ ସାଜେ ।"

ପରବର୍ତ୍ତୀ ଗୀତଟି ଏହିପରି :

**ଅନ୍ଧାର ନିବେଦନ**

"ଅନ୍ଧାର ଘରେର ମାଝେ ଆମାର ସାଂଝେର ବାତି ଜେଲେ ଦାଓ
ଭେଙ୍ଗେଗେଛେ ମାଟିର ଗଡ଼ା ପୂରାଣ ସେଇ ଦେଉଲେକୋ-ସଜ୍ଜା
ଆନ କିରଣ ସ୍ୱରଣ-ରୁଚି, ଖୋଲ୍ଗୁମ କୁଚି ଫେଲେ ଦାଓ
କୁଳଗ୍ନେ ଆଜ କି କାଲରାତି ଆସଛେ ମାଗୋ ଜଗଦ୍ଧାତ୍ରୀ !
ତୋମାର ଅଭୟ ହାସ୍ୟ ଆମାର ଅମାବାସ୍ୟାୟ ଢେଲେ ଦାଓ
ବିଶ୍ୱଜନେ କରେ ସାକ୍ଷୀ, ଚଲବି ଆମି, ଜଲବେ ବାତି,
ପଥେର ବାଧା, ଆନ୍ଧାର ଗର୍ତ୍ତ, ପିଛନପାନେ ଠେଲେ ଦାଓ ।"

୧୩୪୦ ସାଲର ମାଘ ମାସରେ ତାଙ୍କ "ଜୀବନ ବାଣୀ" ଗ୍ରନ୍ଥ ମୁଦ୍ରିତ ହେଲା । ଏହି ଅନ୍ଧ ମନୀଷୀଙ୍କର ଜୀବନରେ ପ୍ରତିଫଳିତ ସତ୍ୟ ତାଙ୍କ ତପସ୍ୟା-ଲବ୍ଧ ଗଭୀରଜ୍ଞାନ ଏବଂ ମହୋଦାର ପ୍ରେମିକ ପ୍ରାଣର ଅନୁଭୂତ ବାଣୀ ଏହି ପୁସ୍ତକରେ ସେ ଲିପିବଦ୍ଧ କରିଯାଇଛନ୍ତି । ସବୁଦିଗରୁ ମାନବ ଜୀବନକୁ କି ସୁନ୍ଦର କରି ସେ ଦେଖିଛନ୍ତି !

ବିଧାତା ତାଙ୍କ ଦେହଟିକୁ ସୁନ୍ଦର କରି ଗଢିଥିଲେ—ସେ ରୂପବାନ ସୁପୁରୁଷ ଥିଲେ । ତାଙ୍କ ଚକ୍ଷୁ ଦୁଇଟି ବଡ଼ ସୁନ୍ଦର ଓ ବୁଦ୍ଧି ଦୀପ୍ତିରେ ଉଜ୍ଜ୍ୱଳ ଥିଲା । ଅନ୍ଧ ଅବସ୍ଥାରେ ମଧ୍ୟ ସେ ତାଙ୍କ ଜୀବନ-ଦେବତାଙ୍କ ଅପାର କୃପାରୁ ବଞ୍ଚିତ ହୋଇନାହାନ୍ତି । ବାହାରର ଦୃଷ୍ଟି ଶକ୍ତି ହରାଇଥିଲେ ମଧ୍ୟ ଅନ୍ତର୍ଦୃଷ୍ଟିକୁ ବିଧାତା ଏକ ଅପୂର୍ବ ଆଲୋକରେ ଉଦ୍ଭାସିତ କରିଥିଲେ । ସେହି ସ୍ୱର୍ଗୀୟ-ପ୍ରଭାରେ ତାଙ୍କ ଜୀବନର ସମସ୍ତ ବିଭାଗ ପ୍ରଦୀପ୍ତ ହୋଇ ତାଙ୍କୁ ମହାସୁନ୍ଦରଙ୍କ ପ୍ରକୃତ ସନ୍ତାନ ହେବାର ସୌଭାଗ୍ୟ ଦାନ କରିଥିଲା ।

"ମୋର ସନ୍ଧ୍ୟାୟ ତୁମି ସୁନ୍ଦର ବେଶେ ଏସେଛ, ତୋମାୟ କରି ଗୋ ନମସ୍କାର" କବିଗୁରୁଙ୍କର ଏହି ସୁମଧୁର ଗୀତଟି ତାଙ୍କର ଏତେ ପ୍ରିୟ ଥିଲା ଯେ, ଅନେକ ସମୟରେ ସେ ନାତୁଣୀମାନଙ୍କୁ ଏହି ଗୀତଟି ଗାଇବାକୁ କହୁଥିଲେ । ତାଙ୍କ ଜୀବନ ସନ୍ଧ୍ୟାରେ ଯେଉଁମାନେ ତାଙ୍କ ସାନ୍ନିଧ୍ୟରେ ଆସିଛନ୍ତି, ସେମାନେ ଅନୁଭବ କରିଛନ୍ତି ସତେଯେପରି ଏହି ଗୀତଟି ତାଙ୍କ ଅନ୍ତରରେ ନିରନ୍ତର ଅନୁରଣିତ ହୋଇ ତଦୀୟ ମୁଖମଣ୍ଡଳକୁ ଶୁଭ୍ର ସୁନ୍ଦର ଓ ପୁଣ୍ୟମୟ କରି ଗଢିଛି ।

ବିଧାତା ତାଙ୍କୁ ଦାମ୍ପତ୍ୟ ଜୀବନରେ ମଧ୍ୟ ବଡ଼ ସୌଭାଗ୍ୟବାନ କରିଥିଲେ । ମୋର ଅପା ବାସନ୍ତୀ ଦେବୀଙ୍କ ପ୍ରକୃତି ସରଳ ଶାନ୍ତ ଓ ସ୍ନେହଶୀଳ ଥିଲା । ତାଙ୍କ ସତ୍ୟନିଷ୍ଠା ଓ ସ୍ୱାଭାବିକ ଈଶ୍ୱର-ବିଶ୍ୱାସ ବଳରେ ସେ ଭକ୍ତ-କବିଙ୍କର ଉପଯୁକ୍ତ କନ୍ୟା ଥିଲେ । ପତିଙ୍କର ସବୁ ଅବସ୍ଥାରେ ସାଧ୍ୱୀ ପତ୍ନୀଙ୍କ ଉପରେ ପ୍ରଗାଢ଼ ନିର୍ଭର ଥିଲା ।

ଏମାନଙ୍କ ବଡ଼ନାତୁଣୀ ତପତୀ, ଡାକନାମ 'ତାଜୁ' ଆଈଙ୍କର ଆଦ୍ୟଶ୍ରାଦ୍ଧରେ ଯେଉଁ ଶ୍ରଦ୍ଧା ନିବେଦନ କରିଥିଲେ, ତହିଁରୁ କିଞ୍ଚିତ୍ ଉଦ୍ଧୃତ

ହେଲା—"ଅଜା ୨୮ ବର୍ଷ ଅନ୍ଧ ଥିଲେ । ଆଣଙ୍କ ନୀରବ ସେବା ଓ ଭଗବଦ୍ ବିଶ୍ୱାସୀ ପୁଣ୍ୟମୟ ଜୀବନର ସାହାଯ୍ୟ ନପାଇଥିଲେ, ଅଜାଙ୍କ ପରି ଏତେ ବଡ଼ ଜ୍ଞାନୀ ଧୀମାନ ପଣ୍ଡିତ ଭଗବଦ୍ଭକ୍ତ ପ୍ରେମିକ ମଧ୍ୟ କେବେହେଲେ ଜୀବନରେ ଏତେ କାମ, ଏତେ ନାମ, ଏତେ ଗୌରବ ଅର୍ଜନ କରିପାରିନଥାନ୍ତେ । କେତେ ଲୋକ ଆଣଙ୍କର ଏହି ସେବା ଦେଖି କହିଛନ୍ତି, ଏ ଯେପରି ମହାଭାରତର ବର୍ଣ୍ଣିତ ଗାନ୍ଧାରୀଙ୍କର ପୁଣ୍ୟମୟ ଜୀବନ ।"

## ଦ୍ୱିତୀୟ ସନ୍ତାନ—ଜୟନ୍ତ ରାଓ :

ଡାକ୍ତର ଜୟନ୍ତ ରାଓ ୧୮୭୮ ଖ୍ରୀଷ୍ଟାବ୍ଦ ସେପ୍ଟେମ୍ବର ୩୦ ତାରିଖରେ କଟକ ନଗରରେ ଜନ୍ମଗ୍ରହଣ କରିଥିଲେ । ସେ ରେଭେନସା କଲେଜରୁ ଏଫ୍. ଏ. ପାସ୍ କରିବା ପରେ କଲିକତା ମେଡ଼ିକାଲ କଲେଜରେ ପଢ଼ିଥିଲେ । ସେଠାରୁ ଏଲ୍. ଏମ୍. ଏସ୍. ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ଓଡ଼ିଶାର ସରକାରୀ ମେଡ଼ିକାଲ ବିଭାଗରେ ପ୍ରବେଶ କରିଥିଲେ । ନାନା ସ୍ଥାନରେ କାର୍ଯ୍ୟକରି ଅବଶେଷରେ ସେ ସିଭିଲ-ସର୍ଜନ ରୂପେ ଯଥା ସମୟରେ ଅବସର ଗ୍ରହଣ କରିଥିଲେ । ଅସ୍ତ୍ର ଚିକିତ୍ସା ବିଦ୍ୟାରେ ଏହାଙ୍କର ଖ୍ୟାତି ଓଡ଼ିଶାରେ ସୁବିଦିତ । ଏ ବଙ୍ଗ ଦେଶର ସୁଲେଖକ, ପତ୍ରକାର ଓ ସୁପ୍ରସିଦ୍ଧ ଚିତ୍ରକର ଉପେନ୍ଦ୍ର କିଶୋର ରାୟ ଚୌଧୁରୀଙ୍କ ଜ୍ୟେଷ୍ଠା କନ୍ୟା— ଶିଶୁ ସାହିତ୍ୟ ଜଗତରେ ସୁପରିଚିତା, ସୁଲେଖିକା, କଳାକୁଶଳା ଶ୍ରୀମତୀ ସୁଖଲତା ଦେବୀଙ୍କୁ ବିବାହ କରିଥିଲେ ।

## ତୃତୀୟ ସନ୍ତାନ-ଅବନ୍ତୀ ଦେବୀ (ଘରେ ପ୍ରଚଳିତ ନାମ କୃଷ୍ଣା)

୧୮୮୧ ଖ୍ରୀଷ୍ଟାବ୍ଦ, ମାର୍ଚ୍ଚ ୪ ତାରିଖରେ କଟକ ନଗରୀରେ ଜନ୍ମଗ୍ରହଣ କରିଥିଲେ । କଲିକତା ସାଧାରଣ ବ୍ରାହ୍ମସମାଜର ପ୍ରଧାନ ନେତା, ବଙ୍ଗର ସୁପରିଚିତ ସୁସନ୍ତାନ, ପଣ୍ଡିତ ଶିବନାଥ ଶାସ୍ତ୍ରୀ ମହାଶୟଙ୍କ ଏକମାତ୍ର ପୁତ୍ର ପ୍ରିୟନାଥ ଭଟ୍ଟାଚାର୍ଯ୍ୟଙ୍କ ସହିତ ଏହାଙ୍କର ବିବାହ ହୋଇଥିଲା । ୧୯୪୨ ଖ୍ରୀଷ୍ଟାବ୍ଦ ଡ଼ିସେମ୍ବର ୨୫ ତାରିଖରେ କଲିକତାଠାରେ (୨୬ ନମ୍ବର ଗାର୍ଡ଼ନ ଷ୍ଟ୍ରୀଟ୍‌ରେ) ପ୍ରିୟନାଥ ଭଟ୍ଟାଚାର୍ଯ୍ୟ ପରଲୋକ ଗମନ କରିଥିଲେ ।

## ଚତୁର୍ଥ ସନ୍ତାନ-ଶାନ୍ତି ଦେବୀ :

୧୮୮୩ ଖ୍ରୀଷ୍ଟାବ୍ଦ ସେପ୍ଟେମ୍ବର ୧୭ ତାରିଖରେ କଟକରେ ଜନ୍ମଗ୍ରହଣ

କରିଥିଲେ । ନବବିଧାନ ବ୍ରାହ୍ମସମାଜର ଗୃହସ୍ଥ ପ୍ରଚାରକ ରାଜମୋହନ ବସୁ ମହାଶୟ ଦୀର୍ଘକାଳ ଓଡ଼ିଶାକୁ ତାଙ୍କର କର୍ମସ୍ଥଳ କରି କଟକରେ ବାସ କରୁଥିଲେ; ତାଙ୍କର ଦ୍ୱିତୀୟ ପୁତ୍ର ପ୍ରଫୁଲ୍ଲ ଚନ୍ଦ୍ର ବସୁଙ୍କ ସହିତ ୧୯୦୨ ଖ୍ରୀଷ୍ଟାବ୍ଦରେ ଏହାଙ୍କର ବିବାହ ହୋଇଥିଲା । ପ୍ରଫୁଲ୍ଲ ଚନ୍ଦ୍ର ବସୁ ୧୯୫୨ ଖ୍ରୀଷ୍ଟାବ୍ଦ ଜାନୁୟାରୀ ୧୦ ତାରିଖରେ କଟକରେ ପରଲୋକ ଗମନ କଲେ ।

## ପଞ୍ଚମ ସନ୍ତାନ-ପ୍ରଶାନ୍ତ ରାଓ :

୧୮୮୭ ଖ୍ରୀଷ୍ଟାବ୍ଦ ମାର୍ଚ୍ଚ ୧୧ ତାରିଖ କଟକରେ ଭୂମିଷ୍ଠ ହୋଇଥିଲେ । କନିଷ୍ଠ ସହୋଦର ଜଗନ୍ନାଥ ରାଓଙ୍କର ପୁତ୍ରସନ୍ତାନ ନଥିବାରୁ ଭ୍ରାତୃବତ୍ସଳ ମଧୁସୂଦନ ପିତା ଭଗୀରଥି ରାଓଙ୍କ ଇଚ୍ଛାନୁଯାୟୀ, ସୂତିକାଗୃହରେ ପତ୍ନୀଙ୍କ ଦ୍ୱାରା ଏହି ସନ୍ତାନଟିକୁ ଭ୍ରାତୃଜାୟା ରମା ବାଈଙ୍କ ହସ୍ତରେ ସମର୍ପଣ କରାଇ ଦେଇଥିଲେ । ସେ କଟକ ରେଭେନ୍‌ସା କଲେଜରୁ ବି. ଏ. ପାସ୍ କରିବା ପରେ କଲିକତା ଯାଇ କିଛିକାଳ ଆଇନ ଅଧ୍ୟୟନ କରିଥିଲେ । ତତ୍ପରେ ଓଡ଼ିଶାର ମୟୂରଭଞ୍ଜ ଷ୍ଟେଟ୍‌ରେ କର୍ମପ୍ରବିଷ୍ଟ ହେଲେ । ସାଧାରଣ ବ୍ରାହ୍ମ-ସମାଜର ଅନ୍ୟତମ ନେତା, ଯଦୁନାଥ ଚକ୍ରବର୍ତ୍ତୀ ମହାଶୟଙ୍କ ପୌତ୍ରୀ ଏବଂ ହିମାଂଶୁ ଚକ୍ରବର୍ତ୍ତୀଙ୍କ ଜ୍ୟେଷ୍ଠା କନ୍ୟା, ଇନ୍ଦୁପ୍ରଭା ଦେବୀଙ୍କ ସହିତ ୧୯୧୧ ଖ୍ରୀଷ୍ଟାବ୍ଦ, ଡିସେମ୍ବର ମାସରେ ତାହାଙ୍କର ବିବାହ ହୋଇଥିଲା । ମୟୂରଭଞ୍ଜ ଷ୍ଟେଟ୍‌ରେ ଉଦଳା ନାମକ ମହକୁମାର ଏସ୍ ଡି. ଓ. ପଦରେ କାର୍ଯ୍ୟ କରିବା ବେଳେ ଦୁଇଗୋଟି ଶିଶୁ ସନ୍ତାନ ଓ ଅଳ୍ପବୟସ୍କା ପତ୍ନୀଙ୍କୁ ରଖି ୧୯୨୭ ଖ୍ରୀଷ୍ଟାବ୍ଦ ଅଗଷ୍ଟ ୨୩ ତାରିଖରେ ସେ ୨୬ ନମ୍ବର ୱାଡ଼ନ୍‌ଷ୍ଟ୍ରୀଟ୍ କଲିକତାରେ ଅକାଳରେ ପରଲୋକ ଗମନ କଲେ ।

## ଷଷ୍ଠ ଓ ସପ୍ତମ ସନ୍ତାନ :

ପ୍ରଶାନ୍ତଙ୍କ ପରେ ଦୁଇ-ଦୁଇ ବର୍ଷ ବ୍ୟବଧାନରେ ଦୁଇଟି କନ୍ୟାସନ୍ତାନ ଜନ୍ମଗ୍ରହଣ କଲେ ଏବଂ ଦୁହିଁଙ୍କର ସୂତିକା ଘରେ ମୃତ୍ୟୁ ହେଲା । ଏହି ଶୋକ ମଧୁସୂଦନ ଓ ତାଙ୍କ ପତ୍ନୀଙ୍କୁ ଅତ୍ୟନ୍ତ କାତର କରିଥିଲା ।

## ଅଷ୍ଟମ ସନ୍ତାନ-ସାନ୍ତ୍ୱନା ଦେବୀ :

୧୮୯୨ ଖ୍ରୀଷ୍ଟାବ୍ଦ ଏପ୍ରିଲ ୧୨ ତାରିଖ ଚୈତ୍ରପୂର୍ଣ୍ଣିମା ତିଥିରେ କଟକରେ

ଭୂମିଷ୍ଠ ହୋଇଥିଲେ । ଏହି କନ୍ୟାଟି ସୁସ୍ଥ ଦେହରେ ରହି ସମସ୍ତଙ୍କର ଆନନ୍ଦବର୍ଦ୍ଧନ କରିବାକୁ ଲାଗିଲେ । ଶୋକକାତର ମଧୁସୂଦନ ଏଥିପାଇଁ ଏହାଙ୍କର ନାମ ସାନ୍ତ୍ୱନା ରଖିଥିଲେ । ମଧୁସୂଦନଙ୍କ ମୃତ୍ୟୁପରେ ୧୯୧୫ ଖ୍ରୀଷ୍ଟାବ୍ଦ ଏପ୍ରିଲ ୩ ତାରିଖରେ ଅଧ୍ୟାପକ ଶ୍ରୀ ସନ୍ତୋଷ କୁମାର ବନ୍ଦୋ-ପାଧ୍ୟାୟଙ୍କ ସହିତ ଏହାଙ୍କର ବିବାହ ହେଲା । ଏହି ବିବାହରେ ଜଗନ୍ନାଥ ରାଓ କନ୍ୟାକର୍ତ୍ତାର କାର୍ଯ୍ୟ ନିର୍ବାହ କରିଥିଲେ ।

## ନବମ ସନ୍ତାନ-ସୁକାନ୍ତ ରାଓ :

୧୮୯୭ ଖ୍ରୀଷ୍ଟାବ୍ଦ ଜାନୁୟାରୀ ୧୪ ତାରିଖରେ କଟକରେ ଜନ୍ମଗ୍ରହଣ କରିଥିଲେ । କଟକ ରେଭେନସା କଲେଜରୁ ଆଇ. ଏସ. ସି. ଏବଂ କଲିକତା ପ୍ରେସିଡ଼େନସି କଲେଜରୁ ବି. ଏସ୍. ସି. ଓ ଏମ୍. ଏସ୍. ସି. ପାସ୍ କରି ଓଡ଼ିଶାର ସରକାରୀ ଶିକ୍ଷା ବିଭାଗରେ କର୍ମଜୀବନଯାପନ କରିଥିଲେ ।

ପଣ୍ଡିତ ଶିବନାଥ ଶାସ୍ତ୍ରୀ ମହାଶୟଙ୍କ ଦୌହିତ୍ରୀ କରୁଣା ଦେବୀଙ୍କ ସହିତ ୧୯୨୩ ଖ୍ରୀଷ୍ଟାବ୍ଦରେ ଏହାଙ୍କର ବିବାହ ହୋଇଥିଲା । ୧୯୫୧ ଖ୍ରୀଷ୍ଟାବ୍ଦ ମେ ୩ ତାରିଖରେ କରୁଣା ଦେବୀ କଲିକତା ୨୭ ନମ୍ବର ବାଡ଼ନ ଷ୍ଟ୍ରୀଟ୍‌ରେ ପରଲୋକ ଗମନ କଲେ ।

## ଦଶମ ସନ୍ତାନ-ଶ୍ରୀକଣ୍ଠ ମଧୁସୂଦନ ରାଓ :

ଶ୍ରୀକଣ୍ଠ ମଧୁସୂଦନ ରାଓ ୧୮୯୯ ଖ୍ରୀଷ୍ଟାବ୍ଦ ଫେବୃୟାରୀ ୧୭ ତାରିଖରେ କଟକରେ ଜନ୍ମଗ୍ରହଣ କରିଥିଲେ । ସେ ବିବାହ କରିନଥିଲେ । ମଧୁସୂଦନଙ୍କ ସହୋଦର ଭ୍ରାତା ଜଗନ୍ନାଥ ରାଓଙ୍କର ଦୁଇଟି କନ୍ୟା ସନ୍ତାନ ଥିଲେ । ଏମାନେ ମଧ୍ୟ ମଧୁସୂଦନଙ୍କ କୋଳରେ କନ୍ୟା ନିର୍ବିଶେଷରେ ପାଳିତା ହୋଇଥିଲେ ।

## ପ୍ରଥମା କନ୍ୟା-ରେବା :

୧୮୭୭ ଖ୍ରୀଷ୍ଟାବ୍ଦ ଆଷାଢ଼ ମାସରେ ଏହାଙ୍କର କଟକରେ ଜନ୍ମ ହୋଇଥିଲା ଏବଂ ପନ୍ଦର ବର୍ଷ ବୟସରେ ଉତ୍ସାହୀ ବ୍ରାହ୍ମଯୁବକ ସାଧୁଚରଣ ରାୟଙ୍କ ସହିତ ବିବାହ ହୋଇଥିଲା । ଉଦ୍ୟୋଗୀ ମଧୁସୂଦନଙ୍କ ପ୍ରବର୍ତ୍ତନାରେ

ସ୍ୱାମୀ ସାଧୁଚରଣ ସହଯୋଗୀତାରେ ଏବଂ ରେବା ରାୟଙ୍କ ସମ୍ପାଦନାରେ "ଆଶା" ନାମକ ଗୋଟିଏ ଓଡ଼ିଆ ମାସିକ ପତ୍ରିକା ଓଡ଼ିଶାରେ ନାରୀଶିକ୍ଷାର ଉନ୍ନତିକଳ୍ପେ ପ୍ରଥମେ ପ୍ରକାଶିତ ହୋଇଥିଲା । ବିଂଶ ଶତକର ପ୍ରଥମ ଦଶକରେ ରେଭେନଶା ବାଳିକା ବିଦ୍ୟାଳୟର (ସେତେବେଳେ କଟକରେ ଏହା ଏକମାତ୍ର ବାଳିକା ବିଦ୍ୟାଳୟ) ଅବସ୍ଥା ମନ୍ଦ ହୋଇପଡ଼ିବାରୁ ଏବଂ ତାହାର ଆଶୁ ଉନ୍ନତିର ସମ୍ଭାବନା ନଥିବାରୁ ରେବା ରାୟ ୧୯୦୫ ଖ୍ରୀଷ୍ଟାବ୍ଦରେ "ଆଦର୍ଶ ବାଳିକା ବିଦ୍ୟାଳୟ" ନାମକ ଗୋଟିଏ ଉଚ୍ଚ ଇଂରାଜୀ ବିଦ୍ୟାଳୟ ସ୍ଥାପନ କରି ଓଡ଼ିଶାର ସ୍ତ୍ରୀ-ଶିକ୍ଷାର ଉନ୍ନତି ପାଇଁ ଅର୍ଥ ଓ ସାମର୍ଥ୍ୟ ଦେଇ ପ୍ରାଣପଣ ଚେଷ୍ଟା କରିଥିଲେ । ଏହି ବିଦ୍ୟାଳୟରୁ ଚନ୍ଦ୍ରମୁଖୀ ଷଡ଼ଙ୍ଗୀ ଓ ଜ୍ୟୋତିର୍ମୟୀ ଘୋଷ ନାମରେ ଦୁଇ ବାଳିକା ପ୍ରବେଶିକା ପରୀକ୍ଷାରେ ସର୍ବପ୍ରଥମ ଉତ୍ତୀର୍ଣ୍ଣ ହୋଇଥିଲେ । ଦୁଇ ପୁତ୍ର ଓ ଏକ କନ୍ୟା ରଖି ସାଧୁଚରଣ ୩୭ ବର୍ଷ ବୟସରେ ୧୮୯୮ ଖ୍ରୀଷ୍ଟାବ୍ଦ ଜୁନ ୨୯ ତାରିଖରେ ଅକାଳରେ ପରଲୋକ ଗମନ କଲେ । ରେବା ରାୟ ୧୯୫୭ ଖ୍ରୀଷ୍ଟାବ୍ଦ ଅଗଷ୍ଟ ୭ ତାରିଖରେ ୮୧ ବର୍ଷ ବୟସରେ କଟକରେ ଦେହତ୍ୟାଗ କଲେ ।

## ଦ୍ୱିତୀୟ କନ୍ୟା-ସରସ୍ୱତୀ :

୧୮୭୯ ଖ୍ରୀଷ୍ଟାବ୍ଦ ବୈଶାଖ ପହିଲି ତାରିଖ ଦିନ କଟକରେ ଜନ୍ମଗ୍ରହଣ କରିଥିଲେ । ୧୮୯୯ ଖ୍ରୀଷ୍ଟାବ୍ଦରେ ନବବିଧାନ ବ୍ରାହ୍ମସମାଜର ଉପାଧ୍ୟାୟ ଗୌରଗୋବିନ୍ଦ ରାୟ ମହାଶୟଙ୍କ ଜ୍ୟେଷ୍ଠପୁତ୍ର ଅମୃତାନନ୍ଦଙ୍କ ସହିତ ଏହାଙ୍କର ବିବାହ ହୋଇଥିଲା । ତିନି କନ୍ୟା ଓ ଏକ ପୁତ୍ର ରଖି ଅମୃତାନନ୍ଦ ୧୯୧୪ ଖ୍ରୀଷ୍ଟାବ୍ଦ ଜୁଲାଇ ୧୯ ତାରିଖରେ ଗଡ଼ଜାତ ଅନ୍ତର୍ଗତ ବଉଦରେ ଅକାଳରେ ପରଲୋକ ଗମନ କଲେ । ଏହି ଦୁଃସହ ଶୋକରେ ଅଭିଭୂତ ହୋଇ ସରସ୍ୱତୀ ଦେବୀ ମଧ୍ୟ ପତି ବିୟୋଗର ଏକବର୍ଷ ମଧ୍ୟରେ ୧୯୧୫ ଖ୍ରୀଷ୍ଟାବ୍ଦ ଜୁଲାଇ ୫ ତାରିଖରେ କଲିକତାଠାରେ ନବବିଧାନ-ଭକ୍ତିର ଆଶ୍ରମରେ ଲୋକାନ୍ତରିତା ହେଲେ ।

—o—

# ଷଷ୍ଠ ପରିଚ୍ଛେଦ

## ଭକ୍ତକବି

ମଧୁସୂଦନ ୧୯୧୨ ଖ୍ରୀଷ୍ଟାବ୍ଦ ଡ଼ିସେମ୍ବର ମାସ ୨୮ ତାରିଖରେ ୭୦ ବର୍ଷ ବୟସରେ (୭୦ ବର୍ଷ ପୂର୍ତ୍ତିର ୧ ମାସ ପୂର୍ବରୁ) ପରଲୋକ ଗମନ କଲେ । 'ଭକ୍ତକବି' ଏହି ଆଖ୍ୟାଟି ଇତିପୂର୍ବରୁ ତାହାଙ୍କୁ—ଉତ୍କଳର ସୁଧୀ ମନୀଷୀ, ସାହିତ୍ୟିକ, ଲେଖକ ଓ ଗୁଣମୁଗ୍ଧ ଦେଶବାସୀ ବନ୍ଧୁଙ୍କ ଆନ୍ତରିକ ଶ୍ରଦ୍ଧାଭକ୍ତିର ନିଦର୍ଶନ ରୂପେ-ପ୍ରଦତ୍ତ ହୋଇଥିଲା । 'ଭକ୍ତକବି' କହିଲେ ଓଡ଼ିଶାରେ ମଧୁସୂଦନ ରାଓଙ୍କୁ ହିଁ ବୁଝାଏ । ପୂର୍ବରୁ କହିଅଛୁ ମଧୁସୂଦନଙ୍କ ଜୀବନର ମୂଳଭିତ୍ତି ଭଗବଦ୍‌ଭକ୍ତି । ମନେପଡ଼େ ତାଙ୍କ କବିତା :—

"ହେ ଆଦି ଜନନୀ କାବ୍ୟମୟୀ ସରସ୍ୱତୀ
ଜଗତରେ କବିକୁଳ ତୋହରି ସନ୍ତତି ।
ଅଗାଧ ଅତଳସ୍ପର୍ଶ ଜଠରୁ ତୋହରି
ଜନମ ଲଭଇ କବି ନରରୂପ ଧରି ।"

(ରାଧାନାଥଙ୍କ ବିୟୋଗରେ)

ସେ ଯେ ତାଙ୍କର ପରମାରାଧ୍ୟା ଜଗତ୍‌ଜନନୀଙ୍କୁ କବିକୁଳର ଜନନୀ ବୋଲି ଅନୁଭବ କରି ଉପରୋକ୍ତ କବିତା ଲେଖିଥିଲେ । ସେହି ଭାବର ପ୍ରତିଧ୍ୱନି ଅନ୍ୟ ଗୋଟିଏ କବିତାରେ ମିଳେ :—

ଜୟ ଜୟ ଜୟ ବ୍ରହ୍ମାଣ୍ଡ ଜନନୀ
ଅନନ୍ତ ମାନସ-କମଳ-ବାସିନୀ
ଚିଦାନନ୍ଦମୟୀ ଅପରୂପ ଧାରିଣୀ
ନିତ୍ୟ ନବ ନବ ଦୃଷ୍ଟି ପ୍ରକାଶିନୀ
ଦିବ୍ୟ ଜ୍ଞାନମୟୀ ଅମୃତ ଭାଷିଣୀ
ଅଚେତ ଜନ ଜାଗ୍ରତ କାରିଣୀ
ଆସ ମା' ଭାରତେ ଭାରତୀ ସତୀ ।

('ଭାରତୀ ବନ୍ଦନା-କବିତାବଳୀର ପ୍ରଥମ ଭାଗ)

ସେହି ଶଚ୍ଚିଦାନନ୍ଦମୟୀ ଅରୂପଧାରିଣୀ ଜଗନ୍ମାତାଙ୍କ ବିରାଟ-ରୂପ-ମଧ୍ୟରେ ହିଁ ତାଙ୍କ କବି-ରୂପର ପ୍ରକାଶ । ସେ ସର୍ବଦା ଅନ୍ତରରେ ଅନୁଭବ କରୁଥିଲେ । ଏହି ଅନୁଭୂତି ଭିତର ଦେଇ ତାଙ୍କର କବିତାସ୍ରୋତ ପ୍ରବାହିତ ହୋଇଅଛି । ତାଙ୍କର ସମଗ୍ର ରଚନା କି ଶିଶୁମାନଙ୍କ ପାଇଁ, କି କିଶୋର-କିଶୋରୀମାନଙ୍କ ପାଇଁ, କି ବୟସ୍କ ପାଠକ-ପାଠିକାମାନଙ୍କ ପାଇଁ, କି ଉତ୍ସବରେ, କି ବିପଦରେ, କି ଶୋକ-ଗାଥା ମଧ୍ୟରେ-ସର୍ବତ୍ର ହିଁ ଉପଲବ୍ଧି ହୁଏ ଯେଉଁ, ତାଙ୍କ ଅନ୍ତରକୁ ପୂର୍ଣ୍ଣ କରିଅଛନ୍ତି, ସେହି ଏକମେବାଦ୍ୱିତୀୟମ୍ ପରମଦେବତା । ସବୁ ମଧ୍ୟରେ ସେ ତାଙ୍କ କଲ୍ୟାଣହସ୍ତର ସ୍ପର୍ଶ ପାଉଅଛନ୍ତି । ଏହା ହିଁ ହେଲା ତାଙ୍କ ସମଗ୍ର ଜୀବନର ଅନୁଭୂତିର ମର୍ମକଥା ।

କବିଙ୍କ ଦୃଷ୍ଟି ମାଧ୍ୟମରେ ପ୍ରକୃତିର ସୌନ୍ଦର୍ଯ୍ୟ ଦର୍ଶନ କରି ସେ ମୁଗ୍ଧ ହୋଇଛନ୍ତି ଏବଂ ତାଙ୍କ ଭକ୍ତପ୍ରାଣ ଏହି ସୃଷ୍ଟି ମଧ୍ୟରେ ବିଶ୍ୱପିତାଙ୍କ ହସ୍ତର କାର୍ଯ୍ୟ ଦେଖି ଦେଖି ମହିମାମୟଙ୍କ ଜୟଗାନରେ ମୁଖର ହୋଇ ଉଠିଛି ।

ଏହି ପ୍ରସଙ୍ଗରେ ତାଙ୍କର 'ଋଷିପ୍ରାଣେ ଦେବାବତରଣ' କବିତାଟିର କଥା ମନେପଡ଼େ । ତିନିସହସ୍ର ବର୍ଷ ପୂର୍ବକାର ଉପନିଷଦ ଯୁଗ ଋଷିଙ୍କର ସ୍ତୋତ୍ର ଯାହା ସେ ଏହି କବିତାରେ ବର୍ଣ୍ଣନା କରିଅଛନ୍ତି, ତାହା ଭକ୍ତକବିଙ୍କ ସାଧନାଲବ୍ଧ ଅନୁଭୂତିର ମର୍ମବାଣୀ ।

"କ୍ଷିତି ଅପ୍ ମରୁତ୍ ବ୍ୟୋମ ତେଜ ଏକାକାର
ହେରେ ଗଲା ଋଷିବର ଚିନ୍ମୟ ପ୍ରସାର ।

ମୃତ ଜଡ଼ ଆଜ ଯାହା କି ଅମୃତମୟ
ବ୍ରହ୍ମ ନିଃଶ୍ୱସିତେ ପୂର୍ଣ୍ଣ ବ୍ରହ୍ମାଣ୍ଡ ହୃଦୟ ।

ବ୍ରହ୍ମାଣ୍ଡ-ହୃଦୟ-ତନ୍ତ୍ରୀ ବାଜେ ଏକତାନେ
ଓଁକାର-ଝଙ୍କାରମୟ ମର୍ମଭେଦୀ-ଗାନେ ।"

ପ୍ରକୃତି ରାଜ୍ୟରେ ଓ ଅନ୍ତର ରାଜ୍ୟରେ ଏକମେବାଦ୍ୱିତୀୟମ୍ ବ୍ରହ୍ମଙ୍କର ପ୍ରକାଶରେ ମୁଗ୍ଧ-ବିହ୍ୱଳ ଯୁବକ ଋଷିକଣ୍ଠରୁ ଏହି ପ୍ରାର୍ଥନା ବାଣୀ ଉଚ୍ଚାରିତ ହୋଇଅଛି :—

"ଏକ ଅଦ୍ୱିତୀୟ ପ୍ରଭୁ ସର୍ବ-ମୂଳାଧାର
ଏକମାତ୍ର ପରମାତ୍ମା ବ୍ରହ୍ମ ନିରାକାର
ଜୟହେ ମଙ୍ଗଳମୟ, ମହାମହେଶ୍ୱର,
ଜୟ ଜୟ ସତ୍ୟରୂପ ପରମ ସୁନ୍ଦର ।
ବିରାଜ ବିରାଜ ଦେବ, ହେ ଅମୃତମୟ,
ତୁମର ଅମୃତପୂର୍ଣ୍ଣ କରି ଏ ହୃଦୟ ।
ତୁମରି ଓଁକାରମୟୀ ବାଣୀ ନିରନ୍ତର
ପବିତ୍ର ଝଙ୍କାରେ ପୂରୁ ଏ ପ୍ରାଣକନ୍ଦର ।"

ଏହି 'ଋଷିପ୍ରାଣେ ଦେବାବତରଣ' କବିତା ୧୨୯୮ ବଙ୍ଗାବ୍ଦର ମାର୍ଗଶୀର ସଂଖ୍ୟା ନବ୍ୟଭାରତରେ 'ଋଷିଚିତ୍ର' ନାମରେ ପ୍ରକାଶିତ ହୋଇଥିଲା । ରବୀନ୍ଦ୍ରନାଥ ୧୨୯୮ ବଙ୍ଗାବ୍ଦର ପୌଷ ସଂଖ୍ୟା 'ସାଧନା' ପତ୍ରିକାରେ ଏହାର ସମାଲୋଚନା କରି ଉଚ୍ଚ ପ୍ରଶଂସା କରିଥିଲେ । (ବିଶଦ ବିବରଣୀ ୧୪୭ ପୃଷ୍ଠାରେ ଦ୍ରଷ୍ଟବ୍ୟ)

ତାଙ୍କର କବିତାରୁ ଯେ, ସମସ୍ତ ପ୍ରକୃତି ମଧ୍ୟରେ ଏକମାତ୍ର ପରମଦେବତାଙ୍କ ପରିଚୟ ପାଇ, ତାଙ୍କରି ଚରଣରେ ମସ୍ତକଲୁଣ୍ଠିତ କରି ମାନବ ସନ୍ତାନକୁ ତାଙ୍କର ପ୍ରେମରେ ମଗ୍ନ ହେବା ପାଇଁ ଡ଼ାକ ଦେଇଛୁ, ତାହା ତାଙ୍କର 'ଶୋକ', 'ଧ୍ୟାନ', 'ପଦ୍ମ' ଓ 'ଏ ସୃଷ୍ଟି ଅମୃତ ହେ' କବିତାଗୁଡ଼ିକରେ ସୁସ୍ପଷ୍ଟ ପ୍ରକାଶିତ ।

ଚରିତ୍ରର ପବିତ୍ରତା, ଶୁଦ୍ଧତା, ଯାହା ଭଗବଦ୍ ଭକ୍ତ ଜୀବନରେ ନିତ୍ୟ କାମ୍ୟ, ସେହି ପବିତ୍ରତା ଓ ଶୁଦ୍ଧତା ଭକ୍ତକବିଙ୍କ ରଚନାରେ ନାନାଭାବରେ ପ୍ରକାଶିତ । ତାଙ୍କ "ପରଲୋକଗତ ବାସିନୀଙ୍କ ପ୍ରତି" କବିତାରେ ମିଳେ :

"କି ଅମୃତ ତତ୍ତ୍ୱଦୀକ୍ଷା ଅଶାନ୍ତ ଯୌବନେ,
ଦେଲି ଦେବୀ ପୂର୍ଣ୍ଣ୍ୟମୟୀ ସ୍ୱର୍ଗୁଁ ଅବତରି
ସେ ଦୀକ୍ଷା ପ୍ରଭାବ ମୋର ସମଗ୍ର ଜୀବନେ,
ମରମେ ମରମେ, ଦେବୀ ଯାଉ ଗୋ ସଞ୍ଚରି,
ପୋଡ଼ିଯାଉ ଜଗତର ବାସନା ବିକାର;
ଜାଗିଉଠୁ ବିଶ୍ୱେ ଶୁଦ୍ଧ ପ୍ରେମ ଅନିବାର ।"

ପାପ ପ୍ରତି ଘୃଣା ଓ ପାପୀ ପ୍ରତି କରୁଣା ଭଗବତ୍-ପ୍ରେମିକ ଭକ୍ତଜୀବନରେ ଏହା ବିଧାତୃ-ଦତ୍ତ ମହତ୍ତ୍ୱ ପ୍ରେରଣା ରୂପେ ଦୃଷ୍ଟ ହୋଇଥାଏ । ମଧୁସୂଦନଙ୍କ 'ପତିତା ରମଣୀ' କବିତାଟି ଏହାର ଉଜ୍ଜ୍ୱଳ ଦୃଷ୍ଟାନ୍ତ :—

ଯେ ଘୃଣିବ ଘୃଣନ୍ତୁ ତୋତେ ଗର୍ବ ଅବଜ୍ଞାରେ
କିନ୍ତୁ ଲୋ ଭଗିନୀ ମୁହିଁ ତୋ ଦୁଃଖେ କାତର
ଆହତ ଏ ପ୍ରାଣ ତୋର ମର୍ମ ହାହାକାରେ
କାନ୍ଦଇ ଆକୁଳେ ମୋର ବ୍ୟଥିତ ଅନ୍ତର ।
କାତରେ ସୁମରି ତୋତେ ଘୃଣିଲି ଆକୁଳେ
ପତିତ-ପାବନୀ ବିଶ୍ୱଜନନୀ-ଚରଣେ ।
ଆଶାର ଅମୃତ ଜ୍ୟୋତି ସେ ପଦକମଳେ ।
ଦେଖିଲି, ଅଭୟବାଣୀ ଶୁଣିଲି ଶ୍ରବଣେ,
କହିଲ ମା ଜଗଦମ୍ବା ପତିତ-ପାବନୀ-
ପତିତା ହେଲେହେଁ ନାରୀ ମୋହର ତନୟା
ଉଦ୍ଧାରିବି କ୍ଷଣେ ତାକୁ ଦେଇ ମୁକ୍ତି-ମଣି
ମୋର କନ୍ୟା ମୋର ହେବ ଲଭି ମୋର ଦୟା
ସନ୍ତାନ୍ତୁ, ଦେଖାନ୍ତୁ ତାର ଲଲାଟେ ଲିଖିତ-
କେ ତାକୁ ଘୃଣିନ୍ତୁ, ବିଶ୍ୱେ କରିବ ବଞ୍ଚିତ !"

ପାପୀ ପ୍ରତି କେବଳ କରୁଣା ନୁହେଁ, ପତିତପାବନୀ ବିଶ୍ୱଜନନୀଙ୍କ ମହାପ୍ରେମସ୍ରୋତ ପାପୀର ଉଦ୍ଧାର ପାଇଁ ନିୟତ ପ୍ରବାହିତ, ବିଶ୍ୱାସ ନୟନରେ ଏହା ଦର୍ଶନ କରି ଭକ୍ତପ୍ରାଣ ଆଶାର ଅମୃତ ଜ୍ୟୋତିରେ ଉଦ୍ଭାସିତ, ଏହି କବିତା ତାହାର ନିଦର୍ଶନ ।

'ଉତ୍କଳ ଗାଥା' ପୁସ୍ତକର କବିତାଗୁଡ଼ିକରେ ଅତି ଉତ୍କଳ ଜନନୀଙ୍କ ବନ୍ଦନା ଓ ଉତ୍କଳ ସନ୍ତାନକୁ ଦେଶର ସୁସନ୍ତାନ ହେବାପାଇଁ ଆହ୍ୱାନ କରି ପ୍ରାଦେଶିକତା ଓ ସଂକୀର୍ଣ୍ଣତାର ଊର୍ଦ୍ଧ୍ୱକୁ ଉଠି କବି ଗାଇଅଛନ୍ତି :—

ଓଡ଼ିଆ ଓଡ଼ିଆ କ୍ଷୁଦ୍ର ହୃଦ ଘୁଞ୍ଚୁ କ୍ଷଣେ
ପଶନ୍ତୁ ମା' ତୋ ସନ୍ତାନେ ବିଶ୍ୱସଭାଙ୍ଗନେ;
ନିଖିଳ ମାନବ-ହୃଦେ ମିଶାଇ ହୃଦୟେ
ଗାଆନ୍ତୁ ବିଶ୍ୱାସଭରେ-ଜୟ ସତ୍ୟ ଜୟେ ।

ଭକ୍ତକବିଙ୍କ ଅନ୍ତରରୁ ପ୍ରାର୍ଥନା ଉଠିଅଛି :—

"ହେ ଭୂମା, ଭୁବନେଶ୍ୱର,
ଉଦ୍ଧାର ଉତ୍କଳେ
ଜଣାଅ ମାନବ-ସନ୍ତାନେ-
ଉଚ୍ଚ କୁଳ ତାହାର ।
ସେ ଯେ ବ୍ରହ୍ମସୁତ-ଏ ବାର୍ତ୍ତା
କର ଭବେ ବିସ୍ତାର ।
ବ୍ରହ୍ମ-ସୁତ ବ୍ରହ୍ମ ତନୟା
ନର ନାରୀ ନିକର ।
କର ଏ ସମ୍ବାଦ ଘୋଷଣା,
ସତ୍ୟ ଶିବ ସୁନ୍ଦର ।
ସ୍ୱରଗର ପ୍ରେମ-ଆଲୋକ
ଦଶଦିଗେ ପ୍ରକାଶୁ,
ବିଧାତାର ପୁଣ୍ୟ-ଆନନ୍ଦ-
ସ୍ରୋତେ ଜଗତ ଭାସୁ ।

ବ୍ରହ୍ମଭକ୍ତ କବି ଆଶାବାଦୀ, ନିରାଶାର ଅନ୍ଧକାର ତାଙ୍କ ବିଶ୍ୱାସନେତ୍ର ଆଲୋକରେ ଦୂରୀଭୂତ ହୋଇଯାଇଛି । "ଆଶା" କବିତାରେ ତେଣୁ ଦେଖାଯାଏ :—

"ଦେଖରେ ନୟନ ଫେଡ଼　　ମୋ ନୟନ ପ୍ରିୟ
ଆଶା ପ୍ରଭା-ମୟୀ
ବିନାଶି ତିମିର ରାଶି,　　ବିଶ୍ୱାସ-ସୁଲଭ
ବିଶ୍ୱ ଉଜଳଇ"

'ହିମାଚଳେ ଉଦୟ ଉତ୍ସବ' କବିତାଟି କାଞ୍ଚନଜଙ୍ଘାରେ ସୂର୍ଯ୍ୟୋଦୟ ଦେଖି ଲିଖିତ । ନିଶାନ୍ତେ ଉଷାର ଉଦୟ ଦର୍ଶନ କରି, ଉତ୍ସବାନନ୍ଦରେ ବିଭୋର ଭକ୍ତକବିଙ୍କ ଅନ୍ତରରେ ଜାଗିଉଠିଛି ସେହି ମହାମିଳନ ଦେବତାଙ୍କର ଏହି ଅପରୂପ ସୃଷ୍ଟି ମଧ୍ୟରେ :—

"ଏବେ ଦ୍ୟାବା ପୃଥିବୀର ପରିଣୟୋତ୍ସବ
ଚିର ପୁରାତନ, ପୁଣି ନିତ୍ୟ ନବନବ ।

ଦ୍ୟାବା ପୃଥିବୀର ଏହି ମିଳନୋତ୍ସବର ମଧ୍ୟରେ ଭକ୍ତକବିଙ୍କ ଅନ୍ତର ତାଙ୍କ ପ୍ରିୟତମ ପରମାତ୍ମାଙ୍କ ସଂସ୍ପର୍ଶ ଲାଭ କରିଅଛି :—

ଦ୍ୱୈତ-ଅଦ୍ୱୈତର ଅନୁଭବ ମହୋତ୍ସବେ
ପରିବର୍ତ୍ତିତ ଜୀବନର ଅପୂର୍ବ ଗୌରବେ,
ଉଦାର ଗମ୍ଭୀର ସ୍ତବ୍ଧ ମୁଗ୍ଧ ପ୍ରେମାବେଶେ
ଅନାଇଲି ପରସ୍ପର ପଡ଼ି ପରଶେ ।

× × ×

ପ୍ରକୃତି ସଙ୍ଗରେ ମିଳି ଯହୁଁ ଏହି ପ୍ରାଣ
ଅନୁଭବ କ ଅଦ୍ଭୁତ ଅମୃତ ଆହ୍ୱାନ
ଅନାଇଲି ପ୍ରେମ ନେତ୍ରେ, ସେ ପ୍ରେମ ନିଧାନ
ସେ ଅନ୍ତରତମ ସଖା ନିଖିଳ-ନିଦାନ
ଅନନ୍ତ ପ୍ରେମରେ ମୁଗ୍ଧ ସ୍ନିଗ୍ଧ ଆକର୍ଷଣେ
ଅଲକ୍ଷିତ ଚରଣେ ପ୍ରାଣ ଟାଣିନେଲେ କ୍ଷଣେ ।
ପ୍ରେମାଞ୍ଚେ ପୂରିଲା ତନୁ ପୁଲକେ ପରାଣ,
ମର୍ମର ଉଠିଲା ମର୍ମଭେଦୀ ସ୍ତବଗାନ ।
ହୃଦପ୍ରାନ୍ତେ ଉତ୍ସାରିତ ବିଦାରି ପାଷାଣ,
ନୃତ୍ୟଗୀତେ କଲ୍ଲୋଳିତ ନିତ୍ୟ ବହମାନ ।
ବୋଇଲି, ହେ ପ୍ରାଣସ୍ୱାମୀ, ଆହେ ଅନୁପମ,
ଧନ୍ୟ ହେଲା ଆଜି ଏ ଅଧମ ପ୍ରାଣ ମମ ।

× × ×

ହେ ଅନାଦି, ହେ ଅନନ୍ତ ରସ-ପ୍ରସ୍ରବଣ,
ମୋର ଆଦି-ଅନ୍ତ ରସେ ରସେ ନିଗମନ ।
ଆଜି ମୋର ନେତ୍ରୋତ୍ସବ, ଶ୍ରୀନେତ୍ରେ ସୁନ୍ଦର
ନିମଗନ ମୁଗ୍ଧ ଦୃଷ୍ଟି ଏ ମୋ ନୟନର ।
ଦେଖଇ ଏ ସ୍ୱପ୍ନାତୀତର ଦ୍ୟୁଲୋକେ ଭୂଲୋକେ
ସ୍ଫୂର୍ତ୍ତି ଏ ନିଖିଳ ତବ ଆଲୋକେ ଆଲୋକେ ।

× × ×

ଏ ନିଖିଳ ବିଶ୍ୱ ଆଜି ନିଜସ୍ୱ ମୋହର
ଏ ବିଚିତ୍ର, ଏ ସୁକାନ୍ତ ଧରଣୀ ଅମ୍ବର ।

ଆଜି ମୋ ଶ୍ରବଣୋତ୍ସବ ଏ ପ୍ରାଣ କନ୍ଦରେ
କି ଅମୃତ ଲହରୀରେ କି ମହାଛନ୍ଦରେ ।
ଏ ପ୍ରାଣ-ବୀଣାରେ ତବ ଶ୍ରୀକର ପରଶେ
ଗାୟତ୍ରୀ ଓଁକାରମୟୀ ଧ୍ୱନିତ ହରଷେ
ବଂଶୀଧ୍ୱନି ଶୁଣୁଛି ମୁଁ ପ୍ରାଣର ଶ୍ରୀହରି-
ମୋହନ ମୋହନ ତୁମ୍ଭ ମୋହନ ମୋହନ ।

ଏହି ଭାବର ପ୍ରତିଧ୍ୱନି ଅନ୍ୟ ଗୋଟିଏ ବ୍ରହ୍ମସଙ୍ଗୀତରେ ମିଳେ :—

ପ୍ରାର୍ଥନା, ପ୍ରଭୁ ଚରଣେ ତବ ପ୍ରାର୍ଥନା-
ଲଭିଥାଉ ପ୍ରାଣେ ତୁମ୍ଭ ଉତ୍ସବ;
ବସାଇ ଅଭୟ ଚରଣ ପୋତେ
ଭସାଅ ହେ ତୁମ୍ଭ ଆନନ୍ଦ ସ୍ରୋତେ ।

ବିଶ୍ୱଜୟୀ ତୁମ୍ଭ ଜୟ ନିଶାଣ
ଦରଶନେ ହେଉ ମୁଗ୍ଧ ହେଉ ମୋ ପ୍ରାଣ ।

ଅନନ୍ତ ଗୌରବ ମହିମା ତବ
ଘୋଷୁ ପ୍ରାଣ ନିତ୍ୟ, ଧନବାନ୍ଧବ ।

ଅମୃତ ଉତ୍ସବ ବିଧାନକାରୀ,
ଢାଳ ହୃଦେ ପୂର୍ଣ୍ଣ ଅମୃତବାରି ।

(ମଧୁସୂଦନ ଗ୍ରନ୍ଥାବଳୀର ସଙ୍ଗୀତମାଳା ୩୬୫ ପୃଷ୍ଠା)

ଭକ୍ତକବିଙ୍କର ସମଗ୍ର ରଚନା ମଧ୍ୟରେ ଭକ୍ତ ଅନ୍ତରର ସୁଗଭୀର ଭକ୍ତିରସ ପ୍ରବାହିତ । ତାଙ୍କ ରଚିତ 'ପରମ ପ୍ରମାଣ' କବିତାରେ ଅଛି :—

"ଶାସ୍ତ୍ର ଯୁକ୍ତି ପ୍ରମାଣର ଅତୀତ ଅଗାଧ
ସେ ଅନ୍ତରତମ, ବୁଡ଼ିଯାଅ ସେ ଅତଳେ
ଦୂରେ ଫିଙ୍ଗି ଅଭିମାନ, ପ୍ରମାଣ-ପ୍ରମାଦ,
ପଡ ଆସି ସେ ଅନନ୍ତ ପାଦପଦ୍ମ ତଳେ
ହେ ଚତୁର ସୁଧୀ ! ଛାଡ ବିଶ୍ୱର ବିତୃଷ୍ଣା
ଭୁଞ୍ଜ ମହାନନ୍ଦେ ମହ ବିଶ୍ୱାସ ମାଧୁରୀ ।

ଅନନ୍ତ ବ୍ରହ୍ମାଣ୍ଡଙ୍କ ବିଶ୍ୱବ୍ୟାପୀ ମହାପ୍ରେମଲୀଳା ମଧ୍ୟରେ ନିମଗ୍ନ ଭକ୍ତପ୍ରାଣଟି ସମସ୍ତ ଅଭିମାନ, ଭ୍ରମାଣ-ପ୍ରମାଦକୁ ଦୂରକୁ ଫିଙ୍ଗିଦେଇ ଅନନ୍ତ-ଦେବଙ୍କ ପଦତଳେ ପଡ଼ି ସେହି ବିଶ୍ୱାସ-ମାଧୁର୍ଯ୍ୟସମ୍ଭୋଗ କରିବା ପାଇଁ ମାନବ-ସନ୍ତାନକୁ ଡ଼ାକଦେଇ ଆସୁଅଛି । ଜ୍ଞାନ, ପ୍ରେମ, କର୍ମ ଓ ତପସ୍ୟାଲବ୍ଧ ବିଭୁପ୍ରେମ ରସରେ ନିମଗ୍ନ ଏହି କବିଙ୍କୁ ଓଡ଼ିଶାବାସୀ ସର୍ବସାଧାରଣଙ୍କର "ଉତ୍କଳକବି" ଆଖ୍ୟା ଦାନ ସାର୍ଥକ ହୋଇଅଛି ।

## (ଖ) ରବୀନ୍ଦ୍ରନାଥଙ୍କ ସହିତ ଯୋଗ

୧୨୯୮ ବଙ୍ଗାବ୍ଦ 'ନବ୍ୟଭାରତ' ପତ୍ରିକାର ମାର୍ଗଶୀର ସଂଖ୍ୟାରେ ମଧୁସୂଦନଙ୍କ 'ଋଷିପ୍ରାଣ' କବିତାଟି ପ୍ରକାଶିତ ହେଲା । ତଦନନ୍ତର ରବୀନ୍ଦ୍ରନାଥ ସେହି ସାଲର ପୌଷ ସଂଖ୍ୟାର 'ସାଧନା' ପତ୍ରିକାର ସାମୟିକ ସାହିତ୍ୟ ସମାଲୋଚନା ବିଭାଗରେ ଏହି କବିତାଟିର ଯେଉଁ ସମାଲୋଚନା କରିଥିଲେ ତାହା ନିମ୍ନରେ ଉଦ୍ଧୃତ ହେଲା :—

"ଋଷିପ୍ରାଣ ଗୋଟିଏ କବିତା । ଲେଖକ ଶ୍ରୀଯୁକ୍ତ ମଧୁସୂଦନ ରାଓ । ନାମ ଶୁଣି କବିଙ୍କୁ ମହାରାଷ୍ଟ୍ରୀୟ ବୋଲି ବୋଧ ହୋଉଅଛି । କିନ୍ତୁ ବଙ୍ଗ ଭାଷାରେ ଏପରି କବିତ୍ୱପ୍ରୟାସ ଅନ୍ୟ କୌଣସି ଅବଙ୍ଗାଳୀ ଦ୍ୱାରା ସାଧିତ ହୋଇନାହିଁ । କବିଙ୍କ ରଚନା ମଧ୍ୟରେ ପ୍ରାଚୀନ ଭାରତର ଗୋଟିଏ ଶିଶିରସ୍ନାତ ପବିତ୍ର ଉଷାଲୋକ ଅତି ନିର୍ମଳ ଉଜ୍ଜ୍ୱଳ ଏବଂ ମହତ୍ ଭାବରେ ସ୍ଫୂର୍ତ୍ତି ପାଇଅଛି । ଏହି କବିତା ମଧ୍ୟରେ ଆମ୍ଭେମାନେ ଗୋଟିଏ ନୂତନ ରସାସ୍ୱାଦନ କରି ପରିତୃପ୍ତ ହୋଇଅଛୁଁ । ପ୍ରାଚୀନ ଭାରତ ସମ୍ବନ୍ଧରେ ବଙ୍ଗଳାରେ ଅଧିକାଂଶ ଲେଖକ ଯାହା ଲେଖନ୍ତି, ତାହା ମଧ୍ୟରେ ପ୍ରାଚୀନତ୍ୱର ପ୍ରକୃତ ରସାସ୍ୱାଦନ ମିଳେନାହିଁ । କିନ୍ତୁ 'ଋଷିପ୍ରାଣ' କବିତା ମଧ୍ୟରେ ପ୍ରାଚୀନ ଧ୍ରୁପଦର ସ୍ୱର ବାଜୁଅଛି ।"

ଏହି କବିତା ପ୍ରକାଶିତ ହେବା ପୂର୍ବରୁ ରବୀନ୍ଦ୍ରନାଥଙ୍କ ସହିତ ମଧୁସୂଦନଙ୍କର ସାକ୍ଷାତ ଆଳାପ ପରିଚୟ ସମ୍ଭବତଃ ନଥିଲା । ଏହା ପ୍ରକାଶିତ ହେବା ପରେ ଉଭୟଙ୍କ ମଧ୍ୟରେ ଚିଠିପତ୍ର ଆଦାନ ପ୍ରଦାନ ହୋଇଥିବ ।

ଅନେକେ ବୋଧହୁଏ ଜାଣନ୍ତି ଯେ, ଓଡ଼ିଶାରେ ଦ୍ୱାରକାନାଥ ଠାକୁରଙ୍କର ସମୟରୁ ଠାକୁରବାବୁମାନଙ୍କର ଜମିଦାରୀ ଥିଲା । ଅନୁମାନ ୧୮୯୩ ଖ୍ରୀଷ୍ଟାବ୍ଦରେ ରବୀନ୍ଦ୍ରନାଥ, ଭ୍ରାତୃଷ୍ପୁତ୍ର ବଳେନ୍ଦ୍ରନାଥଙ୍କୁ ଘେନି ଜମିଦାରୀ ପରିଦର୍ଶନ କାର୍ଯ୍ୟରେ ଓଡ଼ିଶାକୁ ଯାଇଥିଲେ । କଟକରେ ସେତେବେଳେ ଶ୍ରୀଯୁକ୍ତ ବି. ଏଲ୍. ଗୁପ୍ତ ଆଇ. ସି. ଏସ୍. ସେଶନ୍ସ ଜଜ ଥିଲେ । ରବୀନ୍ଦ୍ରନାଥ ତାଙ୍କର ଅତିଥି ହୋଇ କେତେଦିନ ସେଠାରେ ଥିଲେ । ବି. ଏଲ୍. ଗୁପ୍ତ ବ୍ରାହ୍ମ ଥିଲେ । ତାଙ୍କ ସହଧର୍ମିଣୀ ସୌଦାମିନୀ ଗୁପ୍ତ ବିଦୁଷୀ ଓ ମନସ୍ୱିନୀ ମହିଳା ଥିଲେ । ରବୀନ୍ଦ୍ରନାଥଙ୍କ ସଙ୍ଗୀତ ଶୁଣିବା ପାଇଁ ଓ ତାଙ୍କ ସଙ୍ଗରେ ପରିଚିତ ହେବାପାଇଁ ଶ୍ରୀଯୁକ୍ତା ସୌଦାମିନୀ ଗୁପ୍ତା ସ୍ଥାନୀୟ କେତୋଟି ବ୍ରାହ୍ମ ପରିବାରକୁ ଓ କେତେଜଣ ବିଶିଷ୍ଟ ବ୍ୟକ୍ତିଙ୍କୁ ତାଙ୍କ ଗୃହରେ ଅନୁଷ୍ଠିତ ସାନ୍ଧ୍ୟ ସମ୍ମେଳନରେ ଆମନ୍ତ୍ରଣ କରିଥିଲେ । ମୋର ମନେହୁଏ ରବୀନ୍ଦ୍ରନାଥଙ୍କ ସହିତ ମଧୁସୂଦନଙ୍କ ସାକ୍ଷାତ-ଆଳାପ ଏହିଠାରେ ହୋଇଥିଲା । ସେହିଥର କଟକର ଓଡ଼ିଆବଜାରସ୍ଥିତ ବ୍ରହ୍ମମନ୍ଦିରରେ ଏକ ରବିବାସରୀୟ ଉପାସନାରେ ରବୀନ୍ଦ୍ରନାଥ ସଙ୍ଗୀତ ଗାଇବାର ଭାର ନେଇଥିଲେ ।

ଏଥିଉତ୍ତରୁ ରବୀନ୍ଦ୍ରନାଥଙ୍କ ସହିତ ମଧୁସୂଦନଙ୍କ ଯୋଗ ଘନିଷ୍ଠ ହୋଇଥାଏ । ମଧୁସୂଦନ କଲିକତା ଆସିଲେ, ସୁବିଧା ପାଇଲେ ରବୀନ୍ଦ୍ରନାଥଙ୍କ ସହିତ ସାକ୍ଷାତ୍ କରୁଥିଲେ । ଏମାନଙ୍କ ମଧ୍ୟରେ ନାନା ପ୍ରକାର ଆଲୋଚନା ହେଉଥିଲା । ଉଭୟେ ପରସ୍ପରକୁ ଆନ୍ତରିକ ଶ୍ରଦ୍ଧା କରୁଥିଲେ । ୧୯୧୧ ଖ୍ରୀଷ୍ଟାବ୍ଦରେ ରବୀନ୍ଦ୍ରନାଥଙ୍କ ଆହ୍ୱାନରେ ବାପା ଶାନ୍ତିନିକେତନ ଯାଇଥିଲେ । ସେ ଫେରିଆସିଲା ପରେ ତାଙ୍କ ମୁହଁରୁ ରବୀନ୍ଦ୍ରନାଥଙ୍କ ଅତିଥିସତ୍କାରର ଯେଉଁ ବର୍ଣ୍ଣନା ଶୁଣିଥିଲି, ସେଥିରେ ଚମତ୍କୃତ ହୋଇଥିଲି । ଏହି ବିଷୟ ଉଲ୍ଲେଖ କରି ବାପା ତାଙ୍କ ଡାଏରୀରେ ଯାହା ଲେଖିଥିଲେ, ତାହା ନିମ୍ନରେ ଉଦ୍ଧୃତ ହେଲା ।

"Had a talk with our host about Bengali grammar, and literary and religious matters. Listened to some hymns of RabiBabu's sung by Dinendra Babu. Rabi Bab is no more poet and writer only. He has become a true saint (Rishi). His humility and faith, his single-hearted

devotion to the work of ବ୍ରହ୍ମଚର୍ଯ୍ୟାଶ୍ରମ his simple beautiful life impressed me as few lives have done. 9. 3. 1911"

ଗ୍ରନ୍ଥାର୍ଥ-ରବିବାବୁଙ୍କ ସହିତ ବଙ୍ଗଳା ବ୍ୟାକରଣ, ବଙ୍ଗଳା ସାହିତ୍ୟ ଓ ଧର୍ମ ସମ୍ବନ୍ଧୀୟ ଆଲୋଚନା ହେଲା । ଦିନେନ୍ଦ୍ର ବାବୁ କର୍ତ୍ତୃକ ଗୀତ, ରବିବାବୁଙ୍କ ରଚିତ କେତୋଟି ଧର୍ମସଙ୍ଗୀତ ଶୁଣିଲି । ବୁଝିଲି, ରବିବାବୁ କେବଳ ଅସାଧାରଣ କବି ବା ଲେଖକ ନୁହନ୍ତି । ସେ ପ୍ରକୃତ ଋଷି । ତାଙ୍କର ବିନୟ, ବିଶ୍ୱାସ ଓ ବ୍ରହ୍ମଚର୍ଯ୍ୟାଶ୍ରମର କାର୍ଯ୍ୟ ପ୍ରତି ଏକାନ୍ତ ନିଷ୍ଠା ଏବଂ ସାଧାରଣ ସାଧାସିଧା ସୁନ୍ଦର ଜୀବନ ମୋତେ ଯେପରି ପ୍ରଭାବିତ କରିଥିଲା, ସେପରି ଅତି କମ୍ ଜୀବନ କରିଅଛି ।

## (ଗ) ଉତ୍କଳ ବାହାରେ ଭକ୍ତକବିଙ୍କ ସମ୍ମାନ

୧୯୦୧ ଖ୍ରୀଷ୍ଟାବ୍ଦ ଏପ୍ରିଲ ୪ ତାରିଖରେ, ପଣ୍ଡିତ ଶିବନାଥ ଶାସ୍ତ୍ରୀ ମହାଶୟଙ୍କର ଏକମାତ୍ର ପୁତ୍ର ପ୍ରିୟନାଥ ଭଟ୍ଟାଚାର୍ଯ୍ୟଙ୍କ ସହିତ ମୋର ବିବାହ ହେଲା । ତଦବଧି ମୁଁ ଏହି ଦୀର୍ଘକାଳ କଲିକତାରେ ବାସ କରୁଅଛି । ମୁଁ ଆସିବାଦିନୁଁ ଦେଖିଛି, ସେ କାଳରେ ମାଘୋତ୍ସବ ସମୟରେ ମହିଳାମାନଙ୍କ ଉତ୍ସବ ଦିନ ସିଟି କଲେଜରେ ପୁରୁଷମାନଙ୍କ ପାଇଁ ସ୍ୱତନ୍ତ୍ର ଉପାସନାର ବ୍ୟବସ୍ଥା ହେଉଥିଲା । ମଧୁସୂଦନ ଯେଉଁ ବର୍ଷ କଲିକତାରେ ମାଘୋତ୍ସବ ସମୟରେ ଉପସ୍ଥିତ ରହୁଥିଲେ, ସେହି ସମୟରେ ପ୍ରାୟ ଏହି ଦିନର ଉପାସନାରେ ଆଚାର୍ଯ୍ୟର କାମ କରିବା ପାଇଁ ସେ ଆହୂତ ହେଉଥିଲେ । ତାଙ୍କର ଏହି ଉପାସନାରେ ଯୋଗଦେଇ ସମସ୍ତେ ଏପରି ମୁଗ୍‌ଧ ହୋଇ-ଥିଲେ ଯେ, ତାହାଙ୍କୁ ସାଧାରଣ ବ୍ରାହ୍ମସମାଜର ଗୋଟିଏ ବିଶିଷ୍ଟ ସଭାରେ ସଭାପତି ପଦରେ ବରଣ କରାଯାଇଥିଲା ।

ବାଗ୍ମୀ, ମନୀଷୀ ବଙ୍ଗର ସୁସନ୍ତାନ-ଆନନ୍ଦମୋହନ ବସୁ ମୋର ପିତାଙ୍କୁ ବ୍ରାହ୍ମସମାଜର ଅନ୍ୟତମ ଭିତ୍ତିସ୍ତମ୍ଭ He is one of the pillars of the Brahma Samaj କହିଥିଲେ ।

ମାନ୍ଦ୍ରାଜରେ ଆନ୍ଧ୍ର ଏକେଶ୍ୱରବାଦୀ ସମ୍ମେଳନରେ (Andhra Theistic Conference) ସଭାପତି ହେବାପାଇଁ ତାଙ୍କୁ ଅହ୍ୱାନ କରାଯାଇଥିଲା । କିନ୍ତୁ

ମଧୁସୂଦନ ଅସୁସ୍ଥ ହୋଇପଡ଼ିବାରୁ ଯାଇପାରିନଥିଲେ । ସେତେବେଳେ ଭାରତବର୍ଷରେ କଂଗ୍ରେସର ଅଧିବେଶନ ଯେଉଁସବୁ ସ୍ଥାନରେ ହେଉଥିଲା, ବ୍ରାହ୍ମ ସମ୍ପ୍ରଦାୟ କର୍ତ୍ତୃକ ଏକେଶ୍ୱରବାଦୀ ସମ୍ମେଳନ ମଧ୍ୟ ସେହିସବୁ ସ୍ଥାନରେ ବସୁଥିଲା । ବାରାଣସୀଠାରେ କଂଗ୍ରେସ ଅଧିବେଶନ ସଙ୍ଗରେ ସର୍ବଭାରତୀୟ-ଧର୍ମ-ମହାସମ୍ମେଳନ ବସିବାର ପ୍ରସ୍ତାବ ହେବାବେଳେ ମଧୁସୂଦନଙ୍କ ନିକଟକୁ ସଭାପତି ହେବାପାଇଁ ଅନୁରୋଧପତ୍ର ଆସିଥିଲା । ସେ ମଧ୍ୟ ଅଭିଭାଷଣର କିଛି ଅଂଶ ପ୍ରସ୍ତୁତ କରିଥିଲେ, କିନ୍ତୁ ଅସୁସ୍ଥତା ବୃଦ୍ଧି ହେବାରୁ ସମ୍ମେଳନକୁ ଯିବାକୁ ସମର୍ଥ ହୋଇନଥିଲେ ।

୧୯୧୨ ଖ୍ରୀଷ୍ଟାବ୍ଦରେ ବାଙ୍କିପୁରରେ ଯେତେବେଳେ ଏହି ସମ୍ମିଳନୀର ଅଧିବେଶନ ହେଲା ସେତେବେଳେ ମଧ୍ୟ ସଭାପତି ହେବା ପାଇଁ ତାଙ୍କ ନିକଟକୁ ଆହ୍ୱାନ ଆସିଥିଲା, କିନ୍ତୁ ଅଧିବେଶନ ଆରମ୍ଭ ହେବାପୂର୍ବରୁ ସେ ସଙ୍କଟଜନକ ପୀଡ଼ାରେ ଆକ୍ରାନ୍ତ ହୋଇ ଡ଼ିସେମ୍ବର ୨୮ ତାରିଖରେ ଲୋକାନ୍ତରିତ ହେଲେ । ମୃତ୍ୟୁର ଦୁଇଦିନ ପୂର୍ବେ ଏହି ସମ୍ମିଳନୀର ସଫଳତା ପାଇଁ ତାଙ୍କ ପୂର୍ଣ୍ଣ ସହାନୁଭୂତି ତାରବାର୍ତ୍ତା ଦ୍ୱାରା ଜଣାଇବାକୁ ସେ ଜଣେ ବନ୍ଧୁଙ୍କୁ ଅନୁରୋଧ କରିଥିଲେ ।

ଏହିପରି ମଧୁସୂଦନ ତିନିଥର ଏହି ମହାସଭାର ପୁରୋଧା ପଦରେ ଆମନ୍ତ୍ରିତ ହୋଇ ମଧ୍ୟ ଯୋଗ ଦେଇପାରିଲେ ନାହିଁ । ବହୁଭିନ୍ନ ପ୍ରଦେଶବାସୀଙ୍କ କର୍ଣ୍ଣରେ ଓଡ଼ିଶାର ଭକ୍ତକବିଙ୍କ ଅନ୍ତରବାଣୀ ଧ୍ୱନିତ ହେବାର ସୁଯୋଗ ଲାଭ କଲାନାହିଁ । ଉତ୍କଳର ଧର୍ମ-ମର୍ଯ୍ୟାଦା ଓ ଗୌରବ-କାହାଣୀ ଭକ୍ତ-ଦୃଷ୍ଟିର ସ୍ୱଚ୍ଛ ଅନୁଭୂତି ମାଧ୍ୟମରେ ସେମାନଙ୍କ ପ୍ରାଣରେ ଆକୁଳତା ଉଦ୍ରେକ କରିପାରିଲା ନାହିଁ, ଏ ଦୁଃଖ ଭୁଲିବାର ନୁହେଁ ।

—o—

# ସପ୍ତମ ପରିଚ୍ଛେଦ

## ଅନ୍ତିମ ରୋଗଶଯ୍ୟାରେ ମଧୁସୂଦନ

ପାର୍ଥିବ ଗଣନାରେ ମଧୁସୂଦନଙ୍କ ଜୀବନ ୭୦ ବର୍ଷ ବ୍ୟାପୀ ଥିଲା। ବାଲ୍ୟାବଧି ସେ ଅମ୍ଳଶୂଳ ରୋଗରେ ଆକ୍ରାନ୍ତ ହେଲେ, କିନ୍ତୁ ଏହି ପୀଡ଼ା ମଧ୍ୟରେ ସେ ସମସ୍ତ କାର୍ଯ୍ୟ କରୁଥିଲେ; କୌଣସି ବାଧା ତାଙ୍କୁ ନିରସ୍ତ କରିପାରୁନଥିଲା। ଦେହତ୍ୟାଗର ୧୦।୧୨ ବର୍ଷ ପୂର୍ବେ ଏହି ରୋଗର ପ୍ରକୋପ ବୃଦ୍ଧି ପାଇଥିଲା। ସମୟେ-ସମୟେ ଭୀଷଣ ରୋଗଯନ୍ତ୍ରଣା ତାହାଙ୍କୁ ଶଯ୍ୟାଗତ କରୁଥିଲା ଓ ଜୀବନ-ସଂଶୟ ଘଟୁଥିଲା। କିନ୍ତୁ ସେ କାର୍ଯ୍ୟରୁ ବିଶ୍ରାମ ଗ୍ରହଣ କରୁନଥିଲେ। ୧୯୦୮ ଖ୍ରୀଷ୍ଟାବ୍ଦରେ ସରକାରୀ କାର୍ଯ୍ୟରୁ ବିଶ୍ରାମ ଗ୍ରହଣ କଲେ ମଧ୍ୟ ଟାଉନ୍ ସ୍କୁଲଟିକୁ ସର୍ବତୋଭାବେ ଉନ୍ନତ କରିବା ଲାଗି ଓ ତାହାକୁ ନିଜ ଆବାସରେ ସ୍ଥାୟୀ ଭାବରେ ପ୍ରତିଷ୍ଠିତ କରିବା ପାଇଁ ସେ ସମସ୍ତ ଶକ୍ତି ଦେଇ ଖଟି ଥିଲେ। ଏହା ଫଳରେ, ତାଙ୍କ ସ୍ୱାସ୍ଥ୍ୟ ଆହୁରି ଭଗ୍ନ ହୋଇ ଗଲା ଏବଂ ଶୂଳବେଦନାର ଭୟଙ୍କର ଯନ୍ତ୍ରଣା ବାରମ୍ବାର ତାହାଙ୍କୁ ଆକ୍ରମଣ କରିବାକୁ ଲାଗିଲା। ଶୀତକାଳରେ ଏହାର ପ୍ରକୋପ ଅଧିକ ହୋଇଥାଏ। ୧୯୧୨ ଡିସେମ୍ବର ୧୫ ତାରିଖ ରାତିରେ ହଠାତ୍ ତାଙ୍କ ଉଦରରେ ଭୀଷଣ ଯନ୍ତ୍ରଣା ହେଲା। ଏତେଶୀଘ୍ର ଯେ ସେ ଚାଲିଯିବେ, ତାହା କେହି ବିଶ୍ୱାସ କରିପାରୁନଥାନ୍ତି। କିନ୍ତୁ ସେହି ରାତିରେ ସମସ୍ତଙ୍କର ଆଶଙ୍କା ହେଲା ଯେ, ଏହି ଆକ୍ରମଣରୁ ତାଙ୍କର ରକ୍ଷା ପାଇବା କଠିନ।

ଯନ୍ତ୍ରଣାରୁ ସଙ୍ଗେ ସଙ୍ଗେ ଭୀଷଣ ବାନ୍ତି ହେଲା। ମୋର ଭାଇ ଶ୍ରୀ ଜୟନ୍ତ ଦିଓ ଆସି ବାପାଙ୍କ ଚିକିତ୍ସା ଓ ସେବା କରିବାରେ ବ୍ୟସ୍ତ ହୋଇପଡ଼ିଲେ। ସିଭିଲସର୍ଜନ ଓ କଟକର ଖ୍ୟାତନାମା ଚିକିତ୍ସକମାନେ ଆସିଲେ। ଅବସ୍ଥା ସଙ୍କଟଜନକ ମନେହେବାରୁ ଦୂରସ୍ଥିତ ପୁତ୍ର, କନ୍ୟା, ଜାମାତା ଓ ଆତ୍ମୀୟ-ମାନଙ୍କୁ ତାରଦ୍ୱାରା ସମ୍ବାଦ ଦିଆଗଲା। ସେମାନେ ମଧ୍ୟ ଅବିଳମ୍ବେ ଆସି ଉପସ୍ଥିତ ହେଲେ। ମୁଁ କଲିକତାରୁ ଆସି ୧୮ ତାରିଖ ପ୍ରାତଃକାଳରେ

ବାପାଙ୍କ ଶଯ୍ୟା ପାର୍ଶ୍ୱରେ ଉପସ୍ଥିତ ହୁଅନ୍ତେ ଭାଇ କହିଲେ, 'ବାପା କୃଷ୍ଣା ଆସିଛି ।' (ମୋର ଡାକନାମ କୃଷ୍ଣା, କିନ୍ତୁ କଷ୍ଟା ବୋଲି ଡକାହୁଏ)

ବାପା ଚକ୍ଷୁ ଫିଟାଇ 'ମା ଆସିଛୁ' ବୋଲି ମୋର ଗଳଦେଶ ବେଷ୍ଟନ କରି ମୋ ଲଲାଟ ଚୁମ୍ବନ କଲେ । ଦେଖିଲି ଭାଇଙ୍କ ବ୍ୟାକୁଳ ଦୃଷ୍ଟି ମୋତେ ଘୁଞ୍ଚିଯିବାକୁ ଇଙ୍ଗିତ କରୁଅଛି । ବୁଝିଲି, ବାପାଙ୍କ ରୋଗବୃଦ୍ଧିର ଆଶଙ୍କାରେ ଭାଇ ବ୍ୟାକୁଳ । ମୁଁ ଧୀରେ ଧୀରେ ଉଠିଆସିଲି ।

ମଧୁସୂଦନଙ୍କ ସମ୍ବନ୍ଧ ଡାକ୍ତର ଜୟନ୍ତ ରାଓଙ୍କ ଶ୍ୱଶୁର ମହାଶୟ-ପ୍ରଖ୍ୟାତ ଶିଶୁ ସାହିତ୍ୟିକ ଓ ଚିତ୍ରକାର ଉପେନ୍ଦ୍ର କିଶୋର ରାୟଚୌଧୁରୀ ଏହି ପୀଡ଼ାର ସମ୍ବାଦ ପାଇ ମଧୁସୂଦନଙ୍କୁ ଦେଖିବା ପାଇଁ କଲିକତାରୁ କଟକ ଆସିଥିଲେ ।

ମୟମନସିଂହ ନିବାସୀ ପ୍ରବୀଣ ବ୍ରହ୍ମସାଧୁ ଶ୍ରୀନାଥ ଚନ୍ଦ ମହାଶୟ ସେତେବେଳେ କଟକ ଆସି ତାଙ୍କର କନ୍ୟା ଅଧ୍ୟାପିକା ଶ୍ରୀମତୀ ଭକ୍ତିଲତା ଚନ୍ଦଙ୍କ ନିକଟରେ ଅବସ୍ଥାନ କରୁଥିଲେ । ଏତଦ୍‌ଭିନ୍ନ ନିମ୍ନଲିଖିତ ବ୍ରାହ୍ମମାନେ ସେତେବେଳେ ସପରିବାରେ କଟକରେ ବାସ କରୁଥିଲେ : ଅଧ୍ୟାପକ କ୍ଷୀରୋଦ ଚନ୍ଦ୍ର ରାୟଚୌଧୁରୀ, ଶ୍ରୀ ଶ୍ରୀଶଚନ୍ଦ୍ର ମଜୁମଦାର, ଲାଲମୋହନ ଚଟ୍ଟୋପାଧ୍ୟାୟ, ରାଜମୋହନ ବସୁ, ହରମୋହନ ଘୋଷାଲ, କୁଞ୍ଜବିହାରୀ ଗୁହ, ଡାକ୍ତର ରାମକୃଷ୍ଣ ସାହୁ, ଫକୀର ମୋହନ ସେନାପତି, ବିଶ୍ୱନାଥ କର, ରାମକୃଷ୍ଣ ରାଓ, ଅବିନାଶ ଚନ୍ଦ୍ର ଲାହିଡ଼ୀ, ଅକ୍ଷୟ କୁମାର ରାୟ ପ୍ରଭୃତି । ଏମାନେ ସମସ୍ତେ ପ୍ରାୟ ପ୍ରତିଦିନ ମଧୁସୂଦନଙ୍କ ପୀଡ଼ାର ସମ୍ବାଦ ନେବାକୁ ଆସୁଥିଲେ ।

୧୯ ତାରିଖ ଠାରୁ ଯେକେହି ତାଙ୍କ ନିକଟକୁ ଆସିଛନ୍ତି, ତାଙ୍କ କଥାବାର୍ତ୍ତା ଶୁଣି ବୁଝିପାରିଥିଲେ ଯେ, ତାଙ୍କ ପରଲୋକଗମନର ସମୟ ନିକଟବର୍ତ୍ତୀ । ଦିନେ ଔଷଧ ଖୁଆଇବା ସମୟରେ ସେ ଜଣେ ବନ୍ଧୁଙ୍କୁ କହିଲେ, "ଦେଖନ୍ତୁ, ଆଜି କ'ଣ ଧରିରଖିବା ଭଲ ହେବ ? ୧୯ ତାରିଖରେ ତୃତୀୟ ଜାମାତା ପ୍ରଫୁଲ୍ଲଚନ୍ଦ୍ରଙ୍କ କରତଳେ '୨୮ ଡିସେମ୍ବର' ବୋଲି ଲେଖିଥିଲେ । ସେଠାରେ ଦ୍ୱିତୀୟ ପୁତ୍ର ପ୍ରଶାନ୍ତ ଉପସ୍ଥିତ ଥିଲେ; ତାହାଙ୍କୁ କହିଲେ, —'ଆଉ ୯ ଦିନ ।" ଆଜି ଦିନେ ଉଦରରେ ତୀକ୍ଷଣ ଯନ୍ତ୍ରଣା ହେଉଥିଲା,

ଜ୍ୟେଷ୍ଠ ପୁତ୍ର ଜୟନ୍ତ କହିଲେ, "ଟିକିଏ ପରେ ଏନିମା ଦେବ, ତାହାହେଲେ ଟିକିଏ ଭଲ ଲାଗିବ।" ମଧୁସୂଦନ ଚକ୍ଷୁ ମୁଦ୍ରିତ କରି ଟିକିଏ ହସି କହିଲେ, "ଏନିମା ଜାଣେନାହିଁ, ଜାଣେ ସେହି ଚନିମା (ଚନ୍ଦ୍ରପୁରୀ ମା)।" ମଧୁସୂଦନଙ୍କ ତତ୍କାଳୀନ ମୁହଁର ଭାବ ଦେଖି ମନେହେଉଥିଲା, ସତେଯେପରି ସେ ସେହି ଚନ୍ଦ୍ରପୁରୀ ମା'ଙ୍କୁ ପ୍ରତ୍ୟକ୍ଷ କରି ହସୁଅଛନ୍ତି।

ଡ଼ିସେମ୍ବର ୨୨ ତାରିଖରେ ଡାକ୍ତର ସାହେବ ତାଙ୍କ ରୋଗଯନ୍ତ୍ରଣା ଅପେକ୍ଷାକୃତ କମ୍ ଓ ନାଡ଼ୀର ଅବସ୍ଥା ଟିକିଏ ଭଲ ଦେଖି କହିଲେ— "I see you have much improved." ଉତ୍ତରରେ ମଧୁସୂଦନ ହସି କରି କହିଲେ, "The Frog says, Frogling, the world is changing every moment"; ତତ୍ପରେ ସେ ଡାକ୍ତର ସାହେବଙ୍କୁ କହିଲେ, "ଏଇଟି ଗୋଟିଏ ଓଡ଼ିଆ ପ୍ରବଚନର ଅନୁବାଦ—ବେଙ୍ଗ କହେ ବେଙ୍ଗୁଲି ଲୋ ପୃଥ୍ୱୀ କ୍ଷଣ କ୍ଷଣକେ ଆନ।"

୨୭ ତାରିଖ ପ୍ରାତଃକାଳରେ ନାଡ଼ୀର ଅବସ୍ଥା ମନ୍ଦ ଦେଖି ପରିବାରର ସମସ୍ତେ ଶୋକାକୁଳ ହେବାରୁ ସେ କହିଲେ 'ମୋର ଯିବାକୁ ଡେରିଅଛି। ତୁମ୍ଭେମାନେ କାହିଁକି ଏତେକ୍ଷଣି ବ୍ୟାକୁଳ ହେଉଛ ? ଯାଅ ଆହାରାଦି କର।"

ଏହା ପୂର୍ବରୁ ଡାକ୍ତର ଶରଦବାବୁ ନାଡ଼ୀ ଦେଖି କହିଥିଲେ ଯେ, ଇଞ୍ଜେକ୍ସନ ଦେବାଭଳି ନାଡ଼ୀର ଅବସ୍ଥା ନାହିଁ। କିନ୍ତୁ ନାଡ଼ୀର ଏହି ଅବସ୍ଥାରେ ମଧ୍ୟ ସେ ଦେଢ଼ଦିନ କଟାଇଥିଲେ।

ଆମ୍ଭମାନଙ୍କର କାକା ଜଗନ୍ନାଥ ଗୁପ୍ତ କଟକରେ ବାପାଙ୍କ ପାଖେ ପାଖେ ଥିଲେ। ବିଶେଷ କାମରେ ଦୁଇଦିନ ପୂର୍ବରୁ ସେ କଲିକତା ଯାଇଥିଲେ। ୨୮ ତାରିଖ ଉଷାକାଳରେ, କକା, ଖୁଡ଼ୀ, ଜ୍ୟେଷ୍ଠ ଜାମାତା ବିଜୟବାବୁ କଲିକତାରୁ ଆସି ପହଞ୍ଚିଲେ।

ସେତେବେଳେ ମଧ୍ୟ ସମସ୍ତଙ୍କର ମ୍ଳାନସଜ୍ୟୋତ୍ସ୍ନାରେ ଅଙ୍କିତ; ସୂର୍ଯ୍ୟାଲୋକ ତାହାର ପ୍ରଭାବ ବିସ୍ତାର କରିବାକୁ ଉଦ୍ୟତ; ଏହି ଉଷାକାଳରେ ଏମାନେ ଆସି ପହଞ୍ଚିଲେ। ଏହାର କିଛିକ୍ଷଣ ପରେ ଶ୍ୱାସ ଆରମ୍ଭ ହେଲା। ପୂର୍ବଦିନ

ପ୍ରାତଃକାଳ ପର୍ଯ୍ୟନ୍ତ ତାଙ୍କର କଥାବାର୍ତ୍ତା ସୁସ୍ପଷ୍ଟ ଥିଲା, ପରେ କ୍ରମେ ବାକ୍ୟଜଡ଼ତା ହେଲେ ମଧ୍ୟ ଜ୍ଞାନ ଥିଲା । ଡ଼ିସେମ୍ବର ୨୮ ତାରିଖ ପ୍ରାତଃକାଳ ୯ ଘଟିକା ପରେ ନୀରବ-ଶାନ୍ତ ଭାବରେ ସେ ଚିରବିଦାୟ ଗ୍ରହଣ କଲେ ।

ସେ ଯେ କଠିନ ପୀଡ଼ାରେ ଆକ୍ରାନ୍ତ ହୋଇ ୧୩ ଦିନ ଶଯ୍ୟାଶାୟୀ ଥିଲେ । ଏ ସମ୍ବାଦ କଟକ ନଗରରେ ପ୍ରଥମରୁ ପ୍ରଚାରିତ ହୋଇଥିଲା । ବହୁ ବ୍ୟକ୍ତି ମଧୁସୂଦନଙ୍କ ସମ୍ବାଦ ନେବାକୁ ସର୍ବଦା ଆସୁଥିଲେ । କେହି କେହି ତାଙ୍କ ଶଯ୍ୟାପାର୍ଶ୍ୱକୁ ଆସୁଥିଲେ । ଓଡ଼ିଶାର ସର୍ବଜନମାନ୍ୟ ନେତା କୁଳବୃଦ୍ଧ ମଧୁସୂଦନ ଦାସ ତାଙ୍କ ଶଯ୍ୟାପାର୍ଶ୍ୱରେ ବସି ପ୍ରାର୍ଥନା କରିଥିଲେ । ଦାରୁଣ ରୋଗଯନ୍ତ୍ରଣାରେ ପଡ଼ି ମଧ୍ୟ ବ୍ରହ୍ମସଙ୍ଗୀତ ଓ ପ୍ରାର୍ଥନା କେହି କଲେ, ସେ ଶାନ୍ତ ଭାବରେ ଯୋଗ ଦେଉଥିଲେ । ମନେ ହେଉଥିଲା, ସତେଯେପରି ସେତେବେଳେ ସେ ରୋଗଯନ୍ତ୍ରଣା ଭୁଲି ଯାଉଥିଲେ । ପ୍ରତିଦିନ ପ୍ରାତଃକାଳରେ ଆମ୍ଭେମାନେ ତାଙ୍କ ନିକଟକୁ ଗଲେ ସେ ଆମ୍ଭମାନଙ୍କ ମୁଣ୍ଡରେ ହାତ ବୁଲାଇ ଦେଇ ନୀରବରେ ଆଶୀର୍ବାଦ କରୁଥିଲେ । ଆମ୍ଭେମାନେ ସଜଳ ନୟନରେ ସେହି ଆଶୀର୍ବାଦ ଗ୍ରହଣ କରୁଥିଲୁ ।

ପ୍ରାତଃକାଳରେ ସୂର୍ଯ୍ୟାଲୋକ ଦେଖିବା ପାଇଁ ସେ ଅତ୍ୟନ୍ତ ଆଗ୍ରହ ପ୍ରକାଶ କରିଥିଲେ । ଦୁଆର, ଝରକା ବାଟେ ଘରେ ସୂର୍ଯ୍ୟାଲୋକ ପ୍ରବେଶ କଲେ ତାଙ୍କ ମୁହଁରେ ହାସ୍ୟରେଖା ଫୁଟି ଉଠୁଥିଲା । ଦିନେ ସେହି ସମୟରେ ସେ ପୁତ୍ର ସୁକାନ୍ତକୁ କହିଲେ, "More light, more air, may German Father—Goethe come."

ପଣ୍ଡିତ ଶିବନାଥ ଶାସ୍ତ୍ରୀ ମହାଶୟ ମଧ୍ୟ ଏହି ସମୟରେ ଜଳବାୟୁ ପରିବର୍ତ୍ତନ ଲାଗି କଟକ ଆସି ତୁଳସୀପୁରରେ ଗୋଟିଏ ଘରେ କେତେ ମାସ ଥିଲେ । ଏହି ରୋଗଶଯ୍ୟାରେ ତାଙ୍କପ୍ରତି ମଧୁସୂଦନଙ୍କ ଶେଷ କଥା ହେଲା, "ସକଳ ସାଧୁଭକ୍ତ ଆପଣଙ୍କ ଅନ୍ତରରେ ବାସ କରନ୍ତୁ ।" ତା'ପରେ କହିଲେ—"ଅବନ୍ତୀ ଆପଣଙ୍କ ଚରଣତଳେ ରହିଲା ।"

ମଧୁସୂଦନଙ୍କ 'ନୀରବ ସାଧିକା' ସହଧର୍ମିଣୀ, ଆମ୍ଭମାନଙ୍କ ଜନନୀଦେବୀ ମୃତ୍ୟୁଶଯ୍ୟା ପାର୍ଶ୍ୱରେ ଶାନ୍ତ ଭାବରେ ବସି ଅବିରଳ ଅଶ୍ରୁପାତ କରୁଥିଲେ ।

ଏହି ନିଦାରୁଣ ଶୋକରେ ସେ ବିହ୍ୱଳ ହୋଇନାହାନ୍ତି । ତାହାଙ୍କୁ ଦେଖି ମନେ ହେଉଥିଲା, ସତେଯେପରି ସେ ଗୋଟିଏ ମୂର୍ତ୍ତିମନ୍ତ ଶୋକପ୍ରତିମା ।

## (ଖ) ମଧୁସୂଦନଙ୍କ ଅନ୍ତ୍ୟେଷ୍ଟି ଓ ଶ୍ରାଦ୍ଧ-ବିବରଣୀ

ମଧୁସୂଦନଙ୍କ ମୃତ୍ୟୁ ସମ୍ବାଦ ପରେ ବନ୍ଧୁ ପରିବାରରୁ ସେମାନଙ୍କ ଉଦ୍ୟାନଜାତ ପୁଷ୍ପରାଶି ଆସିବାକୁ ଲାଗିଲା । କାଳୀଗଳସ୍ଥ ଆମ ଘରେ ମଧ୍ୟ ମଧୁସୂଦନଙ୍କ ରୋପିତ ବୃକ୍ଷଜାତ ପୁଷ୍ପ ଅନେକ ଥିଲା । ମଧୁସୂଦନ ପଦ୍ମ ଫୁଲକୁ ଭଲ ପାଉଥିଲେ—କବି ରାଧାନାଥଙ୍କ ଜ୍ୟେଷ୍ଠପୁତ୍ର ଶଶିଭୂଷଣ ରାୟ ତାହା ଜାଣିଥିଲେ । ସେ ସେହିକ୍ଷଣି ଲୋକ ପଠାଇ ଦୂରସ୍ଥିତ ଏକ ସରୋବରରୁ ପଦ୍ମରାଜି ଅଣାଇ ଦେଲେ । ମଧୁସୂଦନଙ୍କ ନଶ୍ୱରଦେହ ଏହି ସମସ୍ତ ପୁଷ୍ପଦ୍ୱାରା ସୁସଜ୍ଜିତ ହୁଅନ୍ତେ, ଦେହକୁ ବାହାର କରିବା ପୂର୍ବରୁ ଗୃହରେ ବ୍ରହ୍ମୋପାସନା ହେଲା । "ଯାଅରେ ଅନନ୍ତଧାମେ ମୋହମାୟା ପାଶୋରି"— ଏହି ସଙ୍ଗୀତଟି ଗାଇବା ସାରିବା ପରେ ଆଚାର୍ଯ୍ୟ ପଣ୍ଡିତ ଶିବନାଥ ଶାସ୍ତ୍ରୀ ନିମ୍ନଲିଖିତ ଶ୍ଳୋକଟି ଉଦ୍ଧୃତ କରି ଉପାସନା ଆରମ୍ଭ କରିଥିଲେ ।

> ଯଶ୍ଚାୟମସ୍ମିନ୍ ଆକାଶେ ତେଜୋମୟୋଽମୃତମୟ ପୁରୁଷଃ ସର୍ବାନୁଭୂଃ
> ଯଶ୍ଚାୟମସ୍ମିନ୍ ଆତ୍ମନି ତେଜୋମୟୋଽମୃତମୟଃ ପୁରୁଷଃ ସର୍ବାନୁଭୂଃ
> ତମେବ ବିଦିତ୍ୱା ଅତିମୃତ୍ୟୁମେତି
> ନାନ୍ୟଃ ପନ୍ଥା ବିଦ୍ୟତେ ଅୟନାୟ ।

ଉପାସନାନ୍ତେ ଶାସ୍ତ୍ରୀ ମହାଶୟଙ୍କ ଗମ୍ଭୀର କଣ୍ଠରେ ଉଦାତ୍ତସ୍ୱରେର —"ଆମ୍ଭେମାନେ ସେହିକ୍ଷଣି ଏହି କ୍ଷଣଭଙ୍ଗୁର ଦେହ ନେଇ ଚାଲିଲୁ ।" ଏହି ବାଣୀ ଉଚ୍ଚାରିତ ହୁଅନ୍ତେ ଶୋକଯାତ୍ରା ମଧୁସୂଦନଙ୍କ ମରଦେହ ନେଇ ଶ୍ମଶାନାଭିମୁଖରେ ଯାତ୍ରା କଲା ।

ମଧୁସୂଦନଙ୍କ ମୃତ୍ୟୁସମ୍ବାଦ ସହରରେ ବ୍ୟାପୀ ଯିବାରୁ ବ୍ରାହ୍ମସମାଜ ଏବଂ ସର୍ବସାଧାରଣ ଶୋକରେ ଉଦ୍‌ବେଳିତ ହୋଇଉଠିଲେ । ଧନୀ-ଦରିଦ୍ର, ପଣ୍ଡିତ-ମୂର୍ଖ-ଶିକ୍ଷିତ-ଅଶିକ୍ଷିତ, ହିନ୍ଦୁ-ମୁସଲମାନ, ଖ୍ରୀଷ୍ଟାନବ୍ରାହ୍ମ ଓଡ଼ିଆ, ବଙ୍ଗାଳୀ-ଶତଶତ ଦେଶବାସୀ ଅକୃତ୍ରିମ ଶ୍ରଦ୍ଧା ସହିତ ଶବାନୁଗମନ କରି ସଣ୍ଟଚୌରି ନାମକ ଶ୍ମଶାନଘାଟକୁ ଆସିଲେ । ବହୁ ଉଚ୍ଚବଂଶୋଦ୍ଭବ ବ୍ରାହ୍ମଣ

ପଣ୍ଡିତ ମଧ୍ୟ ଶବଦେହ ବହନ କରି ଓ ଭୂଲୁଣ୍ଠିତ ହୋଇ ଅକୃତ୍ରିମ ଶ୍ରଦ୍ଧାଭକ୍ତି ନିବେଦନପୂର୍ବକ ନିଜକୁ କୃତାର୍ଥ ମନେକରିବାକୁ ଲାଗିଲେ। ଛାତ୍ରସମାଜ, ଶିକ୍ଷକମଣ୍ଡଳୀ, ଧନୀ-ଦରିଦ୍ର, ଅନ୍ଧ-ଖଞ୍ଜ, କୁଷ୍ଠରୋଗୀ ସମସ୍ତେ ନିଜକୁ ଅସହାୟ ବୋଧ କରି ଆକୁଳ ହେବାକୁ ଲାଗିଲେ। କଟକରେ ଏହା ପୂର୍ବରୁ ଏପରି ଦୃଶ୍ୟ ଦେଖାଯାଇନାହିଁ।

କାଠଯୋଡି ନଦୀତୀରରେ ସତୀଚୌରା ନାମକ ଶ୍ମଶାନରେ ତାଙ୍କ ନଶ୍ୱରଦେହର ଅଗ୍ନିସତ୍କାର କରାହୋଇଥିଲା। ପରେ ସେହି ସ୍ଥାନରେ କବି ରାଧାନାଥଙ୍କ ସମାଧି ନିକଟରେ ମଧୁସୂଦନଙ୍କ ସମାଧି ନିର୍ମିତ ହୋଇଅଛି।

ମଧୁସୂଦନଙ୍କ ମୃତ୍ୟୁ ପରେ ତାଙ୍କ ଗୃହରେ ପ୍ରତିଦିନ ସନ୍ଧ୍ୟାରେ ତାହାଙ୍କୁ ସ୍ମରଣ କରି ବିଶେଷ ଉପାସନା ଚାଲିଥାଏ। ବାଲେଶ୍ୱରବାସୀ ବହୁ ବ୍ରାହ୍ମ କଟକ ଆସି ଏହି ଗୃହରେ ଅତିଥି ହୋଇଥିଲେ। ପୁରୀରୁ ବହୁ ଆତ୍ମୀୟ-ଆତ୍ମୀୟା ମଧୁସୂଦନଙ୍କ କଠିନ ପୀଡ଼ାର ସମ୍ବାଦ ପାଇ ପୂର୍ବରୁ ଆସିଥିଲେ; ମୃତ୍ୟୁ ସମ୍ବାଦ ପାଇ ଅବଶିଷ୍ଟ ଅନେକ ଆସିଲେ। ପ୍ରତିଦିନ ଏମାନେ ସମସ୍ତେ ଏହି ଶୋକାର୍ତ୍ତ ପରିବାର ସହିତ ହବିଷାନ୍ନ ଗ୍ରହଣ କରୁଥିଲେ। ଆମ୍ଭମାନଙ୍କ ଖୁଡ଼ୀ (ଜଗନ୍ନାଥ ରାଓଙ୍କ ସ୍ତ୍ରୀ) ଓ ମୋର ଭଗିନୀ ଶାନ୍ତ ସମସ୍ତଙ୍କ ଆହାର୍ଯ୍ୟର ବ୍ୟବସ୍ଥା କରୁଥିଲେ। ଜ୍ୟେଷ୍ଠକକା ରଘୁନାଥ ରାଓ ସମସ୍ତ ତତ୍ତ୍ୱାବଧାନ କରୁଥିଲେ। ସଙ୍ଗୀତ, ସଙ୍କୀର୍ତ୍ତନ ଓ ଉପାସନା ଭିତର-ଦେଇ କଟକ ଓ ବାଲେଶ୍ୱରବାସୀ ବ୍ରାହ୍ମମାନେ ମଧୁସୂଦନଙ୍କ ଆତ୍ମୀୟ ଓ ପରିବାରବର୍ଗଙ୍କ ସହିତ ମିଳିତ ହୋଇ ଏହି ଗୃହକୁ ସତେଯେପରି ପୁଣ୍ୟ ତୀର୍ଥରେ ପରିଣତ କରିଥିଲେ। କଲିକତାରୁ ସୁବିସିଦ୍ଧ ଦତ୍ତ ତାଙ୍କ ଦଳ ସହିତ ଶ୍ରାଦ୍ଧୋପଲକ୍ଷେ ସଙ୍କୀର୍ତ୍ତନର ଭାର ଗ୍ରହଣ କରିଥିଲେ।

ଜାନୁଆରୀ ୫ ତାରିଖ, ୧୯୧୩ ଖ୍ରୀଷ୍ଟାବ୍ଦ, ରବିବାର ପ୍ରାତଃକାଳରେ କାଳୀଗଳିସ୍ଥ ଆମ ଘରର ଦକ୍ଷିଣ ଦିଗ ସୁପ୍ରଶସ୍ତ ପ୍ରାଙ୍ଗଣରେ ଏହି ଶ୍ରାଦ୍ଧସଭା ଅନୁଷ୍ଠିତ ହୋଇଥିଲା। ଶ୍ୱେତଚନ୍ଦ୍ରାତପ ତଳେ ସୁବିସ୍ତୃତ ଗାଲିଚାରେ ସମସ୍ତେ ଆସନ ଗ୍ରହଣ କଲେ। "ନପୂନ ଅଙ୍ଗତ ସେହି ପରଲୋକ ମହାଳୟେ, ଆସଯିବା ସଶରୀରେ ତେଜି ସକଳ ସଂଶୟେ"— ମଧୁସୂଦନଙ୍କ ରଚିତ ଏହି ବ୍ରହ୍ମ-ସଙ୍ଗୀତ ପ୍ରଥମେ ଗୀତ ହୁଅନ୍ତେ ପଣ୍ଡିତ ଶିବନାଥ ଶାସ୍ତ୍ରୀ ଉଦ୍‌ବୋଧନ

ହେଲେ । ସେ ତାଙ୍କ ଉଦ୍‌ବୋଧନରେ ମଧୁସୂଦନଙ୍କୁ ଲାଇଟ୍ ହାଉସ୍ ଅର୍ଥାତ୍ ବତୀଘରର ସହିତ ତୁଳନା କଲେ । ବିପତ୍ତି-ସଙ୍କୁଳ ସମୁଦ୍ରପଥରେ ଜାହାଜ-ଷ୍ଟିମରର ପଥ ନିର୍ଦ୍ଦେଶ କରିବା ପାଇଁ ଯେପରି ବତୀଘର ଦେଖାଯାଏ, ସେହିପରି ଏହି ପାପପ୍ରଲୋଭନ ଓ ସଂଗ୍ରାମସଙ୍କୁଳ ଜୀବନ-ସମୁଦ୍ରରେ ସାଧାରଣ ମନୁଷ୍ୟର ଜୀବନ-ତରୀକୁ ସତ୍‌ପଥରେ ଚଳାଇବାରେ ସାହାଯ୍ୟ କରିବା ପାଇଁ ମଧୁସୂଦନଙ୍କ ଭଳି ମହାପୁରୁଷମାନଙ୍କ ଜୀବନ ଏହି ବତୀଘରର ଭଳି କାମ କରେ ।

ବିଶ୍ୱନାଥ କର ମହାଶୟ ତତ୍ପରେ ଓଡ଼ିଆ ଭାଷାରେ ଆରାଧନା ସମାପନ କଲାରୁ ଜ୍ୟେଷ୍ଠ ଜାମାତା ବିଜୟଚନ୍ଦ୍ର ମଜୁମଦାରଙ୍କ 'ଶ୍ରାଦ୍ଧବାସରେ' ଲେଖାଟି ଜ୍ୟେଷ୍ଠପୁତ୍ର ଶ୍ରୀ ଜୟନ୍ତ ଦେ ପାଠ କଲେ । ତତ୍ପରେ ଭ୍ରାତୃସ୍ପୁତ୍ରୀ ରେବା ରାୟଙ୍କ ଲିଖିତ "ପରଲୋକଗତ ପୁଣ୍ୟାତ୍ମା ଜ୍ୟେଷ୍ଠତାତ" ଶୀର୍ଷକ ରଚନାଟି ଦ୍ୱିତୀୟ ପୁତ୍ର ପ୍ରଶାନ୍ତ ରାଓ ପାଠ କଲେ । ତୃତୀୟପୁତ୍ର ସୁକାନ୍ତ ଦେ 'ପିତୃସ୍ମୃତି' ପାଠ କଲେ । ମଝିରେ ମଝିରେ ବ୍ରହ୍ମସଙ୍ଗୀତ ଗାନ ହେଉଥାଏ । ଏହି ରଚନାଗୁଡ଼ିକ ଏବଂ ମଧୁସୂଦନଙ୍କ ଅନ୍ୟାନ୍ୟ ଭକ୍ତବୃନ୍ଦଙ୍କ ଶ୍ରଦ୍ଧାଞ୍ଜଳି ଉତ୍କଳ ସାହିତ୍ୟର ମଧୁସୂଦନ ସଂଖ୍ୟାରେ (ଉତ୍କଳ ସାହିତ୍ୟ, ୧୬ଶ ଭାଗ, ୧୦ମ ସଂଖ୍ୟା, ମାଘ-୧୩୬୦ ସାଲ, ୧୯୧୩ ଖ୍ରୀଷ୍ଟାବ୍ଦ) ପ୍ରକାଶିତ ହୋଇଅଛି ।

ଜାତି, ଧର୍ମ ନିର୍ବିଶେଷରେ କଟକବାସୀ ବହୁ ନରନାରୀ ଏହି ଶ୍ରାଦ୍ଧାନୁଷ୍ଠାନରେ ଯୋଗଦାନ କରିଥିଲେ । ଏମାନଙ୍କ ପାଇଁ ଜଳଯୋଗର ଆୟୋଜନ ହୋଇଥିଲା । ଆମ କକା ରଘୁନାଥ ରାଓ ଏହି ଅନୁଷ୍ଠାନକୁ ସମାଗତ ସମସ୍ତଙ୍କ ଅଭ୍ୟର୍ଥନାର ଭାର ନେଇ ସମସ୍ତଙ୍କୁ ଆପ୍ୟାୟିତ କରିଥିଲେ । ଦିନେ ଦୁଇଦିନ ପରେ କଟକ ମ୍ୟୁନିସିପାଲିଟିର ସୁପ୍ରଶସ୍ତ ହତା ଭିତରେ କାଙ୍ଗାଳୀ ଭୋଜନର ଆୟୋଜନ ହୋଇଥିଲା । ମଧୁସୂଦନଙ୍କ ଅନୁଜ ରଘୁନାଥ ରାଓ ଏହାର ବ୍ୟବସ୍ଥା ଓ ତତ୍ତ୍ୱାବଧାନର ଭାର ନେଇ, 'ମୁକୁର'[୧] ସମ୍ପାଦକ ବ୍ରଜସୁନ୍ଦର ଦାସ ଓ କବିବର ରାଧାନାଥ ରାୟଙ୍କ ଜ୍ୟେଷ୍ଠପୁତ୍ର

୧) 'ମୁକୁର' ଖଣ୍ଡ ଏ ଓଡ଼ିଆ ମାସିକ ପତ୍ରର ନାମ । ଏଥିରେ ମଧୁସୂଦନଙ୍କ ଅନୂଦିତ ଉତ୍ତର-ରାମଚରିତ ନାଟକ ପ୍ରକାଶିତ ହୋଇଥିଲା ।

ଶଶୀଭୂଷଣ ରାୟଙ୍କ ସହାୟତାରେ ସହସ୍ରାଧିକ କାଙ୍ଗାଳୀମାନଙ୍କୁ ଭୂରିଭୋଜନରେ ପରିତୃପ୍ତ କରିଥିଲେ ।

## ଶ୍ରାଦ୍ଧଦିବସରେ

(ଜ୍ୟେଷ୍ଠ ଜାମାତା ବିଜୟ ଚନ୍ଦ୍ର ମଜୁମଦାରଙ୍କ ରଚିତ ଏବଂ ଶ୍ରଦ୍ଧାର୍ଘ୍ୟ ଜ୍ୟେଷ୍ଠ ପୁତ୍ର ଶ୍ରୀ ଜୟନ୍ତ ରାଓଙ୍କ କର୍ତ୍ତୃକ ଶ୍ରାଦ୍ଧଦିବସରେ ନିବେଦିତ ହୋଇଥିଲା)

ବ୍ରହ୍ମକୃପା ସକଳ ମାନବଙ୍କର ଲଲାଟରେ ବିଧିଲିପି ରୂପେ ଅଙ୍କିତ ଥାଏ; କିନ୍ତୁ ଆଜି ଏହି ଶ୍ରାଦ୍ଧଦିନରେ ଯାହାଙ୍କ ଜୀବନର ଦୁଇ ଚାରୋଟି କଥା ଉକ୍ତ ହେଉଅଛି, ତାଙ୍କର ସକଳ କାର୍ଯ୍ୟରେ ବ୍ରହ୍ମକୃପା ଯେପରି ପରିସ୍ଫୁଟ ହେବାର ଦେଖୁଛୁ ଏ ଦେଶରେ ଅନ୍ୟତ୍ର ସେପରି ଲକ୍ଷ୍ୟ କରିନାହିଁ । ଯେ ଏହି କ୍ଷୁଦ୍ର ଗୃହର ପ୍ରତିଷ୍ଠାତା, ଏହି ଶୋକାର୍ତ୍ତ ପରିବାରଟିକୁ ଯେ ବ୍ରହ୍ମପ୍ରୀତି ଭିତ୍ତିରେ ଅଧିଷ୍ଠିତ କରିଥିଲେ, ଯାହାଙ୍କର ଜୀବନ ବ୍ୟାପୀ ତପସ୍ୟା ଦ୍ୱାରା ଉତ୍କଳରେ ସର୍ବୋର ନବଆଲୋକ ପ୍ରତିଭାତ ହୋଇଥିଲା, ସେ ଶୈଶବରୁ ଭଗବଦ୍ ଭକ୍ତି ନେଇ ବର୍ଦ୍ଧିତ ହୋଇଥିଲେ । ପିତୃଦେବଙ୍କ ବାଲ୍ୟଜୀବନର କଥା ଯେଉଁମାନେ ବିଶେଷଭାବରେ ଜାଣନ୍ତି, ସେମାନଙ୍କ ନିକଟରୁ ଶୁଣିଛୁ ଯେ ଅତି ଅଳ୍ପବୟସ୍କ ବାଳକ ଥିବା ସମୟରୁ ଦେଶପ୍ରଚଳିତ ଧର୍ମାନୁଷ୍ଠାନ ପ୍ରତିରେ ଯାହା କିଛି ପ୍ରାଣପ୍ରଦ ତତ୍ପ୍ରତି ତାଙ୍କର ବିଶେଷ ଆକର୍ଷଣ ଥିଲା । ସେ ପୁରୀ ନଗରୀରେ ଜନ୍ମଗ୍ରହଣ କରିଥିଲେ । ତାଙ୍କର ବାଲ୍ୟକାଳ ସେଠାରେ ଅତିବାହିତ ହୋଇଥିଲା । ପୁରୀରେ ବାନାମ୍ବର ମହାଦେବଙ୍କୁ ଦର୍ଶନ ନକରି ସେ ବାଲ୍ୟକାଳରେ ଆହାରବିହ କରୁନଥିଲେ । ତାଙ୍କର ତତ୍କାଳୀନ ସଙ୍ଗୀ ସହଚରମାନଙ୍କ କଥା ଦୂରେଥାଉ ଅନେକ ବୟସ୍କ ଲୋକ ମଧ୍ୟ ଏପରି ନିଷ୍ଠା ଓ ଏକାଗ୍ରତାର ସହିତ ପ୍ରତିଦିନ ଜଗନ୍ନାଥ ଦର୍ଶନ କରୁଥିଲେ କି ନାହିଁ କହିବା ଦୁଷ୍କର । ଯେଉଁ ଆସ୍ତିକ୍ୟ ବୁଦ୍ଧି ଓ ଭଗବଦ୍ ଭକ୍ତି ତାଙ୍କ ଜୀବନର ବିଶେଷ ଗୌରବ ଓ ଅହଙ୍କାର, ସତେଯେପରି ତାହା ଶିକ୍ଷା-ନିରପେକ୍ଷ ଭାବରେ ଶୈଶବରୁ ସ୍ୱତଃ ତାଙ୍କ ପ୍ରାଣରେ ଅଙ୍କୁରିତ ହୋଇଥିଲା ।

ଯେଉଁ ଦୁଇଜଣ ବାଲ୍ୟସହଚର ତାଙ୍କର ଅତି ଅନ୍ତରଙ୍ଗ ବନ୍ଧୁ ଥିଲେ, ସେମାନଙ୍କ ନିକଟରୁ ଏହାଙ୍କର ବାଲ୍ୟଜୀବନ କଥା ଯାହା ଶୁଣିଛୁ, ସେଥିରୁ

ମନେହୁଏ ଯେ, ସତ୍ୟର କଠୋର ଭିତ୍ତି ଉପରେ ବିଧାତା ତାଙ୍କର କୋମଳ ପ୍ରାଣଟିକୁ ଗଢ଼ିଥିଲେ । ଭଗବତୀ ଚରଣ ଚଟ୍ଟୋପାଧ୍ୟାୟଙ୍କ ନିକଟରୁ ଶୁଣିଅଛୁ ଯେ, ସେମାନେ କେବେ ସୁଦ୍ଧା ଏହାଙ୍କୁ ମିଥ୍ୟା କଥା କହିବାର ଶୁଣିନାହାନ୍ତି । ଦୁଃଖୀର ଦୁଃଖ ଦେଖିଲେ ତାଙ୍କର ପ୍ରାଣ କାନ୍ଦି ଉଠୁଥିଲା । ସେ ଆତ୍ମବିସ୍ମୃତ ହୋଇ ବନ୍ଧୁଗଣଙ୍କୁ ଭଲପାଉଥିଲେ । ବିନୟ ଓ କୋମଳତା ଯୋଗୁଁ ସମସ୍ତେ ତାହାଙ୍କୁ ଅତ୍ୟନ୍ତ ପ୍ରିୟଦର୍ଶନ ମନେ କରୁଥିଲେ । ଅନ୍ୟ ଦିଗରେ ସତ୍ୟ ପାଳନ ପାଇଁ ତାଙ୍କ କଠୋରତା ଓ ପ୍ରତିଜ୍ଞାର ତେଜ ଦେଖି ତାଙ୍କର ଅତି ନିକଟ ବନ୍ଧୁ ଏବଂ ଆତ୍ମୀୟମାନେ ମଧ୍ୟ ଅତ୍ୟନ୍ତ ବିସ୍ମିତ ହେଉଥିଲେ । ବାଲ୍ୟଜୀବନର ଏହି ସଦ୍‌ଗୁଣଗୁଡ଼ିକ ତାଙ୍କ ଚରିତ୍ରରେ କିପରି ବିକାଶପ୍ରାପ୍ତ ହୋଇଥିଲା, ତାହା ଏ ପ୍ରଦେଶରେ ସମସ୍ତେ ଜାଣନ୍ତି । ତାଙ୍କ ଧର୍ମମତବିରୋଧୀ ବ୍ୟକ୍ତିମାନେ ମଧ୍ୟ ଏହାଙ୍କ ହୃଦୟର କୋମଳତା ଓ ବିନୟ ପାଇଁ ଏହାଙ୍କୁ ସ୍ନେହ କରୁଥିଲେ । ମତବିରୋଧ ଥିବା ସତ୍ତ୍ୱେ ସେ ଏ ପ୍ରଦେଶର ସର୍ବଶ୍ରେଣୀର ଲୋକମାନଙ୍କର ଶ୍ରଦ୍ଧା ଓ ପ୍ରୀତିର ପାତ୍ର ଥିଲେ ।

ଆମ୍ଭମାନଙ୍କ ଭକ୍ତି ଓ ପ୍ରୀତି ଅଜ୍ଞାତସାରରେ ତାଙ୍କ ଚରିତ୍ର ମାହାତ୍ମ୍ୟକୁ ଅତିରଞ୍ଜିତ କରିପାରେ, ସେଥିପାଇଁ ତାଙ୍କ କର୍ମ ଓ ଧର୍ମଜୀବନର ମହିମା ଉଲ୍ଲେଖ କରିବା ସମୟରେ ନିରପେକ୍ଷ ସାକ୍ଷୀମାନଙ୍କ ଉକ୍ତି ସ୍ମରଣ କରୁଅଛୁ । ପଣ୍ଡିତ ଶିବନାଥ ଶାସ୍ତ୍ରୀ ମହାଶୟ ଏହି ପରିବାରର ଗୁରୁ ଓ ଆତ୍ମୀୟ । କିନ୍ତୁ ଏହାଙ୍କ ସ୍ୱର୍ଗୀୟ ସତ୍ୟନିଷ୍ଠ ପୁଣ୍ୟଶ୍ଳୋକ ପିତା କଦାପି ବ୍ରାହ୍ମସମାଜ ପ୍ରତି ଅନୁକୂଳ ଦୃଷ୍ଟି ନିକ୍ଷେପ କରିନାହାନ୍ତି । ଏହି ସ୍ୱର୍ଗୀୟ ସତ୍ୟନିଷ୍ଠ ମହାପୁରୁଷ ତାଙ୍କ ବନ୍ଧୁ ଅମରକୀର୍ତ୍ତି ପଣ୍ଡିତ ଈଶ୍ୱର ଚନ୍ଦ୍ର ବିଦ୍ୟାସାଗର ମହାଶୟଙ୍କ ସତ୍ୟନିଷ୍ଠା, ଲୋକହିତୈଷଣା ଓ ଦାନଶୀଳତା ପ୍ରଭୃତି ଗୁଣ ପାଇଁ ତାଙ୍କର ଅତ୍ୟନ୍ତ ଅନୁରକ୍ତ ଥିଲେ । ଶାସ୍ତ୍ରୀ ମହାଶୟଙ୍କ ପିତା ଜଗନ୍ନାଥ ଦର୍ଶନ କରିବାକୁ ଉତ୍କଳକୁ ଆସି ଯେତେବେଳେ ପିତୃଦେବଙ୍କର ପରିଚୟ ପାଇ-ଥିଲେ, ତଦବଧି ସେ "ମଧୁସୂଦନ ଉତ୍କଳର ବିଦ୍ୟାସାଗର" ବୋଲି ପ୍ରଶଂସା କରୁଥିଲେ । ବଙ୍ଗ ସାହିତ୍ୟରେ ସୁପରିଚିତ ଦ୍ୱିଜେନ୍ଦ୍ରଲାଲ ରାୟ ସରକାରୀ କର୍ମୋପଲକ୍ଷେ ଥରେ କଟକ ଆସି କିଛିଦିନ ପିତୃଦେବଙ୍କ ଆତିଥ୍ୟ ଗ୍ରହଣ କରିଥିଲେ; ଦ୍ୱିଜେନ୍ଦ୍ରଲାଲ ରାୟ ଯେ ବ୍ରହ୍ମସମାଜ ସହିତ ସମ୍ପୃକ୍ତ ନୁହନ୍ତି ତାହା ସମସ୍ତେ ଜାଣନ୍ତି । ପିତୃଦେବଙ୍କ ଚରିତ୍ର-ମାହାତ୍ମ୍ୟ ଦେଖି ସେ ଏପରି ମୁଗ୍ଧ ହୋଇଥିଲେ ଯେ, ସର୍ବଦା ମୁକ୍ତ କଣ୍ଠରେ କହୁଥିଲେ,

"ମଧୁସୂଦନ ରାଓ ବ୍ରାହ୍ମସମାଜର ବିଶିଷ୍ଟ ରାମଚନ୍ଦ୍ର ଲବ୍ଧର୍ତ୍ତୀ", ସାଧୁ ରାମଚନ୍ଦ୍ର ଲବ୍ଧର୍ତ୍ତୀ ଯେଉଁସବୁ ସଦ୍‌ଗୁଣରେ ଭୂଷିତ ଥିଲେ ତାହା ସର୍ବଜନ-ବିଦିତ । ଯେଉଁସବୁ ବ୍ରାହ୍ମଣ ଯତ୍ନପୂର୍ବକ ପ୍ରାଚୀନ ବ୍ରାହ୍ମଣ୍ୟ ପ୍ରଥା ରକ୍ଷାକରି ଚଳନ୍ତି, ସେମାନେ ବ୍ରାହ୍ମଣ ଭିନ୍ନ ଅନ୍ୟ କାହାକୁ ନମସ୍କାର କରି ଅଭିବାଦନ କରନ୍ତି ନାହିଁ । କିନ୍ତୁ ଆଶ୍ଚର୍ଯ୍ୟର ବିଷୟ ଏହି ଯେ ଉତ୍କଳର ଏହି ଶ୍ରେଣୀର ଅନେକ ବ୍ରାହ୍ମଣ ପିତୃଦେବଙ୍କୁ ନମସ୍କାର କରି ଅଭିବାଦନ କରୁଥିଲେ । ଚରିତ୍ରନିଷ୍ଠା ଓ ଭଗବଦ୍‌-ଭକ୍ତି ପାଇଁ ସେ ଯେ ସର୍ବଶ୍ରେଣୀର ଲୋକଙ୍କର ଶ୍ରଦ୍ଧାଭାଜନ ହୋଇଥିଲେ, ଏହାହିଁ ତାହାର ବିଶିଷ୍ଟ ପ୍ରମାଣ ।

୧୮୬୯ ଖ୍ରୀଷ୍ଟାବ୍ଦରେ ୧୭ ବର୍ଷ ବୟସରେ ପୁରୀ ଜିଲ୍ଲା ସ୍କୁଲରୁ ପ୍ରବେଶିକା ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ କଟକ ଆସି ଏଫ୍. ଏ. ପଢ଼ିବା ସମୟରେ ସେ ବ୍ରାହ୍ମଧର୍ମର ନବସମ୍ବାଦ ଅବଗତ ହୁଅନ୍ତି ଏବଂ ବ୍ରାହ୍ମସାଧନାର ନବପନ୍ଥା ପ୍ରତି ଆକୃଷ୍ଟ ହୁଅନ୍ତି । କୌଣସି ନୂତନ ଘଟଣା ଘଟିଲେ ଅନେକେ କେବଳ ନୂତନତ୍ୱର ଆକର୍ଷଣରେ ତାହାର ଆଲୋଚନା କରିଥାଆନ୍ତି । କିନ୍ତୁ ବ୍ରାହ୍ମଧର୍ମ ପ୍ରତି ପିତୃଦେବଙ୍କ ଆକର୍ଷଣ ସେପରି ନଥିଲା । ଏହି ସମୟରେ ସେ ତାଙ୍କ ସମସ୍ତ ସାଧୁସଙ୍କଳ୍ପର ସହାୟକ ଓ ଉତ୍ସାହଦାତା ରୂପେ ଜଣେ ବନ୍ଧୁଙ୍କୁ ଲାଭ କରିଥିଲେ; ଏହାଙ୍କର ନାମ ପ୍ୟାରୀମୋହନ ଆଚାର୍ଯ୍ୟ । ପିତୃଦେବଙ୍କର ଏହି ବନ୍ଧୁ ଯଦି ଅକାଳରେ ପରଲୋକ ଗମନ କରିନଥାନ୍ତେ, ତେବେ ଜାଣେ-ନାହିଁ, ଏହି ଦୁଇବନ୍ଧୁଙ୍କର ସମବେତ ସାଧନା ଫଳରେ ଉତ୍କଳର ମୁଖଶ୍ରୀ ଆଜି କିପରି ଉଜ୍ଜ୍ୱଳତା ଲାଭ କରିପାରିଥାଆନ୍ତା । ଏହି ପ୍ୟାରୀମୋହନ କଟକରେ ଉଚ୍ଚ ବିଦ୍ୟାଳୟ ସ୍ଥାପନ କରି ଓ ଓଡ଼ିଶାର ଇତିହାସ ପ୍ରଭୃତି ଲେଖି ଅଳ୍ପ ବୟସରେ ଯେଉଁ କୀର୍ତ୍ତି ସ୍ଥାପନ କରିଯାଇଛନ୍ତି, ତାହା ଏ ଦେଶରେ ଚିରଦିନ ସ୍ମୃତ ହେଉ । ଏହି ବନ୍ଧୁଙ୍କ ସ୍ମୃତି ପିତୃଦେବଙ୍କ ରକ୍ତ ମାଂସ ସହିତ ଜଡ଼ିତ ଥିଲା । ମରଣର ପୂର୍ବମୁହୂର୍ତ୍ତ ପର୍ଯ୍ୟନ୍ତ ସେ ସସ୍ନେହରେ ଏହାଙ୍କୁ ସ୍ମରଣ କରିଅଛନ୍ତି । ପ୍ରିୟଜନଙ୍କ ବିୟୋଗରେ ପରଲୋକ ତାଙ୍କ ନିକଟରେ ମନୋହର ହୋଇ ଉଠିଥିଲା । ସ୍ୱପ୍ନରେ ଏବଂ ଜାଗରଣରେ ସେ ଯେପରି ପରଲୋକର ଛବି ପ୍ରତ୍ୟକ୍ଷ କରୁଥିଲେ ।

ସେ ପୁତ୍ରରୂପେ, ସ୍ୱାମୀରୂପେ, ଭ୍ରାତୃରୂପେ, ପିତାମହାଦିରୂପେ ଏବଂ ବନ୍ଧୁରୂପେ ଯେ ଆଦର୍ଶ ପୁରୁଷ ଥିଲେ, ଆଜି ଏଠାର ଅନେକ ତା'ର ସାକ୍ଷୀ । ଅତିଥି ସତ୍କାର ଓ ଦାନଶୀଳତା ବ୍ରତରେ ସେ ଯେଉଁ

ଆନନ୍ଦ ଲାଭ କରୁଥିଲେ ତାହା କଥାରେ ଶେଷ କରି ହେବନାହିଁ । ଦରିଦ୍ର-ବାଳକମାନଙ୍କର ଉଚ୍ଚଶିକ୍ଷା ପାଇଁ ଟାଉନ୍ ଭିକ୍ଟୋରିଆ ବିଦ୍ୟାଳୟ ସ୍ଥାପନ କରି ତାହାକୁ ସୁପ୍ରତିଷ୍ଠିତ କରିବା ପାଇଁ ଜରାଗ୍ରସ୍ତ ଦେହରେ ସେ ଯେପରି ଅତ୍ୟଧିକ ପରିଶ୍ରମ କରୁଥିଲେ, ତାହା ଯେ କୌଣସି ସବଳ ଦେହ ଯୁବକ କଲେ ମଧ୍ୟ ପ୍ରଶଂସାର ପାତ୍ର ହୁଅନ୍ତି । ଅନେକଙ୍କର ବିଶ୍ୱାସ ଯେ ସେ ରୁଗ୍ଣ ଶରୀରରେ ଏପରି ଅତିରିକ୍ତ ପରିଶ୍ରମ ନକରିଥିଲେ ହୁଏତ ଆହୁରି କିଛିକାଳ ଏ ସଂସାରରେ ରହିପାରିଥାଆନ୍ତେ । କିନ୍ତୁ ବିଧାତା ତାଙ୍କ ହୃଦୟର କୋମଳତା ମଧ୍ୟରେ ଯେଉଁ ବଜ୍ରକଠୋର ପ୍ରତିଜ୍ଞାର ବଳ ଦେଇଥିଲେ, ଯେଉଁ ଅବିଚଳିତ ଲୋକହିତୈଷଣା ଦେଇଥିଲେ, ତାହା ତାହାଙ୍କୁ ସ୍ଥିର ହୋଇ ରହିବାକୁ ଦେଇନାହିଁ । ଆଳସ୍ୟ ସମ୍ଭୋଗ କରିବାକୁ ଦେଇନାହିଁ । ତାଙ୍କର ଜରାଗ୍ରସ୍ତ ଓ ବ୍ୟାଧିପ୍ରବଣ ଦୁର୍ବଳ ଦେହ ସଞ୍ଚିତି ମଧ୍ୟରେ ବିଧାତା ଯେଉଁ ତେଜଃପୂର୍ଣ୍ଣ ଆତ୍ମାଟି ରଖିଥିଲେ ସେହି ଆତ୍ମାର ତେଜଃ ପ୍ରଭାବରେ ଦୁର୍ବଳ ଦେହ ସଞ୍ଚିତି ଯେ ଆହୁରି ଆଗରୁ ଭସ୍ମସାତ୍ ହୋଇନାହିଁ, ଏହାହିଁ ଆଶ୍ଚର୍ଯ୍ୟ । ନିୟମିତ ପ୍ରାର୍ଥନାଦ୍ୱାରା ସେ ଭଗବାନ୍ଙ୍କ କୃପାରୁ ଯେଉଁ ଶାନ୍ତି ଲାଭ କରୁଥିଲେ, ସେହି ଶାନ୍ତିର ଶୀତଳ ଅଭିଷେକରେ ଏହି ଜର୍ଜର ଦେହଟି ଷାଠିଏ ବର୍ଷ ପର୍ଯ୍ୟନ୍ତ ବଞ୍ଚିଥିଲା ପରା ! ଶାନ୍ତିମୟଙ୍କ ସୁଶୀତଳ କୋଡ଼ରେ ଚିରବିଶ୍ରାମ ଲାଭ କରିବାର ପୂର୍ବ ମୂହୂର୍ତ୍ତ ପର୍ଯ୍ୟନ୍ତ ସେତେଯେପରି ତାଙ୍କ ଆଧ୍ୟାତ୍ମିକ ଶକ୍ତି ପୂର୍ଣ୍ଣ ବଳ ସହିତ ଶରୀର ମଧ୍ୟରେ ବିରାଜମାନ ଥିଲା । ଶାରୀରିକ ସ୍ୱାଭାବିକ ଦୁର୍ବଳତା, ଅକାଳ ସମାଗତ ଜରା ଓ ବହୁକାଳବ୍ୟାପୀ ଦୁରାରୋଗ୍ୟ ବ୍ୟାଧି ତାହାଙ୍କୁ କର୍ତ୍ତବ୍ୟଭ୍ରଷ୍ଟ କରିପାରି ନାହିଁ ଅଥବା ବିଧାତୃ-ନିର୍ଦ୍ଦିଷ୍ଟ କର୍ମକ୍ଷେତ୍ରରୁ ବିଚଳିତ କରିପାରି ନାହିଁ । ତାଙ୍କ ଜୀବନର ଏହି ଦୃଷ୍ଟାନ୍ତ, ସମସ୍ତ ସବଳ ଓ ଦୁର୍ବଳ ମାନବଙ୍କ ନିକଟରେ ଅମୂଲ୍ୟ ଓ ଅନୁକରଣୀୟ । ଜ୍ଞାନପିପାସାରେ ସେ ପ୍ରାଚ୍ୟ ଓ ପାଶ୍ଚାତ୍ୟ ଉଭୟ ଉଭୟ ବିଦ୍ୟା ସଂଗ୍ରହ କରି କୃତିତ୍ୱ ଲାଭ କରିଥିଲେ । ଧର୍ମବିଶ୍ୱାସରେ ଅଶ୍ରାନ୍ତ ସାଧନା ଦ୍ୱାରା ଭଗବତ୍ ପ୍ରେମ ଲାଭ କରି ଇହଜୀବନରେ ମୁକ୍ତିଲାଭ କରି-ଥିଲେ; ଏବଂ ଲୋକହିତୈଷଣା ବ୍ରତରେ ସମସ୍ତ ବାଧାବିଘ୍ନ ଅତିକ୍ରମ କରି ମାନବ ସମାଜରେ ସ୍ନିଗ୍ଧପ୍ରୀତି ବିସ୍ତାର କରିଥିଲେ । ଶିଶୁର ପ୍ରଫୁଲ୍ଲତା ଓ ସରଳତା, ଯୁବକର କର୍ମଶୀଳତା ଏବଂ ବୃଦ୍ଧର ସୁବିବେଚନା କୌଣସି ଅବସ୍ଥାରେ ତାହାଙ୍କୁ ପରିତ୍ୟାଗ କରିନାହିଁ । ଆଜ ଏହି ଶ୍ରାଦ୍ଧ ବାସରେ

ତାଙ୍କ ଜୀବନର ସମସ୍ତ କଥା କହିବା ଅସମ୍ଭବ । ସେ ଯେଉଁସବୁ ସଦ୍‌ଗୁଣରେ ଭୂଷିତ ଥିଲେ ତାହାର ବିଶେଷ ବିବୃତ୍ତି ଦେବା ଅସମ୍ଭବ । ପିତାଙ୍କ ମୃତ୍ୟୁ ପରେ ଦାୟାଦମାନେ ଉତ୍ତରାଧିକାରର ଚିନ୍ତା କରିଥାଆନ୍ତି । ଅମ୍ଭେମାନେ ଆଜ ସେହି ଉତ୍ତରାଧିକାରର କଥା ଭାବୁଅଛୁ । ସେ ଯେଉଁ ଧନସମ୍ପଦ ଅକାତରରେ ଦାନ କରି ସୁଖୀ ହେଉଥିଲେ, ସେ ସମ୍ପଦର ଉତ୍ତରାଧିକାରର କଥା ଅତି ତୁଚ୍ଛ, ସେ ଯେଉଁ ଭଗବଦ୍‌ଭକ୍ତି ଲାଭ କରିଥିଲେ, ଆମ୍ଭେମାନେ ଉତ୍ତରାଧିକାରରେ ସେହି ଅତୁଳ୍ୟ ସମ୍ପତ୍ତିର କିଛି କରିପାରିବୁ ଏବଂ ସେଥିପାଇଁ ଯଦି ସମସ୍ତେ ବ୍ୟଗ୍ର ଉତ୍କଣ୍ଠିତ ହୋଇପାରିବୁ ତେବେ ଏହି ବଂଶର ଦାୟାଦ ବୋଲି ପରିଚିତ ହୋଇପାରିବୁ । ଯେଉଁ ପିତୃଦେବ ଇହଲୋକ ପରିତ୍ୟାଗ କଲେ ମଧ୍ୟ, ଏହି ପରିବାରର କେନ୍ଦ୍ରଶକ୍ତି ରୂପେ ଏହି ଗୃହର ପ୍ରତ୍ୟେକ ଅନ୍ତଃକରଣରେ ଆପଣା ପ୍ରଭାବ ବିସ୍ତାର କରୁଅଛନ୍ତି, ତାଙ୍କୁ ଯଦି ଆମେ ନିରନ୍ତର ଆମ ପରିବାରର କେନ୍ଦ୍ରରେ ପ୍ରତିଷ୍ଠିତ ରଖିପାରୁ ଏବଂ ପ୍ରତିଦିନ ତାଙ୍କୁ ପ୍ରଣାମ କରି ତାଙ୍କ ଜୀବନ ବ୍ୟାପୀ ଲକ୍ଷ୍ୟ ଏବଂ ଇଷ୍ଟଦେବତା ତଥା ଅନନ୍ତ ଅମୃତମୟ ମଙ୍ଗଳ ସ୍ୱରୂପ ବ୍ରହ୍ମଙ୍କଠାରେ ପ୍ରୀତି ଲାଭ କରି ତାଙ୍କର ପରି ସୁଖରେ-ଦୁଃଖରେ, ଜୀବନରେ-ମରଣରେ-ପରବ୍ରହ୍ମଙ୍କୁ ରସସ୍ୱରୂପ ବୋଲି ସମ୍ଭୋଗ କରିପାରୁ, ତେବେ ଏହି ଶୋକର ଆଘାତ, ବିୟୋଗର ଦୁଃଖ ଆମର ପରମ କଲ୍ୟାଣ ସାଧନ କରିପାରିବ ।

ହେ ଆମ୍ଭ ପିତୃଦେବ-ପୂଜିତ ଅମୃତମୟ ପରମେଶ୍ୱର ତୁମେ ଆମ ପିତୃଦେବଙ୍କ ସ୍ମୃତି ମଧ୍ୟରେ ଉଜ୍ଜ୍ୱଳ ହୋଇ ପ୍ରକାଶିତ ହୁଅ; ଆମେ ଯେପରି ତୁମକୁ ପିତୃଲବ୍ଧ ଅନନ୍ତ ସମ୍ପଦ ଜାଣି ନିରନ୍ତର ଲାଭ କରି ସମ୍ଭୋଗ କରିପାରୁ ଏହି ଆଶୀର୍ବାଦ ପ୍ରଦାନ କର ।

—o—

# ଅଷ୍ଟମ ପରିଚ୍ଛେଦ

## ଧର୍ମଜୀବନ

ପୂର୍ବେ ଉକ୍ତ ହୋଇଅଛି ଯେ ମଧୁସୂଦନଙ୍କ ଜୀବନର ମୂଳଭିତ୍ତି ଥିଲା ଭଗବଦ୍‌ଭକ୍ତି । ପୁରୀ ନଗରୀର ଯେଉଁ ପଲ୍ଲୀରେ (ପଥୁରିଆସାହି) ତାଙ୍କ ପୈତୃକ ବାସଭବନ ଥିଲା, ତାହା ନିକଟରେ 'ବାଘାମ୍ବର' ମହାଦେବଙ୍କ ମନ୍ଦିର ଅଛି । କୈଶୋରରେ ମଧୁସୂଦନ ପ୍ରତ୍ୟହ ସ୍ନାନାନ୍ତେ ସେହି ମହାଦେବଙ୍କୁ ଦର୍ଶନ ଓ ପ୍ରଣାମ କରି ଆସି ଚପୂରେ ଜଳଗ୍ରହଣ କରୁଥିଲେ । ସମୁଦ୍ରକୂଳରେ ଭ୍ରମଣ କରି ବିଶାଳ ସମୁଦ୍ର ଓ ଆକାଶର ଅନନ୍ତ ମହିମା ଦର୍ଶନ କରି ସେ ମୁଗ୍ଧ ହେଉଥିଲେ ଏବଂ ଅନନ୍ତ ବିଶ୍ୱପତିଙ୍କ ଅସୀମ ମହିମାର ଆଭାସ ସେହି କୈଶୋର ବୟସରେ ସଂଚରେପେଣି ତାଙ୍କ ପ୍ରାଣରେ ଉଦ୍ଭାସିତ ହେଉଥିଲା । ଏହି ସମୟରେ ଥରେ ରାତିରେ ସେ ଏକ ଅଦ୍ଭୁତ ସ୍ୱପ୍ନ ଦେଖିଲେ, ସେ ଯେପରି ସମୁଦ୍ର ତୀରରୁ ଫେରୁଛନ୍ତି; ଜଣେ ବିରାଟ ପୁରୁଷ ତାଙ୍କ ସମ୍ମୁଖରେ ଓଁକାର ମନ୍ତ୍ର ଉଚ୍ଚାରଣ କରି କରି ଅଗ୍ରସର ହେଉଛନ୍ତି । ତାଙ୍କ ମନ୍ତ୍ରୋଚ୍ଚାରଣ ସଙ୍ଗେ ସଙ୍ଗେ ଚତୁର୍ଦ୍ଦିଗ ଜ୍ୟୋତିରେ ଉଦ୍ଭାସିତ ହୋଇଯାଉଥିଲା । ସେହି ପୁରୁଷଙ୍କ ଇଙ୍ଗିତରେ ମଧୁସୂଦନ କିଛି ଦୂର ତାଙ୍କୁ ଅନୁସରଣ କରିବା ପରେ ନଗରୋପାନ୍ତରେ ସେହି ବିରାଟ ପୁରୁଷ ଅନ୍ତର୍ହିତ ହୋଇଗଲେ । ଏହି ସ୍ୱପ୍ନ ମଧୁସୂଦନଙ୍କ ମନକୁ କିଛିଦିନ ପ୍ରବଳ ଭାବରେ ଆନ୍ଦୋଳିତ କରିଥିଲା । କଲେଜରେ ଏଫ୍. ଏ. ପଢ଼ିବା ସମୟରେ ଦର୍ଶନଶାସ୍ତ୍ରର ଅଧ୍ୟାପକ ବ୍ରାହ୍ମଧର୍ମାବଲମ୍ବୀ ସୁପଣ୍ଡିତ ଓ ସାଧୁଚରିତ୍ର ହରନାଥ ଭଟ୍ଟାଚାର୍ଯ୍ୟଙ୍କ ସଙ୍ଗ ପ୍ରଭାବରେ ମଧୁସୂଦନ ଓ ପ୍ୟାରୀମୋହନ ଯେ ବ୍ରାହ୍ମଧର୍ମ ପ୍ରତି ଆକୃଷ୍ଟ ହୋଇଥିଲେ ତାହା ପୂର୍ବେ ବର୍ଣ୍ଣିତ ହୋଇଅଛି । ଯେଉଁ ଧର୍ମପିପାସା ବାଲ୍ୟାବଧି ତାଙ୍କ ଅନ୍ତରରେ ଜାଗ୍ରତ ଥିଲା, ତାହାହିଁ ସତ୍ୟର ପୂଜାରୀ ମଧୁସୂଦନଙ୍କୁ ଏହି ସତ୍ୟଧର୍ମ ଆଡ଼କୁ ଅଗ୍ରସର କରାଇଥିଲା । ଦେଶ-ପ୍ରଚଳିତ ମୂର୍ତ୍ତିପୂଜାର ମଧ୍ୟରେ ତାଙ୍କର ପ୍ରାଣ ଆଉ ତୃପ୍ତ ରହିପାରିଲା ନାହିଁ । ବ୍ରାହ୍ମଧର୍ମର ବିଶ୍ୱଜନୀନ ବାର୍ତ୍ତା ତାଙ୍କର ପ୍ରାଣକୁ ଉଦ୍‌ବୁଦ୍ଧ କରି ନବଜାଗରଣ ପଥରେ ଅଗ୍ରସର କରିଦେଲା । ଏହି

ନବଜାଗରଣ ଯେ କିପରି ତାଙ୍କ ଚିତ୍ତକୁ ଅଧିକାର କରିଥିଲା, ଏହାର ଅତୁଳନୀୟ ପ୍ରଭାବ ତାଙ୍କ ସମଗ୍ର ଜୀବନରେ ଜ୍ଞାନ, କର୍ମ ଓ ତପସ୍ୟା ଦ୍ୱାରା ମାନବ ଜୀବନରେ ସାର୍ଥକତା ଲାଭରେ କେତେଦୂର ସହାୟକ ହୋଇଥିଲା ତାହା ସମୁଚିତ ଭାବରେ ବର୍ଣ୍ଣନା କରିବାକୁ ମୋର ଲେଖନୀ ଅକ୍ଷମ । ତଥାପି ବାଳକ ବାଳିକାମାନେ ପିତାଙ୍କୁ ସମ୍ୟକ୍ ଭାବରେ ଧାରଣା କରି ନପାରିଲେ ମଧ୍ୟ, ଯେତେଟିକିଏ ବୁଝିପାରନ୍ତି ସେତିକି ମାତ୍ର କହିବାକୁ ମୁଁ ଚେଷ୍ଟା କରିଛି । ମୋର ଏହି ଦୁର୍ବଳ ପ୍ରଚେଷ୍ଟାକୁ ପାଠକ ପାଠିକାଗଣ ସେହି ଦୃଷ୍ଟିରେ ଦେଖିବେ—ଏହା ମୋର ବିନୀତ ନିବେଦନ ।

ବାଲ୍ୟକାଳରେ ସ୍ୱପ୍ନଦୃଷ୍ଟ ବରିଷ୍ଠ ପୁରୁଷଙ୍କ ମୁଖନିଃସୃତ ଓଁକାର ଧ୍ୱନି ତାଙ୍କ ଅନ୍ତରରେ ଅନନ୍ତଙ୍କ ପୂଜା ପାଇଁ ଆହ୍ୱାନ ଜାଗ୍ରତ କରିଥିଲା । ଯୌବନରେ ସତ୍ୟନିଷ୍ଠ, ସାଧୁ ଏକମେବାଦ୍ୱିତୀୟମ୍ ବ୍ରହ୍ମଙ୍କ ଉପାସକ, ଅଧ୍ୟାପକ ହରନାଥ ଭଟ୍ଟାଚାର୍ଯ୍ୟଙ୍କ ଜୀବନ ପ୍ରଭାବରେ ସେ ଉଜ୍ଜ୍ୱଳ ଭାବରେ ଅନୁଭବ କଲେ ଯେ, ମାନବ ସନ୍ତାନ ସେହି ଏକମାତ୍ର ଅନନ୍ତ ଦେବତାଙ୍କର ଉପାସକ ।

"ଈଶାବାସ୍ୟମିଦଂ ସର୍ବମ୍" ଈଶୋପନିଷଦର ଏହି ଚୈତନ୍ୟମୟ ଅନୁଭୂତି ତାଙ୍କ ଅନ୍ତରକୁ ଆଉ ସସୀମ ଦେବତାଙ୍କ ବାହ୍ୟ ପୂଜା ମଧ୍ୟରେ ତୃପ୍ତ ରଖିବାକୁ ଦେଲାନାହିଁ । ସେ ବ୍ରାହ୍ମଧର୍ମ ଗ୍ରହଣ କଲେ । ତାଙ୍କର ଧର୍ମର ଆଦର୍ଶ ହେଲା ବ୍ରହ୍ମାନନ୍ଦ କେଶବଚନ୍ଦ୍ରଙ୍କ ନିର୍ଦ୍ଦେଶିତ ସେହି ଶ୍ଳୋକ—

> "ସୁବିଶାଳମିଦଂ ବିଶ୍ୱଂ ପବିତ୍ରଂ ବ୍ରହ୍ମମନ୍ଦିରମ୍
> ଚେତଃ ସୁନିର୍ମଳଂ ତୀର୍ଥଂ ସତ୍ୟଂ ଶାସ୍ତ୍ରମନଶ୍ୱରମ୍
> ବିଶ୍ୱାସୋଧର୍ମ ମୂଳଂ ହି ପ୍ରୀତିଃ ପରମ ସାଧନମ୍
> ସ୍ୱାର୍ଥନାଶସ୍ତୁ ବୈରାଗ୍ୟଂ ବ୍ରାହ୍ମୈରେବଂ ପ୍ରକୀର୍ତ୍ୟତେ ।"

ଏହି ଆଦର୍ଶ ପଥରେ ସେ ଅଗ୍ରସର ହୋଇ ଚାଲିଲେ ଏବଂ ତାଙ୍କ ଜୀବନ-ପ୍ରଭାବରେ ବହୁ ଯୁବକ ଛାତ୍ର ଓ ବନ୍ଧୁ ଆକୃଷ୍ଟ ହୋଇ ବ୍ରାହ୍ମସମାଜକୁ ଆସିବାକୁ ଲାଗିଲେ । ତାଙ୍କ ପତ୍ନୀ ପଦ୍ମାବତୀ ପ୍ରଥମରୁ ପତିଙ୍କ ଅନୁଗାମିନୀ ଥିଲେ । ଅନୁଜ ଜଗନ୍ନାଥ ରାଓ ମଧ୍ୟ ଜ୍ୟେଷ୍ଠ ଭ୍ରାତାଙ୍କ ଧର୍ମଜୀବନ ପ୍ରଭାବରେ ଆକୃଷ୍ଟ ହୋଇ ସସ୍ତ୍ରୀକ ବ୍ରାହ୍ମଧର୍ମ ଗ୍ରହଣ କଲେ ।

ପିତା ଭଗୀରଥି ରାଓ ପୁତ୍ରର ଧର୍ମାନ୍ତର ଗ୍ରହଣ ଓ ଉପବୀତ ପରିତ୍ୟାଗର ସମ୍ବାଦ ପାଇ ଅତ୍ୟନ୍ତ ଦୁଃଖିତ ଓ ବିଚଳିତ ହେଲେ । ସେ ନିଜେ ଖାଣ୍ଟି ହିନ୍ଦୁ, ଦୈନନ୍ଦିନ ଜୀବନରେ ପ୍ରତିଦିନ ସ୍ନାନାନ୍ତେ ପାଞ୍ଚଟି ବୃକ୍ଷରେ ଜଳ-ସେଚନ କରି ପୂଜାରେ ବସୁଥିଲେ । ପୂଜାନ୍ତେ ମହାପ୍ରଭୁ ଜଗନ୍ନାଥଙ୍କ ମହାପ୍ରସାଦ 'ନିର୍ମାଲ୍ୟ' ସେବନ କରି ତତ୍ପରେ ଜଳଗ୍ରହଣ କରୁଥିଲେ । ହିନ୍ଦୁଙ୍କର ବାରବ୍ରତ ଉପବାସ ପ୍ରଭୃତି ମଧ୍ୟ ସେ ନିୟମିତ ପାଳନ କରୁଥିଲେ । ଭଗବଦ୍‌ଗୀତା ନିୟମିତ ପାଠ ହେବା ତାଙ୍କର କଣ୍ଠସ୍ଥ ହୋଇଯାଇଥିଲା । କ୍ଷତ୍ରିୟ ବୋଲି ବିବାହର ଅନତିପୂର୍ବେ ଧର୍ମାନୁଷ୍ଠାନପୂର୍ବକ ଉପବୀତ ଗ୍ରହଣରେ ନିୟମ ଏମାନଙ୍କ ପରିବାରରେ ପାଳିତ ହେଉଥିଲା । ମଧୁସୂଦନ ଉପବୀତ ପରିତ୍ୟାଗ କରି ବ୍ରାହ୍ମଧର୍ମ ଗ୍ରହଣ କରିଅଛନ୍ତି ଏ ସମ୍ବାଦ ପାଇ ଭଗୀରଥି ପ୍ରଥମେ ପତ୍ରଦ୍ୱାରା ଓ ପରେ ନିଜେ ପୁତ୍ରଙ୍କ ନିକଟକୁ ଆସି ତାହାଙ୍କୁ ନାନାପ୍ରକାର ବୁଝାଇବାକୁ ଚେଷ୍ଟା କଲେ । କିନ୍ତୁ ପୁତ୍ରକୁ ନିଜ ବିଶ୍ୱାସରେ ଅଟଳ ଦେଖି ଅନ୍ତରରେ ଦାରୁଣ ମର୍ମବେଦନା ପାଇଲେ ମଧ୍ୟ ପୁତ୍ରବତ୍ସଳ ପିତା ତାଙ୍କ ପ୍ରତି କିଛି କଠୋର ବ୍ୟବହାର କଲେନାହିଁ । ପୁତ୍ରକୁ ସ୍ୱୀୟ ବିଶ୍ୱାସରେ ଚଳିବାକୁ କୌଣସି ବାଧା ଦେଲେ ନାହିଁ । ପୁତ୍ର ଓ ପୁତ୍ରବଧୂମାନଙ୍କ ପ୍ରତି ପୂର୍ବବତ୍ ସ୍ନେହ ବ୍ୟବହାର କରିବାକୁ ଲାଗିଲେ ।

ମଧୁସୂଦନ ପରବର୍ତ୍ତୀକାଳରେ ଗୋଟିଏ କବିତାରେ ଲେଖିଅଛନ୍ତି :—

"ଜ୍ଞାନ କର୍ମ ତପସ୍ୟାର ବଳେ
ଏ ଭାରତ ମହୀ-ମଣ୍ଡଳେ
କିଣି ଶୁଦ୍ଧି ଭବ ରଙ୍ଗତଳେ
ଉଜ୍ଜ୍ୱଳ କର ଏ ଉତ୍କଳେ ।"

—ଜ୍ଞାନ, କର୍ମ ଓ ତପସ୍ୟା ସାଧନ ହିଁ ଯେ ନବଯୁଗର ନବ ଜାଗରଣ ପଥରେ ମାନବ ସନ୍ତାନକୁ ଅଗ୍ରସର କରି ପ୍ରକୃତ ମନୁଷ୍ୟତ୍ୱଲାଭର ଅଧିକାରୀ କରେ, ମଧୁସୂଦନଙ୍କ ଜୀବନ ତାଙ୍କ ଅନୁବର୍ତ୍ତୀମାନଙ୍କ ସମ୍ମୁଖରେ ସେହି ଆଦର୍ଶର ଉଜ୍ଜ୍ୱଳ ଦୃଷ୍ଟାନ୍ତ ହୋଇ ଦେଖାଦେଲା । ଏ ସମ୍ବନ୍ଧରେ ବ୍ରାହ୍ମସମାଜର ଅଭ୍ୟୁଦୟର ବିବରଣ କିଞ୍ଚିତ୍ ଦେବା ପ୍ରୟୋଜନ :—

## କ) ରାଜର୍ଷି ରାମମୋହନ

ମୋଗଲ ସାମ୍ରାଜ୍ୟର ପତନ ଓ ଇଂରେଜ ରାଜତ୍ୱର ଉତ୍‌ଥାନ—ଏହି ଯୁଗସନ୍ଧିକାଳରେ ଯେତେବେଳେ ଭାରତବର୍ଷ ମଧ୍ୟଯୁଗୀୟ ଅଜ୍ଞାନାନ୍ଧକାରରେ ସମାଚ୍ଛନ୍ନ, ଦୀର୍ଘକାଳର ପରାଧୀନତା ପାଇଁ ଜାତୀୟଜୀବନ ନାନା ଭାବରେ ଦୁର୍ଗତିଗ୍ରସ୍ତ-ମାନବତାବୋଧ ଲୁପ୍ତ-ପ୍ରାୟ, ମାନବ-ମନ ଭ୍ରାନ୍ତ ଓ ସଙ୍କୀର୍ଣ୍ଣ-ଶାସ୍ତ୍ର-ନିଗଡ଼ରେ ଆବଦ୍ଧ, ସମାଜଜୀବନ ନିରର୍ଥକ ଏବଂ ହୃଦୟହୀନ ଦେଶାଚାର ଓ ବିବିଧ କୁସଂସ୍କାରରେ ନିମଜ୍ଜିତ ବହୁ ଦେବଦେବୀଙ୍କର ଭକ୍ତିହୀନ ପୂଜାର ବାହ୍ୟାଡ଼ମ୍ବରରେ ହିନ୍ଦୁ ଜୀବନ ଯେତେବେଳେ ବିବ୍ରତ ଓ ମୋହାବିଷ୍ଟ ଦେଶର ସେହି ଘୋର ଅନ୍ଧକାରରେ ଭଗବାନଙ୍କ ଆଶୀର୍ବାଦରୁ, ଦୀପ୍ତିମୟ ନବସୂର୍ଯ୍ୟତୁଲ୍ୟ ରାଜା ରାମମୋହନ ରାୟ ଉଦିତ ହୋଇଥିଲେ ଭାରତର ଭାଗ୍ୟାକାଶରେ (ଜନ୍ମ ୧୭୭୪ ଖ୍ରୀଷ୍ଟାବ୍ଦ ମତାନ୍ତରେ ୧୭୭୨ ଖ୍ରୀଷ୍ଟାବ୍ଦରେ ଏବଂ ମୃତ୍ୟୁ ସେପ୍‌ଟେମ୍ବର ୨୭ ତାରିଖ ୧୮୩୨ ଖ୍ରୀଷ୍ଟାବ୍ଦ)। ସେହି ଦୁର୍ଦ୍ଦିନରେ ମୃତକଳ୍ପ କ୍ଲେଦାକ୍ତ ଜାତୀୟ ଜୀବନଧାରାର ମୁଖଟିକୁ ପ୍ରାଚୀନ ନିର୍ବିଘ୍ନର ଗଣାନୁଗତିକତାରୁ ଫେରାଇ ଆଣି ରାମମୋହନ ଭାରତବାସୀଙ୍କୁ ଜାଗ୍ରତ ଚୈତନ୍ୟରେ ସ୍ୱାଧୀନ ବିଚାର ବୁଦ୍ଧି ଦ୍ୱାରା ଉଜ୍ଜ୍ୱଳତର ନବଯୁଗର ସୂର୍ଯ୍ୟୋଦୟକୁ ଅଭିନନ୍ଦନ ଜଣାଇବାକୁ ଉଦ୍‌ବୁଦ୍ଧ କଲେ। ବହୁ ଯୁଗର ସଞ୍ଚିତ ଭୟ ଓ ଜଡ଼ତାରେ ମ୍ରିୟମାଣ ହିନ୍ଦୁ ସମାଜକୁ ଅକାଞ୍ଛିତକର ଶାସ୍ତ୍ରୀୟ ଏବଂ ସାମାଜିକ ବିଧି ନିଷେଧର କ୍ଷୁଦ୍ର ଗଣ୍ଡି ମଧ୍ୟରେ କୂପମଣ୍ଡୂକର ଜୀବନ ଯାପନ ନକରି ସମସ୍ତ ଦ୍ୱିଧା ଦ୍ୱନ୍ଦ୍ୱକୁ ଦୂରକୁ ଫିଙ୍ଗି ସାହସୀ ଅଭିଯାତ୍ରୀତୁଲ୍ୟ ବିଶ୍ୱର ମୁକ୍ତ ପଥରେ ବାହାରିବା ପାଇଁ ସେ ଡ଼ାକ ଦିହଲେ, "ଭାବ ସେଇ ଏକେ, ଜଲେ, ସ୍ଥଲେ, ଶୂନ୍ୟେ ଯେ ସମାନ ଭାବେ ଥାକେ" ବିଶ୍ୱ ବିଧାତା ଏକ, ମାନବଜାତି ଏକ, ଜଗଦ୍‌ବାସୀ ନରନାରୀ ଏକ ବିଶ୍ୱପିତାଙ୍କର ସନ୍ତାନ—ଏହି ବାଣୀର ଉତ୍ତର ଦେଇ ସାର୍ବଜନୀନ ବ୍ରାହ୍ମଧର୍ମ ଓ ବ୍ରାହ୍ମସମାଜର ଅଭ୍ୟୁଦୟ।

ଇତିହାସ ଭାରତର ସେହି ସମୟଟିକୁ ବ୍ରିଟିଶଯୁଗ କହିଅଛି। କିନ୍ତୁ ଭାରତର ଚିନ୍ତାନାୟକଗଣେ—ଯଥା: ନରେନ୍ଦ୍ର ଦତ୍ତ, ସୁରେନ୍ଦ୍ରନାଥ ଶର୍ମା ଗୋପାଳକୃଷ୍ଣ ଗୋଖଲେ, କବିଗୁରୁ ରବୀନ୍ଦ୍ରନାଥ, ଆଚାର୍ଯ୍ୟ ରାଧାକୃଷ୍ଣନ

ପ୍ରକୃତ ଏ ଦେଶରେ ସେତେବେଳକୁ ଯେଉଁ ଯୁଗ ଆରମ୍ଭ ହୋଇଥିଲା, ତାହାକୁ "ରାମମୋହନ ଯୁଗ" ବୋଲି ଅଭିହିତ କରନ୍ତି । ସେଦିନ ସେ ଜାତି ସମ୍ମୁଖରେ ପ୍ରାଚ୍ୟ ଓ ପାଶ୍ଚାତ୍ୟ ଜ୍ଞାନର କ୍ରମବର୍ଦ୍ଧମାନ ସମନ୍ୱୟସମ୍ଭୂତ ଏପରି ଏକ ଶିକ୍ଷାର ଆଦର୍ଶ ସ୍ଥାପନ କଲେ ଯାହାର ଅନୁଶୀଳନ ଦ୍ୱାରା କେବଳ ଯେ ବ୍ୟକ୍ତି ଓ ଜାତିର ମୁକ୍ତି ସମ୍ଭବପର ହେଲା ତା' ନୁହେଁ—ପରନ୍ତୁ ତାହା ଏକ ଅଭିନବ ଧର୍ମବୋଧରେ ଅନୁପ୍ରାଣିତ ସସୀମ-ମାନବଙ୍କୁ ଅସୀମ ମାନବତାବୋଧରେ ତଥା ବିଶ୍ୱବୋଧରେ ଉଦ୍‌ବୁଦ୍ଧ କରିପାରିଲା । ଯୁଗପ୍ରବର୍ତ୍ତକ ରାମମୋହନଙ୍କର ଏହି ଆଦର୍ଶ ଅବାସ୍ତବ କଳ୍ପନା ମାତ୍ର ନୁହେଁ, ତାହାର ଜାଜ୍ଜ୍ୱଲ୍ୟମାନ ପ୍ରମାଣ ମିଳିଅଛି, ତାହାଙ୍କର ବିଶିଷ୍ଟ ଶିଷ୍ୟ ଓ ଅନୁଗାମୀ ଭକ୍ତ ରବୀନ୍ଦ୍ରନାଥଙ୍କ ମଧ୍ୟରେ । ରାମମୋହନଙ୍କ ପ୍ରବର୍ତ୍ତିତ ମହୋଦାର ଆଦର୍ଶ ଦେବେନ୍ଦ୍ରନାଥଙ୍କ ଦ୍ୱାରା ଅନୁସୃତ ହୋଇ ତଦୀୟ ପରିବାରରେ ଓ ବ୍ରାହ୍ମସମାଜରେ ସମ୍ପ୍ରତି ପରିପୋଷଣରେ ସୁଯୋଗ ପାଇ ତାଙ୍କର ସୁଯୋଗ୍ୟପୁତ୍ର ରବୀନ୍ଦ୍ରନାଥଙ୍କ ଜୀବନରେ ଉତ୍କୃଷ୍ଟ ରୂପାୟନ ଲାଭ କରିଅଛି ।

## (ଖ) ମହର୍ଷି ଦେବେନ୍ଦ୍ରନାଥ

ବ୍ରାହ୍ମଧର୍ମ ଓ ବ୍ରାହ୍ମସମାଜର ଯେଉଁ ଅଭ୍ୟୁଦୟ ରାଜା ରାମମୋହନଙ୍କର "ଭାବ ସେଇ ଏକେ" ବାଣୀର ଭିତର ଦେଇ ପ୍ରଥମେ ସୂଚିତ ହୋଇଥିଲା, ତାହା ମହର୍ଷି ଦେବେନ୍ଦ୍ରନାଥଙ୍କ ମଧ୍ୟରେ ଅଦ୍ଭୁତ ଭାବରେ ବିକାଶପ୍ରାପ୍ତ ହୋଇ, "ଏକମେବାଦ୍ୱିତୀୟମ୍"ଙ୍କ ପୂଜା ମାନବକୁ ଜୀବନର ଶ୍ରେଷ୍ଠ ଅଧିକାର ପଥରେ କିଭଳି ସଫଳତା ଦାନ କରେ ତାହାର ଉଜ୍ଜ୍ୱଳ ଦୃଷ୍ଟାନ୍ତ ଦେଖାଇଅଛି ।

ମହର୍ଷିଙ୍କ ପିତା ଦ୍ୱାରକାନାଥ ଠାକୁର ରାମମୋହନଙ୍କର ନିକଟତମ ଓ ଅନ୍ତରଙ୍ଗ ବନ୍ଧୁ ଥିଲେ । ସେହି ସୂତ୍ରରେ ରାମମୋହନଙ୍କ ସହିତ ଦେବେନ୍ଦ୍ରନାଥଙ୍କର ପରିଚୟ । ବାଳକ ଦେବେନ୍ଦ୍ରନାଥ ରାମମୋହନଙ୍କର ଅତି ପ୍ରିୟପାତ୍ର ଥିଲେ । ତାଙ୍କ ମାଣିକତଲା ବଗିଚାକୁ ଯାଇ ଦେବେନ୍ଦ୍ରନାଥ ଗଛରୁ ଫଳ ଖାଉଥିଲେ ଏବଂ ଦୋଳିରେ ଝୁଲୁଥିଲେ । ରାମମୋହନ ମଧ୍ୟ ବେଳେବେଳେ ଦୋଳିରେ ବସାଇ ଦେଇ ନିଜେ ଝୁଲାଇ ଦେଉଥିଲେ ।

ନିଜେ ମଧ୍ୟ କେବେ କେବେ ଦୋଳରେ ବସି ଦେବେନ୍ଦ୍ରନାଥଙ୍କୁ ଝୁଲାଇବାକୁ କହୁଥିଲେ । ରାମମୋହନଙ୍କ କନିଷ୍ଠପୁତ୍ର ରମାପ୍ରସାଦଙ୍କ ସହିତ ଦେବେନ୍ଦ୍ରନାଥ ହେଦୁଆର ନିକଟସ୍ଥ ରାମମୋହନଙ୍କ ସ୍କୁଲରେ ପଢୁଥିଲେ । ରାମମୋହନ ବିଲାତ ଯିବା ସମୟରେ ନିଜେ ଦେବେନ୍ଦ୍ରନାଥଙ୍କୁ ଡାକି ତାଙ୍କ ସହିତ କରମର୍ଦ୍ଦନ କରି ବିଦାୟ ନେଇଥିଲେ । ଦେବେନ୍ଦ୍ରନାଥ ସେତେବେଳେ ଅଳ୍ପବୟସ୍କ ବାଳକ, ରାମମୋହନଙ୍କ ମହତ୍ତ୍ୱ ବୁଝିବା ଭଳି ଶକ୍ତି ତାଙ୍କର ହୋଇନଥିଲା । କିନ୍ତୁ ରାମମୋହନଙ୍କର ସସ୍ନେହ ବ୍ୟବହାର ତାଙ୍କୁ ମୁଗ୍ଧ କରିଥିଲା ଏବଂ ସେ ରାମମୋହନଙ୍କ ପ୍ରତି ନିଗୂଢ଼ ଆକର୍ଷଣ ଅନୁଭବ ଦେବେନ୍ଦ୍ରନାଥଙ୍କ ଜନ୍ମ ୧୭୩୯ ଶକାବ୍ଦ ଜ୍ୟେଷ୍ଠ ତ୍ରୟୋଦଶୀ (ଇଂରାଜୀ ୧୮୧୭ ଖ୍ରୀଷ୍ଟାବ୍ଦ, ମେ ୧୫ ତାରିଖ ଗୁରୁବାର ମୃତ୍ୟୁ ୧୮୨୬ ଶକାବ୍ଦ ୬୭ ମାଘ (୧୯୦୫ ଖ୍ରୀଷ୍ଟାବ୍ଦ ଜାନୁୟାରୀ ୧୯ ତାରିଖ, ।

ପରବର୍ତ୍ତୀ କାଳରେ ସେ ବୃଦ୍ଧ ବୟସରେ ବ୍ରାହ୍ମବନ୍ଧୁମାନଙ୍କ ସମକ୍ଷରେ କହିଛନ୍ତି, "ରାଜା ଯେ ସସ୍ନେହରେ ମୋ ହାତ ଧରିଥିଲେ, ତାର ପ୍ରଭାବ ଓ ଅର୍ଥ ମୁଁ ସେତେବେଳେ ବୁଝିନଥିଲି । ବୟସ ଅଧିକ ହେବାରୁ ତାହାର ଅର୍ଥ ମୁଁ ହୃଦୟଙ୍ଗମ କରିପାରୁଛି ।" ସେ ଆହୁରି ମଧ୍ୟ କହିଥିଲେ ଥରେ ଆଶ୍ୱିନ ମାସରେ ଦୁର୍ଗାପୂଜା ସମୟରେ ସେ ରାମମୋହନଙ୍କୁ ପୂଜାରେ ନିମନ୍ତ୍ରଣ କରିବାକୁ ଯାଇ କହିଲେ "ରାମମଣି, ଠାକୁରଙ୍କର ନିବେଦନ, ତିନି ଦିନ ଆପଣଙ୍କୁ ପ୍ରତିମା ଦର୍ଶନ ପାଇଁ ନିମନ୍ତ୍ରଣ", ଶୁଣିବାମାତ୍ର ରାମମୋହନ କହିଥିଲେ, "ବନ୍ଧୁ! ମୋତେ କାହିଁକି ? ରାଧାପ୍ରସାଦଙ୍କୁ[୧] କୁହ ।" ଦେବେନ୍ଦ୍ରନାଥ ଆତ୍ମଜୀବନୀରେ କହିଅଛନ୍ତି "ଏତେଦିନ ପରେ ସେହି କଥାର ଭାବ ଓ ଅର୍ଥ ବୁଝିପାରିଲି ।" (ଆତ୍ମଜୀବନୀ-୫୭ ପୃଷ୍ଠା, ସତୀଶ ଚନ୍ଦ୍ରଙ୍କ ସଂସ୍କରଣ) ସେ ଅନ୍ୟତ୍ର ଲେଖିଛନ୍ତି "ଯେତେବେଳେ ମୁଁ ବୁଝିଲି ଯେ ଈଶ୍ୱରଙ୍କର ଶରୀର ନାହିଁ, ସେହି ସମୟରୁ ମୋର ପୌତ୍ତଳିକତା ଉପରେ ଘୋର ବିଦ୍ୱେଷ ଜନ୍ମିଲା । ରାମମୋହନ ରାୟଙ୍କୁ ସ୍ମରଣ ହେଲା, ମୋର ଚେତନା ହେଲା । ମୁଁ ତାଙ୍କର ଅନୁଗାମୀ ହେବାପାଇଁ ମନପ୍ରାଣ ସମର୍ପଣ କଲି ।" (ଆତ୍ମଜୀବନୀ-୫୭ ପୃଷ୍ଠା)

୧ । ରାଧାପ୍ରସାଦ ରାମମୋହନଙ୍କ ଜ୍ୟେଷ୍ଠପୁତ୍ର ଥିଲେ ।

ଦେବେନ୍ଦ୍ରନାଥ ବାଲ୍ୟକାଳରୁ ପିତାମହୀଙ୍କ ପାଖରେ ମଣିଷ ହୋଇଥିଲେ । ଶୟନ, ଭୋଜନ, ଉପବେଶନ ସବୁକିଛି ପିତାମହୀଙ୍କ ସନ୍ନିଧାନରେ ହେଉଥିଲା । ଏହି ପିତାମହୀଙ୍କ ମୃତ୍ୟୁର ପୂର୍ବରାତ୍ରିରେ ଯେତେବେଳେ ତାହାଙ୍କୁ ଗଙ୍ଗାଯାତ୍ରା କରାହେଲା, ଜ୍ୟୋତ୍ସ୍ନାପ୍ଲାବିତ ସେହି ରଜନୀରେ ଦେବେନ୍ଦ୍ରନାଥ ନିମତଳା ଘାଟରେ ଖଣ୍ଡିଏ ଚଟାଣ ଉପରେ ବସିଥିଲେ । ପିତାମହୀଙ୍କ ନିକଟରେ କୀର୍ତ୍ତନ ହେଉଥିଲା, "ଏମନ ଦିନ କି ହବେ, ହରିନାମ ବଲିତେ ପ୍ରାଣ୍ ଯାବେ" । ବାୟୁର ପ୍ରବାହ ସଙ୍ଗେ ସଙ୍ଗେ ଏହି ଗୀତ ଅଳ୍ପ ଅଳ୍ପ ଦେବେନ୍ଦ୍ରନାଥଙ୍କ କାନକୁ ଆସୁଥିଲା । ଏହି ଅବସରରେ ହଠାତ୍ ଏକ ଆଶ୍ଚର୍ଯ୍ୟ ଉଦାସଭାବ ତାଙ୍କ ମନରେ ଉପସ୍ଥିତ ହେଲା । ସତେଯେପରି ସେ ଆଉ ଆଗ ମଣିଷ ନୁହନ୍ତି । ଐଶ୍ୱର୍ଯ୍ୟ ଉପରେ ଏକେବାରେ ବିରାଗ ଜନ୍ମିଲା । ମନ ମଧ୍ୟରେ ଏକ ଅଭୂତପୂର୍ବ ଆନନ୍ଦ ଉପସ୍ଥିତ ହେଲା । ଏହି ବିଷୟରେ ଦେବେନ୍ଦ୍ରନାଥ ଆତ୍ମଜୀବନୀରେ ଲେଖିଛନ୍ତି—"ଶ୍ମଶାନରେ ସେହି ଉଦାସ ଆନନ୍ଦ, ତତ୍କାଳର ସେହି ସ୍ୱାଭାବିକ ସହଜ ଆନନ୍ଦ ଭାଷା ସର୍ବଥା ଦୁର୍ବଳ, ମୁଁ ସେହି ଆନନ୍ଦ କିପରି ଲୋକଙ୍କୁ ବୁଝାଇବି ? ........ସେହି ଆନନ୍ଦ ଢାଳିବା ପାଇଁ ଈଶ୍ୱର ଅବସର ଖୋଜନ୍ତି, ସମୟ ବୁଝି ସେ ମୋତେ ଏହି ଆନନ୍ଦ ଦେଇଥିଲେ । କିଏ କହେ ଈଶ୍ୱର ନାହାନ୍ତି ? ଏହି ତ ତାଙ୍କ ଅସ୍ତିତ୍ୱର ପ୍ରମାଣ । ମୁଁ ତ ପ୍ରସ୍ତୁତ ନଥିଲି ତେବେ କେଉଁଠାରୁ ଏ ଆନନ୍ଦ ପାଇଲି ? "ଏହି ଔଦାସ୍ୟ ଓ ଆନନ୍ଦ ନେଇ ମୁଁ ରାତ୍ରି ଦୁଇପ୍ରହର ସମୟରେ ଘରକୁ ଆସିଲି—ସାରା ରାତ୍ରି ସତେଯେପରି ଏକ ଆନନ୍ଦଜ୍ୟୋତ୍ସ୍ନା ମୋ ହୃଦୟରେ ଜାଗ୍ରତ ରହିଲା ।" (ମହର୍ଷିଙ୍କ ଆତ୍ମଜୀବନୀ—୪୧ ପୃଷ୍ଠା —ସତୀଶ ଚନ୍ଦ୍ରଙ୍କ ସଂସ୍କରଣ)

କିନ୍ତୁ ଏହି ଆନନ୍ଦ ଚବିଶିଆରଦିନ ରହିଲା, ସେତେବେଳେ ଦେବେନ୍ଦ୍ରନାଥ ଘୋର ବିଷାଦରେ ପତିତ ହେଲେ । ସେ କହିଛନ୍ତି ପିପାସା-ତୁର ପଥିକଭଳି ମୁଁ ସେହି ଆନନ୍ଦର ଆକାର, ପ୍ରେମର ସାଗର, ଇଶ୍ୱରଙ୍କ ଅନୁସନ୍ଧାନରେ ପ୍ରବୃତ୍ତ ହେଲି । .. ସେତେବେଳେ ଉପନିଷଦର ଖଣ୍ଡିଏ ଛିନ୍ନପତ୍ର ମୋ ହାତରେ ପଡ଼ିଲା । "ଦେବେନ୍ଦ୍ରନାଥ ଔତ୍ସୁକ୍ୟବଶତଃ ଏହି ଛିନ୍ନପତ୍ରଟି ଉଠାଇ ନେଇ ଦେଖିଲେ, କିନ୍ତୁ ଯାହା ଲେଖିତ ଅଛି ତାହାର ଅର୍ଥ ବୁଝିପାରିଲେ ନାହିଁ । ପରେ ବ୍ରାହ୍ମସମାଜର ଆଚାର୍ଯ୍ୟ ରାମଚନ୍ଦ୍ର ବିଦ୍ୟାବାଗୀଶ ସେହି ଛିନ୍ନପତ୍ର ପଢ଼ି ଅର୍ଥ ବୁଝାଇ ଦେଲେ ।

ସେଥିରେ ଲେଖାଥିଲା :—

"ଈଶାବାସ୍ୟମିଦଂ ସର୍ବଂ ଯତ୍‌କିଞ୍ଚ ଜଗତ୍ୟାଂ ଜଗତ୍
ତେନ ତ୍ୟକ୍ତେନ ଭୁଞ୍ଜୀଥାମାଗୃଧଃ କସ୍ୟସ୍ୱିଦ୍ଧନମ୍"

ଏହାର ଅର୍ଥ "ଈଶ୍ୱରଙ୍କ ଦ୍ୱାରା ସମୁଦାୟ ଜଗତ ଆଚ୍ଛାଦିତ । ସେ ଯାହା ଦାନ କରିଅଛନ୍ତି ତାହା ଭୋଗ କର । ଅନ୍ୟ କାହାରି ଧନରେ ଲୋଭ କରନାହିଁ ।" ଦେବେନ୍ଦ୍ରନାଥ ତାଙ୍କ ଆତ୍ମଜୀବନୀରେ ଲେଖିଅଛନ୍ତି "ଯେତେବେଳେ ବିଦ୍ୟାବାଗୀଶଙ୍କ ମୁଖରୁ 'ଈଶାବାସ୍ୟମିଦଂ ସର୍ବମ୍' ଏହାର ଅର୍ଥ ବୁଝିପାରିଲି, ସେତେବେଳେ ସ୍ୱର୍ଗରୁ ଅମୃତ ଆସି ମୋତେ ଅଭିଷିକ୍ତ କଲା । ମୁଁ ମନୁଷ୍ୟଙ୍କ ନିକଟରୁ ଯାହା ପାଇବାକୁ ବ୍ୟସ୍ତ ଥିଲି । ବର୍ତ୍ତମାନ ସ୍ୱର୍ଗରୁ ଦୈବବାଣୀ ଆସି ମୋର ମର୍ମ ମଧ୍ୟରେ ସାନ୍ତ୍ୱନା ଦେଲା । ମୋର ଆକାଂକ୍ଷା ଚରିତାର୍ଥ ହେଲା । ମୁଁ ଈଶ୍ୱରଙ୍କୁ ସର୍ବତ୍ର ଦେଖିବାକୁ ଚାହେଁ । ଉପନିଷଦରେ କଣ ପାଇଲି ? — ପାଇଲି ଯେ "ଈଶ୍ୱରଙ୍କ ଦ୍ୱାରା ସମୁଦାୟ ଜଗତ ଆଚ୍ଛାଦିତ ହେଲେ ଆଉ ଅପବିତ୍ରତା କେଉଁଠାରେ ? ତାହାହେଲେ ସମସ୍ତ ପବିତ୍ର ହୁଏ, ଜଗତ ମଧୁମୟ ହୁଏ । ମୁଁ ଯାହା ଚାହେଁ ତାହା ପାଇଲି ।" ( ଆତ୍ମଚରିତ—୭୦ ପୃଷ୍ଠା ) ଦେବେନ୍ଦ୍ରନାଥଙ୍କ ହୃଦୟ ଶାନ୍ତ ହେଲା ।

ରାମମୋହନ କୈଶୋରରେ ଇସଲାମ ଧର୍ମ ଆଲୋଚନାରୁ ପ୍ରଥମତଃ ଏକେଶ୍ୱରବାଦ ତତ୍ତ୍ୱ ଲାଭ କଲେ; ପରେ ହିନ୍ଦୁ ଶାସ୍ତ୍ରରେ-ଅର୍ଥାତ୍ ବେଦାନ୍ତ, ଉପନିଷଦ, ତନ୍ତ୍ରାଦିରେ ମଧ୍ୟ ତାହା ଆବିଷ୍କାର କରି ଆଶ୍ୱସ୍ତ ହୋଇ ହିନ୍ଦୁମାନଙ୍କ ପୌତ୍ତଳିକତା ବିରୁଦ୍ଧରେ ଲେଖନୀ ଧାରଣ କରି ସେ ପିତା କର୍ତ୍ତୃକ ପରିତ୍ୟକ୍ତ ଓ ଗୃହରୁ ବିତାଡ଼ିତ ହେଲେ । ପରିଣତ ବୟସରେ ଖ୍ରୀଷ୍ଟୀୟ ଧର୍ମର ମର୍ମସ୍ଥଳରେ ପ୍ରବେଶ କରି ଯେତେବେଳେ ସେ ଦେଖିଲେ ଯେ ଏହା ମଧ୍ୟ ଇହୁଦି ଧର୍ମ ଭଳି ମୂଳତଃ ଏକେଶ୍ୱରବାଦ, ସେତେବେଳେ ସେ କୃତନିଶ୍ଚୟ ହେଲେ ଯେ, ଏକମାତ୍ର ନିରାକାର ଈଶ୍ୱରୋପାସନା ହିଁ ଶ୍ରେଷ୍ଠ ଉପାସନା । ସେତେବେଳେ ଏହି ବିଶ୍ୱାସ ଅନୁଯାୟୀ ବ୍ରହ୍ମୋପାସନା ପାଇଁ ସେ କତିପୟ ସୁହୃଦ୍‌ଙ୍କୁ ଘେନି ଚିତ୍‌ପୁରଠାରେ କମଳ ବସୁଙ୍କ ବହିର୍ଗୃହରେ ବ୍ରହ୍ମସଭା ବା ବ୍ରହ୍ମସମାଜ ସ୍ଥାପନ କରିଥିଲେ (ଭାଦ୍ରବ ୭ ତାରିଖ ୧୭୫୦ ଶକାବ୍ଦ-୧୮୨୮ ଖ୍ରୀଷ୍ଟାବ୍ଦ) । ଏହାର ଦେଢ଼ବର୍ଷ ମଧ୍ୟରେ ଜୋଡ଼ାସାଁକୋର

(୫୫ ନମ୍ବର ଚିତ୍ପୁର ରୋଡ଼) ନବନିର୍ମିତ ନିଜ ଗୃହରେ ବ୍ରାହ୍ମସମାଜ ସ୍ଥାପିତ ହେଲା (ମାଘ ୧୧ ଦିନ ୧୭୫୧ ଶକାବ୍ଦ–୧୮୩୦ ଖ୍ରୀଷ୍ଟାବ୍ଦ) । ପ୍ରଥମେ ଏହା 'କଲିକତା ବ୍ରାହ୍ମସମାଜ' ନାମରେ ପରିଚିତ ଥିଲା; ପରବର୍ତ୍ତୀ କାଳରେ କେଶବଚନ୍ଦ୍ର ଯେତେବେଳେ ସ୍ୱତନ୍ତ୍ର ହୋଇ ଭାରତବର୍ଷୀୟ 'ବ୍ରାହ୍ମସମାଜ' ସ୍ଥାପନ କଲେ, ସେତେବେଳଠାରୁ ଏହା 'ଆଦି ବ୍ରହ୍ମସମାଜ' ନାମରେ ପ୍ରସିଦ୍ଧି ଲାଭ କଲା । ପ୍ରତିଷ୍ଠା ଦିନ ଉକ୍ତ ସମାଜର ଟ୍ରଷ୍ଟ ଡ଼ିଡ୍‌ରୁ (Trust Deed) ବଚନ ଉଦ୍ଧାର କରି ଘୋଷଣା କରିହୁଏ ଯେ, ଏହି ଭବନ ଜାତି-ବର୍ଣ୍ଣ-ସମ୍ପ୍ରଦାୟ ନିର୍ବିଂଶେଷରେ ସକଳଶ୍ରେଣୀର ମାନବଙ୍କ ପାଇଁ ଉନ୍ମୁକ୍ତ ହେଲା ଏବଂ ସେଠାରେ ଏକମାତ୍ର ନିରାକାର ସତ୍ୟସ୍ୱରୂପ ପରମେଶ୍ୱରଙ୍କ ଉପାସନା ଭିନ୍ନ କୌଣସି ଋଚିମିତ ଦେବତାଙ୍କର ପୂଜା ହେବନାହିଁ ।

ରାମମୋହନ ଯଦିଓ ପୌତ୍ତଳିକ ପୂଜାର ଅସାରତା ନାନା ଶାସ୍ତ୍ର ବିଚାର ଦ୍ୱାରା ପ୍ରତିପନ୍ନ କରି 'ଏକମେବାଦ୍ୱିତୀୟମ୍' ନିରାକାର ବ୍ରହ୍ମଙ୍କ ପୂଜା ପ୍ରବର୍ତ୍ତନ କରିଥିଲେ, ତଥାପି ବିଲାତରେ ତାଙ୍କ ମୃତ୍ୟୁ ପରେ ଏହାର କାର୍ଯ୍ୟ ପ୍ରାୟ ଲୁପ୍ତ ହେବାକୁ ବସିଥିଲା । କେବଳ ଆଚାର୍ଯ୍ୟ ରାମଚନ୍ଦ୍ର ବିଦ୍ୟାବାଗୀଶ କେତେଜଣ ମାତ୍ର ବନ୍ଧୁଙ୍କୁ ନେଇ ଏହି ମନ୍ଦିରରେ ନିୟମିତ ବ୍ରହ୍ମୋପାସନା କାର୍ଯ୍ୟଟି ରକ୍ଷା କରି ଆସୁଥିଲେ । ଦେବେନ୍ଦ୍ରନାଥଙ୍କ ସହିତ ବିଦ୍ୟାବାଗୀଶ ମହାଶୟଙ୍କ ଯୋଗ ଏବଂ ଛିନ୍ନପତ୍ରରେ ଉଲ୍ଲିଖିତ ଶ୍ଳୋକର ବ୍ୟାଖ୍ୟା ପରେ କ୍ରମେ ନିକଟତର ହୋଇଉଠିଲା । ତାଙ୍କ ଧର୍ମପିପାସୁ ଅନ୍ତର ଉପନିଷଦରେ ଋଷିବାକ୍ୟ ମଧ୍ୟରେ ସତ୍ୟର ଅନ୍ୱେଷଣରେ ବ୍ୟାପୃତ ହେଲା । ପୌତ୍ତଳିକତା ପରିତ୍ୟାଗ କରି ଯେଉଁମାନେ ଏକ ଈଶ୍ୱରଙ୍କ ଉପାସନାରେ ବ୍ରତୀ ହୋଇ ପ୍ରତିଜ୍ଞାବଦ୍ଧ ହେବେ, ସେମାନେ ବ୍ରାହ୍ମ ହେବେ—ଏହି ସତ୍ୟ ଅନ୍ତରରେ ଅନୁଭବ କରି ଦେବେନ୍ଦ୍ରନାଥ ବିଧିପୂର୍ବକ ବ୍ରାହ୍ମଧର୍ମ ଗ୍ରହଣ କରିବା ପାଇଁ ପ୍ରତିଜ୍ଞାପତ୍ର ରଚନା କଲେ । ୧୮୪୩ ଖ୍ରୀଷ୍ଟାବ୍ଦ ପୌଷ ମାସ ୭ ତାରିଖରେ କୋଡ଼ିଏ ଜଣ ସଙ୍ଗୀଙ୍କ ସହ ଦେବେନ୍ଦ୍ରନାଥ ରାମଚନ୍ଦ୍ର ବିଦ୍ୟାବାଗୀଶଙ୍କ ନିକଟରୁ ବ୍ରାହ୍ମଧର୍ମର ଦୀକ୍ଷା ଗ୍ରହଣ କଲେ । ସେହି ସମୟରୁ ସମସ୍ତ ବ୍ରାହ୍ମ ଓ ସମସ୍ତ ବ୍ରାହ୍ମସମାଜ, ଯାହାକୁ ଶ୍ରଦ୍ଧା ସହିତ ପାଠ କରିବେ, ଏପରି ଗ୍ରନ୍ଥର ପ୍ରୟୋଜନ ସେ ଅନୁଭବ କରିବାକୁ ଲାଗିଲେ । ପ୍ରଥମେ ସେ ଭାବିଥିଲେ ଯେ ଉପନିଷଦରୂପ ଗ୍ରନ୍ଥ ହେବ । କିନ୍ତୁ ୧୮୪୭ ଖ୍ରୀଷ୍ଟାବ୍ଦରେ କାଶୀ ଗମନ କରି ଓ ବେଦଜ୍ଞ ପଣ୍ଡିତଗଣଙ୍କ ସହିତ ଆଲୋଚନା କରି ଦେବେନ୍ଦ୍ରନାଥଙ୍କ

ମନରେ ଦୃଢ଼ ପ୍ରତୀତ ହେଲା ଯେ ଉପନିଷଦରେ ଅନେକ ବିଶୁଦ୍ଧ ତତ୍ତ୍ୱ ଓ ଉପଦେଶ ଥିଲେ ମଧ୍ୟ ତାହା ସର୍ବାଂଶରେ ଏକ ରୂପ ନୁହେଁ । ସେଥିରେ ବିଶ୍ୱାସର ଅଯୋଗ୍ୟ କଥା ଓ ଅସାର କଳ୍ପନା ମଧ୍ୟ ଅନେକ ଅଛି ।

ଦେବେନ୍ଦ୍ରନାଥ ଆତ୍ମଜୀବନୀରେ ଲେଖିଛନ୍ତି, "ମୋର ବର୍ତ୍ତମାନ ଭାବନା ହେଲା ଯେ, ବ୍ରାହ୍ମମାନଙ୍କର ଐକ୍ୟସ୍ଥଳ କେଉଁଠାରେ ହେବ ? ତନ୍ତ୍ରପୁରାଣ, ବେଦାନ୍ତ, ଉପନିଷଦ; କେଉଁଠି ହେଲେ ବ୍ରାହ୍ମମାନଙ୍କର ଐକ୍ୟସ୍ଥଳ, ବ୍ରାହ୍ମଧର୍ମର ପତ୍ତନଭୂମି ଦେଖାଯାଉ ନାହିଁ । ମୁଁ ମନେକଲି ଯେ ବ୍ରାହ୍ମଧର୍ମର ଏପରି ଗୋଟିଏ ବୀଜମନ୍ତ୍ର ଆବଶ୍ୟକ ଯାହା ବ୍ରାହ୍ମମାନଙ୍କର ଐକ୍ୟସ୍ଥଳ ହେବ । (ମହର୍ଷି ଆତ୍ମଜୀବନୀ—୧୭୫-ପୃଷ୍ଠା)

ବୀଜମନ୍ତ୍ର ବୁଝାଯିବ ଯାହା ବ୍ରାହ୍ମଧର୍ମର ମୂଳସତ୍ୟ ପ୍ରକାଶକ ସଂକ୍ଷିପ୍ତ ଅଥଚ ସରଳ ବାକ୍ୟ ।

ମହର୍ଷି ଲେଖିଛନ୍ତି, "ମୁଁ ମୋର ହୃଦୟ ଈଶ୍ୱରଙ୍କ ପ୍ରତି ବଢ଼ାଇଦେଲି, କହିଲି—ମୋର ଅନ୍ଧାର ହୃଦୟକୁ ଆଲୋକିତ କର; ତାଙ୍କ କୃପାରେ ସେହିକ୍ଷଣି ମୋର ହୃଦୟ ଆଲୋକିତ ହେଲା । ସେହି ଆଲୋକ ସାହାଯ୍ୟରେ ମୁଁ ଗୋଟିଏ ବୀଜ ଦେଖିପାରିଲି । ସଙ୍ଗେ ସଙ୍ଗେ ଗୋଟିଏ ପେନ୍‌ସିଲ ଦ୍ୱାରା ସମ୍ମୁଖସ୍ଥ କାଗଜ ଖଣ୍ଡିକରେ ଲେଖି ରଖିଲି ଓ ତାହାକୁ ଗୋଟିଏ ବାକ୍‌ସରେ ସ୍ଥିର ବନ୍ଦକରି ରଖିଲି ।"

ବୀଜମନ୍ତ୍ରଟି ଏହିପ୍ରକାର :—

୧ । ଓଁ ବ୍ରହ୍ମ ବା ଏକମିଦମଗ୍ର ଆସୀତ୍, ନାନ୍ୟତ୍ କିଞ୍ଚନାସୀତ୍; ତଦିଦଂସର୍ବ ମସୃଜତ୍ ।

୨ । ତଦେବ ନିତ୍ୟଂ ଜ୍ଞାନମନନ୍ତଂ ଶିବଂ ସ୍ୱତନ୍ତ୍ରଂ ନିରବୟବମ୍ ଏକମେବାଦ୍ୱିତୀୟମ୍ ସର୍ବବ୍ୟାପୀ-ସର୍ବନିୟନ୍ତୃ-ସର୍ବାଶ୍ରୟ-ସର୍ବବିତ୍-ସର୍ବଶକ୍ତିମଦ୍ ଧ୍ରୁବଂ ପୂର୍ଣ୍ଣମପ୍ରତିମମିତି ।

୩ । ଏକସ୍ୟ ତସ୍ୟୈବୋପାସନୟା ପାରତ୍ରିକମୈହିକଞ୍ଚ ଶୁଭମ୍ ଭବତି ।

୪ । ତସ୍ମିନ୍ ପ୍ରୀତିସ୍ତସ୍ୟ ପ୍ରିୟକାର୍ଯ୍ୟ ସାଧନଞ୍ଚ ତଦୁପାସନମେବ ।

## (ଗ) ବ୍ରାହ୍ମ ଉପାସନା ପ୍ରଣାଳୀର କ୍ରମବିକାଶ

ପ୍ରଥମରୁ ରାମମୋହନଙ୍କ ମାନସପଟରେ ବ୍ରାହ୍ମମାନଙ୍କ ଉପାସନା ପାଇଁ ତିନୋଟି ସ୍ତର ସ୍ୱୀକୃତ ହୋଇ ଆସିଅଛି ବୋଲି ମନେହୁଏ; ଯଥା :— (୧) ଦୈନିକ ବ୍ୟକ୍ତିଗତ ଉପାସନା ବା ସନାତନ ସାଧନ ପଦ୍ଧତି-ଧ୍ୟାନ, ଜପ, ପୂଜାର୍ଚ୍ଚନା ଇତ୍ୟାଦି- ଯାହାର ଅଭାବରେ ଆଧ୍ୟାତ୍ମିକ ଉନ୍ନତି ଅସମ୍ଭବ; (୨) ସମବିଶ୍ୱାସୀମାନଙ୍କ ସହିତ ସାମ୍ପ୍ରାଦ୍ଧିକ ମଣ୍ଡଳୀଗତ ଉପାସନା— ଯାହା ଖ୍ରୀଷ୍ଟିୟାନ ଏବଂ ମୁସଲମାନଙ୍କ ମଧ୍ୟରେ ସୁପ୍ରଚଳିତ ଏବଂ ଯାହାର ଅଭାବରେ ମଣ୍ଡଳୀ ମଧ୍ୟରେ ପାରସ୍ପରିକ ଯୋଗ, ସଦ୍ଭାବ ଓ ସୌଭ୍ରାତ୍ରର ବିକାଶ ଅସମ୍ଭବ; ଏବଂ (୩) ସାର୍ବଜନୀନ ଉପାସନା—ଯାହାର ଉଦ୍ଦେଶ୍ୟ ବିଶ୍ୱମୈତ୍ରୀ ଓ ବିଶ୍ୱମାନବର ଭ୍ରାତୃତ୍ୱବୋଧ ।

ବ୍ୟକ୍ତିଗତ ସାଧନାରେ ରାମମୋହନ ଯେ, ଋକ୍‌ବେଦର ସାବିତ୍ରୀମନ୍ତ୍ର ଅର୍ଥାତ୍ ଗାୟତ୍ରୀକୁ ହିଁ ଶ୍ରେଷ୍ଠ ଅବଲମ୍ବନ ମନେ କରୁଥିଲେ, ତାହାର ସୁସ୍ପଷ୍ଟ ପ୍ରମାଣ ରହିଅଛି—୧୮୧୭ ଖ୍ରୀଷ୍ଟାବ୍ଦରେ ତାଙ୍କ ରଚିତ "ଗାୟତ୍ର୍ୟା ପରମୋପାସନା ବିଧାନମ୍" ନାମକ ପୁସ୍ତିକାରେ । ଏହି ସ୍ଥଳେ ଉଲ୍ଲେଖ-ଯୋଗ୍ୟ ଯେ ସାବିତ୍ରୀ ଋକ୍ ଗାୟତ୍ରୀ ଛନ୍ଦରେ ରଚିତ ବୋଲି ଏହା ଗାୟତ୍ରୀ ମନ୍ତ୍ର ଭାବରେ ସୁପରିଚିତ । ଏହି ମନ୍ତ୍ରର ଉଦ୍ଦିଷ୍ଟ ଦେବତା ସବିତୃ-ଦେବ ଏବଂ ବୈଦିକ ଯୁଗରେ ପ୍ରଥମତଃ ଏହାର ଅର୍ଥ ଥିଲା—"ଆମ୍ଭେମାନେ ସେହି ସବିତୃ-ଦେବଙ୍କର ଅର୍ଥାତ୍ ସୂର୍ଯ୍ୟଙ୍କର ବରଣୀୟ ତେଜଃକୁ (ଅଥବା ତେଜୋମୟ ରୂପକୁ) ଧ୍ୟାନ କରୁଁ; ଯେପରିକି (ତାହା ଫଳରେ) ସେ ଆମ୍ଭମାନଙ୍କର ବୁଦ୍ଧି ବୃତ୍ତିଗୁଡ଼ିକୁ ଅନୁପ୍ରାଣିତ କରନ୍ତୁ ।" କିନ୍ତୁ ଏହି ମନ୍ତ୍ର ଯେ ଏହାର ଉପାସକମାନଙ୍କୁ ଅତି ପ୍ରାଚୀନ କାଳରୁ ସୂର୍ଯ୍ୟପୂଜାର ନିମ୍ନସ୍ତର ଅତିକ୍ରମ କରି ଏକ ଚୈତନ୍ୟମୟ ପରମେଶ୍ୱର ଅନୁଭୂତିରେ ଉଠିବାକୁ ସହାୟତା କରୁଅଛି, ତାହାର ପରିଚୟ ଉପନିଷଦରେ ହିଁ ଅଛି । ଛାନ୍ଦୋଗ୍ୟ ଉପନିଷଦର ତୃତୀୟ ଅଧ୍ୟାୟର ଏକାଦଶ ଖଣ୍ଡରେ ସବିତୃଦେବ ବା ଆଦିତ୍ୟଙ୍କୁ ପ୍ରାୟ ସର୍ବବ୍ୟାପୀ ରୂପେ ବ୍ୟାଖ୍ୟା କରାହୋଇଛି । ଦ୍ୱାଦଶ ଖଣ୍ଡରେ ଗାୟତ୍ରୀର ନୂତନ ବ୍ୟାଖ୍ୟାରେ ଏହାକୁ ବ୍ରହ୍ମଜ୍ଞାନ ଲାଭର ପ୍ରଶସ୍ତ ଉପାୟ ବୋଲାଯାଇଛି । ରାମମୋହନ ଏବଂ ଦେବେନ୍ଦ୍ରନାଥ ଯେଉଁ ଅର୍ଥରେ ଗାୟତ୍ରୀ ମନ୍ତ୍ରକୁ ଗ୍ରହଣ

କରିଥିଲେ; ଯଥା .—"ଆମ୍ଭେମାନେ ସର୍ବଲୋକ ପ୍ରକାଶକ ସର୍ବବ୍ୟାପୀ ସେହି ପୂର୍ଣ୍ଣ-ମଙ୍ଗଳ ଜଗତ୍‌ପ୍ରସବିତା ଦେବତାଙ୍କର ବରଣୀୟ ଜ୍ଞାନ ଓ ଶକ୍ତିକୁ ଧ୍ୟାନ କରୁଁ, ଯେ ଆମ୍ଭମାନଙ୍କ ବୁଦ୍ଧିବୃତ୍ତି ସମୂହକୁ ପ୍ରେରଣ କରୁଅଛନ୍ତି ।"

ବ୍ରାହ୍ମସମାଜ ସ୍ଥାପନ (ଭାଦ୍ରବ ୬ ତାରିଖ ୧୮୨୮ ଖ୍ରୀଷ୍ଟାବ୍ଦ )କରି ରାମମୋହନ ଯେତେବେଳେ ମଣ୍ଡଳୀଗତ ପ୍ରକାଶ୍ୟ ଉପାସନା ପ୍ରଣାଳୀର ପ୍ରୟୋଜନ ଅନୁଭବ କଲେ, ସେତେବେଳେ ମିଳିତ ବା ସାମାଜିକ ଉପାସନା ପଦ୍ଧତିର କୌଣସି ପ୍ରଣାଳୀକୁ ସେ ହିନ୍ଦୁ ସମାଜରେ ଖୋଜି ପାଇଲେ ନାହିଁ; କାରଣ ଏ ଦେଶରେ ବ୍ୟକ୍ତିଗତ ସାଧନା ଏବଂ ସମ୍ମିଳିତ ବାହ୍ୟାନୁଷ୍ଠାନ ହିଁ ଚିରାଚରିତ ପ୍ରଥା । ସେଥିପାଇଁ ରାମମୋହନ ଖ୍ରୀଷ୍ଟୀୟ ସମାଜର—ବିଶେଷତଃ ଏକେଶ୍ୱରବାଦୀ ଖ୍ରୀଷ୍ଟୀୟମାନଙ୍କର ଅନୁସରଣରେ ଶାସ୍ତ୍ରପାଠ ଓ ବ୍ୟାଖ୍ୟା ତଥା ଉପଦେଶ ଓ ସଙ୍ଗୀତସମ୍ବଳିତ ଏକ ସାମାଜିକ ଉପାସନା-ପଦ୍ଧତି ବ୍ରାହ୍ମସମାଜରେ ପ୍ରବର୍ତ୍ତିତ କଲେ । ତା'ପରେ ଅତି ଅଳ୍ପଦିନ ସେ ଏ ଦେଶରେ ଥିଲେ; ୧୮୩୦ ଖ୍ରୀଷ୍ଟାବ୍ଦରେ ବିଲାତ ଯାତ୍ରାର ପୂର୍ବରୁ ନାନା ପ୍ରକାର କର୍ମବ୍ୟସ୍ତତା ମଧ୍ୟରେ ମଣ୍ଡଳୀଗତ ଉପାସନା ପ୍ରଣାଳୀର ସଂସ୍କାର ସମ୍ପାଦନ ତାଙ୍କ ପକ୍ଷରେ ସମ୍ଭବ ହେଲାନାହିଁ । କିନ୍ତୁ ଏହା ଉଲ୍ଲେଖଯୋଗ୍ୟ ଯେ, ରାଜା ୧୮୨୮ ସାଲରେ "ବ୍ରହ୍ମୋପାସନା" ନାମକ ଗୋଟିଏ ପୁସ୍ତିକା ପ୍ରକାଶ କରିଥିଲେ ଏବଂ ସେଥିରେ "ବ୍ରହ୍ମୋପାସନାର ସଙ୍କେତ-କ୍ରମ ଏହି" ବୋଲି ଗୋଟିଏ ପ୍ରଣାଳୀ ନିର୍ଦ୍ଦେଶ କରିଥିଲେ । କିନ୍ତୁ ସମାଜରେ ସେ ପଦ୍ଧତି ଅନୁଯାୟୀ ଉପାସନା ପ୍ରଚଳିତ ହୋଇନାହିଁ ।

ତାଙ୍କର ସଙ୍କଳିତ ପ୍ରଣାଳୀରେ ଥିଲା—"ମନୁଷ୍ୟର ଯାବତୀୟ ଧର୍ମ ଦୁଇଟି ମୂଳକୁ ଆଶ୍ରୟ କରିଥାଏ । ପ୍ରଥମ :—ସମସ୍ତଙ୍କର ନିୟନ୍ତା ପରମେଶ୍ୱରଙ୍କ ପ୍ରତି ନିଷ୍ଠା ରଖିବା; ଦ୍ୱିତୀୟ :—ପରସ୍ପର ସୌଜନ୍ୟରେ ଏବଂ ସାଧୁ ବ୍ୟବହାରରେ କାଳ ହରଣ କରିବା । ପରମେଶ୍ୱରଙ୍କ ପ୍ରତି ନିଷ୍ଠାର ଲକ୍ଷଣ :—ତାହାଙ୍କୁ ଆପଣାର ଆୟୁ ଏବଂ ଦେହର ଓ ସମୁଦାୟ ସୌଭାଗ୍ୟର କାରଣ ଜାଣି ସର୍ବାନ୍ତଃକରଣରେ ଶ୍ରଦ୍ଧା ଓ ପ୍ରୀତିପୂର୍ବକ ନାନାବିଧ ସୃଷ୍ଟିରୂପକ ଲକ୍ଷଣ ଦ୍ୱାରା ଚିନ୍ତା କରିବା ଏବଂ ତାଙ୍କୁ ଫଳାଫଳର ଦାତା ଏବଂ ଶୁଭାଶୁଭର ନିୟନ୍ତା ଜାଣି ସର୍ବଦା ସମୀହା କରିବା, ଅର୍ଥାତ୍ ଏହି

ଅନୁଭବ ସର୍ବଦା କର୍ତ୍ତବ୍ୟ ଯେ-ମୁଁ ଯାହା କରୁଅଛି, କହୁଅଛି ଏବଂ ଭାବୁଅଛି, ତାହା ପରମେଶ୍ୱରଙ୍କର ସାକ୍ଷାତରେ କରୁଅଛି, କହୁଅଛି ଏବଂ ଭାବୁଅଛି ।

"ପରସ୍ପର ସାଧୁ ବ୍ୟବହାରରେ କାଳ ହରଣ ନିୟମ ଏହି ଯେ, ଅନ୍ୟମାନେ ଆମ୍ଭମାନଙ୍କ ସହିତ ଯେପରି ବ୍ୟବହାର କଲେ ଆମ୍ଭମାନଙ୍କ ତୁଷ୍ଟିର କାରଣ ହୁଏ, ସେହିପରି ବ୍ୟବହାର ଆମ୍ଭେମାନେ ଅନ୍ୟମାନଙ୍କ ସହିତ କରିବା; ଆଉ ଅନ୍ୟମାନେ ଯେଭଳି ବ୍ୟବହାର କଲେ ଆମ୍ଭମାନଙ୍କ ଅତୁଷ୍ଟି ହୁଏ; ସେଭଳି ବ୍ୟବହାର ଆମ୍ଭେମାନେ ଅନ୍ୟ ସହିତ କଦାପି କରିବା ନାହିଁ ।"

ଦେବେନ୍ଦ୍ରନାଥ ବ୍ରାହ୍ମସମାଜର ଭାର ଗ୍ରହଣ କରି ତାହାର ଯେଉଁ ଉପାସନା ପ୍ରଣାଳୀ ପ୍ରଚଳିତ ଥିବାର ଦେଖିଲେ ସେଥିରେ ତୃପ୍ତ ହୋଇ-ପାରିଲେ ନାହିଁ; କାରଣ ସେଥିରେ ପରଂବ୍ରହ୍ମଙ୍କର ଆରାଧନା, ଧ୍ୟାନ ବା ପ୍ରାର୍ଥନାର କୌଣସି ସ୍ଥାନ ନଥିଲା । ସେଥିପାଇଁ ସେ ପ୍ରଥମେ ତାହା ସହିତ 'ଗାୟତ୍ରୀମୂଳକ' ଉପାସନାର ପ୍ରବର୍ତ୍ତନ କଲେ । କିନ୍ତୁ ଅଚିରେ ବୁଝିପାରିଲେ ଯେ, ଗାୟତ୍ରୀ-ମନ୍ତ୍ରର ଅର୍ଥ ବୁଝି ତାହା ସହଜରେ ଉପାସନା କରିବା ଅତି ଦୁରୂହ ବ୍ୟାପାର । "ସହସ୍ରେଷ୍ଟ କଣ୍ଠିଦେବ" ସେଥିରେ ସମର୍ଥ ହୋଇ-ପାରେ । ସାଧାରଣ ଲୋକ ଯେପରି ସହଜ ଉପାୟରେ ଈଶ୍ୱରଙ୍କଠାରେ ଆତ୍ମସମାଧାନ କରିପାରେ, ତଦୁପଯୋଗୀ ଉପାସନା ପ୍ରଣାଳୀର ବିଷୟ ଚିନ୍ତା କରୁ କରୁ, ଦେବେନ୍ଦ୍ର "ସ୍ୱରୂପ" ଅବଲମ୍ବନରେ ବ୍ରହ୍ମଙ୍କର ଯେଉଁ ଉପାସନା ପଦ୍ଧତିର ସୂତ୍ରପାତ କଲେ, ତାହା ସାଧନ ଜଗତରେ ସମ୍ପୂର୍ଣ୍ଣ ଅଭିନବ ଏବଂ ବିଶେଷ ଗୁରୁତ୍ୱପୂର୍ଣ୍ଣ । ଏହିପରି ଗଭୀର ଗବେଷଣା ମନନ ଓ ଅନୁଧ୍ୟାନ ପରେ ଉପନିଷଦରୁ ସେ କିଛି ଶାସ୍ତ୍ରବାକ୍ୟକୁ ଏକତ୍ର କରି ଗୋଟିଏ ସ୍ଥାୟୀସମାଧାନ ମନ୍ତ୍ର ଗଠନ କଲେ, ଯାହା ଅଦ୍ୟାବଧି ବ୍ରହ୍ମୋପାସନାର ଆରାଧନା ମନ୍ତ୍ରର ଅଙ୍ଗୀଭୂତ ହୋଇ ରହିଅଛି । ତତ୍ପରେ ମହର୍ଷି ଯଜୁର୍ବେଦରୁ ଗୋଟିଏ ଅର୍ଚ୍ଚନା-ମନ୍ତ୍ର, ମହାନିର୍ବାଣତନ୍ତ୍ରରୁ ଗୋଟିଏ ସ୍ତୋତ୍ର ଏବଂ ଉପନିଷଦର ବିଭିନ୍ନ ସ୍ଥାନରୁ ସଂଗୃହୀତ ଦେଶପ୍ରସିଦ୍ଧ ପ୍ରାର୍ଥନା ମନ୍ତ୍ର— "ଅସତୋମା ସଦ୍‌ଗମୟ" ଇତ୍ୟାଦି ପ୍ରସ୍ତୁତ କଲେ । ଏହା ବ୍ରାହ୍ମସମାଜରେ ଏବଂ ସାଧାରଣରେ ମଧ୍ୟ ସୁବିଦିତ ।

ବ୍ରାହ୍ମସମାଜ ଗୋଟିଏ ସ୍ଥାୟୀ ଏବଂ ପ୍ରକୃତ ଧର୍ମମଣ୍ଡଳୀର ଆକାର ଧାରଣ କଲା, ତାହା କେବଳ ମହର୍ଷି ଦେବେନ୍ଦ୍ରନାଥ ଠାକୁରଙ୍କ ବହୁ ପ୍ରାର୍ଥନା ଓ ଅକ୍ଳାନ୍ତ ପ୍ରଚେଷ୍ଟାରେ ସମ୍ଭବପର ହୋଇଥିଲା । ଏହି ମଣ୍ଡଳୀଭୁକ୍ତ ଆତ୍ମାଗୁଡ଼ିକର ଆଧ୍ୟାତ୍ମିକ କ୍ଷୁଧା ତୃଷ୍ଣାର ନିବୃତ୍ତି ଓ ସେମାନଙ୍କର କଲ୍ୟାଣ ନିମିତ୍ତ ସେ ବ୍ୟାକୁଳଚିତ୍ତରେ ପ୍ରାଚୀନ ଋଷିମାନଙ୍କ ତୁଲ୍ୟ ଦୀର୍ଘକାଳ ଏକାଗ୍ର ତପସ୍ୟାରେ ନିରତ ଥାଇ ଶ୍ରୁତି-ସ୍ମୃତି-ତନ୍ତ୍ର ପୁରାଣାଦିର ବିଭିନ୍ନ ସ୍ଥାନରୁ ବିଚ୍ଛିନ୍ନ ମନ୍ତ୍ର ଓ ମନ୍ତ୍ରାଂଶ ସଙ୍କଳନ କରି ସ୍ୱୀୟ ଆଧ୍ୟାତ୍ମିକ ଭାବରସରେ ସେଗୁଡ଼ିକୁ ଅଭିସଞ୍ଚିତ ଓ ନବଶୃଙ୍ଖଳାରେ ସୁବିନ୍ୟସ୍ତ କରି ମନ୍ତ୍ରଶକ୍ତିର ପୂର୍ଣ୍ଣତାସମ୍ପନ୍ନ ଏକ ସପବିତ୍ର ଭାବଗମ୍ଭୀର ଅନବଦ୍ୟ ଧର୍ମଗ୍ରନ୍ଥ—"ବ୍ରାହ୍ମୀ ଉପନିଷଦ୍", 'ବ୍ରାହ୍ମଧର୍ମ' ନାମକ ପୁସ୍ତକ ରଚନା କରି ବ୍ରାହ୍ମମାନଙ୍କୁ ତାହା ଦାନ କରିଯାଇଛନ୍ତି । ଏହା ଏକ ଅମୂଲ୍ୟ ଏବଂ ଅତୁଳନୀୟ ଆଧ୍ୟାତ୍ମ ସମ୍ପଦ ।

ଏହି ଗ୍ରନ୍ଥ ସମ୍ବନ୍ଧରେ ଆଚାର୍ଯ୍ୟ ସତୀଶ ଚନ୍ଦ୍ର ଚକ୍ରବର୍ତ୍ତୀ (ବ୍ରାହ୍ମଧର୍ମ ଗ୍ରନ୍ଥର ନବମ ସଂସ୍କରଣରେ ସମ୍ପାଦକ) ଏହାର ପରିଶିଷ୍ଟରେ ଲେଖିଅଛନ୍ତି : "ଏହି ଧର୍ମଗ୍ରନ୍ଥରେ କଣ କଣ ରହିବ ? ପ୍ରଥମତଃ ଯାହାକୁ ସମସ୍ତ ବ୍ରାହ୍ମହିଁ ନିଜ ଧର୍ମର ମୂଳ ସତ୍ୟ ବୋଲି ଶ୍ରଦ୍ଧାର ସହିତ ସ୍ୱୀକାର କରିବେ ଏବଂ ଯାହା ସହିତ ମିଳାଇ ଧର୍ମ ସମ୍ବନ୍ଧୀୟ ଅବାନ୍ତର ପ୍ରଶ୍ନମାନଙ୍କର ମୀମାଂସା କରିବେ—ଏଭଳି ସମସ୍ତ ମୂଳ ସତ୍ୟ । ଦ୍ୱିତୀୟତଃ, ଯାହାକୁ ଉପାସନା ସମୟରେ ନିୟମିତରୂପେ ଶ୍ରଦ୍ଧାପୂର୍ବକ ପାଠ ଓ ମନନ କରି ବ୍ରାହ୍ମମାନଙ୍କ ଚିତ୍ତରେ ବିମଳ ଜ୍ଞାନ, ଈଶ୍ୱର ଭକ୍ତି ଓ ସାଧୁଭାବ ଉଜ୍ଜ୍ୱଳ ରହିବ—ଏଭଳି ସମସ୍ତ ତତ୍ତ୍ୱ ଓ ଉପଦେଶ । 'ବ୍ରାହ୍ମଧର୍ମ' ଗ୍ରନ୍ଥରେ ଅନ୍ତର୍ଗତ 'ବ୍ରାହ୍ମଧର୍ମ ବୀଜ' ମଧ୍ୟରେ ସେହି ମୂଳସତ୍ୟ ଏବଂ ପ୍ରଥମ ଓ ଦ୍ୱିତୀୟ ଖଣ୍ଡରେ ସେହି ତତ୍ତ୍ୱ ଓ ଉପଦେଶ ସନ୍ନିବିଷ୍ଟ ହୋଇଅଛି ।

(ବ୍ରାହ୍ମଧର୍ମ—୧୦ମ ସଂସ୍କରଣ-୩୭୨ ପୃଷ୍ଠା)

"ଏହି ଗ୍ରନ୍ଥ ପ୍ରକାଶିତ ହେଲେ, ମହର୍ଷିଙ୍କ ଅଭିପ୍ରାୟ ଆଶାତୀତରୂପେ ପୂର୍ଣ୍ଣ ହେଲା । ବ୍ରାହ୍ମସମାଜସମୂହ ଦ୍ୱାରା ଉପାସନା କାଳରେ ଏହା ପଠିତ ହେବାକୁ ଲାଗିଲା । ..... ବ୍ରାହ୍ମ ହେଲେ ମନୁଷ୍ୟ କପରି ହୁଏ, ସେ ବିଷୟରେ ସାଧାରଣଙ୍କ ମନରେ ଯେଉଁସବୁ ଭିତ୍ତିହୀନ ଓ ଅଯୌକ୍ତିକ

ଧାରଣା ଥିଲା, ଏହି ଗ୍ରନ୍ଥର ପବିତ୍ର ବଚନ ଓ ଉପଦେଶ ସକଳ ଦ୍ୱାରା ତାହା ଦୃଢ଼ୀଭୂତ ହୋଇ ତତ୍ପରବର୍ତ୍ତେ ଅତି ଉଚ୍ଚ ଧାରଣା ଉତ୍ପନ୍ନ ହେବାକୁ ଲାଗିଲା ।"

"ଏହିଭଳି ଏହି ଗ୍ରନ୍ଥ ପ୍ରଚାରର ଫଳରେ ସେ ଯୁଗରେ ବ୍ରାହ୍ମସମାଜର ଜୀବନ ଅଧିକତର ସତେଜ ହୋଇ ଉଠିଲା, ଉପସ୍ଥିତି ସରସ ହେବାକୁ ଲାଗିଲା ଏବଂ ବ୍ରାହ୍ମସମାଜର ସଂଖ୍ୟା ଏବଂ ବ୍ରାହ୍ମଙ୍କ ସଂଖ୍ୟା କ୍ରମଶ ବର୍ଦ୍ଧିତ ହେବାରେ ଲାଗିଲା ।"

(ବ୍ରାହ୍ମଧର୍ମ—୧୦ମ ସଂସ୍କରଣ-୩୭୧-୭୨ ପୃଷ୍ଠା)

କେତେ ବର୍ଷ ପରେ ବ୍ରହ୍ମାନନ୍ଦ କେଶବଚନ୍ଦ୍ର ଯେତେବେଳେ ଖ୍ରୀଷ୍ଟୀୟ ଧର୍ମ ପ୍ରଭାବରେ ପାପବୋଧ ଓ ସନ୍ନୀତି ଉପରେ ଗୁରୁତ୍ୱ ଆରୋପ କରିବାକୁ ବ୍ୟାକୁଳ ହୋଇ ଆରାଧ୍ୟକୁ ଶୁଦ୍ଧତା ଓ ପବିତ୍ରତାର ଆଧାରରୂପେ ଉପଲବ୍ଧି କରିବାର ଉପଯୋଗୀ ଶାସ୍ତ୍ରବାକ୍ୟ ପାଇଁ ମହର୍ଷିଙ୍କ ଶରଣାପନ୍ନ ହେଲେ ସେତେବେଳେ ସେ ବ୍ରହ୍ମାନନ୍ଦଙ୍କୁ ଈଶୋପନିଷଦରୁ "ଶୁଦ୍ଧମପାପବିଦ୍ଧମ୍" ଏହି ଶାସ୍ତ୍ର ବାକ୍ୟର ସନ୍ଧାନ ଦେଲେ । ତଦବଧି ବ୍ରାହ୍ମମାନଙ୍କ ଆରାଧନା ମନ୍ତ୍ରରେ ଏହିସବୁ ଶାସ୍ତ୍ରବାକ୍ୟ ବ୍ୟବହୃତ ହୋଇ ଆସୁଅଛି; ଯଥା, ସତ୍ୟଂ ଜ୍ଞାନମନନ୍ତଂ ବ୍ରହ୍ମ (ତୈତ୍ତିରୀୟ); ଆନନ୍ଦରୂପମମୃତଂ ଯଦ୍‌ବିଭାତି (ମୁଣ୍ଡକ); ଶାନ୍ତଂ ଶିବମଦ୍ୱୈତମ୍ (ମାଣ୍ଡୁକ୍ୟ) ଶୁଦ୍ଧମପାପବିଦ୍ଧମ୍ (ଈଶୋପନିଷଦ୍) ।

## (ଘ) ବ୍ରହ୍ମାନନ୍ଦ କେଶବଚନ୍ଦ୍ର

କେଶବଚନ୍ଦ୍ର ସେନଙ୍କ ପିତାମହ ରାମକମଲ ସେନ ତତ୍କାଳରେ କଲିକତାର ସୁପ୍ରସିଦ୍ଧ ବ୍ୟକ୍ତି ଥିଲେ । ୧୮୩୮ ଖ୍ରୀଷ୍ଟାବ୍ଦ ନଭେମ୍ବର ୧୯ ତାରିଖରେ (୫ ମାର୍ଗଶୀର ୧୨୩୧ ବଙ୍ଗାବ୍ଦ) କେଶବଚନ୍ଦ୍ର ଜନ୍ମଗ୍ରହଣ କରିଥିଲେ ।

ଏହାଙ୍କର ପିତାଙ୍କ ନାମ ପ୍ୟାରୀମୋହନ ସେନ; ସେ ରାମକମଲ ସେନଙ୍କ ଦ୍ୱିତୀୟ ପୁତ୍ର । ପ୍ୟାରୀମୋହନ ସେନ ପରମ ବୈଷ୍ଣବ ଥିଲେ । କେଶବଚନ୍ଦ୍ରଙ୍କ ଜନନୀ ଶାରଦାଦେବୀ ମଧ୍ୟ ସଦାଶୟତା ଓ ଧର୍ମପରାୟଣତା

ପାଇଁ ସୁପ୍ରସିଦ୍ଧ ଥିଲେ । ଏହିଭଳି ପିତାମାତାଙ୍କ କୋଡ଼ରେ ଜନ୍ମଗ୍ରହଣ କରି କେଶବ ବାଲ୍ୟାବଧି ଶାନ୍ତ, ଶିଷ୍ଟ, ସାଧୁତାନୁରାଗୀ ଓ ବୁଦ୍ଧିମାନ ବାଳକ ଥିଲେ । କେଶବଚନ୍ଦ୍ରଙ୍କୁ ଅନୁମାନ ୭ ବର୍ଷ ବେଳେ ତାଙ୍କ ପିତାମହ ରାମକମଳ ସେନଙ୍କର ମୃତ୍ୟୁ ହେଲା । ଏହାର ୫ ବର୍ଷ ପରେ ପିତା ପ୍ୟାରୀମୋହନ ମଧ୍ୟ ପରଲୋକ ଗମନ କଲେ । ଏକାଦଶ ବର୍ଷ ବୟସରେ ପିତୃହୀନ ବାଳକ କେଶବଚନ୍ଦ୍ର ଜ୍ୟେଷ୍ଠତାତ ହରିମୋହନ ସେନଙ୍କ ଅଭିଭାବକତ୍ୱରେ ବଡ଼ ହୋଇଥିଲେ ।

୧୮୫୭ ଖ୍ରୀଷ୍ଟାବ୍ଦରେ ବାଲୀଗ୍ରାମର କୁଳୀନ ବୈଦ୍ୟ ପରିବାରର ଚନ୍ଦ୍ରକୁମାର ମଜୁମଦାରଙ୍କ ଜ୍ୟେଷ୍ଠା କନ୍ୟା ଜଗନ୍ମୋହିନୀ ଦେବୀଙ୍କ ସହିତ ତାଙ୍କର ବିବାହ ହେଲା । 'ରାମତନୁ ଲାହିଡ଼ୀ ଓ ତତ୍କାଳୀନ ବଙ୍ଗ ସମାଜ' ପୁସ୍ତକରେ ଲିଖିତ ଅଛି— ୧୮୫୬ ସାଲରୁ କେଶବଚନ୍ଦ୍ରଙ୍କ ଧର୍ମଭାବ ଓ କର୍ମୋତ୍ସାହ ବିଶେଷଭାବରେ ପ୍ରକାଶ ପାଉଥାଏ । ଏହି ସାଲରେ ସେ ତାଙ୍କର କେତେଜଣ ଯୌବନ-ସୁହୃଦଙ୍କ ସହିତ ସମ୍ମିଳିତ ହୋଇ ନିଜ ଗୃହରେ "ଶୁଭେଚ୍ଛା ଭ୍ରାତୃସଂଘ" (Goodwill fraternity) ନାମରେ ଏକ ସମିତି ସ୍ଥାପନ କଲେ । ଏହାର ସଭାରେ ସେ ପ୍ରସିଦ୍ଧ ପାଶ୍ଚାତ୍ୟ ଧର୍ମାଚାର୍ଯ୍ୟମାନଙ୍କ ଗ୍ରନ୍ଥରୁ ଅଂଶମାନ ଉଦ୍ଧୃତ କରି ପାଠ କରୁଥିଲେ ଏବଂ ନିଜେ ମଧ୍ୟ ପ୍ରବନ୍ଧ ଲେଖି ପଢୁଥିଲେ ବା ମୌଖିକ ବକ୍ତୃତା ଦେଉଥିଲେ । ଏହି ସଭାରେ ତାଙ୍କ ଭାବୀ ବାଗ୍ମିତାର ସୂତ୍ରପାତ ହେଲା ଏବଂ ଏଠାରୁ ଏକଦଳ ଯୁବକ ତାଙ୍କ ପଦାଙ୍କ ଅନୁସରଣ କରିବାକୁ ଲାଗିଲେ । ଦେବେନ୍ଦ୍ରନାଥଙ୍କ ଦ୍ୱିତୀୟ ପୁତ୍ର ସତ୍ୟେନ୍ଦ୍ରନାଥ, କେଶବଚନ୍ଦ୍ରଙ୍କ ସହାଧ୍ୟାୟୀ ଓ ବନ୍ଧୁ ଥିଲେ । ସତ୍ୟେନ୍ଦ୍ର-ନାଥଙ୍କ ଅନୁରୋଧରେ ଦେବେନ୍ଦ୍ରନାଥ ଥରେ ଉକ୍ତ ସଭାର ଅଧିବେଶନରେ ସଭାପତିତ୍ୱ କଲେ ଏବଂ ଯୁବକ କେଶବଚନ୍ଦ୍ରଙ୍କ ଧର୍ମାନୁରାଗ, ସଂଗଠନଶକ୍ତି ଓ ଭାବୀ ଅସାଧାରଣ ବାଗ୍ମିତାର ପ୍ରାମାଣପ୍ରାପ୍ତ ହେଲେ ।

(ରାମତନୁ ଲାହିଡ଼ୀ—୨୩୯ ପୃଷ୍ଠା)

ଏହି ସମୟରେ କଲିକତା ବ୍ରାହ୍ମସମାଜରୁ ପ୍ରସ୍ଫୁରିତ, ଋଷି ରାଜନାରାୟଣ ବସୁଙ୍କ ଦ୍ୱାରା ରଚିତ "ହ୍ୱାଟ୍ ଇଜ୍ ବ୍ରାହ୍ମଇଜମ" ନାମକ ପୁସ୍ତକ ପାଠ କରି ତାହା ସହିତ ନିଜ ଭାବନାର ସମ୍ପୂର୍ଣ୍ଣ ସାମଞ୍ଜସ୍ୟ ଲକ୍ଷ୍ୟକରି, ବିବେକର

ନିର୍ଦ୍ଦେଶାନୁସାରେ ସେ ଯେତେବେଳେ ବ୍ରାହ୍ମସମାଜରେ ଯୋଗଦାନ କଲେ, ସେତେବେଳେ ତାଙ୍କର ବୟସ ମାତ୍ର ୧୯ ବର୍ଷ ।

ଦେବେନ୍ଦ୍ରନାଥ ଠାକୁର ଏହି ସମୟରେ କିଛିଦିନ ଏକାନ୍ତ ଧ୍ୟାନ-ଧାରଣାରେ ଯାପନ କରିବା ନିମନ୍ତେ ସିମଲା ଚାଲିଗଲେ । ତାଙ୍କର ଅନୁପସ୍ଥିତି ସମୟରେ କେଶବଚନ୍ଦ୍ର ବ୍ରାହ୍ମସମାଜର ପ୍ରତିଜ୍ଞାପତ୍ରରେ ସ୍ୱାକ୍ଷର କରି ଏହାର ସଭ୍ୟ ଶ୍ରେଣୀଭୁକ୍ତ ହେଲେ । ଦେବେନ୍ଦ୍ରନାଥ ୧୮୫୮ ଖ୍ରୀଷ୍ଟାବ୍ଦରେ କଲିକତା ଫେରି ତାଙ୍କର ସହାଧ୍ୟାୟୀ ବନ୍ଧୁ[୧] ପ୍ୟାରୀମୋହନ ସେନଙ୍କ ଦ୍ୱିତୀୟ ପୁତ୍ର, କେଶବଚନ୍ଦ୍ର ବ୍ରହ୍ମସମାଜଭୁକ୍ତ ହୋଇଛନ୍ତି ଦେଖି ଆନନ୍ଦିତ ହେଲେ । କେଶବଚନ୍ଦ୍ର ତାଙ୍କର ଅକୃତ୍ରିମ ଧର୍ମାନୁରାଗ ଓ କର୍ମୋତ୍ସାହ ଯୋଗୁଁ ଦେବେନ୍ଦ୍ରନାଥଙ୍କ ବିଶେଷ ପ୍ରିୟପାତ୍ର ହୋଇଉଠିଲେ । କ୍ରମେ ଏମାନେ ବ୍ରାହ୍ମସମାଜର ସମସ୍ତ କାର୍ଯ୍ୟ ମଧ୍ୟରେ ଉଭୟେ ଉଭୟଙ୍କୁ ନିକଟତମ ବୋଲି ଅନୁଭବ କରୁଥାଆନ୍ତି ଏବଂ ଉତ୍ସାହର ସହିତ ଉପାସନାରେ ବ୍ରାହ୍ମସମାଜର ସକଳ ପ୍ରକାର କଲ୍ୟାଣ କର୍ମରେ ଦେଶର ଉନ୍ନତି ବିଧାନରେ ଓ ସମାଜ-ସଂସ୍କାରରେ ମନପ୍ରାଣ ସମର୍ପଣ କଲେ ।

ଦେବେନ୍ଦ୍ରନାଥ କେଶବଚନ୍ଦ୍ରଙ୍କୁ ପୁତ୍ରତୁଲ୍ୟ ସ୍ନେହ କରୁଥିଲେ । ତାଙ୍କ ପରିବାରରେ କେଶବଚନ୍ଦ୍ର ଓ ତତ୍ପତ୍ନୀ ଜଗନ୍ମୋହିନୀ ଦେବୀ ମଧ୍ୟ ସେହି ଭାବରେ ଗୃହୀତ ହୋଇଥିଲେ । ମହର୍ଷିଦେବଙ୍କ କେଶବଚନ୍ଦ୍ରଙ୍କୁ 'ବ୍ରହ୍ମାନନ୍ଦ' ଉପାଧି ଦାନ କରି ୧୮୬୨ ଖ୍ରୀଷ୍ଟାବ୍ଦରେ ପହିଲା ବୈଶାଖ ଦିନ କଲିକତା ବ୍ରାହ୍ମସମାଜର ଉପାଦନାଳୟରେ, ବିଶେଷ ଉପାସନା ପରେ ତାହାଙ୍କୁ ଉକ୍ତ ସମାଜର ଆଚାର୍ଯ୍ୟ ପଦରେ ଅଭିଷିକ୍ତ କରିଥିଲେ । ଯେଉଁ କ୍ଷେତ୍ରରେ ଆନନ୍ଦଚନ୍ଦ୍ର ବେଦାନ୍ତବାଗୀଶଙ୍କ ଭଳି ବେଦଜ୍ଞ ବୃଦ୍ଧ ଧର୍ମାନୁରାଗୀ ବ୍ରାହ୍ମଣ ଉପାଚାର୍ଯ୍ୟ ଉପସ୍ଥିତ ସେ କ୍ଷେତ୍ରରେ ବୈଦ୍ୟବଂଶସମ୍ଭୂତ ଯୁବକ କେଶବଚନ୍ଦ୍ରଙ୍କୁ ସମସ୍ତଙ୍କ ଉପରେ ଆଚାର୍ଯ୍ୟପଦ ପ୍ରଦାନ କରିବାରେ ଦେବେନ୍ଦ୍ରନାଥଙ୍କୁ କମ୍

---

୧) ରାମମୋହନ ବିଳାତ ଯିବାର ପରେ ପ୍ରତିଷ୍ଠିତ ସ୍କୁଲ୍‌ରୁ ଛାଡ଼ିକରି ୧୮୩୧ ଖ୍ରୀଷ୍ଟାବ୍ଦରେ ଦେବେନ୍ଦ୍ରନାଥ ହିନ୍ଦୁ କଲେଜରେ ଭର୍ତ୍ତି ହୋଇ ୩ ବର୍ଷ ସେଠାରେ ଦ୍ୱିତୀୟ ଶ୍ରେଣୀ ପର୍ଯ୍ୟନ୍ତ ପଢ଼ିଥିଲେ । ଏଠାରେ ସେ ପ୍ୟାରୀମୋହନ ସେନଙ୍କ ସହାଧ୍ୟାୟୀ ଥିଲେ ।

ବାଧା ଅତିକ୍ରମ କରିବାକୁ ହୋଇନଥିଲା । କିନ୍ତୁ ଏଠାରେ ଉଲ୍ଲେଖଯୋଗ୍ୟ ଯେ ତାଙ୍କର ଏହି କାର୍ଯ୍ୟ ସ୍ବୈରିତ୍ବର ପ୍ରଣୋଦିତ ନୁହେଁ । ଆଚାର୍ଯ୍ୟପଦ ଲାଭର ସମସ୍ତ ସଦ୍‌ଗୁଣାବଳୀ କେଶବଚନ୍ଦ୍ରଙ୍କ ମଧ୍ୟରେ ବିଦ୍ୟମାନ ଦେଖି ଈଶ୍ବରଦେଶରେ ସେ ବ୍ରାହ୍ମସମାଜ ନିକଟରେ ଏହିପରି ପ୍ରସ୍ତାବ ଲିଖିତ ଭାବରେ ଆନୟନ କଲେ ଏବଂ ସେହି ପ୍ରସ୍ତାବ ୧୮୬୨ ଖ୍ରୀଷ୍ଟାବ୍ଦ ଚୈତ୍ର ୨୭ ତାରିଖରେ କଲିକତା ବ୍ରାହ୍ମସମାଜର ସାଧାରଣ ସଭାରେ, ଦେବେନ୍ଦ୍ରନାଥଙ୍କ ଅନୁପସ୍ଥିତିରେ, ଅଧିକାଂଶ ସଭ୍ୟଙ୍କ ମତାନୁସାରେ ଗୃହୀତ ହୋଇଥିଲା । ଏହି ସଭାରେ ଦେବେନ୍ଦ୍ରନାଥଙ୍କୁ "ବ୍ରାହ୍ମସମାଜପତି ଓ ପ୍ରଧାନ ଆଚାର୍ଯ୍ୟ" ଉପାଧି ପ୍ରଦାନ କରାଗଲା ।

:

ଶାନ୍ତ, ସୌମ୍ୟ, ଶୁଦ୍ଧଚରିତ୍ର, ସାଧୁତାନୁରାଗୀ କେଶବଚନ୍ଦ୍ରଙ୍କ ଜୀବନରେ ଆଶ୍ଚର୍ଯ୍ୟଭାବେ କୈଶୋରରେ ଧର୍ମ ପାଇଁ ବ୍ୟାକୁଳତା ଦେଖା-ଦେଲା । ୧୮୮୨ ସାଲରେ ସ୍ୱରଚିତ "ଜୀବନବେଦ"ରେ ଏ ବିଷୟ ସେ ଲେଖିଛନ୍ତି—ମୋ ଜୀବନବେଦର ପ୍ରଥମ କଥା ପ୍ରାର୍ଥନା ·· ଧର୍ମଜୀବନର ଉଷାକାଳରେ 'ପ୍ରାର୍ଥନା କର' 'ପ୍ରାର୍ଥନା କର' ଏହି ରବ, ଏହି ଶବ୍ଦ ହୃଦୟ ଭିତରୁ ଉତ୍ଥିତ ହେଲା ।　　ପ୍ରାର୍ଥନା କର ବଞ୍ଚିବ, ଚରିତ୍ର ଭଲ ହେବ, ଯାହା କିଛି ଅଭାବ—ପାଇବ । ଏହି କଥା ଜୀବନର ପୂର୍ବରୁ ପଶ୍ଚିମ, ଉତ୍ତରରୁ ଦକ୍ଷିଣ ପର୍ଯ୍ୟନ୍ତ ପ୍ରବାହିତ ହେଉଥାଏ । ···　ପ୍ରାର୍ଥନା ଗୁରୁ,··· ଅସହାୟମାନଙ୍କର ଅପାର ସହାୟ ।

"ଏହି ପ୍ରାର୍ଥନା କରୁକରୁ ମୁଁ ସିଂହର ବଳ, ଦୁର୍ଜୟ ବଳ, ଅସୀମ ବଳ ଲାଭ କରିବାକୁ ଲାଗିଲି । ···· ଈଶ୍ବରଙ୍କୁ ହିଁ ଗୁରୁ ବୋଲି ଜାଣେ । କୌଣସି ମନୁଷ୍ୟଙ୍କୁ ପୂର୍ଣ୍ଣ ଆଦର୍ଶ ବୋଲି କେବେହେଁ ମନେ କରିନାହିଁ, କରିବି ନାହିଁ ମଧ୍ୟ । ପୂର୍ଣ୍ଣ ଆଦର୍ଶ-ମନୁଷ୍ୟ ହୋଇପାରେନା ।"

ଭଗବାନଙ୍କ ପିତୃତ୍ୱ ଓ ମାନବଙ୍କର ଭ୍ରାତୃତ୍ୱ ଏହି ମହୋଦାର ବାଣୀ ଉପରେ ନିଜ ଜୀବନକୁ ପ୍ରତିଷ୍ଠିତ କରି କେଶବଚନ୍ଦ୍ର ଦେଶର ସର୍ବବିଧ ସଂସ୍କାର କାର୍ଯ୍ୟରେ ବ୍ରତୀ ହୋଇ ଦେଶକୁ ସବୁ ଦିଗରୁ ସମୃଦ୍ଧ କରିବା ପଥରେ ଅଗ୍ରସର ହୋଇଥିଲେ । ତାଙ୍କ ଧର୍ମ ବିଶ୍ବାସ କର୍ମୋତ୍ସାହରେ ଅନୁପ୍ରାଣିତ

ହୋଇ ଯେଉଁ ତରୁଣ ଅନୁରାଗୀ ବନ୍ଧୁ ଓ ତତ୍ପ୍ରତିଷ୍ଠିତ ସହଯାତ୍ରୀଙ୍କ ବ୍ରହ୍ମବିଦ୍ୟାଳୟରେ ଓ ସଙ୍ଗତ ସଭାରେ ସମବେତ ହୋଇ ଜୀବନକୁ ଉଚ୍ଚସ୍ତରକୁ ଉନ୍ନୀତ କରିବାକୁ ପ୍ରୟାସୀ ହେଲେ ସେମାନଙ୍କ ମଧ୍ୟରେ ଅନେକେ କେଶବଚନ୍ଦ୍ରଙ୍କ ପଦାଙ୍କ ଅନୁସରଣ କରି ପାର୍ଥିବ ବିଷୟ-କର୍ମ ଓ ଅର୍ଥୋପାର୍ଜନ ପରିତ୍ୟାଗ କରି ବ୍ରାହ୍ମଧର୍ମ ସାଧନାରେ ଓ ଧର୍ମପ୍ରଚାରରେ ନିଜକୁ ନିୟୋଜିତ କଲେ । ଏହି ପ୍ରଚାରକ ଦଳଙ୍କର ଜୀବନବ୍ୟାପୀ ତ୍ୟାଗ, ସାଧନ ଓ ଦେଶ ବିଦେଶରେ ପ୍ରଚାର ଫଳରେ ଏହି ନବଧର୍ମ ଓ ସମାଜ ସଂସ୍କାରର ବାଣୀ ସମଗ୍ର ଦେଶରେ ପ୍ରଚାରିତ ହେଲା । ବର୍ତ୍ତମାନ ଦେଶ ମଧ୍ୟରେ ଯେଉଁ ଉଦାର ଅସାମ୍ପ୍ରଦାୟିକତା, ଜାତିବୋଧ ଏବଂ ମନୁଷ୍ୟତ୍ୱର ମର୍ଯ୍ୟାଦାଜ୍ଞାନ ବହୁଳ ପରିମାଣରେ ଜାଗ୍ରତ ହୋଇଅଛି, ତାହା ମଧ୍ୟରେ ବ୍ରାହ୍ମଧର୍ମର ପ୍ରୟାସ ବିଶେଷ ଭାବରେ ଲକ୍ଷଣୀୟ ଏବଂ ସ୍ମରଣଯୋଗ୍ୟ ।

୧୮୬୭ ଖ୍ରୀଷ୍ଟାବ୍ଦରେ କେଶବଚନ୍ଦ୍ରଙ୍କ ନିର୍ବନ୍ଧରେ ଏବଂ ଅନୁପ୍ରେରଣାରେ ସକଳ ଧର୍ମଗ୍ରନ୍ଥରୁ ସାର ସଂଗ୍ରହ କରି ଖଣ୍ଡିଏ ନିତ୍ୟ ବ୍ୟବହାର୍ଯ୍ୟ ଧର୍ମଗ୍ରନ୍ଥ "ଶ୍ଳୋକ ସଂଗ୍ରହ" ପ୍ରକାଶିତ ହେଲା । ଏହି ଗ୍ରନ୍ଥର ଆରମ୍ଭରେ ବ୍ରାହ୍ମଧର୍ମର ମୂଳମନ୍ତ୍ର, ମୂଳଆଦର୍ଶ ନିରୂପିତ କରି ଯେଉଁ ଶ୍ଳୋକଟି ରଚିତ ହୋଇଥିଲା, ତାହା ନିମ୍ନରେ ପ୍ରଦତ୍ତ ହେଲା :—

ସୁବିଶାଳମିଦଂ ବିଶ୍ୱଂପବିତ୍ରଂ ବ୍ରହ୍ମମନ୍ଦିରଂ
ଚେତଃ ସୁନିର୍ମଳଂ ତୀର୍ଥଂ ସତ୍ୟଂ ଶାସ୍ତ୍ରମନଶ୍ୱରମ୍ ।
ବିଶ୍ୱାସୋ ଧର୍ମମୂଳଂହି ପ୍ରୀତିଃ ପରମସାଧନଂ
ସ୍ୱାର୍ଥନାଶସ୍ତୁ ବୈରାଗ୍ୟଂ ବ୍ରାହ୍ମୈରେବଂ ପ୍ରକୀର୍ତ୍ତ୍ୟତେ ॥

କେଶବଚନ୍ଦ୍ରଙ୍କ ଅନ୍ତରରେ ଉଜ୍ଜ୍ୱଳ ଭାବରେ ଅନୁଭୂତ ଏହି ସତ୍ୟକୁ ତାଙ୍କ ନିର୍ଦ୍ଦେଶରେ ତାଙ୍କ ସହଯାତ୍ରୀ ଉପାଧ୍ୟାୟ ଗୌରଗୋବିନ୍ଦ ରାୟ ମହାଶୟ ଉଲ୍ଲିଖିତ ଶ୍ଳୋକାକାରରେ ଗ୍ରଥିତ କରିଥିଲେ । ସର୍ବଧର୍ମ ସମନ୍ୱୟ ଏବଂ ନବବିଧାନର ଭାବ ଏହି ଗ୍ରନ୍ଥ ମଧ୍ୟରେ ନିହିତ । ଏହାପୂର୍ବରୁ ୧୮୬୦ ମସିହାରେ ଲିଖିତ "ରିଲିଜିନ ଅଫ୍ ଲଭ୍" ନାମକ ପ୍ରବନ୍ଧରେ ମଧ୍ୟ କେଶବଚନ୍ଦ୍ର ହିନ୍ଦୁ, ବୌଦ୍ଧ, ଖ୍ରୀଷ୍ଟାନ, ମୁସଲମାନ ପ୍ରଭୃତି ସମସ୍ତ ଧର୍ମ ବିଶ୍ୱାସୀମାନଙ୍କୁ ଏବଂ ସାର୍ବଭୌମ ଧର୍ମରେ ମିଳିତ ହେବାପାଇଁ ଅହ୍ୱାନ

ଜଣାଇଥିଲେ । ଯେଉଁମାନେ କହନ୍ତି ଯେ, କେଶବଚନ୍ଦ୍ର, ଶ୍ରୀରାମକୃଷ୍ଣ ପରମହଂସଦେବଙ୍କ ନିକଟରୁ ସର୍ବଧର୍ମ ସମନ୍ୱୟର ଭାବ ଗ୍ରହଣ କରିଥିଲେ, ସେମାନେ ସମ୍ପୂର୍ଣ୍ଣ ଭ୍ରାନ୍ତ, କାରଣ କେଶବଚନ୍ଦ୍ରଙ୍କ ସହିତ ଶ୍ରୀରାମକୃଷ୍ଣଙ୍କ ପ୍ରଥମ ପରିଚୟ ଘଟିଥିଲା ଏ ଘଟଣାର ୧୫ ବର୍ଷ ପରେ, ୧୮୭୫ ଖ୍ରୀଷ୍ଟାବ୍ଦ ମାର୍ଚ୍ଚ ୧୫ ତାରିଖରେ । "ଶ୍ଳୋକ ସଂଗ୍ରହ" ଛଡ଼ାଦେଲେ ମଧ୍ୟ ୧୮୬୮ ଖ୍ରୀଷ୍ଟାବ୍ଦରେ ଭାରତବର୍ଷୀୟ ବ୍ରହ୍ମମନ୍ଦିରର ଭିତ୍ତିସ୍ଥାପନ ଉପଲକ୍ଷେ ଏବଂ ପରବର୍ତ୍ତୀ ବର୍ଷ ଉକ୍ତ ମନ୍ଦିରର ପ୍ରତିଷ୍ଠା ଉପଲକ୍ଷେ ସଙ୍ଗୀତ ଓ ଉପଦେଶାଦିରେ ବ୍ରାହ୍ମଧର୍ମର ସାର୍ବଭୌମିକତା ଓ ସର୍ବଧର୍ମ ସମନ୍ୱୟର ଭାବ ସୁପରିସ୍ଫୁଟ ଥିଲା । ଉକ୍ତ ମନ୍ଦିରର ଗଠନ ପ୍ରଣାଳୀରେ ଏବଂ ମନ୍ଦିରଶୀର୍ଷରେ ସ୍ଥାପିତ ପ୍ରତୀକରେ ମଧ୍ୟ ସର୍ବଧର୍ମ ସମନ୍ୱୟର ଭାବ ସୁପ୍ରକଟିତ ହୋଇଥିଲା, ପରମହଂସଦେବଙ୍କ ସହିତ ପରିଚୟର ୭ ବର୍ଷ ପୂର୍ବେ । ପ୍ରକୃତପକ୍ଷରେ ଶ୍ରୀ ରାମକୃଷ୍ଣଦେବଙ୍କୁ କୌଣସି ପ୍ରକାରେ ଧର୍ମ ସମନ୍ୱୟବାଦର ପ୍ରବର୍ତ୍ତକ କହିଲେ ଚଳିବ ନାହିଁ । କାରଣ, ସେ ପ୍ରଚାର କରୁଥିଲେ "ଯେତେମତ, ସେତେ ପଥ", ଅର୍ଥାତ୍ ପ୍ରତ୍ୟେକ ଧର୍ମମତ ଗୋଟିଏ ଗୋଟିଏ ବିଭିନ୍ନ ପଥ, ସେଗୁଡ଼ିକ ମଧ୍ୟରେ ପାରସ୍ପରିକ ଯୋଗ ସାଧନର କୌଣସି ସୂତ୍ର ସେ ଦେଖାଇ ଯାଇନାହାନ୍ତି ।

କେଶବଚନ୍ଦ୍ରଙ୍କ ଅନୁପ୍ରେରଣା ଓ ନିର୍ଦ୍ଦେଶରେ ତାଙ୍କ ପ୍ରଚାରକମାନଙ୍କ ମଧ୍ୟରେ ଜଣେ ଜଣେ ଯୋଗ୍ୟ ବ୍ୟକ୍ତିଙ୍କ ଉପରେ ଏକ ଏକ ଧର୍ମଶାସ୍ତ୍ରର ଅନୁଶୀଳନ, ସାର ସଙ୍କଳନ ଓ ଅନୁବାଦର ଭାର ଅର୍ପିତ ହୋଇଥିଲା । ସେମାନଙ୍କ ଆନ୍ତରିକ ପ୍ରଚେଷ୍ଟାରେ ହିନ୍ଦୁ, ବୌଦ୍ଧ, ଖ୍ରୀଷ୍ଟାନ, ଇସଲାମ ପ୍ରଭୃତି ଧର୍ମର ଗଭୀର ଦେଶରେ ପ୍ରବେଶ କରି ପ୍ରତ୍ୟେକ ଧର୍ମର ମୂଳତତ୍ତ୍ୱ, ଶ୍ରଦ୍ଧାର ସହିତ ବୁଝିବାର ଓ ବୁଝାଇବାର ଯେଉଁ ପ୍ରୟାସ ହୋଇଅଛି, ତାହା ଅତୁଳନୀୟ ।

କେଶବଚନ୍ଦ୍ର କେବଳ ଭାରତବର୍ଷୀୟ ବ୍ରହ୍ମମନ୍ଦିରର ବାହ୍ୟ ପ୍ରତୀକରେ ସର୍ବଧର୍ମ ସମନ୍ୱୟର ଭାବ ପ୍ରକାଶ କରିନାହାନ୍ତି ପରନ୍ତୁ ତାଙ୍କର ନବବିଧାନରେ ସମସ୍ତ ଧର୍ମବିଧାନକୁ ଯେପରି ଗଭୀର ସ୍ୱୀକୃତି ଦେଇଛନ୍ତି ଏବଂ ଜଗତର ସମସ୍ତ ମହାପୁରୁଷଙ୍କୁ ଯେଉଁ ଆନ୍ତରିକ ଶ୍ରଦ୍ଧାଭକ୍ତି ସହିତ ସ୍ୱୀକୃତ

କରିବାକୁ ଚେଷ୍ଟା କରିଛନ୍ତି, ତାହାର ତୁଳନା ଧର୍ମଇତିହାସରେ ନିତାନ୍ତ ବିରଳ । "ସାଧୁ ସମାଗମ" 'ଭକ୍ତପରିବାର' ପ୍ରଭୃତି ତାଙ୍କ ନିକଟରେ କେବଳ କଥାର କଥା ନଥିଲା । ଭାବରେ ଓ ତତ୍ତ୍ୱରେ ଏହି ମହୋଦାର ଧର୍ମ ସମନ୍ୱୟର ମତବାଦଟିକୁ ଯେ ସେ କେତେ ଆନ୍ତରିକ ଭାବରେ ଗ୍ରହଣ କରିଥିଲେ । ମନୁଷ୍ୟର ସବୁ ଧର୍ମ ଏବଂ ଜଗତର ସମସ୍ତ ଧର୍ମ-ପ୍ରବର୍ତ୍ତକ ମହାପୁରୁଷ ଓ ଭକ୍ତମାନଙ୍କୁ ସ୍ୱୀୟ ଜୀବନରେ ଓ ମଣ୍ଡଳୀ ମଧ୍ୟରେ ଅକପଟ ଶ୍ରଦ୍ଧା ଓ ପ୍ରୀତି ସହିତ ଗ୍ରହଣ କରି ବିଶ୍ୱଜନୀନ ଧର୍ମ-ସାଧନାର ଯେଉଁ ସୁସ୍ପଷ୍ଟ ନିଦର୍ଶନ ଦେଇଯାଇଛନ୍ତି, ଧର୍ମଜଗତର ଇତିହାସରେ କୁତ୍ରାପି ତାହାର ତୁଳନା ଅଛି କି ନା, ସନ୍ଦେହର ବିଷୟ ଏହି ଧର୍ମ-ସମନ୍ୱୟ ସାଧନର ଉପାୟ ହିଁ ତାଙ୍କ ନବବିଧାନର ମୂଳତତ୍ତ୍ୱ । ୧୮୮୦ ଖ୍ରୀଷ୍ଟାବ୍ଦ ଜାନୁୟାରୀ ୨୫ ତାରିଖ (ମାଘ ୧୨ ଦିନ ମାଘୋତ୍ସବ ସମୟରେ ନବବିଧାନତତ୍ତ୍ୱ ଆନୁଷ୍ଠାନିକ ଭାବରେ ଘୋଷିତ ହେଲେ ମଧ୍ୟ 'ବିଧାନ' ଏବଂ 'ନବବିଧାନ'ର ଉଲ୍ଲେଖ ତାଙ୍କ ପ୍ରାର୍ଥନା, ବକ୍ତୃତା ଓ ଉପଦେଶାଦି ମଧ୍ୟରେ ୧୮୭୪ ଖ୍ରୀଷ୍ଟାବ୍ଦରେ ଅନ୍ତତଃ କୋଡ଼ିଏ ଜାଗାରେ ଦେଖିବାକୁ ମିଳେ । ସେତେବେଳ ପର୍ଯ୍ୟନ୍ତ ଶ୍ରୀରାମକୃଷ୍ଣଙ୍କ ସହିତ ତାଙ୍କର ପରିଚୟ ବା ଦେଖା ସାକ୍ଷାତ୍ ଆଦୌ ଘଟିନାହିଁ । ଅତଏବ୍ର ହାର ଏହି ଐତିହାସିକ ସତ୍ୟକୁ ଅସ୍ୱୀକାର କରିବାକୁ ଯେଉଁମାନେ ପ୍ରୟାସୀ ହୁଅନ୍ତି, ସେମାନେ କେବଳ ନିଜର ଆଧ୍ୟାତ୍ମିକ ଦୈନ୍ୟ ଓ ସଙ୍କୀର୍ଣ୍ଣତାର ପରିଚୟ ଦାନ କରନ୍ତି । ପରମହଂସଦେବ ଓ ବ୍ରହ୍ମାନନ୍ଦ କେଶବଚନ୍ଦ୍ର ଉଭୟେ ସମାନଧର୍ମା ମହାପୁରୁଷ ଥିଲେ ବୋଲି ପରସ୍ପରକୁ ଦେଖିବା ମାତ୍ରକେ ଚିହ୍ନି ଓ ବୁଝିପାରୁଥିଲେ ଏବଂ ଉଭୟଙ୍କ ମଧ୍ୟରେ ଆନ୍ତରିକ ପ୍ରୀତି ଓ ଶ୍ରଦ୍ଧା ବନ୍ଧନ ସମୟରେ କେବେହେଲେ ବାଧା ଘଟିନାହିଁ । ଅସତ୍ୟ ପ୍ରଚାର ଦ୍ୱାରା ଶ୍ରୀରାମକୃଷ୍ଣଙ୍କର ମାହାତ୍ମ୍ୟ ବୃଦ୍ଧି ପ୍ରାପ୍ତ ହୁଏ କି ନା, ପ୍ରଚାରକମାନେ ସେକଥା ଭାବି ଦେଖିବେ ଏପରି ହୀନ ସାମ୍ପ୍ରଦାୟିକତାର ଊର୍ଦ୍ଧ୍ୱରେ ଥିଲେ ବୋଲି କେଶବଚନ୍ଦ୍ର ଶ୍ରୀରାମକୃଷ୍ଣଙ୍କୁ ଆନନ୍ଦରେ ସମ୍ବର୍ଦ୍ଧନା କରି ଶିକ୍ଷିତ ସମାଜର ଗୋଚରକୁ ଆଣି-ପାରିଥିଲେ ।

## (ଙ) ଶିବନାଥ ଶାସ୍ତ୍ରୀ

୧୨୩୫ ବଙ୍ଗାବ୍ଦ ମାଘ ୧୯ ତାରିଖ (୧୮୪୫ ଖ୍ରୀଷ୍ଟାବ୍ଦ ଜାନୁୟାରୀ ୩୧ ତାରିଖ ରବିବାର ସାୟଂକାଳରେ ଚବିଶପରଗଣା ଅନ୍ତର୍ଗତ

ଚାଙ୍ଗଡ଼ିପୋତା ଗ୍ରାମରେ, ମାତୁଳ ଦ୍ୱାରକାନାଥ ବିଦ୍ୟାଭୂଷଣଙ୍କ ଗୃହରେ ଶିବନାଥ ଶାସ୍ତ୍ରୀ ଜନ୍ମଗ୍ରହଣ କରିଥିଲେ । ୧୯୧୯ ଖ୍ରୀଷ୍ଟାବ୍ଦ, ସେପ୍ଟେମ୍ବର ୩୦ ତାରିଖରେ ୨୬ ନମ୍ବର ଗାର୍ଡ଼ନ ଷ୍ଟ୍ରୀଟ୍ ଗୃହରେ ଏହାଙ୍କର ମୃତ୍ୟୁ ହେଲା ।

ଏହାଙ୍କର ପୈତୃକ ନିବାସ ଚବିଶ ପରଗଣା ଅନ୍ତର୍ଗତ (ଜୟନଗର) ମଜିଲପୁର ଗ୍ରାମରେ । ଏମାନେ ଦାକ୍ଷିଣାତ୍ୟ ବୈଦିକ ବ୍ରାହ୍ମଣ । ଏ ବଂଶରେ ପୁରୁଷାନୁକ୍ରମେ ପାଣ୍ଡିତ୍ୟର ଖ୍ୟାତି ଥିଲା । ଦେଶରେ ଟୋଲ, ଚତୁଷ୍ପାଠୀ ପ୍ରଭୃତିରେ ଏମାନେ ଛାତ୍ରମାନଙ୍କୁ ସଂସ୍କୃତ ଶାସ୍ତ୍ର ପଢାଉଥିଲେ । ଯଜନ-ଯାଜନ, ଅଧ୍ୟୟନ, ଅଧ୍ୟାପନାଦି ଏମାନଙ୍କର ପ୍ରଧାନ କାର୍ଯ୍ୟ ଥିଲା । ଏ ବିଷୟରେ ଶିବନାଥ ଶାସ୍ତ୍ରୀ ତାଙ୍କ ଆତ୍ମଚରିତରେ ଲେଖିଛନ୍ତି "ଏ ବାତ୍ସ୍ୟଗୋଷ୍ଠୀୟ ବ୍ରାହ୍ମଣମାନେ ଆବହମାନକାଳରୁ ଯଜନ, ଯାଜନ, ଅଧ୍ୟୟନ, ଅଧ୍ୟାପନାଦି କାର୍ଯ୍ୟରେ ରତ ଥାଇ ଗୌରବାନ୍ୱିତ ଦାରିଦ୍ର୍ୟ ମଧ୍ୟରେ ବାସ କରିଆସିଛନ୍ତି । ଯେତେଦୂର ସ୍ମରଣ ହୁଏ, ଏହି ବଂଶରେ ମୋର ପିତା ହରାନନ୍ଦ ଭଟ୍ଟାଚାର୍ଯ୍ୟ ବିଦ୍ୟାସାଗର ମହାଶୟ ସର୍ବାଗ୍ରେ ଇଂରେଜ ଗଭର୍ଣ୍ଣମେଣ୍ଟ ଅଧୀନରେ ପଣ୍ଡିତ କାର୍ଯ୍ୟ ଗ୍ରହଣ କରି ସମସ୍ତଙ୍କର ଅପ୍ରିୟ ହୋଇଥିଲେ । ତତ୍ପୂର୍ବରୁ ମୋର ଜ୍ଞାତିବର୍ଗଙ୍କ ମଧ୍ୟରେ କେହି ରାଜସେବା ଗ୍ରହଣ କରିନାହାନ୍ତି ।

(ଆତ୍ମଚରିତ—'ସିଗ୍ନେଟ' ସଂ ୧୬-ପୃଷ୍ଠା)

ଏହାଙ୍କର ପ୍ରପିତାମହ ରାମଜୟ ନ୍ୟାୟାଳଙ୍କାର ଏହି ଗ୍ରାମରେ ଟୋଲ ଚତୁଷ୍ପାଠୀ ସ୍ଥାପନ କରି ଛାତ୍ରମାନଙ୍କୁ ବିଦ୍ୟାଦାନ କରୁଥିଲେ । ବାଲ୍ୟକାଳରେ ଏହି ପଣ୍ଡିତ, ସାଧୁ, ଧାର୍ମିକ ପ୍ରପିତାମହଙ୍କ ସଙ୍ଗର କଥା ଶିବନାଥ ତାଙ୍କ ଆତ୍ମଚରିତରେ ଅତି ସୁନ୍ଦର ଭାବରେ ବର୍ଣ୍ଣନା କରିଅଛନ୍ତି । ପିତା ହରାନନ୍ଦ ଭଟ୍ଟାଚାର୍ଯ୍ୟ-ବିଦ୍ୟାସାଗର, ମାତା ଗୋଲକମଣି ଦେବୀ - ଉଭୟଙ୍କର ପ୍ରକୃତି ତେଜସ୍ୱୀ, ସତ୍ୟନିଷ୍ଠ ଓ ନ୍ୟାୟପରାୟଣ ଥିଲା । ତତ୍କାଳୀନ ବୈଦିକ ବଂଶର କୁଳପ୍ରଥା ଅନୁସାରେ ଶିବନାଥଙ୍କର ଶୈଶବରେ ରାଜପୁର ନିବାସୀ ନବୀନଚନ୍ଦ୍ର ଚକ୍ରବର୍ତ୍ତୀଙ୍କ ଜ୍ୟେଷ୍ଠାକନ୍ୟା ପ୍ରସନ୍ନମୟୀ ଦେବୀଙ୍କ ସହିତ (ପ୍ରସନ୍ନମୟୀଙ୍କ ବୟସ ସେତେବେଳେ ଏକମାସ ଓ ଶିବନାଥଙ୍କ ବୟସ

ଅନୁମାନ ୨।୩ ବର୍ଷ) ବିବାହ ସମ୍ବନ୍ଧ ସ୍ଥିର ହୋଇଥିଲା ଏବଂ ଦଶବର୍ଷ ପରେ ଏହି ବିବାହ କାର୍ଯ୍ୟତଃ ସୁନିଷ୍ପନ୍ନ ହେଲା । ଏହି ବିବାହର କେତେବର୍ଷ ପରେ ପିତା ହରାନନ୍ଦ କୌଣସି କାରଣରୁ ପୁତ୍ରବଧୂ ଓ ତାଙ୍କ ପିତୃଗୃହର ଅଭିଭାବକମାନଙ୍କ ପ୍ରତି ଅସନ୍ତୁଷ୍ଟ ହୋଇ ପ୍ରସନ୍ନମୟୀଙ୍କୁ ତାଙ୍କ ପିତାଳୟକୁ ପଠାଇଦେଲେ ଏବଂ ଏହି ବଧୂକୁ ବର୍ଜନ କରି, ଶିବନାଥଙ୍କ ଆପତ୍ତି ସତ୍ତ୍ୱେ ବର୍ଦ୍ଧମାନ ଜିଲ୍ଲାର ଦେପୁର ଗ୍ରାମର ଅଭୟାଚରଣ ଚକ୍ରବର୍ତ୍ତୀଙ୍କ ଜ୍ୟେଷ୍ଠା କନ୍ୟା ବିରାଜମୋହିନୀ ଦେବୀଙ୍କ ସହିତ ତାଙ୍କୁ ବିବାହ କରିଦେଲେ । କିନ୍ତୁ ଶିବନାଥ ଏହି ବିବାହ ପରେ ଦାରୁଣ ଅନୁତାପରେ ଜର୍ଜରିତ ହେବାକୁ ଲାଗିଲେ ଏବଂ ଈଶ୍ୱରଙ୍କର ଶରଣାପନ୍ନ ହେଲେ । ଏ ବିଷୟ ତାଙ୍କ ଆତ୍ମଚରିତରେ ଅତି ଉଜ୍ଜ୍ୱଳ ଭାବରେ ବର୍ଣ୍ଣିତ ଅଛି । ତାଙ୍କର ଶ୍ରଦ୍ଧେୟବନ୍ଧୁ ଉମେଶ ଚନ୍ଦ୍ର ଦତ୍ତ ମହାଶୟ ତାହାଙ୍କୁ ଏହି ସମୟରେ ଯଥେଷ୍ଟ ସାହାଯ୍ୟ କରିଥିଲେ । ଈଶ୍ୱରଙ୍କର ଶରଣାପନ୍ନ ହୋଇ ଶିବନାଥ ସର୍ବଦା ତାଙ୍କ ନିକଟରେ ପ୍ରାର୍ଥନା କରିବାକୁ ଲାଗିଲେ । ସେ ଆତ୍ମଚରିତରେ ଲେଖିଛନ୍ତି "ପ୍ରାର୍ଥନା କରୁ କରୁ ହୃଦୟରେ ଦୁଇଟି ପରିବର୍ତ୍ତନ ଦେଖି ପାରିଲି । ପ୍ରଥମ, ଦୁର୍ବଳତା ମଧ୍ୟରେ ବଳ ଆସିଲା । ମୁଁ ମନେ ମନେ ସଙ୍କଳ୍ପ କଲି—"କର୍ତ୍ତବ୍ୟ ଯାହା ବୁଝିବି, ନିର୍ଭୟରେ ତାହା କରିବି, ଧନ, ପ୍ରାଣ, ମାନ ରହିଲେ ରହୁ ଗଲେ ଯାଉ । ମୁଁ ଧର୍ମର ଆଦେଶ ଏବଂ ହୃଦୟବାସୀ ଈଶ୍ୱରଙ୍କ ଆଦେଶ ଅନୁସାରେ ଚଳିବା ପାଇଁ ପ୍ରସ୍ତୁତ ହେଲି । ଦକ୍ଷିଣୟ, ଭବାନୀପୁର ବ୍ରାହ୍ମ-ସମାଜକୁ ଈଶ୍ୱରଙ୍କ ଉପାସନାକୁ ଯିବି ବୋଲି ସ୍ଥିର କଲି ଏବଂ ଯିବାକୁ ଆରମ୍ଭ କଲି । ସେ ଆହୁରି ଲେଖିଛନ୍ତି, "ପ୍ରାର୍ଥନା ଦ୍ୱାରା ଯେପରି ବଳ ପାଇଲି ସେପରି ଆଶା ମଧ୍ୟ ପାଇଲି । ମୋର ଅନ୍ତରାତ୍ମା କହିବାକୁ ଲାଗିଲା, ଈଶ୍ୱର ମୋତେ ପାପୀ ବୋଲି ତ୍ୟାଗ କରିବେ ନାହିଁ, ବ୍ୟାକୁଳ ପ୍ରାର୍ଥନା ବିଫଳ ହୁଏନାହିଁ । ତାହା ମୁଁ ପ୍ରତ୍ୟକ୍ଷ ଦେଖିବାକୁ ଲାଗିଲି । ଭଗବାନଙ୍କ ପ୍ରେରଣା ପ୍ରାଣରେ ଲାଭ କରି ମନ ଆନନ୍ଦରେ ମଗ୍ନ ହେବାକୁ ଲାଗିଲା । ... ... ସମସ୍ତ ସଂଗ୍ରାମ ମଧ୍ୟରେ ଦୁର୍ବଳତାରେ ବଳ, ନିରାଶାରେ ଆଶା, ନିରାନନ୍ଦରେ ଆନନ୍ଦ ଲାଭ କରିଅଛି । (ସିଗ୍‌ନେଟ ସଂ—୭୦ ପୃଷ୍ଠା)

ପଦ୍ମପୁକୁର ରୋଡ଼ରେ ଅବସ୍ଥିତ ଏହି ଭବାନୀପୁର ବ୍ରାହ୍ମସମାଜ ଆଦି ବ୍ରାହ୍ମସମାଜର ଅନ୍ତର୍ଗତ ଥିଲା । ଏଠାରେ ମହର୍ଷି ଦେବେନ୍ଦ୍ରନାଥ ଓ ଅଯୋଧ୍ୟାନାଥ ପାକଡ଼ାଶୀ ମହାଶୟ ଉପାସନା କରୁଥିଲେ ଓ ଉପଦେଶ

ଦେଉଥିଲେ । ଶିବନାଥ ଏଥିରେ ଯୋଗଦେଇ ବିଶେଷ ଉପକୃତ ହେଉଥିଲେ । କ୍ରମେ ବିଜୟକୃଷ୍ଣ ଗୋସ୍ୱାମୀ, ଅଘୋରନାଥ ଗୁପ୍ତ ଓ ଉମେଶ ଚନ୍ଦ୍ର ମୁଖୋପାଧ୍ୟାୟ ପ୍ରଭୃତି ବ୍ରାହ୍ମବନ୍ଧୁମାନଙ୍କ ପ୍ରଭାବରେ ସେ ବ୍ରାହ୍ମସମାଜ ଆଡ଼କୁ ଆକୃଷ୍ଟ ହେବାକୁ ଲାଗିଲେ । ସେ ସମୟରେ କେଶବଚନ୍ଦ୍ର ସେନ ମହାଶୟ ଅନୁବର୍ତ୍ତୀମାନଙ୍କ ସହିତ ସଦଳେ ଦେବେନ୍ଦ୍ରନାଥ ଠାକୁରଙ୍କଠାରୁ ବିଚ୍ଛିନ୍ନ ହୋଇ ଆସିଲେ । ଏମାନଙ୍କ ମନ୍ଦିରର (ଭାରତବର୍ଷୀୟ ବ୍ରାହ୍ମମନ୍ଦିର) ଭିତ୍ତି ସ୍ଥାପନ କରାଗଲା । ଏହି ଉପଲକ୍ଷେ ଯେଉଁ ନଗରକୀର୍ତ୍ତନ ଗାନ କରାଗଲା ସେଥିରେ ଥିଲା—"ତୋରା ଆୟରେ ଭାଇ, ଏତେଦିନେ ଦୁଃଖେର ନିଶି ହଲ ଅବସାନ, ନଗରେ ଉଠିଲ ବ୍ରହ୍ମନାମ । ନରନାରୀ ସାଧାରଣେର ସମାନ ଅଧିକାର, ଯାର ଆଛେ ଭକ୍ତି ପାବେ ମୁକ୍ତି ନାହିଁ ଜାତି ବିଚାର ।" ସେ ଆତ୍ମଚରିତରେ ଲେଖିଛନ୍ତି "ଏହି ଆହ୍ୱାନ ବାଣୀ— ମୋ ପ୍ରାଣରେ ବାଜିଲା, ଏଥିରେ ବ୍ରାହ୍ମଧର୍ମର ଯେଉଁ ଆଦର୍ଶ ମୋ ସମ୍ମୁଖରେ ଉଭା ହେଲା ସେଥିରେ ମୋ ପ୍ରାଣ ମୁଗ୍ଧ ହୋଇଗଲା, "୧୮୬୮ ଖ୍ରୀଷ୍ଟାବ୍ଦ ମାଘୋତ୍ସବ ସମୟରେ ସାରାଦିନ ଏହି ଉତ୍ସବରେ ସେ ଯୋଗଦେଲେ । ସାୟଂ କାଳରେ କେଶବଚନ୍ଦ୍ର 'ରିଜେନୋରେଟିଂ ଫେଥ୍' ବିଷୟରେ ଉପଦେଶ ଦେଲେ । —ଏ ବିଷୟରେ ଶିବନାଥ ଲେଖିଛନ୍ତି—"ଏପରି ଉପଦେଶ ମୁଁ ଅଳ୍ପମାତ୍ର ଶୁଣିଛି । ଧର୍ମବିଶ୍ୱାସ ଯଦି ନବଜୀବନ ଆଣିଦିଏ, ତେବେ ତାହା ଧର୍ମବିଶ୍ୱାସ ନୁହେଁ—ଏହି ସତ୍ୟ ମୋ ସମକ୍ଷରେ ଆଧ୍ୟାତ୍ମିକ ଜୀବନ ପାଇଁ ସତେଯେପରି ଗୋଟିଏ ନୂତନ ଦ୍ୱାର ଖୋଲିଦେଲା । ମୁଁ ଉନ୍ନତିଶୀଳ ଦଳ ସାଙ୍ଗରେ ଅତି ଘନିଷ୍ଠ ଭାବରେ ଯୁକ୍ତ ହୋଇପଡ଼ିଲି । ଏହିପରି କେଶବଚନ୍ଦ୍ରଙ୍କ ସହିତ ଶିବନାଥଙ୍କ ଯୋଗ ଦିନକୁ ଦିନ ଘନିଷ୍ଠ ହେଲା । ଧର୍ମସଂସ୍କାର, ସମାଜ-ସଂସ୍କାର, ଦେଶର ସବୁ ପ୍ରକାର ଉନ୍ନତି ପାଇଁ କେଶବଚନ୍ଦ୍ରଙ୍କ ପ୍ରଚେଷ୍ଟା ସହିତ ଶିବନାଥ ମଧ୍ୟ ମନପ୍ରାଣ ଢାଳି ସହାୟତା କରିବାକୁ ଲାଗିଲେ । ୧୮୬୯ ଖ୍ରୀଷ୍ଟାବ୍ଦ, ଭାଦ୍ରର ୭ ତାରିଖରେ (ଅଗଷ୍ଟ ୨୨) ଭାରତବର୍ଷୀୟ ବ୍ରହ୍ମମନ୍ଦିର ପ୍ରତିଷ୍ଠା ଦିନ କେଶବଚନ୍ଦ୍ରଙ୍କ ନିକଟରେ ଯେଉଁ ୨୧ ଜଣ ଯୁବକ ବ୍ରାହ୍ମଧର୍ମର ଦୀକ୍ଷା ଗ୍ରହଣ କଲେ ତାଙ୍କ ମଧ୍ୟରେ ଶିବନାଥ ଅନ୍ୟତମ ଥିଲେ । ପରବର୍ତ୍ତୀ କାଳରେ ନାନା ଘଟଣାର ସଂଘାତରେ ବ୍ରାହ୍ମସମାଜରୁ ବିଚ୍ଛିନ୍ନ

ହୋଇ ସାଧାରଣ ବ୍ରାହ୍ମସମାଜ ପ୍ରତିଷ୍ଠିତ ହେଲା । ସେ ସମସ୍ତ ବିବରଣ ସର୍ବଜନବିଦିତ ।

ବିଦ୍ୱାନ, ଜ୍ଞାନୀ, ମନୀଷୀ ଓ ପ୍ରତିଭାଶାଳୀ ଶିବନାଥ ୧୮୭୨ ଖ୍ରୀଷ୍ଟାବ୍ଦରେ ସଂସ୍କୃତ କଲେଜରୁ ଏମ୍. ଏ. ପରୀକ୍ଷାରେ ସଂସ୍କୃତରେ ପ୍ରଥମ ସ୍ଥାନ ଅଧିକାର କରି 'ଶାସ୍ତ୍ରୀ'୧ ଉପାଧି ଲାଭ କରିଥିଲେ । ଜ୍ଞାନାର୍ଜନରେ ଓ ଜ୍ଞାନବିତରଣରେ ତାଙ୍କର ଅସାମାନ୍ୟ ଅନୁରାଗ ଥିଲା । ସେଥିପାଇଁ ସେ ସ୍ୱେଚ୍ଛାରେ ଶିକ୍ଷା ବିଭାଗରେ କର୍ମ ଗ୍ରହଣ କରିଥିଲେ । ଏମ୍. ଏ. ପାସ୍ କରିବା ସଙ୍ଗେ ସଙ୍ଗେ କେଶବଚନ୍ଦ୍ର ତାଙ୍କ ନବପ୍ରତିଷ୍ଠିତ ମହିଳା ବିଦ୍ୟାଳୟରେ ଶିବନାଥଙ୍କୁ ଶିକ୍ଷକ ପଦରେ ନିଯୁକ୍ତ କରି ତତ୍ପରେ "ଭାରତ ଆଶ୍ରମରେ" ତାହାଙ୍କୁ

---

୧) ଶାସ୍ତ୍ରୀ—ସଂସ୍କୃତ ସାହିତ୍ୟର ବିବିଧ ଶାଖାରେ ବିଭିନ୍ନ ପ୍ରଦେଶରେ ସହସ୍ରାଧିକ ଉପାଧିର ପ୍ରଚଳନ ଅଛି; ସେଥିମଧ୍ୟରୁ କେତେକ ଉପାଧିଧାରୀର ସ୍ୱୟଂକୃତ, କେତେକ ଗୁରୁଦତ୍ତ । କେତେଗୁଡ଼ିଏ ପଣ୍ଡିତ ସମାଜପ୍ରଦତ୍ତ ଏବଂ ଅନ୍ୟ କେତେଗୁଡ଼ିଏ ସରକାରୀ ଶିକ୍ଷାବିଭାଗ ଦ୍ୱାରା ଅନୁମୋଦିତ ଓ ସୁନିର୍ଦ୍ଦିଷ୍ଟ ପାଠ୍ୟକ୍ରମ ଉପରେ ପରୀକ୍ଷା ମାଧ୍ୟମରେ ଲଭ୍ୟ । ସାଧାରଣ 'ଶାସ୍ତ୍ରୀ' ଉପାଧିଠାରୁ ସଂସ୍କୃତ କଲେଜର ଶାସ୍ତ୍ରୀ ଉପାଧିର ବୈଶିଷ୍ଟ୍ୟ ଏହି ଥିଲା ଯେ ଉକ୍ତ କଲେଜର ଯେଉଁ ଛାତ୍ର ଅତିରିକ୍ତ ସଂସ୍କୃତ ପାଠ୍ୟକ୍ରମ ନେଇ ଲୋୟାର ଗ୍ରେଡ଼ (ବା ଜୁନିୟର) ଏବଂ ହାୟାର ଗ୍ରେଡ ବା ସିନିୟର ବୃତ୍ତି ପରୀକ୍ଷା ଦେଇ ବୃତ୍ତି ଲାଭ କରିଅଛି ଏବଂ ବି. ଏ. ଓ ଏମ୍. ଏ. ପରୀକ୍ଷାରେ ଉକ୍ତ କଲେଜରୁ ସଂସ୍କୃତରେ ପ୍ରଥମ ସ୍ଥାନ ଲାଭ କରିଅଛି କେବଳ ସେ ହିଁ ଏହି ଉପାଧି ପାଇବ । ଯେତେଦୂର ଜଣାଯାଏ, ଏହି ନିୟମରେ ସଂସ୍କୃତ କଲେଜର ଶାସ୍ତ୍ରୀ ଉପାଧି ପ୍ରଥମେ ଲାଭ କରିଥିଲେ ସୁବିଖ୍ୟାତ ଆଇନଜ୍ଞ ରାସବିହାରୀ ଘୋଷ... ସରକାର (୧୮୭୧)—ଯେ ହିନ୍ଦୁ ଆଇନର ବିଶେଷଜ୍ଞ ବୋଲି ସୁବିଦିତ; ଦ୍ୱିତୀୟ-ଶିବନାଥ ଭଟ୍ଟାଚାର୍ଯ୍ୟ (୧୮୭୨) —ଯେ ଶିବନାଥ ଶାସ୍ତ୍ରୀ ବୋଲି ଦେଶବାସୀଙ୍କ ନିକଟରେ ସୁପରିଚିତ, ତୃତୀୟ-ମହାମହୋପାଧ୍ୟାୟ ହରପ୍ରସାଦ ଶାସ୍ତ୍ରୀ (୧୮୭୭) ଯେ ସୁବିଖ୍ୟାତ ସାହିତ୍ୟିକ, ଐତିହାସିକ ଓ ପ୍ରତ୍ନତାତ୍ତ୍ୱିକ । ଏମାନଙ୍କ ପରେ କ୍ରମଶଃ ଆସିଲେ ରାଜେନ୍ଦ୍ର ଚନ୍ଦ୍ର ଶାସ୍ତ୍ରୀ, ଅଶୁତୋଷ ଶାସ୍ତ୍ରୀ ଓ କୋକିଳେଶ୍ୱର ଶାସ୍ତ୍ରୀ, ବ୍ରଜଲାଲ ଶାସ୍ତ୍ରୀ, ଭାଗବତ କୁମାର ଶାସ୍ତ୍ରୀ ପ୍ରଭୃତି । ବିଂଶ ଶତକରେ ଉକ୍ତ କଲେଜର କୌଣସି କୌଣସି ଅଧ୍ୟକ୍ଷ ଏହି ଉପାଧିଟିକୁ କେତୋଟି କ୍ଷେତ୍ରରେ କିଛିତ୍ୱ ସହଜଲଭ୍ୟ କରିଥିଲେ ବୋଲି ମନେହୁଏ । କିନ୍ତୁ ଅଧୁନାତନ ଅଧ୍ୟକ୍ଷ ଡକ୍ଟର ଶ୍ରୀ ଗୌରୀନାଥ ଶାସ୍ତ୍ରୀ ଉକ୍ତ ନିୟମାବଳୀକୁ କିଛିତ୍ୱ ସଂଶୋଧନ କରି ଉପାଧିଟିକୁ ବହୁଳାଂଶରେ ପୁନରପି ପୂର୍ବ ମର୍ଯ୍ୟାଦାରେ ପ୍ରତିଷ୍ଠିତ କରିଅଛନ୍ତି ।

ସପରିବାର ରକ୍ଷାକୁ ଆଦେଶ ପ୍ରଦାନ କରିଥିଲେ । 'ଭାରତ ଆଶ୍ରମ'ରେ ପ୍ରାୟ ଏକ ବର୍ଷ କଟାଇବା ପରେ ଶିବନାଥ ତାଙ୍କ ପୀଡ଼ିତ ମାତୁଳ, 'ସୋମପ୍ରକାଶ'—ସମ୍ପାଦକ ପଣ୍ଡିତ ଦ୍ୱାରକାନାଥ ବିଦ୍ୟାଭୂଷଣଙ୍କ ଆହ୍ୱାନରେ ତାଙ୍କ ସାହାଯ୍ୟାର୍ଥେ ହରିନାଭି ଯାଇ "ସୋମପ୍ରକାଶ"ର ସମ୍ପାଦକତା, ସ୍ଥାନୀୟ ଉଚ୍ଚ ଇଂରାଜୀ ବିଦ୍ୟାଳୟର ପ୍ରଧାନ ଶିକ୍ଷକତା ଏବଂ ମାତୁଳଙ୍କର ବିଷୟ ସମ୍ପତ୍ତି ଓ ପରିବାର-ପରିଜନଙ୍କର ତତ୍ତ୍ୱାବଧାନର ଭାର ନେଇ ମହାକର୍ମବ୍ୟସ୍ତତା ମଧ୍ୟରେ ପ୍ରାୟ ଦୁଇ ବର୍ଷ କଟାଇଥିଲେ । ତତ୍ପରେ ଭବାନୀପୁରରେ ନବପ୍ରତିଷ୍ଠିତ ସାଉଥ ସୁବାର୍ବନ (Subarban) ସ୍କୁଲରେ ଦୁଇ ବର୍ଷ ପ୍ରଧାନ ଶିକ୍ଷକର କାର୍ଯ୍ୟ କରି ୧୮୭୬ ଖ୍ରୀଷ୍ଟାବ୍ଦର ପ୍ରାରମ୍ଭରେ ସରକାରୀ ହେୟାର (Hare) ସ୍କୁଲରେ ପ୍ରଧାନ ପଣ୍ଡିତ ପଦରେ ନିଯୁକ୍ତ ହେଲେ ।

ଇତିମଧ୍ୟରେ ଅଗ୍ରସର ବ୍ରାହ୍ମମାନଙ୍କ ସହିତ କେଶବଚନ୍ଦ୍ରଙ୍କର ନାନା ବିଷୟରେ ମତବିରୋଧ ସୃଷ୍ଟି ହୋଇ ଭାରତବର୍ଷୀୟ ବ୍ରାହ୍ମସମାଜର ସଭ୍ୟ-ମାନଙ୍କ ମଧ୍ୟରେ ଯେଉଁ ଆନ୍ଦୋଳନର ସୃଷ୍ଟି ହୋଇଥିଲା, ନିୟମତନ୍ତ୍ରର ଉପାସକ ସତ୍ୟନିଷ୍ଠ ଶିବନାଥ ସ୍ୱଭାବତଃ ସେହି ଆନ୍ଦୋଳନରେ ଅଗ୍ରଣୀ ହୋଇ ଉଠିଲେ । ବ୍ରାହ୍ମସମାଜକୁ ସବୁଦିଗରୁ ଉନ୍ନତ ପଥରେ ଅଗ୍ରସର କରାଇବା କାର୍ଯ୍ୟରେ ଏବଂ ବ୍ରହ୍ମଧର୍ମ ସାଧନରେ ସର୍ବସ୍ୱ ପଣ କରି ସେ ଅକପଟରେ ନିଜକୁ ଈଶ୍ୱରଙ୍କ ଚରଣରେ ସମର୍ପଣ କରିବାକୁ ପ୍ରସ୍ତୁତ ହେଲେ । ଏହି ସମୟରେ ବିପିନ ଚନ୍ଦ୍ର ପାଲ, ସୁନ୍ଦରୀମୋହନ ଦାସ, ଆନନ୍ଦ ଚନ୍ଦ୍ର ମିତ୍ର ପ୍ରଭୃତି କେତେଜଣ ବ୍ରାହ୍ମବନ୍ଧୁଙ୍କ ସହିତ ଶିବନାଥ ଗୋଟିଏ ଘନସନ୍ନିବିଷ୍ଟ ଦଳ ଗଠନ କରିବାକୁ ମନସ୍ଥ କଲେ । ଏହା ସ୍ଥିର ହେଲା ଯେ, ସେମାନେ କେତୋଟି ମୂଳସତ୍ୟକୁ ଜୀବନର ବ୍ରତ ରୂପେ ଅବଲମ୍ବନ କରିବେ । ତନ୍ମଧ୍ୟରେ ପ୍ରଧାନ ରୂପେ ଉଲ୍ଲେଖଯୋଗ୍ୟ ଏହି କେତୋଟି :—ପ୍ରଥମେ, ସେମାନେ ଏକମାତ୍ର ଈଶ୍ୱରଙ୍କର ଉପାସନା କରିବେ । ଦ୍ୱିତୀୟ, ବିଦେଶୀ ସରକାରଙ୍କ ଚାକିରୀ ଗ୍ରହଣ କରିବେ ନାହିଁ । ତୃତୀୟ, ପୁରୁଷର ୨୧ ବର୍ଷ ଓ କନ୍ୟାର ୧୬ ବର୍ଷ ପୂର୍ଣ୍ଣ ନହେଲେ ସେମାନଙ୍କୁ ବିବାହ ଦେବେ ନାହିଁ ଏବଂ ଏହି ନିୟମର ବିରୁଦ୍ଧରେ ବିବାହାନୁଷ୍ଠାନ ସହିତ କୌଣସି ପ୍ରକାର ସମ୍ପର୍କ ରଖିବେ ନାହିଁ;

ଚତୁର୍ଥ, ଜାତିଭେଦ ରକ୍ଷା କରିବେ ନାହିଁ,୧ ଇତ୍ୟାଦି ।

ବିବେକ ବାଣୀର ମାଧ୍ୟମରେ ସେ ବ୍ରାହ୍ମସମାଜର ସେବା ପାଇଁ ଯେଉଁ ଆହ୍ୱାନ ଶୁଣିଥିଲେ; ତାହାର ତାଗିଦ ଏହି ସମୟରେ ଏପରି ପ୍ରବଳ ହୋଇ ଉଠିଲା ଯେ, ପରିବାର ପ୍ରତିପାଳନର ଚିନ୍ତାରେ କିଛିମାତ୍ର ବିଚଳିତ ନହୋଇ ସେ ହେୟାର ସ୍କୁଲର ଶିକ୍ଷକତା କାର୍ଯ୍ୟ ପରିତ୍ୟାଗ କଲେ । (ଫେବୃୟାରୀ ୧୫ ତାରିଖ ୧୮୭୮) ଆଉ ଏକ ମାସ ଅପେକ୍ଷା କରିଥିଲେ, ତଦାନୀନ୍ତନ ନିୟମ ଅନୁସାରେ ସେହି ବର୍ଷର (୧୮୭୭-୧୮୭୮) ବୋନସ ସ୍ୱରୂପ ସେ ୨୧୩ ଶହ ଟଙ୍କା ପାଇପାରି ଥାଆନ୍ତେ । ଶିକ୍ଷକବନ୍ଧୁଗଣ ସେଥିପାଇଁ ତାଙ୍କୁ ବାରମ୍ବାର ଅପେକ୍ଷା କରିବାକୁ କହିଥିଲେ । କିନ୍ତୁ ଅନ୍ତରର ବାଣୀ ଶିବନାଥଙ୍କୁ ଅପେକ୍ଷା କରିବାକୁ ଦେଇନାହିଁ । ସେ ଚାକିରି ତ୍ୟାଗ କରି ବ୍ରାହ୍ମସମାଜର ସେବାରେ କର୍ମ ସମୁଦ୍ରକୁ ଡେଇଁପଡ଼ିଲେ । ନ୍ୟାୟ-ନୀତି-ସତ୍ୟ ଓ ବିବେକର ଅନୁରୋଧରେ ପ୍ରାଗ୍ରସର ବ୍ରାହ୍ମଦଳ ଯେତେବେଳେ କେଶବଚନ୍ଦ୍ରଙ୍କ ଭାରତବର୍ଷୀୟ ବ୍ରହ୍ମସମାଜରୁ ସ୍ୱତନ୍ତ୍ର ହେବାକୁ ବାଧ୍ୟ ହୋଇ ସାଧାରଣ ବ୍ରାହ୍ମ ସମାଜ ପ୍ରତିଷ୍ଠା କଲେ, ସେତେବେଳେ ଶିବନାଥ ହିଁ ହେଲେ ତାହାର "ପ୍ରଧାନ କର୍ମୀ-ପ୍ରଧାନ ଆଚାର୍ଯ୍ୟ ଓ ପ୍ରଧାନ ପ୍ରଚାରକ" । ଧର୍ମ ସମାଜ କାର୍ଯ୍ୟରେ ନିୟମତନ୍ତ୍ର ପ୍ରଣାଳୀର ପୂର୍ଣ୍ଣମାତ୍ରାରେ ପ୍ରବର୍ତ୍ତନ ଆଧୁନିକ ଭାରତରେ ସମ୍ପୂର୍ଣ୍ଣ ନୂତନ ଜିନିଷ । ଏଥିପାଇଁ ଶିବନାଥ ଓ ତାଙ୍କର ବନ୍ଧୁ ଆନନ୍ଦମୋହନ ବସୁ ବିଶେଷ ଭାବରେ ପ୍ରଶଂସାରଯୋଗ୍ୟ । ସାଧାରଣ ବ୍ରାହ୍ମସମାଜର ନିୟମତନ୍ତ୍ର ପ୍ରଣାଳୀ ସଙ୍ଗଠନରେ ଆନନ୍ଦ ମୋହନ ବସୁ ମହାଶୟଙ୍କର ଅବଦାନ ଅବିସ୍ମରଣୀୟ । ତାଙ୍କ ସମ୍ବନ୍ଧରେ ଶିବନାଥ ଆତ୍ମଚରିତରେ ଲେଖିଛନ୍ତି "ସେ ଏହି ସମୟରେ ଥିଲେ ସାଧାରଣ ବ୍ରାହ୍ମ-ସମାଜର ମସ୍ତିଷ୍କ ଓ ମୁଁ ଥିଲି ଦକ୍ଷିଣ ହସ୍ତ । ଦୁଇଜଣ ପରାମର୍ଶ କରି ଯାହା ସ୍ଥିର କରୁଥିଲୁ, ତାହାହିଁ ମୁଁ କାର୍ଯ୍ୟରେ ପରିଣତ କରୁଥିଲି ।"

ଶିବନାଥଙ୍କ ମୃତ୍ୟୁ ପରେ ତତ୍କାଳୀନ 'ପ୍ରବାସୀ' ପତ୍ରିକାର ସମ୍ପାଦକ ରାମାନନ୍ଦ ଚଟ୍ଟୋପାଧ୍ୟାୟ ଲେଖିଥିଲେ, "ଏହି ଭଗବଦ୍ ଭକ୍ତ, ସତ୍ୟନିଷ୍ଠ,

---

୧) ତଦନୁଯାୟୀ ଦିନେ ବିଶେଷ ଉପାସନା ପରେ ପ୍ରତିଜ୍ଞାପତ୍ରରେ ସ୍ୱାକ୍ଷର କରି ଈଶ୍ୱରଙ୍କ ନାମ କରୁ କରୁ ସେମାନେ ଅଗ୍ନିପ୍ରଦକ୍ଷିଣ ପୂର୍ବକ ଉକ୍ତ ଶପଥ ଗ୍ରହଣ କଲେ ।

ଦ୍ୱେଷ-ଅସୂୟାଶୂନ୍ୟ ପରଚର୍ଚ୍ଚା-ପରାନ୍ମୁଖ, ମାନବ-ପ୍ରେମିକ, ଦେଶଭକ୍ତ ଅକ୍ଳାନ୍ତକର୍ମୀ, ନିର୍ଲୋଭ ତ୍ୟାଗୀ ଜିତେନ୍ଦ୍ରିୟ ସାଧୁପୁରୁଷଙ୍କ କୀର୍ତ୍ତି ଅନେକ। ମନୁଷ୍ୟତ୍ୱରେ ସେ ତାଙ୍କ ସମ୍ପ୍ରଦାୟ କୀର୍ତ୍ତିର ବହୁ ଊର୍ଦ୍ଧ୍ୱରେ।" ଏହି ସମୟରେ 'ପ୍ରବାସୀ'ରେ (୧୩୨୬, ମାର୍ଗଶିର) ରବୀନ୍ଦ୍ରନାଥ ଶିବନାଥଙ୍କ ସମ୍ବନ୍ଧରେ ଯେଉଁ ପ୍ରବନ୍ଧ ଲେଖିଥିଲେ, ତାହାର କିୟଦଂଶ ଉଦ୍ଧୃତ ହେଲା। "ମନୁଷ୍ୟ' ପ୍ରତି ତାଙ୍କ ପ୍ରେମ, ସତ୍ୟ ପ୍ରତି ତାଙ୍କ ନିଷ୍ଠାକୁ କିଛିମାତ୍ର ଦୁର୍ବଳ କରିପାରିନାହିଁ। ଯେଉଁ ଭୂମିରେ ସେ ଜୀବନକୁ ପ୍ରତିଷ୍ଠିତ କରିଥିଲେ, ତାହା ମାନବ-ପ୍ରେମ ରସରେ କୋମଳ ଓ ଶ୍ୟାମଳ, ଆଉ ଯେଉଁ ଆକାଶରେ ସେ ତାକୁ ବିସ୍ତୀର୍ଣ୍ଣ କରିଥିଲେ ତାହା ସତ୍ୟର ଜ୍ୟୋତିରେ ଦେଦୀପ୍ୟମାନ ଓ କଲ୍ୟାଣର ଶକ୍ତି ପ୍ରବାହରେ ସମୀରିତ।"

ମାନବ ଜୀବନର ଯେଉଁ ଉଚ୍ଚ ଆଦର୍ଶ ଶିବନାଥ ସର୍ବଦା ଅନୁସରଣ କରି ଚଳୁଥିଲେ ଓ ଯେଉଁ କଥା ତାଙ୍କ ବକ୍ତୃତା ଓ ପ୍ରବନ୍ଧାଦିରେ ନାନା ସ୍ଥାନରେ ସେ ଉଲ୍ଲେଖ କରିଅଛନ୍ତି, ତାହା ଥିଲା—"ଜ୍ଞାନର ଗମ୍ଭୀରତା, ପ୍ରେମରେ ବିଶାଳତା, ଚରିତ୍ରରେ ସଂଯମ, କର୍ତ୍ତବ୍ୟରେ ଦୃଢ଼ତା, ମାନବ ପ୍ରତି ପ୍ରେମ ଓ ଭଗବାନଙ୍କ ଠାରେ ଭକ୍ତି।" ଏହି ଷଡ଼ଙ୍ଗ ଜୀବନାଦର୍ଶ ନିଜ ଜୀବନରେ ପ୍ରତିଫଳିତ କରି ସେ ଦୀର୍ଘକାଳ ବହୁ ଲୋକଙ୍କୁ ଅନୁପ୍ରାଣିତ କରିଥିଲେ।

ଶିବନାଥଙ୍କ କନ୍ୟା ହେମଲତା ସରକାର ସ୍ୱପ୍ରଣୀତ ପିତାଙ୍କ ଜୀବନ ଚରିତରେ ଲେଖିଛନ୍ତି—"ବ୍ରହ୍ମାନନ୍ଦ କେଶବଚନ୍ଦ୍ର ଜୀବନବେଦରେ ଅଗ୍ନି-ମନ୍ତ୍ରରେ ଦୀକ୍ଷା ଗ୍ରହଣ କଥା କହିଛନ୍ତି। ଶିବନାଥ ସେହି ଅଗ୍ନିମନ୍ତ୍ରରେ ଦୀକ୍ଷିତ ହୋଇଥିଲେ। ତାଙ୍କ ଜୀବନ ମଧ୍ୟ ଅଗ୍ନିମୟ ଥିଲା। ଧର୍ମଜୀବନର ପ୍ରାରମ୍ଭରେ ଅଗ୍ନି ପରୀକ୍ଷାରେ ପାର ହୋଇ ସେ ଅଗ୍ନିମୟ ହୋଇଯାଇଥିଲେ। ସେ ଅଗ୍ନିରେ ବିଷୟସୁଖ, ଯଶଃସ୍ପୃହା, ଧନମାନ, ପଦସମ୍ଭ୍ରମ-ସବୁ ପୋଡ଼ି ଭସ୍ମ ହୋଇଯାଇଥିଲା। ଶିବନାଥଙ୍କ ବାକ୍ୟ, କାର୍ଯ୍ୟ, ଉପଦେଶ, ବକ୍ତୃତା, ହୃଦୟର ଏହି ପ୍ରଚଣ୍ଡ ଅଗ୍ନି ଉଦ୍‌ଗୀରଣ କରୁଥିଲା।" ହେମଲତା ଏହି ଗ୍ରନ୍ଥର ଅନ୍ୟତ୍ର ଲେଖିଛନ୍ତି—"ଆଜି ମୁଁ ମୁକ୍ତ କଣ୍ଠରେ କହିବି, ଶିବନାଥଙ୍କ ହୃଦୟରେ ଯେଉଁ ଦୁର୍ଜୟ ବଳ, ବିଶ୍ୱାସ ଅନୁଯାୟୀ କାର୍ଯ୍ୟ କରିବା ପାଇଁ ପ୍ରାଣରେ ଯେଉଁ ଅଦମ୍ୟ ବାସନା ଏବଂ ସାଧୁ କାର୍ଯ୍ୟରେ ଯେଉଁ ଅବିଚଳିତ

ନିଷ୍ଠା—ତାହା ସେ ତାଙ୍କ ଯୌବନର ବନ୍ଧୁ କେଶବଚନ୍ଦ୍ରଙ୍କ ନିକଟରୁ ପାଇଥିଲେ । କେଶବଚନ୍ଦ୍ରଙ୍କ ନିକଟରୁ ସେ ଯୌବନରେ ଯାହା ଶିଖିଥିଲେ ତାହା ସମୁଦାୟ ଜୀବନ ଦେଇ ସେ ପ୍ରତିପାଳନ କରିଅଛନ୍ତି ।"

ବ୍ରାହ୍ମସମାଜର ଅଭ୍ୟୁଦୟର ଇତିହାସ ଅଡ଼କୁ ଦୃଷ୍ଟି ଦେଲେ ଦେଖାଯାଏ, ଏହାର ପ୍ରଥମ ବାଣୀ ଏକମାତ୍ର ପରମେଶ୍ୱରଙ୍କ ଉପାସନା କର, ମୂର୍ତ୍ତିପୂଜା ତ୍ୟାଗ କର । ଏ ବାଣୀ ଘୋଷଣା କଲେ ରାଜର୍ଷି ରାମମୋହନ, ଦ୍ୱିତୀୟ ବାଣୀ ହେଲା—'ପରିବାର ଓ ସମାଜକୁ ଏକେଶ୍ୱରବାଦ ଉପରେ ପ୍ରତିଷ୍ଠିତ କର ।' ଏ ବାଣୀ ଘୋଷଣା କଲେ ମହର୍ଷି ଦେବେନ୍ଦ୍ରନାଥ ଓ ବ୍ରହ୍ମାନନ୍ଦ କେଶବଚନ୍ଦ୍ର । ତୃତୀୟ ବାଣୀ ହେଲା—'ସମଗ୍ର ଜୀବନକୁ ବିବେକାନୁଗତ କର; ବିବେକର ଆଦେଶ ଈଶ୍ୱରଙ୍କର ଆଦେଶ । ଏହି ତୃତୀୟ ବାଣୀ କେଶବଚନ୍ଦ୍ରଙ୍କର ଦାନ ଏବଂ ଏହା ବ୍ରାହ୍ମସମାଜକୁ ପୁନର୍ଜନ୍ମ ଦାନ କରି ନବ ବଳରେ ବଳୀୟାନ କରିଥିଲା । ଆଚାର୍ଯ୍ୟ ସତୀଶଚନ୍ଦ୍ର କହିଛନ୍ତି, କେଶବଚନ୍ଦ୍ରଙ୍କ ପ୍ରତିଷ୍ଠିତ ସଙ୍ଗତ ସଭା ହିଁ ନୈତିକ ଐକାନ୍ତିକତା ଓ ବିବେକ ପରାୟଣତାକୁ ବ୍ରାହ୍ମସମାଜର କାର୍ଯ୍ୟରେ ନିୟମତନ୍ତ୍ର ପ୍ରଣାଳୀର ପୂର୍ଣ୍ଣମାତ୍ରାରେ ପ୍ରବର୍ତ୍ତନ । ଆଧୁନିକ ଭାରତର ପଣ୍ଡିତ ଶିବନାଥ ଶାସ୍ତ୍ରୀ ହିଁ ସର୍ବପ୍ରଥମ ନିୟମତନ୍ତ୍ରକୁ ଜୀବନରେ ଓ ସମାଜର କର୍ମକ୍ଷେତ୍ରରେ ନିଷ୍ଠା ସହିତ ସାଧନ କରି ଯାଇଛନ୍ତି । ତାଙ୍କ ଜୀବନରେ ପ୍ରଦର୍ଶିତ ତ୍ୟାଗ-ବୈରାଗ୍ୟ ଆତ୍ମୋତ୍ସର୍ଗର ଆଦର୍ଶ, ସାହସ, ସେବା ଏବଂ କର୍ମୋଦ୍ୟୋଗର ବାଣୀ, ସେ ଯୁଗରେ ବହୁ ତରୁଣ ହୃଦୟକୁ ଅଗ୍ନିମୟ କରି ଧର୍ମ ସାଧନରେ ଓ ଦେଶସେବାରେ ଉତ୍ସର୍ଗ କରିଥିଲା । ତାଙ୍କର ଅମରବାଣୀ—

"ଇନ୍ଦ୍ରିୟେର ଦାସ ଓଯେବା ବାରମାସ
ଦେଶେର ଉଦ୍ଧାର ତାର କର୍ମ ନୟ ।"

ଯେ କେତେ ଗଭୀର ଅର୍ଥବ୍ୟଞ୍ଜକ, ତାହା ଭାରତର ମୁକ୍ତି ସାଧନରେ ମହାତ୍ମା ଗାନ୍ଧୀଙ୍କ ଅତ୍ୟୁଜ୍ଜ୍ୱଳ ଭୂମିକାରେ ସୁପରିସ୍ଫୁଟ ହୋଇଅଛି ।

ଅତି ସଂକ୍ଷେପରେ ଯୁଗଧର୍ମ ବା ବ୍ରାହ୍ମଧର୍ମର ସାରମର୍ମ ଓ ତାହାର ଅଭ୍ୟୁଦୟର ବିବରଣ ଏ ସ୍ଥଳରେ ପ୍ରଦତ୍ତ ହେଲା—ଏହି ଧର୍ମ ଗ୍ରହଣ କରି ଓ ତାହା

ସାଧନ କରି ମଧୁସୂଦନଙ୍କ ଜୀବନରେ ଯେଉଁ ଅପୂର୍ବ ଭଗବଦ୍‌ଭକ୍ତି, ଜ୍ଞାନରେ ଗମ୍ଭୀରତା ଲାଭର ଆକାଂକ୍ଷା, ମାନବ ପ୍ରତି ପ୍ରୀତି, ଚରିତ୍ରରେ ସଂଯମ, ଦେଶପ୍ରୀତି, ସହିଷ୍ଣୁତା ଓ ସମାଜସେବା ପ୍ରଭୃତି ଯୁଗଧର୍ମର ସଦ୍‌ଗୁଣାବଳୀ ଫୁଟି ଉଠିଥିଲା ତାହା ସମଗ୍ର ଉତ୍କଳରେ, ଜାତିଧର୍ମ ସମ୍ପ୍ରଦାୟ ନିର୍ବିଶେଷରେ ଆପାମର ସାଧାରଣଙ୍କ ନିକଟରେ ତାହାଙ୍କୁ ସମାଦରଣୀୟ କରିଥିଲା । ଏହିଭଳି ମହାମାନବ ରାମମୋହନଙ୍କ ଯଥାର୍ଥ ଶିଷ୍ୟ ହୋଇ ସେ ଉତ୍କଳରେ ନବଯୁଗର ସୂଚନାରେ ପ୍ରଥମ ସ୍ଥାନ ଅଧିକାର କରିଥିଲେ ।

"ଓଡ଼ିଶାର ବିଖ୍ୟାତ ସାହିତ୍ୟିକ ନନ୍ଦକିଶୋର ବଳ 'ଉତ୍କଳ ସାହିତ୍ୟ' ପତ୍ରିକାରେ ମଧୁସୂଦନ ସଂଖ୍ୟାରେ (ପୌଷ ଓ ମାଘ ୧୩୨୦) 'ରାୟ ମଧୁସୂଦନ ରାଓ ବାହାଦୁର' ନାମରେ ଯେଉଁ ପ୍ରବନ୍ଧ ଲେଖିଥିଲେ ସେଥିରେ ସେ କହିଥିଲେ—ମଧୁସୂଦନଙ୍କ ବିଶେଷତ୍ୱ ଏହି ଯେ, ସେ ଏକାଧିକ କର୍ମକ୍ଷେତ୍ରରେ କାର୍ଯ୍ୟ କରି କୃତିତ୍ୱ ଲାଭ କରିଥିଲେ । ତାଙ୍କର ପ୍ରଧାନ କର୍ମକ୍ଷେତ୍ର ଥିଲା ଧର୍ମ ସାଧନ ଓ ଧର୍ମପ୍ରଚାର ଏବଂ ତାହାର ଉପାୟ ସ୍ୱରୂପ ଜ୍ଞାନାର୍ଜନ, ଶିକ୍ଷା-ବିସ୍ତାର ଓ ସମାଜ-ସଂସ୍କାର, ଗୃହଧର୍ମ ସାଧନ, ଅତିଥି ସତ୍କାର ଓ ସମାଜ-ସେବା ତାଙ୍କ ଧର୍ମ-ସାଧନର ହିଁ ଅଙ୍ଗୀଭୂତ ଥିଲା । ତାଙ୍କ ଧର୍ମଜୀବନର ଆଦର୍ଶ ଥିଲା—ଜ୍ଞାନ, କର୍ମ ଓ ତପସ୍ୟାର ନିୟୋଗ-ସାଧନ ଓ ବିଶ୍ୱଜନୀନ ଜୀବନ ଲାଭ । ଏହାର ପ୍ରତ୍ୟେକ ବିଭାଗରେ ସେ ଯାହା କରିଯାଇଛନ୍ତି, ତାହାର ଗୋଟିଏ ଗୋଟିଏ ପନ୍ଥାରେ ସେ ସମାଜରେ ଉଚ୍ଚ ସ୍ଥାନ ଲାଭ କରିପାରିଥାନ୍ତେ । ପରନ୍ତୁ ଏହି ସମସ୍ତ ଗୁଣଗୁଡ଼ିକ ଏକାଧାରରେ ସମାବିଷ୍ଟ ହୋଇଥିଲା ବୋଲି ସେ ଜୀବିତ କାଳରେ 'ଋଷି', 'ଆଦର୍ଶ ପୁରୁଷ', 'ଭକ୍ତକବି' ପ୍ରଭୃତି ଆଖ୍ୟା ଲାଭ କରିଥିଲେ । ତାଙ୍କର ତିରୋଧାନରେ ଉତ୍କଳର ବହୁ ସ୍ଥାନ ଖାଲି ପଡ଼ିଗଲା ।"

ଏହି ପ୍ରବନ୍ଧରେ ଅନ୍ୟତ୍ର ସେ ଲେଖିଛନ୍ତି "ଗୋପବନ୍ଧୁ ଦାସ ପ୍ରମୁଖ ଯୁବକମଣ୍ଡଳୀ ଉତ୍କଳରେ ନବଯୁଗ ଓ ନବଜୀବନର ସୂତ୍ରପାତ ଓ ସୂଚନା କରିଅଛନ୍ତି । ମଧୁସୂଦନଙ୍କ ସୁରୁଚିସମ୍ପନ୍ନ ଗଦ୍ୟ ପଦ୍ୟମୟ ସାହିତ୍ୟ ଓ ତାଙ୍କ ଦୀର୍ଘକାଳବ୍ୟାପୀ ଶିକ୍ଷକ ଜୀବନ କିଣ ଏହି ଯୁବକମଣ୍ଡଳୀ ମଧ୍ୟରେ

ନବଜୀବନ ଓ ନବଯୁଗର ସୂଚନାରେ କଣ୍ଟୁ କାମ କରନାହାନ୍ତି ?୧ ସେ ଆଧୁନିକ ଉତ୍କଳର ଗୁରୁ । ଅନୁସନ୍ଧାନ କଲେ ଦେଖିବାକୁ ମିଳେ ଯେ, ତଦାଣାନ୍ତନ ପ୍ରତ୍ୟେକ ଉତ୍କଳୀୟ ଯୁବକର ପ୍ରାଣରେ ତାଙ୍କର ଉତ୍ସାହ ଓ ଆଦର୍ଶ କାମ କରୁଛି ।"

ମଧୁସୂଦନଙ୍କ ଜୀବନବ୍ୟାପୀ କର୍ମଯୋଗ ଓ ଧର୍ମ-ସାଧନାର କଥା ଶ୍ରଦ୍ଧାପୂର୍ଣ୍ଣ ପ୍ରାଣରେ ପ୍ରକାଶ କରି ପରିଶେଷରେ ସେ ସେହି ପ୍ରବନ୍ଧରେ ଲେଖିଅଛନ୍ତି—"ଆମ୍ଭେମାନେ ତାହାଙ୍କୁ ବହୁ ଭାବରେ ଦେଖିଅଛୁ, କିନ୍ତୁ ଗୋଟିଏ ରୂପ ଆମ୍ଭମାନଙ୍କ ହୃଦୟରେ ଜାଗ୍ରତ ଅଛି । ବ୍ରହ୍ମମନ୍ଦିରଟି ନାନା ଲତା ପୁଷ୍ପରେ ଶୋଭିତ । ଲତାକୁଞ୍ଜ ମଧ୍ୟରେ ସମାସୀନ ଋଷିପ୍ରତିମ ତେଜସ୍ୱୀ ଗମ୍ଭୀର ପୁଣ୍ୟାଭ ମଧୁସୂଦନଙ୍କ କଣ୍ଠରୁ ହୃଦୟ ପରିବ୍ୟାପୀ ବ୍ରହ୍ମ ମନ୍ତ୍ର ଧ୍ୱନିତ ହେଉଅଛି ।

"ଶୃଣ୍ୱନ୍ତୁ ବିଶ୍ୱେ ଅମୃତସ୍ୟ ପୁତ୍ରା<br>
ଆ ଯେ ଧାମାନି ଦିବ୍ୟାନି ତସ୍ଥୁଃ<br>
ବେଦାହମେତଂ ପୁରୁଷଂ ମହାନ୍ତଂ<br>
ଆଦିତ୍ୟବର୍ଣ୍ଣଂ ତମସଃ ପରସ୍ତାତ୍ ।<br>
ତମେବ ବିଦିତ୍ୱାତିମୃତ୍ୟୁମେ ଏତି<br>
ନାନ୍ୟଃ ପନ୍ଥା ବିଦ୍ୟତେ ଅୟନାୟ ॥"

—○—

୧) ଉତ୍କଳମଣି ଗୋପବନ୍ଧୁ ପୁସ୍ତକର ୧୭ ପୃଷ୍ଠାରେ ଲିଖିତ ହୋଇଅଛି ଯେ, ନୟାଗଡର ରାଜା ଗୋପବନ୍ଧୁଙ୍କୁ ତାଙ୍କ ଦୁଇ ଭଗିନେୟଙ୍କର ଗୃହଶିକ୍ଷକ ରୂପେ ନିଯୁକ୍ତ କରିଥିବାରୁ ଗୋପବନ୍ଧୁ କଟକ କାଳୀଗଳିରେ ଆସି ମଧୁସୂଦନଙ୍କ ଗୃହ ନିକଟରେ କିଛିଦିନ ବାସ କରିଥିଲେ । ଏଠାରେ କବିଗୁରୁ ରାଧାନାଥ ଓ ଭକ୍ତକବି ମଧୁସୂଦନଙ୍କ ସହିତ ସାହିତ୍ୟ ଆଲୋଚନାର ଅବସର ଗୋପବନ୍ଧୁ ପାଇଥିଲେ ।

# ୧୯୩୪ ଖ୍ରୀଷ୍ଟାବ୍ଦରେ ଭକ୍ତକବିଙ୍କ ବାର୍ଷିକ ଶ୍ରାଦ୍ଧବାସରର ଉପାସନାକାଳରେ ଜ୍ୟେଷ୍ଠଜାମାତା ଶ୍ରୀ ବିଜୟଚନ୍ଦ୍ର ମଜୁମଦାର କର୍ତ୍ତୃକ ନିବେଦିତ

ପ୍ରେମରେ, ଶ୍ରଦ୍ଧାରେ, ଭକ୍ତିରେ, କୃତଜ୍ଞତାରେ, ସେ ଆଜ ଆମ୍ଭମାନଙ୍କର ପ୍ରାଣରେ ପ୍ରାଣରେ, ମର୍ମରେ ମର୍ମରେ । ୫୫ ବର୍ଷ ପୂର୍ବେ ଯେତେବେଳେ ତାଙ୍କ ସଙ୍ଗରେ ମୋର ପ୍ରଥମ ପରିଚୟ ହେଲା ସେତେବେଳେ ମୋର ବନ୍ଧୁ କେ. ପି. ବସୁ କଟକରେ ଥିଲେ; ସେ ପ୍ରଥମ ପରିଚୟ କରାଇ ଦେଲେ । ମୁଁ ସେତେବେଳେ ଓଡ଼ିଶାର ଦୂରବର୍ତ୍ତୀ ସ୍ଥାନକୁ ଯାଉଥିଲି । ପୂର୍ବରୁ ଦେଖିନଥିଲି । ସେ କଥା କେହି କେହି ସ୍ମରଣ କରାଇଦେଲେ । କିନ୍ତୁ ଅଳ୍ପ ପରିଚୟରେ ଯାହାଙ୍କ ସଙ୍ଗରେ ଦେଖା ହୋଇଥିଲି, ପୂଜାର ପ୍ରତିଷ୍ଠିତ ଦେବତା ନଦେଖି ତାଙ୍କୁ ଦେଖିଲି —ସରଳ ବିଶ୍ୱାସରେ, ପ୍ରଫୁଲ୍ଲ ବିଶ୍ୱାସରେ ପ୍ରତିଷ୍ଠିତ । ଯେଉଁ ପ୍ରଫୁଲ୍ଲତାରେ ଯେଉଁ ଅନୁରାଗରେ ସେ ମୋତେ ଆକର୍ଷଣ କରିଥିଲେ ଏବଂ ଯେଉଁ ପବିତ୍ର ଭିତ୍ତିରେ ତାଙ୍କ ଜୀବନ ପ୍ରତିଷ୍ଠିତ ଦେଖିଥିଲି ସେ ସମୟର ଦୁଇଗୋଟି କଥା ଯାହା ମନରେ ଛାପ ପକାଇଥିଲା, ତାହା କହୁଛି :—

ପବିତ୍ରତା ପ୍ରତି ଏତେ ଗଭୀର ଅନୁରାଗ ଯେ, ଭିତର, ବାହାର ସୁସ୍ପଷ୍ଟ ଦେଖାଯାଏ । ଘରଟି ବର୍ତ୍ତମାନ ପରି ନଥିଲା, କିନ୍ତୁ ଏତେ ପରିଷ୍କାର, ଏତେ ପରିଚ୍ଛନ୍ନ ! ଶରୀର ଓ ମନକୁ ପବିତ୍ର ରଖିବାରେ ଏପରି ଦୃଢ଼ ଅନୁରାଗ ଦେଖି ବିସ୍ମିତ ହୋଇଥିଲି ।

ତାଙ୍କର ସେହି ଉପାସନାର ବିଶେଷତା ଏହି ଯେ, କିଏ ଗୀତ ଗାଇବ ନିପରିବାରି ଏକତାରା ହାତରେ ଧରି ନିଜେ ମଧୁର କଣ୍ଠରେ ଗାଉଥିଲେ । ଗୀତରେ ସେ ଶିକ୍ଷିତ ନଥିଲେ, ଯେଉଁ ଗୀତର ସ୍ୱର ମଧ୍ୟ କେବେ ଶୁଣି-ନାହାନ୍ତି— ଗଭୀର ଭକ୍ତିରେ ସେହି ଗୀତକୁ ନିଜ ସ୍ୱରରେ ସେ ଯେଉଁଳି ଗାଉଥିଲେ ତାହା ଶୁଣିବାକୁ କେତେ ମିଠା ଲାଗୁଥିଲା ! ତାଙ୍କ ପବିତ୍ରତା ସେତେବେଳେ ସମସ୍ତ କାର୍ଯ୍ୟରେ ବିଦ୍ୟମାନ ।

ଗଭୀର ବିଶ୍ବାସର ଫଳ ବିଷୟରେ କେଶବଚନ୍ଦ୍ର ଯାହା କହୁଥିଲେ—"ସ୍ଥିତ ମୁଁ ଆଗେ ଗଢ଼େ, ପରେ ଭକ୍ତି କରେ" ତାହା କରୁଥିଲେ । କାମର ଭାର ସେ ନିଶ୍ଚିନ୍ତ ଚିତ୍ତରେ ନେଉଥିଲେ । ଗୃହ, ସ୍କୁଲ ଓ ବ୍ରାହ୍ମସମାଜର କାମରେ ଯାହା ସଙ୍କଳ୍ପ ଆସିଛି, ତାହା ନିଶ୍ଚୟ ହେବ । ସେ ବିଶ୍ବାସର କଣା ମାତ୍ର କେହି ଯଦି ପାଏ, ତେବେ ସବୁ ଠିକ୍ ହୋଇପାରେ । ନିଃସ୍ବ ଅବସ୍ଥାରେ ବିଶ୍ବାସ ବଳରେ ସେ ସମସ୍ତ କରିଛନ୍ତି; ବ୍ୟସ୍ତ ହୋଇ ମୁହ୍ୟମାନ ହୋଇ କରିନାହାନ୍ତି । ସେହି ଅଟଳ ବିଶ୍ବାସର ସିଂହାସନରେ ସେ ନିଜକୁ ପ୍ରକାଶିତ ଦେଖୁଥିଲେ, ଯାହାର ଆଭାସ ମାତ୍ର ପ୍ରାଣରେ ଆସିଲେ ଆମ୍ଭେମାନେ ଧନ୍ୟ ହେଉ । ଆମ୍ଭମାନଙ୍କ ମନରେ ଉଦିତ ହେଉ ସେହି ପବିତ୍ରତା, ବିଶ୍ବାସ ଓ ଅନୁରାଗ, ଭକ୍ତି । ତାଙ୍କ ସହଜ ଜ୍ଞାନରେ ତାଙ୍କ ଭଗବାନଙ୍କର ନାମ ଗାନ ସେ କରୁଥିଲେ । ଏହିସବୁ ନେଇ ତାଙ୍କୁ ମୁଁ ଆଜ ସ୍ମରଣ କରେ ।

## ଅଜା ମହାଶୟଙ୍କ କଥା

(ଦୌହିତ୍ରୀ ଶ୍ରୀମତୀ ସୁମିତ୍ରା ସରକାରଙ୍କ ଲେଖା)

ଅଜାଙ୍କ କଥା ନାତୁଣୀ ପାଟରେ ସବୁ ମିଠା । ଏତେ ସ୍ମୃତି ମନ ମଧ୍ୟରେ ଆସି ଭିଡ଼ କରୁଛି ଯେ, କହିବାକୁ ସତେଯେପରି ଭାଷା ଖୋଜି ପାଉନାହିଁ ।

ପିଲାବେଳେ ମା'ଙ୍କ ସଙ୍ଗରେ ମାମୁଁ ଘରକୁ ଯିବାରେ କେତେ ଆନନ୍ଦ, ଏବେସୁଦ୍ଧା ଭାବିଲେ ମନଟା ଯେପରି ଉତ୍ଫୁଲ୍ଲ ହୋଇଉଠେ । ଆମ ଘରର ଆଧୁନିକତା ମଧ୍ୟରୁ ଯେଉଁ ପ୍ରାଚୀନ-ପନ୍ଥୀ ପରିବେଶ ମଧ୍ୟରେ ପହଞ୍ଚିଯାଏ, ସେ ମଧ୍ୟ ମୋ ପକ୍ଷରେ ନୂତନ । ଚକ୍ ଚକ୍ ମେଜିଆ ଉପରେ ଖଣ୍ଡିଏ ମସିଣା ବିଛାଇ ବସିବା ଓ ଶୋଇବା, ଝକ୍ ଝକ୍ କଂସା ବାସନରେ ଖାଇବା, ସୁନା ପରି ମଜା ଯାଇଥିବା ପିତଳ ଗଡ଼ୁ-ଲୋଟା ପାଣିରେ ଗାଧୋଇବା, ମୁହଁ ଧୋଇବା, ସନ୍ଧ୍ୟା ସମୟରେ ପିତଳ ପିଲସଜ ଉପରେ ତେଲଭର୍ତ୍ତି ପ୍ରଦୀପର ସ୍ୱର୍ଣ୍ଣାଭ ଆଲୁଅ ଜାଳିବା ସମସ୍ତ ମନମୁଗ୍ଧକର । ଆଉ ଏସବୁ ଅପେକ୍ଷା ମନୋହର ଲାଗୁଥିଲା, ଅଜା ମହାଶୟଙ୍କ ସୌମ୍ୟସୁନ୍ଦର ମୂର୍ତ୍ତି । ମିଳାଇ ଶ୍ବେତ ଦୁଇଟି ଆଖିରୁ ଫୁଟି ଉଠୁଥିଲା ବୁଦ୍ଧିର ଜ୍ୟୋତି । ପ୍ରଫୁଲ୍ଲ

ହସରେ ଫୁଟିଉଠୁଥିଲା ସ୍ନିଗ୍ଧତା । ସେ ଯେ ଖୁବ୍ ଗମ୍ଭୀର ଲୋକ ଥିଲେ ଆଜି ସମସ୍ତେ ତାଙ୍କୁ ଡ଼ରୁଥିଲେ, ତାହା ସେହି ବୟସରେ ମୁଁ ବୁଝିପାରୁଥିଲି । ମୁଁ କିନ୍ତୁ ମୋଟେ ଭୟ କରୁନଥିଲି । ତେଣୁ ସ୍ନେହ ମାଉସୀ ଓ ସ୍ନେହ ମାମୁଁଙ୍କର କିଛି ଅରଜ ଥିଲେ ତାହା ମୋତେ ପେଶ୍ କରିବାକୁ ହେଉଥିଲା । ଆଉ ଅବଲମ୍ବେ ସେ କାର୍ଯ୍ୟ ହୋଇଯାଉଥିଲା ।

ଅଜା ମହାଶୟଙ୍କ ପରିଚ୍ଛନ୍ନତା ଗୋଟିଏ ଦେଖିବାର ଜିନିଷ ଥିଲା । ତାଙ୍କ ସ୍ନାନ ସମୟରେ ଚାକରମାନେ ଗରାଗରା ପାଣି ଯେତେବେଳେ ତାଙ୍କ ମୁଣ୍ଡରେ ଢ଼ାଳନ୍ତି, ମନେହେଉଥିଲା ଯେପରି ତାଙ୍କର ଅଭିଷେକ ହେଉଛି । ଖାଇବା ମଧ୍ୟ ଥିଲା ଅତି ନିଷ୍ଠାବନ୍ତ ବିଧିବାର ଆହାର । ଅନ୍ତରେ ଓ ବାହାରେ ଏପରି ଶୁଚିମନ୍ତ ମଣିଷ ଖୁବ୍ କମ୍ ଦେଖିଛି । ଶୁଚିତା ସହିତ ସୌନ୍ଦର୍ଯ୍ୟବୋଧ ଏକେବାରେ ମିଶିଥାଏ । ତାଙ୍କ ଦାନଶୀଳତାର କଥା ବୁଝିବାର ବୟସ ସେତେବେଳେ ମୋର ହୋଇନଥିଲା । ତା'ଛଡ଼ା ତାଙ୍କର ଦାନ ଗୋପନରେ ବେଶୀ ଭାଗ ହେଉଥିଲା । ଏସବୁ କଥା ପରେ ବଡ଼ ହୋଇ ବୁଝିଛି । କିନ୍ତୁ ତାଙ୍କ ଧର୍ମପ୍ରାଣତାର କଥା ଅନୁଭବ କରିବାକୁ ଟିକିଏ ହେଲେ ବିଳମ୍ବ ହୋଇନାହିଁ । ଉପାସନାରେ ବସି ତାଙ୍କ ପ୍ରେମ-ଭକ୍ତି-ଆପ୍ଲୁତ ମୂର୍ତ୍ତିଟି ଦେଖିଲେ ଯେ କେହି ବୁଝିପାରନ୍ତି ଯେ, ସେ କାହାର ସଙ୍ଗ ଲାଭ କରି ଏପରି ବିହ୍ୱଳ ହୋଇଅଛନ୍ତି । ତା'ପରେ ଗୀତ । ପ୍ରତିଦିନ ଏକତାରାଟି ହାତରେ ନେଇ ବ୍ରହ୍ମ ସଙ୍ଗୀତକୁ ମୁକ୍ତ ଗମ୍ଭୀର କଣ୍ଠରେ ପସନ୍ଦ ମୁତାବକ ନିଜେ ଦେଇଥିବା ସ୍ୱରରେ ଗାଇଯାଆନ୍ତି । ସ୍ୱର ଠିକ୍ ବା ବେଠିକ୍ ତାହା ଭାବିବାର ଅବସର କାହାର ନଥାଏ । ସମସ୍ତେ ଗଭୀର ଭାବରସରେ ମଗ୍ନ ହୋଇଯାନ୍ତି ।

ତାଙ୍କ ଆତିଥ୍ୟର କଥା ବର୍ଣ୍ଣନା କରି ବୁଝାଇ ହୁଏ ନାହିଁ । କଟକ ଯାଇଛନ୍ତି କେହି ବିଦେଶରୁ, ଆଉ ତାଙ୍କର ଅତିଥି ହୋଇନାହାନ୍ତି ଏପରି ଘଟଣା ବିରଳ ।

ନିଜର ପୁତ୍ରକନ୍ୟା ବ୍ୟତୀତ କେତେଜଣଙ୍କୁ ପିତୃସ୍ନେହରେ ସେ ମଣିଷ କରିଛନ୍ତି, ତା'ର ସାକ୍ଷ୍ୟ ଦେବାକୁ ବର୍ତ୍ତମାନ ସୁଦ୍ଧା ଅନେକେ ଅଛନ୍ତି । ତାଙ୍କ ସାହିତ୍ୟ ପ୍ରତିଭାର କଥା ଓଡ଼ିଶାରେ ସର୍ବଜନବିଦିତ । ତେବେ ସେହି ବୟସରେ ଆମ୍ଭେମାନେ ବେଶୀ ମୁଗ୍ଧ ହୋଇ ରହିଥିଲୁ, ତାଙ୍କ ମିଠା

ଚିଠିଗୁଡ଼ିକର ମାଧୁର୍ଯ୍ୟରେ । କି ଚମତ୍କାର ଚିଠି ସେ ଲେଖୁଥିଲେ କହି ପାରିବି ନାହିଁ । ତାଙ୍କ ବିଷୟରେ ସବୁ କଥା କହିବାର କ୍ଷମତା ମୋର ନାହିଁ । ଅଳ୍ପ ବୟସରେ ତାଙ୍କୁ ହରାଇ—ତାହାହିଁ ମୋ ଜୀବନରେ ପ୍ରଥମ ମୃତ୍ୟୁଦର୍ଶନ-କେତେ ଶୋକାଚ୍ଛନ୍ନ ହୋଇଥିଲି, ଆଜି ମଧ୍ୟ ତା' ସ୍ପଷ୍ଟ ମନେ ହେଉଛି । ଶେଷ ବିଦାୟ ଦିନ ଯେପରି ପ୍ରଥମେ ଜାଣିଲି, ସେ କିଏ ଥିଲେ । ସମସ୍ତ ସହର ଭାଙ୍ଗିପଡ଼ିଲା ତାଙ୍କୁ ବିଦାୟ ଦେବାରେ—ସେହି ବିଶିଷ୍ଟ ମାନବଙ୍କୁ ଶ୍ରଦ୍ଧା ଜ୍ଞାପନ କରିବାକୁ । ସଙ୍ଗେ ସଙ୍ଗେ ଅନୁଭବ କଲି ଅତି କ୍ଷୁଦ୍ର, ଆମେ ମଧ୍ୟ ତାଙ୍କର ଅଂଶ । ଶୋକ ମଧ୍ୟରେ ସେ ଗୌରବଟିକକ ଯେପରି କିଛି ପରିମାଣରେ ସାନ୍ତ୍ୱନା ଆଣିଦେଇଥିଲା ସେଦିନ । ଏହି ପ୍ରସଙ୍ଗରେ ଗୋଟିଏ କଥା ନକହି ରହିପାରୁନାହିଁ । ସେ ଅନ୍ୟାୟ ପ୍ରତି ଖଡ୍ଗହସ୍ତ ଥିଲେ ସତ, କିନ୍ତୁ ପାପକୁ ଘୃଣା କରିବା, ପାପୀକୁ ନୁହେଁ, ଏହି କଥା ତାଙ୍କ ଜୀବନରେ ପରିସ୍ଫୁଟ ହେବାର ଦେଖିଛି । ଅପରାଧୀ ଆସି କ୍ଷମା ମାଗିଲେ ତାଙ୍କ ଜ୍ୱଳନ୍ତ କ୍ରୋଧ ମୁହୂର୍ତ୍ତକ ମଧ୍ୟରେ ଲିଭିଯାଏ । ଦୋଷୀକୁ ଛାତିରେ କୁଣ୍ଢାଇ ସେ ତା' ଅଶ୍ରୁଜଳରେ ନିଜର ଅଶ୍ରୁଧାରା ମିଶାଇ ଦେଉଥିଲେ । ଏହାକୁ ବୋଧହୁଏ କହନ୍ତି—

"ବଜ୍ରାଦପି କଠୋରାଣି,
ମୃଦୂନି କୁସୁମାଦପି ।"

—o—

# ଓଡ଼ିଶାରେ ବ୍ରାହ୍ମଧର୍ମ ଓ ବ୍ରାହ୍ମସମାଜ

## (୧) ଉତ୍କଳ ବ୍ରାହ୍ମସମାଜ :

୧୮୬୪ ଖ୍ରୀଷ୍ଟାବ୍ଦରେ ମହର୍ଷି ଦେବେନ୍ଦ୍ରନାଥ ଠାକୁର ଓଡ଼ିଶାକୁ ତାଙ୍କ ଜମିଦାରୀ ପରିଦର୍ଶନ କାର୍ଯ୍ୟରେ ଆସିଥିଲେ । ସେହି ସମୟରେ କଟକରେ ଗୋଟିଏ ଭଡ଼ାଘରେ ଆଦି ବ୍ରାହ୍ମସମାଜର ଶାଖା ସ୍ଥାପନ କଲେ । ସେଥିରେ ବାବୁ ଜଗମୋହନ ରାୟ, ଗୌରୀଶଙ୍କର ରାୟ (ପରେ ରାୟବାହାଦୁର), ଜଗମୋହନ ଲାଲ, ତ୍ରୈଲୋକ୍ୟନାଥ ମୁଖୋପାଧ୍ୟାୟ ପ୍ରଭୃତି ଯୋଗ ଦେଲେ । ଏଠାରେ ପ୍ରତି ବୁଧବାର ଆଦିବ୍ରାହ୍ମସମାଜର ପ୍ରଚଳିତ ଧାରାରେ ଉପାସନା ହେଉଥିଲା । ବର୍ତ୍ତମାନ ଓଡ଼ିଆ ବଜାରରେ ଯେଉଁ ବ୍ରାହ୍ମମନ୍ଦିର ଗୃହ ଅଛି, ତାହା ପ୍ରଧାନତଃ ବାବୁ ଜଗମୋହନ ରାୟଙ୍କ ଉଦ୍ୟୋଗରେ ଚାନ୍ଦା ସଂଗୃହୀତ ହୋଇ ନିର୍ମିତ ହୋଇଥିଲା । ମହର୍ଷି ଦେବେନ୍ଦ୍ରନାଥ ଏହି ଗୃହ ନିର୍ମାଣ ପାଇଁ ବହୁ ଅର୍ଥ ସାହାଯ୍ୟ କରିଥିଲେ ।

୧୮୬୯ ଖ୍ରୀଷ୍ଟାବ୍ଦରେ କଟକ ଜିଲ୍ଲା-ହାଇସ୍କୁଲରେ ଅତିରିକ୍ତ ଦୁଇଟି ଶ୍ରେଣୀ ଯୁକ୍ତ ହୋଇ ଏଫ୍. ଏ. ପଢ଼ିବାର ବ୍ୟବସ୍ଥା ହେଲା । ସେଥିରେ ଦର୍ଶନଶାସ୍ତ୍ରରେ ଏମ୍. ଏ. ଉପାଧିଧାରୀ ହରନାଥ ଭଟ୍ଟାଚାର୍ଯ୍ୟ ମହାଶୟ ଅଧ୍ୟାପକ ରୂପେ ନିଯୁକ୍ତ ହୋଇ କଲିକତାରୁ ଆସିଲେ । ଊନବିଂଶ ଶତାବ୍ଦୀର ମଧ୍ୟଭାଗରେ ଯେତେବେଳେ ବହୁ ଶିକ୍ଷିତ ବ୍ୟକ୍ତି ବ୍ରାହ୍ମଧର୍ମ ପ୍ରତି ଆକୃଷ୍ଟ ହୋଇଥିଲେ, ହରନାଥ ମଧ୍ୟ ସେହି ସମୟରେ ବ୍ରାହ୍ମସମାଜକୁ ଆସିଲେ ।

ଏହି ବ୍ରାହ୍ମଧର୍ମାବଲମ୍ବୀ ଅଧ୍ୟାପକ ହରନାଥ ଭଟ୍ଟାଚାର୍ଯ୍ୟଙ୍କ ପ୍ରଭାବରେ ତାଙ୍କର କେତେଜଣ ଛାତ୍ର ବ୍ରାହ୍ମସମାଜରେ ଯୋଗଦେଲେ । ପ୍ୟାରୀମୋହନ ଆଚାର୍ଯ୍ୟ, ମଧୁସୂଦନ ରାଓ ଓ ଚତୁର୍ଭୁଜ ପଟ୍ଟନାୟକ ଏମାନଙ୍କ ମଧ୍ୟରେ ଅଗ୍ରଣୀ ଥିଲେ । ୧୮୬୯ ଖ୍ରୀଷ୍ଟାବ୍ଦ ଜୁଲାଇ ମାସରେ ହରନାଥ ଭଟ୍ଟାଚାର୍ଯ୍ୟଙ୍କ ଦ୍ୱାରା ଉତ୍କଳ ବ୍ରାହ୍ମସମାଜ ପ୍ରତିଷ୍ଠିତ ହେଲା । ପ୍ରଥମେ ଯେଉଁ ଭଡ଼ାଘରେ ଆଦିସମାଜର ଉପାସନା ହେଉଥିଲା, ସେହିଠାରେ ସ୍ୱତନ୍ତ୍ର ଦିନରେ କେଶବାନୁବର୍ତ୍ତୀ ହରନାଥ ଭଟ୍ଟାଚାର୍ଯ୍ୟ ତାଙ୍କ ଅନୁଗାମୀମାନଙ୍କୁ ନେଇ

ଉତ୍କଳ ବ୍ରାହ୍ମସମାଜର ଉପାସନା କରୁଥିଲେ । ପରେ ଓଡ଼ିଆ ବଜାରରେ ବ୍ରାହ୍ମ ମନ୍ଦିରର ସ୍ୱତନ୍ତ୍ର ଗୃହ ନିର୍ମିତ ହେବାରୁ, ଉତ୍କଳ ବ୍ରାହ୍ମସମାଜର ସଭ୍ୟମାନଙ୍କ ଅନୁରୋଧରେ ମନ୍ଦିର କମିଟିର ୧୯ ଜଣ ଜଗମୋହନ ରାୟ ସେମାନଙ୍କୁ ପ୍ରତି ରବିବାର ସନ୍ଧ୍ୟାରେ ଏହି ଗୃହରେ ଉପାସନା କରିବାକୁ ଅନୁମତି ଦେଲେ ।

୧୮୮୯ ଖ୍ରୀଷ୍ଟାବ୍ଦରେ ଗୋଟିଏ ଟ୍ରଷ୍ଟଡ଼ିଡ୍ ରଚନା କରି କଟକ ବ୍ରାହ୍ମ ମନ୍ଦିରଟିର ପରିଚାଳନା ଭାର ଉଭୟ ସମାଜର ସଭ୍ୟମାନଙ୍କ ହସ୍ତରେ ଅର୍ପଣ କରାଗଲା । ଆଦି ବ୍ରାହ୍ମସମାଜଭୁକ୍ତ ଟ୍ରଷ୍ଟୀମାନଙ୍କର ମୃତ୍ୟୁ ହେବାପରେ ମନ୍ଦିରଟି ସମ୍ପୂର୍ଣ୍ଣରୂପେ ଉତ୍କଳ ବ୍ରାହ୍ମସମାଜର ସଭ୍ୟମାନଙ୍କ ଅଧିକାରକୁ ଆସିଲା । ଜଗମୋହନ ରାୟ ଓ ରାୟବାହାଦୁର ଗୌରୀଶଙ୍କର ରାୟ ଆଦି ବ୍ରାହ୍ମ ସମାଜର ସଭ୍ୟ ହେଲେ ମଧ୍ୟ ଉତ୍କଳ ବ୍ରାହ୍ମ ସମାଜର ଉନ୍ନତି ନିମିତ୍ତ ସର୍ବଦା ସର୍ବାନ୍ତଃକରଣରେ ସାହାଯ୍ୟ କରିଅଛନ୍ତି ଏବଂ ଅନେକ ସମୟରେ ଉତ୍କଳ ବ୍ରାହ୍ମସମାଜର ସାମାଜିକ ଉପାସନାରେ ଶ୍ରଦ୍ଧାର ସହିତ ଯୋଗଦାନ କରିଅଛନ୍ତି ।

## (କ) ଉତ୍କଳ ବ୍ରାହ୍ମସମାଜର ପ୍ରତିଷ୍ଠାତା :

## ସ୍ୱର୍ଗୀୟ ହରନାଥ ଭଟ୍ଟାଚାର୍ଯ୍ୟଙ୍କ ସଂକ୍ଷିପ୍ତ ଜୀବନୀ :—

ହରନାଥ ଭଟ୍ଟାଚାର୍ଯ୍ୟଙ୍କ ନିବାସ ଥିଲା ଢ଼ାକା ଜିଲ୍ଲାର ମାଣିକଗଞ୍ଜ ମହକୁମା ଅନ୍ତର୍ଗତ 'ଖଲ୍ଲି' ଗ୍ରାମରେ । ତାଙ୍କର ଜନ୍ମ କେଉଁଠାରେ ହୋଇଥିଲା ବର୍ତ୍ତମାନ ସୁଦ୍ଧା ସଠିକ ଜଣାଯାଏ ନାହିଁ । ସେମାନଙ୍କର ପୈତୃକ ପେଶା ଥିଲା ଯଜନ-ଯାଜନ ଓ ଅଧ୍ୟାପନା । କେତୋଟି ଭାଇ ଭଉଣୀଙ୍କ ମଧ୍ୟରେ ସେ ଥିଲେ ସର୍ବକନିଷ୍ଠ । ଅତି ଶୈଶବରେ ପିତୃମାତୃହୀନ ହେବାରୁ ମାତୁଳାଳୟ ପାବନାରେ ସେ ଲାଳିତ-ପାଳିତ ହୋଇଥିଲେ । କେତେଦିନ ପାବନାରେ ଥିଲେ ଓ କେତେଦିନ କଲିକତାରେ ଥିଲେ ସଠିକ ଜଣାଯାଇ ନାହିଁ । ହରନାଥଙ୍କ ପିତାଙ୍କ ନାମ ଗୌରୀଶଙ୍କର ଭଟ୍ଟାଚାର୍ଯ୍ୟ ।

ହରନାଥ କଲକତା ଜେନେରାଲ ଆସେମ୍ବ୍ଲିଜ୍ ଇନଷ୍ଟିଚ୍ୟୁଶନ୍‌ରୁ ୧୮୭୪ ଖ୍ରୀଷ୍ଟାବ୍ଦରେ ଦର୍ଶନ ଶାସ୍ତ୍ରରେ ଏମ୍. ଏ. ପାଶ୍ କଲେ । ପରେ କେତେ ମାସ କଲକତା ଉପକଣ୍ଠରେ କୌଣସି ବିଦ୍ୟାଳୟରେ ଶିକ୍ଷକତା କରିବା ଉତ୍ତାରେ ସରକାରୀ ଚାକରୀ ନେଇ କଟକ ଗଲେ । କଟକ ଯିବା ପ୍ରାକ୍‌କାଳରେ ଏହାଙ୍କର ବିବାହ ହେଲା । ସେଠାରେ ସେ କେତେବର୍ଷ ଜିଲ୍ଲା ହାଇସ୍କୁଲର ଏଫ୍. ଏ. ଶ୍ରେଣୀରେ ଦର୍ଶନଶାସ୍ତ୍ର ଅଧ୍ୟାପନା କରୁଥିଲେ । କଟକରୁ ବଦଳି ହୋଇ ସେ କଲକତା ସଂସ୍କୃତ କଲେଜିଏଟ୍ ସ୍କୁଲ୍‌କୁ ଆସିଲେ । ଏହି ସ୍କୁଲର କେଉଁ ଶିକ୍ଷକ ପଦରେ ସେ ଆସିଥିଲେ ତାହା ଜଣା ଯାଇନାହିଁ । କିଛିକାଳ ହିନ୍ଦୁ ଓ ହେୟାର ସ୍କୁଲରେ ମଧ୍ୟ ସେ ପ୍ରଧାନଶିକ୍ଷକର କାମ କରିଥିଲେ । ଏହିପରି ବଙ୍ଗ ଦେଶରେ ବିଭିନ୍ନ ସ୍ଥାନରେ ସରକାରୀ ସ୍କୁଲରେ ପ୍ରଧାନ ଶିକ୍ଷକର କାର୍ଯ୍ୟ କରି ୧୯୦୧ ଖ୍ରୀଷ୍ଟାବ୍ଦରେ ସେ ସରକାରୀ କାର୍ଯ୍ୟରୁ ଅବସର ଗ୍ରହଣ କଲେ ।

ପରେ ଆର୍ଥିକ ପ୍ରୟୋଜନ ହେତୁ ସେ କଲକତାରେ ସିଟି ସ୍କୁଲ ପ୍ରମୁଖ ଅନେକ ସ୍କୁଲରେ ପ୍ରଧାନ ଶିକ୍ଷକର କାର୍ଯ୍ୟ କରିଥିଲେ । ୧୯୩୦ ଖ୍ରୀଷ୍ଟାବ୍ଦରେ କଲକତାରେ ତାଙ୍କର ମୃତ୍ୟୁ ହେଲା ।

ହରନାଥ ଅତ୍ୟନ୍ତ ଶାନ୍ତ ପ୍ରକୃତିର ଲୋକ ଥିଲେ । ବେଶି ସମୟ ସେ ନୀରବ ରହୁଥିଲେ । ଆତ୍ମିକ ବଳ ଥିଲା ତାଙ୍କର ଅସାଧାରଣ । ଅନେକ ପାରିବାରିକ ବିପର୍ଯ୍ୟୟ ସମୟରେ ମଧ୍ୟ ତାଙ୍କୁ ବିଚଳିତ ହେବାର ଦେଖା-ଯାଇନଥିଲା । ୧୯୨୭ ଖ୍ରୀଷ୍ଟାବ୍ଦରେ ତାଙ୍କ ସ୍ତ୍ରୀଙ୍କର ମୃତ୍ୟୁ ହେଲା । ସେତେବେଳେ ତାଙ୍କୁ କେବଳ ମୃତ ଦେହ ପାଖକୁ ଆସି ପ୍ରାର୍ଥନା କରି ଚାଲିଯିବାର ଦେଖାଯାଇଥିଲା ।

ଊନବିଂଶ ଶତାବ୍ଦୀର ମଧ୍ୟଭାଗରେ ଯେତେବେଳେ ବହୁ ଶିକ୍ଷିତ ବ୍ୟକ୍ତି ବ୍ରାହ୍ମସମାଜ ପ୍ରତି ଆକୃଷ୍ଟ ହୋଇଥିଲେ, ହରନାଥ ମଧ୍ୟ ସେତେବେଳେ ବ୍ରାହ୍ମସମାଜକୁ ଆସିଲେ । କେଶବଚନ୍ଦ୍ରଙ୍କ ପ୍ରତି ତାଙ୍କର ପ୍ରଗାଢ଼ ଶ୍ରଦ୍ଧା ଥିଲା । କେଶବଙ୍କ ମଧ୍ୟରେ ଯେ କୌଣସି ଦୋଷତ୍ରୁଟି ଥାଇପାରେ, ତାହା ସେ କୌଣସି ଦିନ ମନରେ ଆଣିପାରି ନାହାନ୍ତି । ପୁଣି ସାଧାରଣ ବ୍ରାହ୍ମସମାଜର ଉଦ୍ୟୋକ୍ତାମାନଙ୍କ ମଧ୍ୟରୁ କାହା ପ୍ରତି ତାଙ୍କର ବିରୁଦ୍ଧଭାବ ନଥିଲା । ଶିବନାଥ

ଶାସ୍ତ୍ରୀ ପ୍ରଭୃତି ମହାଶୟମାନଙ୍କ ସଙ୍ଗରେ ତାଙ୍କର ଗଭୀର ପ୍ରୀତି ସମ୍ପର୍କ ଥିଲା । ହେରମ୍ବ ଚନ୍ଦ୍ର ମୈତ୍ର ତାଙ୍କ ଶ୍ରେଷ୍ଠ ଭାଇତୁଲ୍ୟ ଥିଲେ ।

ପ୍ରଥମେ ପ୍ରଥମେ ତାଙ୍କ ସ୍ତ୍ରୀ ଓ ପୁତ୍ର କନ୍ୟାମାନେ ବ୍ରାହ୍ମସମାଜର ଉପାସନାରେ ନିୟମିତ ଭାବେ ଯୋଗଦାନ କରୁଥିଲେ, କିନ୍ତୁ ପରେ କ୍ରମଶଃ ସେମାନେ ବ୍ରାହ୍ମସମାଜରୁ ବିଚ୍ଛିନ୍ନ ହୋଇ ପଡ଼ିଲେ । ବର୍ତ୍ତମାନ ତାଙ୍କ ବଂଶଧରମାନଙ୍କ ମଧ୍ୟରେ କେବଳ ଜଣେ ଦୌହିତ୍ର-ଶ୍ରୀ ସୁନୀଳକୃଷ୍ଣ ବାଗଚୀ ବ୍ରାହ୍ମସମାଜ ସହିତ ଯୁକ୍ତ ଅଛନ୍ତି ।

## (ଖ) ସ୍ୱର୍ଗୀୟ ପ୍ୟାରୀମୋହନ ଆଚାର୍ଯ୍ୟ :—

କଟକ ଜିଲ୍ଲାର ସାଲେପୁର ଥାନା ଅନ୍ତର୍ଗତ କୁଆଁପାଳ ନାମକ ଏକ ବଡ଼ ଗ୍ରାମର ନିକଟବର୍ତ୍ତୀ ପଶୁଲୁଣ୍ଡା ନାମକ ଏକ କ୍ଷୁଦ୍ର ଗ୍ରାମରେ ୧୮୫୧ ଖ୍ରୀଷ୍ଟାବ୍ଦର ଶ୍ରାବଣ ମାସରେ ପ୍ୟାରୀମୋହନ ପିତାଳୟରେ ଜନ୍ମଗ୍ରହଣ କରିଥିଲେ । ପିତା ଭୁବନମୋହନ ଆଚାର୍ଯ୍ୟ କଟକ ଅଦାଲତରେ ଓକିଲ ଥିଲେ । ଜ୍ୟେଷ୍ଠପୁତ୍ର ପ୍ୟାରୀମୋହନଙ୍କ ପରେ ଭୁବନମୋହନଙ୍କର ଆହୁରି ଦୁଇଟି ପୁତ୍ର ସନ୍ତାନ ହେଲେ । ମଧ୍ୟମ ଦ୍ୱାରକାନାଥ ଆଚାର୍ଯ୍ୟ ମୁକ୍ତାର ଓ କନିଷ୍ଠ ଚନ୍ଦ୍ରମୋହନ ଆଚାର୍ଯ୍ୟ ଡାକ୍ତର ହୋଇଥିଲେ ।

କୁଆଁପାଳ ଗ୍ରାମର ପାଠଶାଳାରେ ପ୍ୟାରୀମୋହନଙ୍କର ପାଠାରମ୍ଭ ହେଲା । ସେ କାଳରେ ଏହି ପାଠଶାଳାଗୁଡ଼ିକ ପରବର୍ତ୍ତୀକାଳର ନିମ୍ନପ୍ରାଥମିକ ଓ ଉଚ୍ଚ ପ୍ରାଥମିକ ପାଠଶାଳା ପରି ନଥିଲା । ତତ୍କାଳୀନ ପାଠଶାଳାଗୁଡ଼ିକରେ ପଠିତବ୍ୟ ବିଷୟ ଓ ପାଠରମାନ ସର୍ବତ୍ର ସମାନ ନଥିଲା । ଅନେକ ବିଦ୍ୟାଳୟରେ ବଙ୍ଗଳା ଭାଷାରେ ଶିକ୍ଷାରମ୍ଭ ହେଉଥିଲା । ତଦାନୀନ୍ତନ ସ୍କୁଲର ଡେପୁଟୀ ଇନସ୍‌ପେକ୍ଟର କୈଳାସ ଚନ୍ଦ୍ର ତର୍କାଳଙ୍କାର (ପରବର୍ତ୍ତୀକାଳରେ କଟକର ପ୍ରସିଦ୍ଧ ଓକିଲ ପ୍ରିୟନାଥ ଚଟାର୍ଜୀଙ୍କ ପିତା) ଈଶ୍ୱର ଚନ୍ଦ୍ର ବିଦ୍ୟାସାଗରଙ୍କ ବଙ୍ଗଳା ବର୍ଣ୍ଣ-ପରିଚୟର ଯେଉଁ ଓଡ଼ିଆ ଅନୁବାଦ କରିଥିଲେ, ସେହି ବହି ଖଣ୍ଡିକରେ ପ୍ରଧାନତଃ ବାଳକମାନଙ୍କର ଶିକ୍ଷାରମ୍ଭ ହେଉଥିଲା । କୌଣସି କୌଣସି ପାଠଶାଳାରେ ଇଂରାଜୀ ଶିକ୍ଷାର ବ୍ୟବସ୍ଥା ମଧ୍ୟ କିଛି କିଛି

ଥିଲା । ପ୍ୟାରୀମୋହନ ଏହିଭଳି ଗୋଟିଏ ପାଠଶାଳାରେ ବାଲ୍ୟଶିକ୍ଷା ସମାପ୍ତ କରି ୧୨ ବର୍ଷ ବୟସରେ କଟକ ଆସି ଉଚ୍ଚଇଂରାଜୀ ଶିକ୍ଷାର ଏକମାତ୍ର ବିଦ୍ୟାଳୟ-କଟକ ଜିଲ୍ଲା-ସ୍କୁଲରେ ଭର୍ତ୍ତି ହେଲେ । ଏହି ଜିଲ୍ଲା-ସ୍କୁଲରେ ପରେ ଏଫ୍. ଏ. ପଢିବା ପାଇଁ ଦୁଇଟି ଶ୍ରେଣୀ ଯୁକ୍ତ ହୋଇଥିଲେ ମଧ୍ୟ ଏହା କିଛିକାଳ କଟକ ଜିଲ୍ଲାସ୍କୁଲ ନାମରେ ଆଖ୍ୟାତ ହେଉଥିଲା । ପରେ ୧୮୭୮ ଖ୍ରୀଷ୍ଟାବ୍ଦରେ କଲେଜ ବିଭାଗ ପ୍ରଥମ ଶ୍ରେଣୀକୁ ଉନ୍ନୀତ ହୋଇ ରେଭେନ୍‌ଶା କଲେଜ ନାମରେ ପରିଚିତି ଲାଭ କଲା । କଟକ ଜିଲ୍ଲା-ସ୍କୁଲଟି ତଦବଧି କଲେଜିଏଟ୍ ସ୍କୁଲ ନାମରେ ଅଭିହିତ ହୋଇ ଆସୁଅଛି ।

ଏହି ସ୍କୁଲରେ ପଢିବା ବେଳେ ପ୍ୟାରୀମୋହନଙ୍କ ଚରିତ୍ରରେ ବିଶିଷ୍ଟ ଲକ୍ଷଣଗୁଡ଼ିକର ଛାତ୍ରସମାଜରେ ସୁପରିଜ୍ଞାତ ହୋଇଉଠିଥିଲା । ଛାତ୍ରାବସ୍ଥାରୁ ଦେଖାଯାଇଥିଲା ଯେ, ସେ ଚିନ୍ତାଶୀଳ, ସର୍ବଦା ଯେପରି କିଛି ଭାବୁଛନ୍ତି । ସେଥିପାଇଁ ସହାଧ୍ୟାୟୀମାନଙ୍କ ମଧ୍ୟରେ ଧାରଣା ଜନ୍ମିଥିଲା ଯେ ପ୍ୟାରୀମୋହନ ଅନ୍ୟମନସ୍କ ବା ଖିଆଲିମଣିଷ । ସ୍ୱଶ୍ରେଣୀରେ ଉଚ୍ଚସ୍ଥାନ ଅଧିକାର କରିନପାରିଲେ ମଧ୍ୟ ସେ ତୀକ୍ଷ୍ଣ ମେଧାବଳରେ ବାର୍ଷିକ ପରୀକ୍ଷାରେ କୌଣସିମତେ ଉତ୍ତୀର୍ଣ୍ଣ ହୋଇ ଯାଉଥିଲେ । ବାଲ୍ୟକାଳରୁ ସେ ଭାବୁକ ବ୍ୟକ୍ତିଭଳି ନିର୍ଜନତା ପ୍ରିୟ ଥିଲେ । ଅବକାଶ ସମୟରେ ଯେତେବେଳେ ଅନ୍ୟ ଛାତ୍ରମାନେ ଖେଳକୁଦ ନେଇ ସମସ୍ତ କଟାଉଥିଲେ, ସେତେବେଳେ ପ୍ୟାରୀମୋହନ ତାଙ୍କ ପ୍ରିୟ ବନ୍ଧୁମାନଙ୍କ ସହିତ ନିର୍ଜନରେ ବସି ପୁସ୍ତକ ପାଠ ଅଥବା ନାନା-ବିଷୟରେ ଆଲୋଚନା କରୁଥିଲେ । ସମଭାବାପନ୍ନ ବନ୍ଧୁଗଣଙ୍କ ବ୍ୟତୀତ ସେ ଅନ୍ୟ କୌଣସି ସହପାଠୀ ସହିତ କେବେହେଲେ ମିଶୁନଥିଲେ । ଛାତ୍ର ଓ ଶିକ୍ଷକ ସମସ୍ତେ ତାଙ୍କୁ ସତ୍ୟପ୍ରିୟ ଓ ସ୍ପଷ୍ଟବକ୍ତା ବୋଲି ଜାଣିଥିଲେ । ଅନୁରୋଧ, ଉପରୋଧରେ ମଧ୍ୟ ଏହି ବାଳକକୁ ସତ୍ୟଭ୍ରଷ୍ଟ ହେବାର ଦେଖା-ଯାଇନାହିଁ । ଏପରି ମଧ୍ୟ ଦେଖାଯାଇଛି ଯେ, ସେ ବରଂ କଠୋର ଦଣ୍ଡ ସ୍ୱୀକାର କରିଛନ୍ତି, ତଥାପି ଶିକ୍ଷକଙ୍କ ଉପରେ ଅନ୍ୟ ଛାତ୍ରମାନେ ଯେତେ-ବେଳେ ସତ୍ୟଗୋପନ ବା ମୌନାବଲମ୍ବନ କରିଛନ୍ତି, ସେ ସେତେବେଳେ ସ୍ପଷ୍ଟ ସତ୍ୟକଥା କହିବାକୁ କୁଣ୍ଠିତ ହୋଇନାହାନ୍ତି । ୧୮୭୯ ଖ୍ରୀଷ୍ଟାବ୍ଦରେ ବିଶ୍ୱବିଦ୍ୟାଳୟର ପ୍ରବେଶିକା ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ପ୍ୟାରୀମୋହନ କଟକ ହାଇସ୍କୁଲ ସଂଶ୍ଳିଷ୍ଟ କଲେଜ ବିଭାଗର ପ୍ରଥମ ବାର୍ଷିକ ଶ୍ରେଣୀରେ ଭର୍ତ୍ତି ହେଲେ । ପୂର୍ବରୁ ଆଗତ ପ୍ରବେଶିକା ପରୀକ୍ଷାରେ ଉତ୍ତୀର୍ଣ୍ଣ ମଧୁସୂଦନଙ୍କ ସହିତ

ଏଠାରେ ତାଙ୍କର ପ୍ରଥମ ପରିଚୟ ହେଲା ଏବଂ ସେହି ପରିଚୟ ଅଚିରେ ଗାଢ଼ତର ହୋଇ ପରମାତ୍ମୀୟତାର ଆକାର ଧାରଣ କଲା । ଅଧ୍ୟାପକ ହରନାଥ ଭଟ୍ଟାଚାର୍ଯ୍ୟଙ୍କ ପ୍ରଭାବରେ ଏମାନେ ଉଭୟେ ବ୍ରାହ୍ମଧର୍ମ ଆଡ଼କୁ ଆକୃଷ୍ଟ ହେଲେ । ଅବକାଶ ସମୟରେ ଏହି ଦୁଇବନ୍ଧୁ ଅନ୍ୟଚ୍ଛାତ୍ରମାନଙ୍କ ପରି ଇତସ୍ତତଃ ବୁଲିବୁଲି ନକରି ନିଭୃତରେ ବସି ନାନା ପ୍ରସଙ୍ଗ, ବିଶେଷତଃ ଆଧ୍ୟାତ୍ମିକ ବିଷୟରେ ଆଳାପ-ଆଲୋଚନା କରୁଥିଲେ ।

"ଉତ୍କଳ ପୁତ୍ର" ନାମକ ଗୋଟିଏ ଓଡ଼ିଆ ସମ୍ବାଦପତ୍ରର ନାମ ସେ ଯୁଗରେ ଓଡ଼ିଶାର ଅନେକ ଶୁଣିଥିବେ । ତତ୍ପୂର୍ବରୁ ପ୍ରକାଶିତ ଶିଶୁ "ଉତ୍କଳ ଦୀପିକା"ର କଳେବର ଅତି କ୍ଷୁଦ୍ର—ମାତ୍ର ୪ ପୃଷ୍ଠା ଥିଲା । ଏହି ଉତ୍କଳ-ଦୀପିକା ଗୌରୀଶଙ୍କର ରାୟ କର୍ତ୍ତୃକ ସାପ୍ତାହିକ ପତ୍ର ରୂପେ ପ୍ରକାଶିତ ହେଉଥିଲା । ସେଥିରେ ସମସ୍ତ ବିଷୟ ପ୍ରକାଶିତ ହୋଇପାରୁ ନଥିଲା ବୋଲି, ପ୍ୟାରୀମୋହନ ପ୍ରମୁଖ କେତେଜଣ ଉତ୍ସାହୀ ଯୁବକ ଆଉ ଖଣ୍ଡିଏ ପାକ୍ଷିକ ପତ୍ରିକା ପ୍ରକାଶର ଆବଶ୍ୟକତା ଅନୁଭବ କଲେ ଏବଂ ଅର୍ଥ ସଂଗ୍ରହ କରି ଛାତ୍ରାବସ୍ଥାରେ ହିଁ "ଉତ୍କଳ ପୁତ୍ର" ପତ୍ରିକା ୧୮୭୧ ସାଲରେ ପ୍ରକାଶ କରିବାକୁ ସାହସୀ ହୋଇଥିଲେ । ଉଦ୍ୟୋକ୍ତାମାନଙ୍କ ମଧ୍ୟରେ ପ୍ୟାରୀମୋହନ ଓ ମଧୁସୂଦନ ଏବଂ ପଣ୍ଡିତ ଗୋବିନ୍ଦ ରଥ ଅଗ୍ରଣୀ ଥିଲେ । ପ୍ୟାରୀମୋହନ ଏ ପତ୍ରର ସମ୍ପାଦକ ଓ ପ୍ରଧାନ ଉଦ୍ୟୋକ୍ତା ରୂପେ କାର୍ଯ୍ୟ ପରିଚାଳନା କରୁଥିଲେ । ଏହି ପତ୍ରିକାରେ ପ୍ରକାଶିତ ଗୋଟିଏ ପ୍ରବନ୍ଧ ଯୋଗୁଁ ତାଙ୍କୁ କଲେଜ ପରିତ୍ୟାଗ କରିବାକୁ ପଡ଼ିଥିଲା । ଘଟଣାଟି ଏଠାରେ ସଂକ୍ଷେପରେ ବିବୃତ ହେଲା :—

୧୮୮୫ ଖ୍ରୀଷ୍ଟାବ୍ଦରେ ସ୍ଥାନୀୟ ସ୍ୱାୟତ୍ତ ଶାସନ ପ୍ରଣାଳୀ (Local Self-Government) ପ୍ରବର୍ତ୍ତିତ ହେବା ପୂର୍ବରୁ କଟକ ନଗରର ସ୍ୱାସ୍ଥ୍ୟ ସଂରକ୍ଷଣ ଓ ଆବର୍ଜନା ପରିଷ୍କରଣର ଭାର ଜିଲ୍ଲା ମାଜିଷ୍ଟ୍ରେଟ୍‌ଙ୍କ ଉପରେ ନ୍ୟସ୍ତ ଥିଲା । ସେ କାଳରେ 'ଫେରି ଫଣ୍ଡ' ଅର୍ଥାତ୍ କାଠଯୋଡ଼ି ଓ ମହାନଦୀର ପାରଘାଟ ଗୁଡ଼ିକର ଇଜାରା ପ୍ରଭୃତିରୁ ପ୍ରାପ୍ତ ଆୟ ଦ୍ୱାରା ଉକ୍ତ ବ୍ୟୟ ନିର୍ବାହିତ ହେଉଥିଲା । କଟକର ତଦାନୀନ୍ତନ ମାଜିଷ୍ଟ୍ରେଟ୍ ଓ କଲେକ୍ଟରଙ୍କ ତତ୍ତ୍ୱାବଧାନ ଅଭାବରୁ ସହର ନିତାନ୍ତ ଆବର୍ଜନାପୂର୍ଣ୍ଣ ହୋଇପଡ଼ିବାରୁ ପ୍ୟାରୀମୋହନ

ଏହାର ପ୍ରତିକାର ପାଇଁ "ଉତ୍କଳ ପୁତ୍ର" ପତ୍ରିକାରେ 'ଦରଖାସ୍ତ ଜୁଡ଼ସ୍ୱାକ' ଅର୍ଥାତ୍ "ଜୋତାର ଆବେଦନ' ଶୀର୍ଷକ ଗୋଟିଏ ପ୍ରବନ୍ଧ ପ୍ରକାଶ କଲେ । ଅତି ତେଜସ୍ୱିନୀ ଭାଷାରେ କଟକ ସହରର ଏହି ଶୋଚନୀୟ ଦୁରବସ୍ଥାର କଥା ଉକ୍ତ ପ୍ରବନ୍ଧରେ ଲିଖିତ ହୋଇଥିଲା ।

ଏହି ପ୍ରବନ୍ଧର ଉଗ୍ରତାରେ ମାଜିଷ୍ଟ୍ରେଟ୍ ଅତିଶୟ କ୍ରୁଦ୍ଧ ହୋଇ କଟକ ଉଚ୍ଚ ଇଂରାଜୀ ସ୍କୁଲର ହେଡ୍‌ମାଷ୍ଟର ଚଣ୍ଡୀଚରଣ ବନ୍ଦୋପାଧ୍ୟାୟଙ୍କୁ ଉକ୍ତ ପ୍ରବନ୍ଧ-ଲେଖକ ଛାତ୍ରକୁ ସ୍କୁଲରୁ ବହିଷ୍କାର କରିଦେବା ପାଇଁ ଆଦେଶ ଦେଲେ । ଚଣ୍ଡୀବାବୁ ଉକ୍ତ ବହିଷ୍କରଣରୁ ରକ୍ଷା କରିବାର ଉପାୟ ସ୍ୱରୂପ ପ୍ୟାରୀମୋହନଙ୍କୁ ସାହେବଙ୍କ ନିକଟରେ କ୍ଷମା ପ୍ରାର୍ଥନା କରିବାକୁ ଅନୁରୋଧ କଲେ । କିନ୍ତୁ ସ୍ୱାଧୀନଚେତା ସତ୍ୟପ୍ରିୟ ପ୍ୟାରୀମୋହନ ସେଥିରେ ସମ୍ମତ ନହୋଇ ସ୍ପଷ୍ଟ ଭାଷାରେ କହିଲେ, "ଯାହା ଲେଖା ହୋଇଅଛି, ସେଥିରେ କିଛି ଅଯଥାର୍ଥ କଥା ଅଛିକି ? ତାହା ଯେତେବେଳେ ନାହିଁ ସେତେବେଳେ ମୁଁ କଦାପି କ୍ଷମା ପ୍ରାର୍ଥନା କରିପାରିବି ନାହିଁ ।" ଏହା ଫଳରେ ତାହାଙ୍କୁ ଦ୍ୱିତୀୟ ବାର୍ଷିକ ଶ୍ରେଣୀରୁ ନେବାକୁ ହେଲା ଏବଂ ତାଙ୍କର ଏଫ୍. ଏ. ପରୀକ୍ଷା ଆଉ ଦେବାର ନୋହିଲା ।

ସରକାରୀ ସ୍କୁଲରୁ ବିତାଡ଼ିତ ହେବାରୁ ତାଙ୍କ ମନରେ ଏହି ଭାବ ଦୃଢ଼ ହେବାକୁ ଲାଗିଲା ଯେ, ଏହି ସହରରେ ଆଉ ଗୋଟିଏ ସ୍କୁଲ ହେଲେ ଏମାନଙ୍କର ଏପରି ଯଥେଚ୍ଛାଚାରମୂଳକ ପ୍ରଭାବ ରହିବ ନାହିଁ । ଏହି ଚିନ୍ତାର ବଶବର୍ତ୍ତୀ ହୋଇ ସେ ଗୋଟିଏ ନୂତନ ବିଦ୍ୟାଳୟ ସ୍ଥାପନ କରିବାର ସଙ୍କଳ୍ପ ଅନ୍ତରଙ୍ଗବନ୍ଧୁମାନଙ୍କ ନିକଟରେ ପ୍ରକାଶ କଲେ । କପର୍ଦ୍ଦକଶୂନ୍ୟ ଗୋଟିଏ ଯୁବକର ଏହି ପ୍ରୟାସ ଯେ "ବାମନର ଚନ୍ଦ୍ର ଧାରଣବତ୍" ଉପହସିତ ହେବ, ଏହା ସହଜରେ ଅନୁମେୟ । କିନ୍ତୁ ଦୃଢ଼ଚେତା ପ୍ୟାରୀମୋହନ "Where there is a will, there is a way" —ମନ୍ତ୍ରରେ ଦୀକ୍ଷିତ ହୋଇ ସଙ୍କଳ୍ପିତ କର୍ମରେ ଅଗ୍ରସର ହେଲେ । ଏହି କାର୍ଯ୍ୟରେ ପଣ୍ଡିତ ଗୋବିନ୍ଦ ରଥ ତାଙ୍କର ପ୍ରଧାନ ସହଯୋଗୀ ହେଲେ । ତତ୍କାଳରେ ବକ୍ସିବଜାରବାସୀ କୃପାନିଧି ସାହୁ ନାମକ ଜଣେ ଧନୀ ମହାଜନଙ୍କର ଗୋଟିଏ ପାଠଶାଳା ଥିଲା । ଏହି ପାଠଶାଳାଟିକୁ ପ୍ରଶସ୍ତତର

ଭିତ୍ତିରେ 'ସ୍ଥାପନା କରିବା ଚେଷ୍ଟାରେ ପ୍ୟାରୀମୋହନ ଗୋବିନ୍ଦ ରଥଙ୍କୁ ନେଇ କାର୍ଯ୍ୟାରମ୍ଭ କଲେ । ତାଙ୍କ ଶିକ୍ଷାଦାନ ପ୍ରଣାଳୀରେ ଆକୃଷ୍ଟ ହୋଇ ଅଭିଭାବକମାନେ ସ୍ୱ ସ୍ୱ ସନ୍ତାନମାନଙ୍କୁ ଉକ୍ତ ବିଦ୍ୟାଳୟକୁ ପଠାଇବାକୁ ଲାଗିଲେ । ଛାତ୍ରଦତ୍ତ ବେତନରେ ବିଦ୍ୟାଳୟର ବ୍ୟୟ ଅନ୍ତତଃ କିଛି ପରିମାଣରେ ନିର୍ବାହିତ ହେବ, ଏ ଆଶା ମଧ୍ୟ ଦେଖାଗଲା । ପ୍ୟାରୀମୋହନ ଅଧିକକାଳ ଏହି ସ୍କୁଲର ଶିକ୍ଷକତା କାର୍ଯ୍ୟରେ ଆବଦ୍ଧ ରହିପାରିଲେ ନାହିଁ । ଅର୍ଥାଗମର ଚେଷ୍ଟାରେ ସେ କମିଶନରଙ୍କ ଅଫିସରେ ମାସିକ ୨୫ ଟଙ୍କା ବେତନରେ ଗୋଟିଏ କିରାଣୀ କାର୍ଯ୍ୟ ଗ୍ରହଣ କରି ସେହି ଅର୍ଥ ସାହାଯ୍ୟରେ ସ୍କୁଲର ଅଭାବ ପୂରଣରେ ପ୍ରବୃତ୍ତ ହେଲେ । ବଂଶୀଧର ମହାପାତ୍ର, ଯେ ପରେ ଯାଜପୁର ସ୍କୁଲରେ ବିଖ୍ୟାତ ଶିକ୍ଷକ ହୋଇଥିଲେ, ଏହି ସ୍କୁଲରେ ପ୍ରଥମ ହେଡ୍‌ମାଷ୍ଟର ନିଯୁକ୍ତ ହୋଇଥିଲେ । ୧୮୭୫ ଖ୍ରୀଷ୍ଟାବ୍ଦରେ ଏହି ସ୍କୁଲଟି ଗୋଟିଏ ମଧ୍ୟ ଇଂରାଜୀ ବିଦ୍ୟାଳୟରେ ପରିଣତ ହେଲା ଏବଂ କ୍ରମଶଃ ବର୍ଦ୍ଧିତ ହୋଇ ୪ ବର୍ଷ ପରେ ଅର୍ଥାତ୍ ୧୮୭୯ ଖ୍ରୀଷ୍ଟାବ୍ଦରେ ଗୋଟିଏ ଉଚ୍ଚ ଇଂରାଜୀ ସ୍କୁଲକୁ ଉନ୍ନୀତ ହେଲା । ଏହି ସମୟରେ ବଙ୍ଗ ଦେଶରୁ ବିପିନ ଚନ୍ଦ୍ର ପାଲ ମହାଶୟ (ସ୍ୱଦେଶୀ ଯୁଗର ପ୍ରସିଦ୍ଧ ବାଗ୍ମୀ ଓ ଦେଶ ନେତା ରୂପେ ଯେ ସମଗ୍ର ଭାରତରେ ପରେ ସୁପରିଚିତ ହେଲେ) ଏହି ସ୍କୁଲର ହେଡ୍‌ମାଷ୍ଟର ପଦରେ ନିଯୁକ୍ତ ହୋଇ ଆସିଲେ । ସେତେବେଳେ ତାଙ୍କର ବୟସ ମାତ୍ର ୧୯ ବର୍ଷ । ପ୍ୟାରୀମୋହନ, ମଧୁସୂଦନ ପ୍ରମୁଖ କେତେଜଣ ବନ୍ଧୁଙ୍କ ସାହାଯ୍ୟରେ ସ୍କୁଲ ପାଇଁ କେତେକ ଉପକରଣ ସଂଗ୍ରହ କଲେ । ପ୍ରୟୋଜନ ଅନେକ, ଅଥଚ ସମ୍ବଳ ଏକମାତ୍ର ଦୃଢ଼ ସଂକଳ୍ପ । ପ୍ୟାରୀମୋହନଙ୍କର ଧନବଳ ନଥିଲା, କିନ୍ତୁ ମନୋବଳ ଥିଲା ଅପରିମେୟ । ମନୋବଳ ଦୃଢ଼ ଥିଲେ ଧନର ଅଭାବରେ ସେ କାର୍ଯ୍ୟ ବନ୍ଦ ହୁଏ ନାହିଁ, ଏହାର ଦୃଷ୍ଟାନ୍ତ ଆମ୍ଭେମାନେ ପ୍ୟାରୀମୋହନଙ୍କ ଜୀବନରେ ଦେଖିବାକୁ ପାଉ । ପ୍ୟାରୀମୋହନ କେତୋଟି ବିଦେଶୀୟ ରାଜ୍ୟର ପ୍ରୟୋଜନୀୟ ଜିନିଷପତ୍ର ଯୋଗାଇବାର ଏଜେଣ୍ଟ ହୋଇ କମିଶନ-ଲବ୍ଧ ଯେଉଁ ଅର୍ଥ ପାଉଥିଲେ, ତାହା ମଧ୍ୟ ଏହି ବିଦ୍ୟାଳୟକୁ ପ୍ରଦାନ କରୁଥିଲେ । ସରକାରୀ କିରାଣୀର ମାସିକ ବେତନ ବଢ଼ି ୩୦ ଟଙ୍କା ହେଲା; ନିଜ ପ୍ରୟୋଜନରେ ସାମାନ୍ୟ ଅଂଶ ମାତ୍ର ବ୍ୟୟ କରି ଅବଶିଷ୍ଟ ସେ ସ୍କୁଲକୁ ଦେଇଦିଅନ୍ତି । ଅନ୍ୟର ଦୁଃଖ ଦୂର କରିବା ପାଇଁ ତାଙ୍କ ଅନ୍ତର ସର୍ବଦା ବ୍ୟାକୁଳ ଥିଲା । ନିଜର ପରିଧାନରେ ଜୀର୍ଣ୍ଣବସ୍ତ୍ର, କିନ୍ତୁ

ଅନ୍ୟର ଜୀର୍ଣ୍ଣବସ୍ତ୍ର ବା ବସ୍ତ୍ରାଭାବ ଦେଖିଲେ ସେ କେବେ କେବେ ନୂତନ ବସ୍ତ୍ର କିଣି ଦେଉଥିଲେ।

ଉତ୍କଳର ସୁପରିଚିତ ସାହିତ୍ୟିକ ଫକୀରମୋହନ ସେନାପତି ମହାଶୟ ଏହି ସମୟରେ ଓଡ଼ିଶାର ଗଡ଼ଜାତ ଦେଶୀୟ ରାଜ୍ୟ 'ଡମପଡ଼ା'ର ମ୍ୟାନେଜର ଥିଲେ। ରାଜସ୍ୱ ବୃଦ୍ଧି ହେତୁ ରାଜା ଓ ପ୍ରଜା ମଧ୍ୟରେ ବିରୋଧ ଘଟିବା ଫଳରେ ଫକୀରମୋହନ ମ୍ୟାନେଜର ପଦ ପରିତ୍ୟାଗ କଲେ। ସେତେବେଳେ 'ଡମପଡ଼ା' ରାଜକୁମାରଙ୍କର ଗୃହଶିକ୍ଷକ ପ୍ୟାରୀମୋହନ ମାସିକ ଅର୍ଦ୍ଧଶତ ମୁଦ୍ରା ବେତନରେ ଏହି ମ୍ୟାନେଜର ପଦରେ ନିଯୁକ୍ତ ହେଲେ ଏବଂ ତାଙ୍କ ବନ୍ଧୁ ମଧୁସୂଦନ ଉକ୍ତ ରାଜକୁମାର ବ୍ରଜେନ୍ଦ୍ର କୁମାର ମାନସିଂହଙ୍କ ଗୃହଶିକ୍ଷକ ପଦ ଗ୍ରହଣ କଲେ। 'ଡମପଡ଼ା'ର ଗଡ଼ଜାତ ରାଜା ରଘୁନାଥ ମାନସିଂହ ଜଣେ ଯଥାର୍ଥ ଗୁଣଗ୍ରାହୀ ପୁରୁଷ ଥିଲେ। ଉତ୍କଳର ତିନ ସୁପୁତ୍ର—ରାଧାନାଥ, ଫକୀରମୋହନ ଓ ମଧୁସୂଦନ ପ୍ରଥମ ଜୀବନରେ ଏହି ମହାନୁଭବ ରାଜାଙ୍କର ବିଶେଷ ପୃଷ୍ଠପୋଷକତା ଲାଭ କରିଥିଲେ। ୧୮୮୦ ଖ୍ରୀଷ୍ଟାବ୍ଦରୁ ପ୍ୟାରୀମୋହନଙ୍କର ଏକ ହସ୍ତରେ ମ୍ୟାନେଜରର କାର୍ଯ୍ୟ ଓ ଅନ୍ୟ ହସ୍ତରେ କଟକ ଏକାଡେମିର (ହାଇସ୍କୁଲ) ପରିଚାଳନା ଚାଲିବାକୁ ଲାଗିଲା। ମ୍ୟାନେଜର କାର୍ଯ୍ୟରେ ଉପାର୍ଜିତ ଅର୍ଥ କଟକ ଏକାଡେମି ବିଦ୍ୟାଳୟ ପାଇଁ ବ୍ୟୟିତ ହେଉଥିଲା। 'ଡମପଡ଼ା'ର ରାଜା ଏହି ସ୍କୁଲର ପ୍ରଧାନ ପୃଷ୍ଠପୋଷକ ହୋଇଥିଲେ। କିନ୍ତୁ ଏହି ହାଇସ୍କୁଲର ପ୍ରଥମ ବର୍ଷ ଗୋଟିଏ ମାତ୍ର ଛାତ୍ର ପ୍ରବେଶିକା ପରୀକ୍ଷାରେ ଉତ୍ତୀର୍ଣ୍ଣ ହେବାପରେ ପ୍ୟାରୀମୋହନ ଅକାଳରେ ଇହଧାମରୁ ଅନ୍ତର୍ହିତ ହେଲେ।

ପୂର୍ବରୁ କହିଛି ପ୍ୟାରୀମୋହନ ଅତ୍ୟନ୍ତ ସ୍ୱାଧୀନଚେତା ଥିଲେ। ଅନେକ ପଦସ୍ଥ କର୍ମଚାରୀ ମଧ୍ୟ ତାଙ୍କର ଏହି ଅଖଣ୍ଡ ସ୍ୱଭାବ ଓ ତେଜସ୍ୱିତା ଦେଖି ତାଙ୍କୁ ଭୟକରି ଚଳୁଥିଲେ। କୌଣସି ବ୍ୟକ୍ତି ଅତ୍ୟାଚାରିତ ହେଉଅଛି ଦେଖିଲେ ସେ ତାର ପ୍ରତିବିଧାନ ପାଇଁ ବ୍ୟାକୁଳ ହୋଇ ଉକ୍ତ ବ୍ୟକ୍ତିକୁ ସାହାଯ୍ୟ ଦେଇ ଉତ୍ସାହିତ କରୁଥିଲେ।

ବାଙ୍କୀର ତହସିଲଦାରଙ୍କ ଅତ୍ୟାଚାର ବିରୁଦ୍ଧରେ ପଣ୍ଡିତ ଗୋବିନ୍ଦ ରଥ ଯେଉଁ ମକଦ୍ଦମା କରିଥିଲେ, ତାହା ତତ୍କାଳରେ ଏକ ଆନ୍ଦୋଳନ

ସୃଷ୍ଟି କରିଥିଲା । 'ଉତ୍କଳ ଦୀପିକା'ର ଅନେକ ସ୍ତମ୍ଭ ଏହି ମକଦ୍ଦମା ସମ୍ବାଦରେ ପୂର୍ଣ୍ଣ ହୋଇ ଯାଉଥିଲା । ପ୍ୟାରୀମୋହନ ସ୍ୱବନ୍ଧୁ ଚୌଦ୍ଦ ରଥଙ୍କ ପକ୍ଷ ସମର୍ଥନ କରି ଉମପଡ଼ାରୁ କି ଭାବରେ ତାଙ୍କୁ ଉତ୍ସାହିତ କରୁଥିଲେ, ନିମ୍ନୋଦ୍ଧୃତ ପତ୍ରଟିରୁ ତାହା ଜଣାଯାଏ :—

"ରଥେ !

ଯେଉଁ କାର୍ଯ୍ୟରେ ପ୍ରବୃତ୍ତ ହୋଇଅଛ, ସାବଧାନ ହୋଇ କରିବ । ସାକ୍ଷୀମାନେ ଯେପରି ଘଟଣାର ଯଥାର୍ଥ ବର୍ଣ୍ଣନା ଦିଅନ୍ତି, ସେ ବିଷୟରେ ଚେଷ୍ଟାରେ ତ୍ରୁଟି କରିବ ନାହିଁ । (ବିଭାଗୀୟ) କମିଶନର ସାହେବ ଯେ ମକଦ୍ଦମା ସ୍ଥାନାନ୍ତରିତ କରିବାକୁ ଅସ୍ୱୀକୃତ ହୋଇଅଛନ୍ତି, ତାହା ଜାଣି ମୁଁ କିଞ୍ଚିତ ଶଙ୍କିତ ହୋଇଅଛୁ । ସାବଧାନ, ସାବଧାନ ! "ଯତୋ ଧର୍ମସ୍ତତୋ-ଜୟଃ" ଏକଥା ସ୍ଥିର ଜାଣି ଯଥାସାଧ୍ୟ ଚେଷ୍ଟା କରିଯାଅ । ଭଗବାନ ଯାହା କରିବେ ତାହାହିଁ ହେବ । ସମସ୍ତ ସମ୍ବାଦପତ୍ରକୁ ଏ ସମ୍ବାଦ ପଠାଅ । କଲିକତାକୁ 'ମିରର' ଓ 'ଷ୍ଟେଟସ୍‌ମ୍ୟାନ୍' ଏହି ଦୁଇଟିରେ ଟେଲିଗ୍ରାମ୍ ଦ୍ୱାରା ସମ୍ବାଦ ଦିଅ ଯେ, ବାଙ୍କୀର ଡେପୁଟି ମାଜିଷ୍ଟ୍ରେଟ୍ (ତହସିଲଦାରଙ୍କ ପକ୍ଷା-ବଲମ୍ବନ କରି) ଅତ୍ୟାଚାରିତମାନଙ୍କୁ ଭୟ ପ୍ରଦର୍ଶନ କରିବାରୁ କେତେଜଣ ବାଙ୍କୀ-ଅଧିବାସୀ କମିଶନର ସାହେବଙ୍କ ନିକଟରେ ଆବେଦନ କରିଛନ୍ତି ଯେ (ନ୍ୟାୟ ବିଚାରର ଅନୁରୋଧରେ) ମକଦ୍ଦମାଟି ସ୍ଥାନାନ୍ତରିତ କରି ବିଚାର କରାହେଉ; କିନ୍ତୁ କମିଶନର ତାହା ନକରି-ସାକ୍ଷୀ ତଲବ କରିଛନ୍ତି, ଇତ୍ୟାଦି । ମଧୁ ପ୍ରଭୃତିଙ୍କ ସହିତ ପରାମର୍ଶ କରି ଓ ସାବଧାନ ହୋଇ ତାରରେ (ଟେଲିଗ୍ରାମ୍) ମୋତେ ମଧ୍ୟ ଖବର ଦିଅ । ସନ୍ଧ୍ୟା ପରେ ତାରରେ ଖବର ଦେଲେ ଟଙ୍କାରେ ୩୨ଟି ଶବ୍ଦ ଯିବ । ସମସ୍ତ ସମ୍ବାଦ ଜଣାଅ ।

ତୁମରି
୨୦-୮-୮୦                    ପ୍ୟାରୀମୋହନ"

କଟକରେ ଅବସ୍ଥାନ କରିବା ସମୟରେ ସେ ଅନେକ ସମୟ ଶିକ୍ଷା, ସମାଜ ସଂସ୍କାର ଓ ସତ୍ୟ ଧର୍ମାନୁରାଗ ପ୍ରଭୃତି ବିଷୟରେ ଓଜସ୍ୱିନୀ ଭାଷାରେ ବକ୍ତୃତା ପ୍ରଦାନ କରୁଥିଲେ । ରାଜନୀତି ଚର୍ଚ୍ଚା ସେତେବେଳେ ଓଡ଼ିଶାର ଜନସାଧାରଣଙ୍କ ମଧ୍ୟରେ ପ୍ରଚଳିତ ନଥିଲା । କିନ୍ତୁ ପ୍ୟାରୀମୋହନ ଯେ

ଏହାର ମର୍ମଜ୍ଞ ଥିଲେ, ତାଙ୍କର କୌଣସି କୌଣସି କାର୍ଯ୍ୟରୁ ଏହାର ପ୍ରମାଣ ମିଳେ ।

ପରୋପକାର କାର୍ଯ୍ୟରେ ପ୍ୟାରୀମୋହନ କେବଳ ଅର୍ଥଦାନ କରି କ୍ଷାନ୍ତ ହେଉନଥିଲେ, ଆର୍ତ୍ତ ଓ ରୋଗାତୁର ଲୋକର ସେବାରେ ମଧ୍ୟ ନିଜକୁ ଅକୁଣ୍ଠ ଭାବରେ ନିୟୋଗ କରୁଥିଲେ । ତାଙ୍କ ମୃତ୍ୟୁର ଅଳ୍ପକାଳ ପୂର୍ବରୁ ପୁରୀ ସହରରେ କଲେରା ରୋଗର ପ୍ରାଦୁର୍ଭାବ ହୋଇଥିଲା । ପ୍ୟାରୀମୋହନ ଶୁଣିଲେ ଯେ ଜଗନ୍ନାଥ ସଡ଼କରେ ଶତ ଶତ ଯାତ୍ରୀ ଅଶକରକ୍ଷିତ ଓ ଅସହାୟ ଅବସ୍ଥାରେ ପ୍ରାଣ ହରାଉଛନ୍ତି । ଏହା ଶୁଣି ପ୍ୟାରୀମୋହନ ଅବିଳମ୍ବେ ଔଷଧ ପ୍ରଭୃତି ଏବଂ ସହଯୋଗୀ ଲୋକ ଘେନି ଜଗନ୍ନାଥ ସଡ଼କ ଦେଇ ପୁରୀ ଅଭିମୁଖେ ଯାତ୍ରା କଲେ ଓ ଯଥାସାଧ୍ୟ କଲେରା ରୋଗୀମାନଙ୍କର ସେବା କରିବାକୁ ଲାଗିଲେ ।

ସ୍ୱଦେଶର ଭାଷା ଓ ସାହିତ୍ୟର ଉନ୍ନତି ପାଇଁ ପ୍ୟାରୀମୋହନ ସର୍ବଦା ବ୍ୟଗ୍ର ରହୁଥିଲେ । 'ଉତ୍କଳ ପୁତ୍ର' ପ୍ରାୟ ୪ ବର୍ଷ ସେ ସମ୍ପାଦନା କରିଥିଲେ । 'ଉତ୍କଳ ପୁତ୍ର'ରେ ଓଜସ୍ୱିନୀ ଭାଷା ସେ ସମୟରେ ଅନେକଙ୍କୁ ଉତ୍ସାହିତ ଓ ଉତ୍ତେଜିତ କରୁଥିଲା । କିନ୍ତୁ ଗ୍ରାହକ ସଂଖ୍ୟା ଯଥେଷ୍ଟ ନହେବାରୁ ଅର୍ଥାଭାବରେ କାଗଜ ଖଣ୍ଡିକ ଆଉ ଚଳେଇବା ସମ୍ଭବ ହେଲାନାହିଁ । ଏଥି ଉତ୍ତାରେ ସେ 'ଓଡ଼ିଶାର ଇତିହାସ' ଲେଖିଲେ । ଉତ୍କଳ-ବନ୍ଧୁ ରେଭେନ୍‌ଶା ସାହେବଙ୍କ ସମୟରେ ୧୮୭୦ ଖ୍ରୀଷ୍ଟାବ୍ଦରେ ଓଡ଼ିଆ ଭାଷାରେ ପାଠ୍ୟପୁସ୍ତକ ରଚନା ପାଇଁ ସରକାରଙ୍କ ପକ୍ଷରୁ ପୁରସ୍କାର ଘୋଷିତ ହେଲା । ସେ ସମୟରେ କୌଣସି କୌଣସି ଲେଖକ ୨୧୧ ବିଷୟ ନେଇ ପୁସ୍ତକ ପ୍ରଣୟନ କରିଥିଲେ । ପ୍ୟାରୀମୋହନ ଓଡିଶାର ଗୋଟିଏ ସର୍ବାଙ୍ଗ ସୁନ୍ଦର ଇତିହାସ ଲେଖିବା ପାଇଁ କୃତ ସଂକଳ୍ପ ହୋଇ ବହୁ ପରିଶ୍ରମରେ ତାହା ସମ୍ପାଦନା କଲେ ଓ ତିନିଶହ ଟଙ୍କା ପୁରସ୍କାର ପାଇଲେ । ଐତିହାସିକ ଉପକରଣସମୃଦ୍ଧ ଓ ସାହିତ୍ୟିକ ମର୍ଯ୍ୟାଦାସମ୍ପନ୍ନ ଏପରି ପୁସ୍ତକ ଓଡ଼ିଶାରେ ଆଉ କାହାରି ନାହିଁ କହିଲେ ଅତ୍ୟୁକ୍ତି ହେବନାହିଁ । କିନ୍ତୁ ଦୁଃଖର ବିଷୟ ଏହି ଯେ, ଅଳ୍ପକାଳ ପରେ ଓଡ଼ିଶାର ବିଦ୍ୟାଳୟଗୁଡ଼ିକରେ ଏ ପୁସ୍ତକର ପ୍ରଚଳନ ବନ୍ଦ ହୋଇଗଲା । ସ୍ୱର୍ଗୀୟ କାଳୀପଦ ବନ୍ଦ୍ୟୋପାଧ୍ୟାୟ ଏହି ଇତିହାସରେ ଲିଖିତ କୌଣସି କୌଣସି ପ୍ରସଙ୍ଗରେ ପ୍ରତିକୂଳରେ ଆପତ୍ତି ଉତ୍ଥାପନ କଲେ । 'ଉତ୍କଳ

ହିତୈଷିଣୀ' ପତ୍ରିକାରେ ଏହାର ପ୍ରତିବାଦଗୁଡ଼ିକ ବାହାରୁଥାଏ । କ୍ରମେ ଏହି ବାଦ ପ୍ରତିବାଦ ଏତେ ଘର୍ଷ ଓ ତୀବ୍ର ହୋଇଉଠିଲା ଯେ, ସ୍କୁଲ କର୍ତ୍ତୃପକ୍ଷ ଏହାକୁ ଆଉ ବାଳକମାନଙ୍କ ପାଠ୍ୟ ପୁସ୍ତକର ଅନ୍ତର୍ଗତ ରଖିବା ସମୀଚୀନ ମନେକଲେ ନାହିଁ ।

ପ୍ୟାରୀମୋହନଙ୍କ ପାରିବାରିକ ଜୀବନ ସୁଖର ନଥିଲା । ଅନୁଜ ଭ୍ରାତାମାନେ ତାଙ୍କ ଭଳି ଚରିତ୍ରବାନ୍ ନଥିଲେ ବରଂ ବିପରୀତ ଭାବାପନ୍ନ ଥିଲେ । ସୁତରାଂ ସୌଭ୍ରାତ୍ର୍ୟର ସୁଖଶାନ୍ତି ତାଙ୍କ ଅଦୃଷ୍ଟରେ ଘଟିନାହିଁ । ଯୌବନାବସ୍ଥାରେ ତାଙ୍କ ପ୍ରଥମା ପତ୍ନୀଙ୍କ ମୃତ୍ୟୁ ପରେ ସେ ଦ୍ୱିତୀୟବାର ବିବାହ କଲେ । ମୃତ୍ୟୁର କେତେ ମାସ ପୂର୍ବରୁ ଏହି ପତ୍ନୀଙ୍କ ଗର୍ଭରେ ତାଙ୍କର ଗୋଟିଏ ମାତ୍ର ପୁତ୍ରସନ୍ତାନ ଜନ୍ମିଥିଲା । କିନ୍ତୁ ବ୍ରହ୍ମସମାଜ ସହିତ ତାଙ୍କର ଯୋଗ ରକ୍ଷିତ ହୋଇନାହିଁ ।

ମୃତ୍ୟୁର କେତେଦିନ ପୂର୍ବରୁ ସେ 'ଡମପଡ଼ା' ରାଜାଙ୍କ ସଙ୍ଗେ ପାରିଧିରେ ଯାଇଥିଲେ । ସେଠାରେ ଜଙ୍ଗଲ ମଧ୍ୟରେ ଗୋଟିଏ ଝରଣା ଦେଖି ସମସ୍ତଙ୍କ ନିଷେଧ ସତ୍ତ୍ୱେ ମହାନନ୍ଦରେ ତହିଁରେ ଅବଗାହନ କଲି ପରଦିନ ଅର୍ଥାତ୍ ୧୮୮୧ ଖ୍ରୀଷ୍ଟାବ୍ଦ ଡ଼ିସେମ୍ବର ୨୩ ତାରିଖ, ଶନିବାର ଦିନ ପ୍ରଚଣ୍ଡ ଜ୍ୱରରେ ଆକ୍ରାନ୍ତ ହୋଇ ସେହିଦିନ କଟକ ଫେରିଆସିଲେ । ଜ୍ୱର କ୍ରମେ ବଢ଼ିବାକୁ ଲାଗିଲା, ଚିକିତ୍ସାରେ କୌଣସି ଉପକାର ଦେଖାଗଲା ନାହିଁ । ତାଙ୍କ ଆଗମନ ସମ୍ବାଦ ପାଇବା ମାତ୍ରେ ସର୍ବାଗ୍ରେ ମଧୁସୂଦନ ତାଙ୍କ ନିକଟରେ ଉପସ୍ଥିତ ହେଲେ । ତାଙ୍କୁ ଦେଖି ପ୍ୟାରୀମୋହନ 'ତୁମେ ଆସିଛ' କହି ତାଙ୍କ ହସ୍ତ-ଧାରଣ କଲେ ଓ ସଙ୍ଗେ ସଙ୍ଗେ ତାଙ୍କ ଆଖିରୁ କେତେ ବିନ୍ଦୁ ଲୁହ ଗଡ଼ିଗଲା । ମଧୁସୂଦନ ଦିବାରାତ୍ରି ସେଠାରେ ରହି ତାଙ୍କର ସେବା ଶୁଶ୍ରୂଷା କରିବାକୁ ଲାଗିଲେ । କିନ୍ତୁ ଯେଉଁଠି ରୋଗୀର ଔଷଧ ବ୍ୟବହାରରେ ଅନିଚ୍ଛା ଓ ଚିକିତ୍ସାରେ ଅନାସ୍ଥା ସେଠାରେ କି ଉପକାର ହେବ ? ବୋଧହୁଏ ସେ ଆଉ ଇହଧାମରେ ଆବଦ୍ଧ ରହିବାକୁ ଇଚ୍ଛୁକ ନଥିଲେ । ମୃତ୍ୟୁର ପୂର୍ବମୁହୂର୍ତ୍ତ ପର୍ଯ୍ୟନ୍ତ ପ୍ୟାରୀମୋହନ ବନ୍ଧୁମାନଙ୍କ ସହିତ କଥାବାର୍ତ୍ତା କରୁଥିଲେ, ମଝିରେ ମଝିରେ କାହା ମୁଣ୍ଡରେ ଟିକିଏ ହାତ ବୁଲେଇ ଦେବା, କାହାର ହାତ ଦୁଇଟି ନିଜ ହାତରେ ନେଇ କିଛିକ୍ଷଣ ନୀରବ ରହିବା, ଅନ୍ତରଙ୍ଗବନ୍ଧୁ ବାହାଙ୍କୁ ପାଇଲେ ମଧ୍ୟେ ମଧ୍ୟେ ଊର୍ଦ୍ଧ୍ୱମୁଖରେ ପ୍ରାର୍ଥନା ମଧ୍ୟ ଚାଲିଥିଲା ।

ମୃତ୍ୟୁର ଅବ୍ୟବହିତ ପୂର୍ବରୁ ତାଙ୍କ ମୁଖମଣ୍ଡଳ ଅପୂର୍ବ ଜ୍ୟୋତିରେ ଉଦ୍ଭାସିତ ହୋଇଉଠିଲା; ପରମୁହୂର୍ତ୍ତରେ ବୈଦ୍ୟୁତିକ ଆଲୋକର ନିର୍ବାଣ ଭଳି ହଠାତ୍ ସବୁଆଡ଼ ଅନ୍ଧକାର କରି ସେ ଚାଲିଗଲେ । ୧୮୮୧ ଖ୍ରୀଷ୍ଟାବ୍ଦ ଡିସେମ୍ବର ୨୮ ତାରିଖ ବୃହସ୍ପତିବାର ପୂର୍ବାହ୍ଣ ନଅ ଘଟିକା ସମୟରେ ମାତ୍ର ୩୦ ବର୍ଷ ବୟସରେ ତାଙ୍କର ଏହି ଅକାଳ ମହାପ୍ରୟାଣ ଘଟିଲା ।

## (ଗ) ବିଶ୍ୱନାଥ କର :

୧୮୮୭ ଖ୍ରୀଷ୍ଟାବ୍ଦରେ ବିଶ୍ୱନାଥ କରଙ୍କ ଅନୁଜ ଦୁଇଭ୍ରାତା, ଲୋକନାଥ ଓ ଭୋଳାନାଥ ବ୍ରାହ୍ମଧର୍ମ ଗ୍ରହଣ କଲେ । ବିଶ୍ୱନାଥ ଉତ୍କଳ ବ୍ରାହ୍ମସମାଜ ସହିତ ଘନିଷ୍ଠ ଭାବରେ ସମ୍ପୃକ୍ତ ହୋଇ ଚତୁର୍ଭୁଜ ପଟ୍ଟନାୟକଙ୍କ ପରିଚାଳନାଧୀନରେ 'ସମାଜ' ଓ 'ସଂସ୍କାରକ' ନାମକ ଦୁଇଟି ମାସିକପତ୍ର ସମ୍ପାଦନା କରୁଥିଲେ । ତାଙ୍କ ଜୀବନ ଚରିତରେ ଲିଖିତ ଅଛି ଯେ, ନରେନ୍ଦ୍ର ଗ୍ରାମରେ ଶିକ୍ଷକତା କରିବା ଯୋଗୁଁ ତାଙ୍କୁ କଟକ ତ୍ୟାଗ କରିବାକୁ ହେଲା । ସେତେବେଳେ ବ୍ରାହ୍ମସମାଜର ମାଘୋତ୍ସବ ଋଷିପ୍ରାଣ ମଧୁସୂଦନଙ୍କ ପ୍ରାଣସ୍ପର୍ଶୀ ପ୍ରାର୍ଥନାରେ ସେଦିନ ସମାଜ ଗୃହ ମୁଖରିତ ହେଉଥିଲା । ମଧୁସୂଦନଙ୍କ ଗମ୍ଭୀର ଭାବପୂର୍ଣ୍ଣ ପ୍ରାର୍ଥନା ଓ ଉପଦେଶରେ ବିଶ୍ୱନାଥଙ୍କ ଜୀବନ ପରିବର୍ତ୍ତିତ ହୋଇଗଲା । ଯାହା ପାଇବା ପାଇଁ ସେ ଏତେଦିନ ବ୍ୟାକୁଳ ଥିଲେ, ବିଧାତାଙ୍କ କୃପାରୁ ଆଜି ତାହା ପାଇଲେ । ଏଥି ଉତ୍ତାରେ ନରେନ୍ଦ୍ରର ଶିକ୍ଷକତା ତ୍ୟାଗକରି ସେ କଟକ ଫେରିଲେ ଏବଂ ପ୍ରକାଶ୍ୟରେ ଉପବୀତ ପରିତ୍ୟାଗ ପୂର୍ବକ ବ୍ରାହ୍ମଧର୍ମ ଗ୍ରହଣ କଲେ । ତଦବଧି ସେ ବ୍ରାହ୍ମଧର୍ମ ସାଧନ ଓ ବ୍ରାହ୍ମଆଦର୍ଶ ଅନୁଯାୟୀ ଜୀବନଯାପନ କରିବାକୁ ଲାଗିଲେ । ଏହି ସମୟରେ ବିଶ୍ୱନାଥ ଓ ତାଙ୍କ ଅନୁଜ ଭ୍ରାତୃଦ୍ୱୟଙ୍କ ଉପରେ ରକ୍ଷଣଶୀଳ ହିନ୍ଦୁସମାଜ ଯେଉଁ ନିଦାରୁଣ ଲାଞ୍ଛନା, ଅପମାନ ଓ ନିର୍ଯ୍ୟାତନା ବର୍ଷଣ କରିଥିଲେ ତାହାକୁ ପ୍ରକୃତ ବୀରଙ୍କ ଭଳି ସେମାନେ ନିଷ୍ଠା ଓ ଧୈର୍ଯ୍ୟ ସହିତ ସହ୍ୟ କରିଥିଲେ । ଆଦର୍ଶ ଚରିତ୍ର ମଧୁସୂଦନଙ୍କ ସଦୁପଦେଶ ଏବଂ ସମଦର୍ଶୀ ସାଧୁଚରଣ ଓ ଚତୁର୍ଭୁଜ ପଟ୍ଟନାୟକ ପ୍ରଭୃତିଙ୍କ ଉତ୍ସାହ ଓ ସହାନୁଭୂତି ସେହି ସମୟରେ ସେମାନଙ୍କ ପ୍ରାଣରେ ଅପୂର୍ବ ବଳ ଯୋଗାଇ ଥିଲା । ବିଶ୍ୱନାଥଙ୍କ ଦ୍ୱିତୀୟଭ୍ରାତା ଲୋକନାଥ କଟକ ମେଡ଼ିକାଲ ସ୍କୁଲରୁ ଡାକ୍ତର ପାସ୍ କରି ଯାଜପୁରକୁ ବଦଳି କରିବାକୁ ଯାଇଥିଲେ, କିନ୍ତୁ

ସେଠାରେ ପଢ଼ୁଥିବା ପରେ ବସନ୍ତରୋଗ ବେଗରେ ଆକ୍ରାନ୍ତ ହେବାରୁ ତାଙ୍କର ମୃତ୍ୟୁ ହେଲା । ତୃତୀୟ ଭ୍ରାତା ଭୋଳାନାଥ ଉଦର ଯନ୍ତ୍ରଣା ରୋଗରେ ପରଲୋକ ଗମନ କରିଥିଲେ । ଲୋକନାଥ ଓ ଭୋଳାନାଥ ହିନ୍ଦୁ ସମାଜରେ ତତ୍‌ପୂର୍ବରୁ ବିବାହିତ ହୋଇଥିଲେ । ଲୋକନାଥଙ୍କ ମୃତ୍ୟୁ ସମୟରେ ତାଙ୍କ ପତ୍ନୀଙ୍କ ବୟସ ୧୧ ବର୍ଷ ଓ ଭୋଳାନାଥଙ୍କ ମୃତ୍ୟୁ ସମୟରେ ତାଙ୍କ ପତ୍ନୀଙ୍କ ବୟସ ୯ ବର୍ଷ ମାତ୍ର ଥିଲା । ଏହି ନିଦାରୁଣ ଆଘାତରେ ବିଶ୍ୱନାଥ ଏକେବାରେ ଭାଙ୍ଗି ପଡ଼ିଥିଲେ; କିନ୍ତୁ ଅଳ୍ପକାଳ ମଧ୍ୟରେ ପ୍ରକୃତ ଧର୍ମ ବିଶ୍ୱାସ ବଳରେ ବଳୀୟାନ ହୋଇ ସେ ସେହି ଆଘାତର କଷ୍ଟରୁ ନିଜକୁ ମୁକ୍ତ କରିପାରିଥିଲେ ।

ତତ୍‌କାଳୀନ ସାମାଜିକ ପ୍ରଥାନୁଯାୟୀ ବିଶ୍ୱନାଥ ଅଳ୍ପ ବୟସରେ ବିବାହିତ ହୋଇଥିଲେ । ୧୮୮୭ ଖ୍ରୀଷ୍ଟାବ୍ଦରେ ତାଙ୍କ ପ୍ରଥମ ପୁତ୍ର ମାୟାଧର ଜନ୍ମ ହେବା ବେଳକୁ ବିଶ୍ୱନାଥଙ୍କ ବୟସ ମୋଟେ ୨୩ ବର୍ଷ । ବ୍ରାହ୍ମଧର୍ମ ଗ୍ରହଣ କରିବା ପରେ ତାଙ୍କ ସହଧର୍ମିଣୀ ଜାନକୀ ଦେବୀଙ୍କୁ ସ୍ୱଗ୍ରାମରୁ କଟକ ଆଣିବା ନିମିତ୍ତ ସେ ବାରମ୍ବାର ଇଚ୍ଛା ପ୍ରକାଶ କରିଥିଲେ; କିନ୍ତୁ ବୃଦ୍ଧ ପିତା ତାଙ୍କର ଏକମାତ୍ର ବଂଶଧର ଶିଶୁ ପୌତ୍ରକୁ ଛାଡ଼ିବାକୁ ଅନିଚ୍ଛୁକ ହେବାରୁ ତାହା ଘଟିପାରିଲା ନାହିଁ । ଅବଶେଷରେ ଜାନକୀଦେବୀ ସ୍ୱାମୀଙ୍କ ଅନୁଗମନ ପାଇଁ କୃତ ସଂକଳ୍ପ ହୋଇଛନ୍ତି ବୁଝିପାରି ବୃଦ୍ଧ ଶ୍ୱଶୁର ପାଞ୍ଚ ବର୍ଷ ବୟସ୍କ ଶିଶୁ ପୌତ୍ରକୁ ନିଜ ନିକଟରେ ରଖି ପୁତ୍ରବଧୂକୁ କଟକ ଯିବାକୁ ଅନୁମତି ଦେଲେ । ଏହି ସାଧ୍ୱୀନାରୀ ପିତ୍ରାଳୟ ଓ ଶ୍ୱଶୁରାଳୟର ସମସ୍ତ ଆତ୍ମୀୟମାନଙ୍କ ସ୍ନେହବନ୍ଧନ ଛିନ୍ନକରି ଓ ଶିଶୁପୁତ୍ରକୁ ଶ୍ୱଶୁର-ଶାଶୁଙ୍କ ହସ୍ତରେ ସମର୍ପଣ କରି ପତିଙ୍କ ଅନୁଗାମିନୀ ହେଲେ । ଜଣେ ଅଶିକ୍ଷିତା ପଲ୍ଲୀବଧୂଙ୍କର ଏହି ତ୍ୟାଗ ଓ ଆତ୍ମ ବିସର୍ଜନ ଏବଂ ଅକୁଣ୍ଠିତ ଚିତ୍ତରେ ସ୍ୱାମୀଙ୍କ ପଦାଙ୍କ ଅନୁସରଣ ବାସ୍ତବିକ୍ ପ୍ରଶଂସନୀୟ ।

ଓଡ଼ିଶାର ନାନା ବିଭାଗରେ, ବିଶେଷତଃ ସାହିତ୍ୟ କ୍ଷେତ୍ରରେ ବିଶ୍ୱନାଥଙ୍କ ଦାନ ଅତୁଳନୀୟ ।

୧୮୯୭ ଖ୍ରୀଷ୍ଟାବ୍ଦରେ "ଉତ୍କଳ-ସାହିତ୍ୟ" ନାମକ ମାସିକ ପତ୍ରିକା ପ୍ରତିଷ୍ଠା କରି ଦୀର୍ଘ ୩୮ ବର୍ଷ କାଳ ନାନା ବାଧା ବିଘ୍ନ ମଧ୍ୟରେ ଏହାର

ପରିଚାଳନାରେ ବିଶ୍ୱନାଥ ଯେଉଁ ନିଷ୍ଠା, ଧୈର୍ଯ୍ୟ ଓ ମନୋବଳ ଦେଖାଇ ଯାଇଛନ୍ତି, ତାହା ପ୍ରକୃତରେ ଅସାଧାରଣ । ଜୀବନ ବ୍ୟାପୀ ସଂଗ୍ରାମ ଦ୍ୱାରା ଆଧୁନିକ ଉତ୍କଳର ସାହିତ୍ୟ କ୍ଷେତ୍ରରେ ସେ ଯେଉଁ ସାହିତ୍ୟିକ ଆଦର୍ଶ ସ୍ଥାପନ କରିଥିଲେ, ସେହି ଆଦର୍ଶରେ ଅନୁପ୍ରାଣିତ ହୋଇ ଓ ତାଙ୍କ ସସ୍ନେହ ଉତ୍ସାହରେ ଉତ୍ସାହିତ ହୋଇ, ତଦୀୟ ପତ୍ରିକା ମାଧ୍ୟମରେ ବର୍ତ୍ତମାନ ଉତ୍କଳରେ ଯୁଗୋପଯୋଗୀ ଯେଉଁ ନୂତନ ସାହିତ୍ୟିକଦଳର ଆବିର୍ଭାବ ହୋଇଅଛି, ତାହାର ଲାଳନ-ପାଳନରେ ବିଶ୍ୱନାଥଙ୍କ ଅବଦାନ ଅନସ୍ୱୀକାର୍ଯ୍ୟ । ବିଶ୍ୱନାଥଙ୍କ ସୁଯୋଗ୍ୟ ସମ୍ପାଦନାରେ 'ଉତ୍କଳ-ସାହିତ୍ୟ' ଏତରେ ଉତ୍କଳର ଶ୍ରେଷ୍ଠ ପତ୍ରିକା ରୂପେ ସର୍ବତ୍ର ଏପରି ସମାଦୃତ ହୋଇଥିଲା ଯେ, କୌଣସି ଲେଖକଙ୍କର କବିତା ବା ପ୍ରବନ୍ଧ ଉକ୍ତ ପତ୍ରିକାରେ ସ୍ଥାନଲାଭ କଲେ ସେହି ଲେଖକ ଆପଣାକୁ ଧନ୍ୟ ମନେ କରୁଥିଲେ । ବିଶ୍ୱନାଥଙ୍କ ସାହିତ୍ୟ ସାହସ, ପ୍ରତିଭା ଓ ବ୍ୟକ୍ତିତ୍ୱ—କି ସାମାଜିକ, କି ସାହିତ୍ୟିକ, କି ରାଜନୈତିକ—ପ୍ରତ୍ୟେକ କ୍ଷେତ୍ରରେ ସୁପରିସ୍ଫୁଟ ଥିଲା । ତାଙ୍କ ଜୀବନରେ ବହୁବାର ସେ ପ୍ରାଦେଶିକ ସଭାର ସଭ୍ୟରୂପେ ମନୋନୀତ ହୋଇଥିଲେ ଏବଂ ସେଠାରେ ସ୍ୱାଧୀନ ଭାବରେ ସ୍ୱୀୟ ମତକୁ ଓଜସ୍ୱିନୀ ଭାଷାରେ ପ୍ରକାଶ କରିବାକୁ ସେ କେବେହେଁ ଦ୍ୱିଧା କରିନାହାନ୍ତି । ତାଙ୍କର ବକ୍ତୃତାଶକ୍ତି ଥିଲା ଅସାଧାରଣ । ପରେ ସେ 'ବାଗ୍ମୀ ବିଶ୍ୱନାଥ' ରୂପେ ଖ୍ୟାତିଲାଭ କଲେ ।

## (ଘ) ରାମକୃଷ୍ଣ ରାଓ :

ସେ ମଧୁସୂଦନଙ୍କ ପତ୍ନୀ ପଦ୍ମା ବାଈଙ୍କର କନିଷ୍ଠ ସହୋଦର ଓ ମଧୁସୂଦନଙ୍କ ବୈମାତ୍ରେୟ ପ୍ରଥମା ଭଗିନୀ ତାରାବାଈଙ୍କ ସ୍ୱାମୀ । ସେ ମଧ୍ୟ ମଧୁସୂଦନଙ୍କ ପ୍ରଭାବରେ ସସ୍ତ୍ରୀକ ବ୍ରାହ୍ମଧର୍ମ ଗ୍ରହଣ କରି ନିଷ୍ଠାବାନ୍ ବ୍ରହ୍ମ ଆଦର୍ଶ-ଜୀବନ ଯାପନ କରି ଯାଇଛନ୍ତି ।

## (ଙ) ସାଧୁଚରଣ ରାୟ :

ଯୁବକ ସାଧୁଚରଣ ମଧ୍ୟ ମଧୁସୂଦନଙ୍କ ଜୀବନ-ପ୍ରଭାବରେ ଉତ୍କଳ ବ୍ରାହ୍ମସମାଜରେ ଯୋଗ ଦେଇଥିଲେ । କଟକ ଜିଲ୍ଲାର ଯାଜପୁର ସବ୍‌ଡିଭିଜନର ଅନ୍ତର୍ଗତ କଟିବାପୁର ନାମକ ଗ୍ରାମରେ ଖଣ୍ଡାୟତ୍ କୁଳରେ ଅନୁମାନ

୧୮୭୧ ଖ୍ରୀଷ୍ଟାବ୍ଦରେ ଏହାଙ୍କର ଜନ୍ମ ହୋଇଥିଲା । ଶୈଶବରେ ମାତୃହୀନ ହେବାରୁ କଟକ-ପ୍ରବାସୀ ପିତା ଦୟାନିଧି ସୁନ୍ଦରରାୟଙ୍କ ଉପରେ ଏହାଙ୍କର ଲାଳନ-ପାଳନ ଭାର ପଡ଼ିଲା । ସୁତରାଂ ବାଲ୍ୟକାଳରୁ ଏ କଟକରେ ବିଦ୍ୟା ଶିକ୍ଷା କଲେ । ସାଧୁଚରଣ ୧୮ ବର୍ଷ ବୟସରେ ପ୍ରବେଶିକା ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ରାଭେନ୍ସା କଲେଜରେ ଏଫ୍. ଏ. ପଢ଼ିଲେ, କିନ୍ତୁ ଉକ୍ତ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇପାରିଲେ ନାହିଁ । ସେ ପ୍ରଥମେ କଟକ ପ୍ୟାରୀମୋହନ ଏକାଡେ଼ମୀରେ ଓ ପରେ ମିଶନ ହାଇସ୍କୁଲରେ ଶିକ୍ଷକତାର କାର୍ଯ୍ୟ କରି ଯଥେଷ୍ଟ ସୁଖ୍ୟାତି ଅର୍ଜନ କରିଥିଲେ । ଗୃହଶିକ୍ଷକ କାର୍ଯ୍ୟରେ ତାଙ୍କର ଦକ୍ଷତା ଦେଖି ଓ ତାଙ୍କ ଚରିତ୍ରଗୁଣରେ ଆକୃଷ୍ଟ ହୋଇ ଗୁଣଗ୍ରାହୀ ରାୟ ବାହାଦୁର ନନ୍ଦକିଶୋର ଦାସ ପ୍ରମୁଖ କେତେଜଣ ସମ୍ଭ୍ରାନ୍ତ ବ୍ୟକ୍ତି ସ୍ୱ ସ୍ୱ ଗୃହର ସନ୍ତାନମାନଙ୍କ ଶିକ୍ଷାର ଭାର ତାଙ୍କ ଉପରେ ଅର୍ପଣ କରିଥିଲେ । ତାଳଚେର ନାମକ ଦେଶୀୟ ରାଜ୍ୟର ନାବାଳକ ରାଜକୁମାର ଶ୍ରୀ କିଶୋର-ଚନ୍ଦ୍ର ଯେତେବେଳେ କଟକ ପଢ଼ିବାକୁ ଆସିଲେ, ସେତେବେଳେ ସାଧୁଚରଣ ତାଙ୍କର ଗୃହଶିକ୍ଷକ ଓ ଅଭିଭାବକ ପଦରେ ନିଯୁକ୍ତ ହେଲେ । ଛାତ୍ରମାନଙ୍କ ନୀତି ଓ ଧର୍ମଶିକ୍ଷା ପ୍ରତି ତାଙ୍କର ତୀକ୍ଷ୍ଣ ଦୃଷ୍ଟି ଥିଲା । ଛାତ୍ରମାନଙ୍କ ଅନ୍ତରରେ ନୈତିକ ସାହସ ଓ ଈଶ୍ୱରଙ୍କଠାରେ ପ୍ରୀତି ଜନ୍ମାଇ ପାରିଲେ ସେ ନିଜକୁ କୃତାର୍ଥ ମନେ କରୁଥିଲେ ।

ସାଧୁଚରଣ ଉତ୍କଳ ନବଯୁଗର ଜଣେ ବିଶିଷ୍ଟ ସାହିତ୍ୟିକ ଥିଲେ । ଉତ୍କଳର ତତ୍କାଳୀନ ମାସିକ ପତ୍ର ଓ କେତେଖଣ୍ଡ ପଦ୍ୟ ଓ ଗଦ୍ୟ ପୁସ୍ତକରେ ତାହାର ନିଦର୍ଶନ ରହିଅଛି । 'ଉତ୍କଳ ସାହିତ୍ୟ' ପତ୍ରିକାର ପ୍ରାରମ୍ଭକାଳରେ ସେ ତାହାର ଜଣେ ପ୍ରଧାନ ଲେଖକ ଥିଲେ । 'ନବସମ୍ବାଦ' ନାମକ ପତ୍ରିକାର ସମ୍ପାଦକତା ମଧ୍ୟ ସେ କିଛିକାଳ କରିଥିଲେ । 'ଆଶା' ପତ୍ରିକାର ବିଷୟ ପୂର୍ବରୁ ଲିଖିତ ହୋଇଅଛି । ତାଙ୍କ କବିତା-ପୁସ୍ତକ ମଧ୍ୟରେ 'ପ୍ରୀତି-କୁସୁମ', 'ଭାବ-କୁସୁମ' ଓ 'ଭାବନା' ଏବଂ 'ଧ୍ରୁବ ଚରିତ' ଓ 'କୌତୁକ-କାହାଣୀ' ସେ ନିଜେ ପ୍ରକାଶ କରିଥିଲେ ।

ବ୍ରାହ୍ମଧର୍ମ ପ୍ରତି ଆକୃଷ୍ଟ ହୋଇ, ଦେଶ ପ୍ରଚଳିତ କୁସଂସ୍କାର ଓ ସମାଜ ବନ୍ଧନକୁ ଛିନ୍ନ କରି, ପିତା ଓ ଅନ୍ୟାନ୍ୟ ଅନେକଙ୍କ ନିକଟରୁ ଯଥେଷ୍ଟ

ନିଗ୍ରହଭୋଗ ଓ ଆର୍ଥିକ କ୍ଷତିରେ ସମ୍ଭାବନା ଜାଣି ମଧ୍ୟ ଅସୀମ ସାହସରେ ସେ ମଧୁସୂଦନଙ୍କ ନିକଟରୁ ବ୍ରାହ୍ମଧର୍ମରେ ଦୀକ୍ଷିତ ହେଲେ । 'ବ୍ରାହ୍ମଧର୍ମ' ଗ୍ରନ୍ଥର ଓଡ଼ିଆ ଅନୁବାଦ ମଧ୍ୟ ସେ କରିଥିଲେ । ସାଧୁଚରଣ ଦୁଇଟି ପୁତ୍ର ଓ ଗୋଟିଏ କନ୍ୟା ରଖି ଅକାଳରେ ପରଲୋକ ଗମନ କଲେ । ତାଙ୍କର ମୃତ୍ୟୁକାଳୀନ ଘଟଣା ଶିକ୍ଷାପ୍ରଦ :

୧୮୯୮ ଖ୍ରୀଷ୍ଟାବ୍ଦରେ ଜୁନ୍ ୨୭ ତାରିଖ ପ୍ରାତଃକାଳରେ ତାଙ୍କ ଉଦରରେ ଭୀଷଣ ଯନ୍ତ୍ରଣା ଆରମ୍ଭ ହେଲା; କଟକର ତତ୍କାଳୀନ ବିଶିଷ୍ଟ ଚିକିତ୍ସକମାନଙ୍କ ଦ୍ୱାରା ଚିକିତ୍ସା ହେଉଥାଏ । ୨୯ ତାରିଖ ପ୍ରାତଃକାଳରୁ ପୀଡ଼ା କ୍ରମଶଃ ବୃଦ୍ଧି ପାଇଲା ଏବଂ ସେହିଦିନ ସନ୍ଧ୍ୟାରେ ତାଙ୍କର ଜୀବନାଲୋକ ନିର୍ବାପିତ ହେଲା । ମୃତ୍ୟୁ ପୂର୍ବରୁ ସେ ନିକଟସ୍ଥ ବନ୍ଧୁମାନଙ୍କୁ କହିଲେ, "ମୋତେ କଲେରା (ବିଶ୍ୱନାଥ କରଙ୍କ କନିଷ୍ଠ ଭ୍ରାତା) ରୋଗ ଧରିଛି, ଆଉ ବଞ୍ଚିବି ନାହିଁ । ରବିର (ଜ୍ୟେଷ୍ଠପୁତ୍ର ସଚ୍ଚିଦାନନ୍ଦଙ୍କର ଡାକନାମ) ଲେଖାପଢ଼ା ଯେପରି ହୁଏ । ......... ପ୍ରଭୋ, ତୁମର ଇଚ୍ଛା ପୂର୍ଣ୍ଣ ହେଉ । ଶାନ୍ତିଃ ଶାନ୍ତିଃ ଶାନ୍ତିଃ ।"

ମୃତ୍ୟୁ ମୁହୂର୍ତ୍ତରେ ମଧ୍ୟ ତାଙ୍କର ମୁଖାକୃତି କିଛିମାତ୍ର ବିକୃତ ହୋଇନାହିଁ ଓ ମୃତ୍ୟୁର ପରମୁହୂର୍ତ୍ତରେ ମଧ୍ୟ ତାଙ୍କ ମୁହଁ ଦେଖି ମନେହେଉଥିଲା ସତେଯେପରି ପ୍ରଫୁଲ୍ଲ ଚିତ୍ତରେ, ପ୍ରସନ୍ନ ଭାବରେ ସେ ଶୟନ କରିଛନ୍ତି । ଅଟଳ ଧର୍ମବିଶ୍ୱାସ ଓ ଈଶ୍ୱର ନିର୍ଭରତାରେ ଅନୁପ୍ରାଣିତ ନହେଲେ ମୃତ୍ୟୁ କାଳରେ ମନୁଷ୍ୟର ଏପରି ଅବସ୍ଥା ହେବା ଅସମ୍ଭବ ।

## (ଚ) ରଘୁନାଥ ସିଂହ :

ବାଲେଶ୍ୱର ଜିଲ୍ଲା ଅନ୍ତର୍ଗତ ଭଦ୍ରକରେ ଏହାଙ୍କର ପୈତୃକ ନିବାସ ଥିଲା । ଏହାଙ୍କ ପ୍ରପିତାମହ ବାଲେଶ୍ୱରରେ ଲବଣ କାରବାର କରି ଆର୍ଥିକ ଅବସ୍ଥାର ଉନ୍ନତି କରିଥିଲେ । ଏହାଙ୍କର ପିତାମହଙ୍କ ନାମ ପଞ୍ଚାନନ ସିଂହ ଓ ପିତାଙ୍କ ନାମ ନନ୍ଦଲାଲ ସିଂହ । ଶୈଶବରେ ରଘୁନାଥଙ୍କର ପିତୃବିୟୋଗ ହେଲା । ଜ୍ଞାତି ଶତ୍ରୁମାନଙ୍କର ଶତ୍ରୁତା ଓ ନାନା ଷଡ଼ଯନ୍ତ୍ରରେ ରଘୁନାଥଙ୍କ ମାତା ଶିଶୁପୁତ୍ରକୁ ନେଇ ଭଦ୍ରକରୁ କଟକ ଚାଲିଆସିଲେ । ଏଠାରେ ତାଙ୍କର

ବିଦ୍ୟାରମ୍ଭ ହେଲା । ଯଥା ସମୟରେ ରଘୁନାଥ ସରକାରୀ ବୃତ୍ତି ଲାଭ କରି ତଦାନୀନ୍ତନ ମେଡ଼ିକାଲ ସ୍କୁଲରେ ଡାକ୍ତରୀ ପଢ଼ିବାକୁ ଆରମ୍ଭ କଲେ । ବିଶ୍ୱନାଥ କର ମହାଶୟଙ୍କ ଅନୁଜ ମଧ୍ୟମଭ୍ରାତା ଲୋକନାଥ କର ଏହାଙ୍କର ସହପାଠୀ ଥିଲେ । ରଘୁନାଥ ମଧ୍ୟ ଲୋକଙ୍କ ସହିତ କଟକ ବ୍ରହ୍ମମନ୍ଦିରକୁ ଯିବାକୁ ଆରମ୍ଭ କଲେ । ସାଧୁଚରଣ ରାୟ ଏମାନଙ୍କ ଅପେକ୍ଷା ବୟୋଜ୍ୟେଷ୍ଠ ଥିଲେ । ସାଧୁଚରଣଙ୍କ ସମ୍ପର୍କରେ ଆସି ଏମାନେ ତାଙ୍କ ନିକଟରୁ ଜ୍ୟେଷ୍ଠ-ଭ୍ରାତାତୁଲ୍ୟ ସ୍ନେହ ଓ ସଦୁପଦେଶ ଲାଭ କରୁଥାଆନ୍ତି ଫଳତଃ ଏମାନେ ବ୍ରାହ୍ମଧର୍ମ ପ୍ରତି ଆକୃଷ୍ଟ ହୋଇପଡ଼ିଲେ । ରଘୁନାଥ ସିଂହ ବ୍ରାହ୍ମଧର୍ମରେ ଦୀକ୍ଷା ଗ୍ରହଣ କରିବାକୁ ବ୍ୟାକୁଳ ହେବାରୁ ମଧୁସୂଦନଙ୍କ ନିକଟରୁ ବ୍ରାହ୍ମଧର୍ମର ଦୀକ୍ଷା ଗ୍ରହଣ କଲେ । ତଦବଧି ସେ ଦୁହିଁଙ୍କ ମଧ୍ୟରେ ଧର୍ମପିତା ଓ ଧର୍ମପୁତ୍ର ସମ୍ବନ୍ଧ ସ୍ଥାପିତ ହେଲା ଏବଂ ଏହି ସମ୍ବନ୍ଧ ଆଜୀବନ ଅକ୍ଷୁର୍ଣ୍ଣ ରହିଲା । ଡାକ୍ତରୀ ପରୀକ୍ଷାରେ ଉତ୍ତୀର୍ଣ୍ଣ ହେବାପରେ ଓଡ଼ିଶାରେ କୌଣସି ଜମିଦାରଙ୍କ ଅଧୀନରେ ଚାକିରି ନେଇ, ଅନୁମାନ ୧୮୯୨ ଖ୍ରୀଷ୍ଟାବ୍ଦରେ ସେଠାକୁ ଗଲେ । ସେଠାରୁ ଯେତେବେଳେ ୩।୪ ବର୍ଷ ବ୍ୟବଧାନରେ କଟକ ଆସୁଥିଲେ, ମଧୁସୂଦନଙ୍କ ଗୃହରେ ସେ ପୁତ୍ରଭଳି ସମାଦରରେ ଗୃହୀତ ହେଉଥିଲେ । ୧୮୯୮ ଖ୍ରୀଷ୍ଟାବ୍ଦରେ ଯେତେବେଳେ ସେ ଆସିଥିଲେ ସେତେବେଳେ ମଧୁସୂଦନଙ୍କ ଅନୁରୋଧରେ ତାଙ୍କର କଲିକତାସ୍ଥ ବନ୍ଧୁ 'ନବ୍ୟ ଭାରତ'ର ସମ୍ପାଦକ ଦେବୀପ୍ରସନ୍ନ ରାୟ ଚୌଧୁରୀଙ୍କ ଚେଷ୍ଟାରେ ବିଷ୍ଣୁଚରଣ ଚଟ୍ଟୋପାଧ୍ୟାୟଙ୍କ ଦ୍ୱିତୀୟା କନ୍ୟା ବନଫୁଲଙ୍କ ସହିତ ଏହାଙ୍କର ବ୍ରାହ୍ମମତରେ ବିବାହ ହେଲା । ଏହି ପତ୍ନୀ ବିବାହିତ ଜୀବନରେ ସ୍ୱାମୀଙ୍କର ଉପଯୁକ୍ତ ସହଧର୍ମିଣୀ ଓ ସହକର୍ମିଣୀ ହୋଇଅଛନ୍ତି । ବର୍ମାରେ ସରକାରୀ ଚାକିରି ନେଇ ରଘୁନାଥ ଯାଇଥିଲେ, କିନ୍ତୁ ଚିକିତ୍ସା କର୍ମରେ ଏହାଙ୍କର ନୈପୁଣ୍ୟହେତୁ ଲୋକଙ୍କର ଦୃଷ୍ଟି ଆକର୍ଷଣ କଲା ଏବଂ କେତୋଟି ରୋଗର ପ୍ରତିଷେଧକ ଔଷଧ ମଧ୍ୟ ସେ ପ୍ରସ୍ତୁତ କଲେ । ତତ୍ପରେ ବେସିନ ସହରରେ 'ବେସିନ ଫାର୍ମାସୀ' ନାମକ ଏକ ଔଷଧାଳୟ ସ୍ଥାପନ କରି, ୧୯୦୭ ଖ୍ରୀଷ୍ଟାବ୍ଦରେ ରଘୁନାଥ ସରକାରୀ ଚାକିରି ପରିତ୍ୟାଗ କରି ସ୍ୱାଧୀନ ଭାବରେ ଚିକିତ୍ସକ କାର୍ଯ୍ୟ ଆରମ୍ଭ କଲେ । ଯଶସ୍ୱୀ ଚିକିତ୍ସକ ଓ ଗଣ୍ୟମାନ୍ୟ ନାଗରିକ ହିସାବରେ ସେ ବେସିନ ସହରରେ ପ୍ରଥମ ଶ୍ରେଣୀର ଅନରରି ମାଜିଷ୍ଟ୍ରେଟ୍ ରୂପେ ନିର୍ବାଚିତ ହୋଇଥିଲେ ଏବଂ ବେସିନ୍‌ରେ ନିଜର ଗୃହ ନିର୍ମାଣ କରି ସ୍ଥାୟୀ ଭାବରେ ବାସ କରିଥିଲେ ।

ଯୌବନର ପ୍ରାରମ୍ଭରେ ଧର୍ମପିପାସୁ ହୋଇ ସେ ଯେଉଁ ବ୍ରାହ୍ମଧର୍ମ ଗ୍ରହଣ କରିଥିଲେ, ଆଜୀବନ ତାହା ଦୃଢ଼ଭାବରେ ପାଳନ କରିଥିଲେ । ତାଙ୍କ ପରିବାରରେ ବ୍ରହ୍ମୋପାସନା ପ୍ରତିଷ୍ଠିତ ଥିଲା । ମାଘୋତ୍ସବ ବେଳେ ତାଙ୍କ ଗୃହରେ କିଛି ଦିନ ପ୍ରତି ସନ୍ଧ୍ୟାରେ ଉପାସନା, ଗୀତ, କୀର୍ତ୍ତନ, ଆଲୋଚନାଦି ହେଉଥିଲା । ଗୃହଟି ପତ୍ରପୁଷ୍ପ ଓ ଆଲୋକମାଳାରେ ସୁସଜ୍ଜିତ ହେଉଥିଲା । ଉପାସନା ପ୍ରଭୃତି ପରେ ଆହାରାଦିର ମଧ୍ୟ ବ୍ୟବସ୍ଥା ରହୁଥିଲା । ୧୯୧୯ ଖ୍ରୀଷ୍ଟାବ୍ଦରେ ରେଙ୍ଗୁନ ସହରରେ ବ୍ରହ୍ମମନ୍ଦିର ନିର୍ମାଣ କାର୍ଯ୍ୟରେ ରଘୁନାଥ ମୁକ୍ତହସ୍ତରେ ଦାନ କରିଥିଲେ ଏବଂ ଏହି କାର୍ଯ୍ୟରେ ଉଦ୍ୟୋଗୀ ବ୍ରହ୍ମବନ୍ଧୁମାନଙ୍କ ସହିତ ଆନ୍ତରିକ ସହଯୋଗିତା କରିଥିଲେ । ତାଙ୍କ ଗୃହରେ ବହୁ ଦୁସ୍ଥ ଓ ଦୁର୍ଗତ ବ୍ୟକ୍ତି ଆଶ୍ରୟ ଲାଭ କରୁଥିଲେ । ବହୁ ଦରିଦ୍ର ରୋଗୀ ବିନା ଅର୍ଥ ବ୍ୟୟରେ ତାଙ୍କ ନିକଟରୁ ଔଷଧ, ପଥ୍ୟ ଓ ଆନ୍ତରିକ ସେବା ପାଉଥିଲେ । ଏହି ସମସ୍ତ ସଦ୍‌ଗୁଣର ଅଧିକାରୀ ହୋଇଥିବାରୁ ସ୍ଥାନୀୟ ସର୍ବଶ୍ରେଣୀର ଲୋକଙ୍କ ନିକଟରେ ସେ ପରମ ଶ୍ରଦ୍ଧାଭାଜନ ହୋଇଥିଲେ । ଅତିରିକ୍ତ ପରିଶ୍ରମ ଫଳରେ ରଘୁନାଥ ବହୁମୂତ୍ର ରୋଗରେ ଆକ୍ରାନ୍ତ ହେଲେ ଏବଂ ଏହି ଅବସ୍ଥାରେ ଗୋଡ଼ରେ ଜୋତାର କଣ୍ଟା ଫୁଟି ବିଷାକ୍ତ ହୋଇ-ଯିବାରୁ ତେଇଶି ଦିନ ରୋଗ ଭୋଗ କରି ୧୯୩୩ ଖ୍ରୀଷ୍ଟାବ୍ଦ ଅକ୍ଟୋବର ୧୮ ତାରିଖରେ ବେସିନ ସହରରେ ନିଜ ଗୃହରେ ଦେହତ୍ୟାଗ କଲେ ।

ଅନୁମାନ ୧୮୮୮ ଖ୍ରୀଷ୍ଟାବ୍ଦରେ ଉତ୍କଳ ବ୍ରାହ୍ମସମାଜର କାର୍ଯ୍ୟ ପରିଚାଳନା ପାଇଁ କଲିକତା ସାଧାରଣ ବ୍ରାହ୍ମସମାଜର ନିୟମାବଳୀ ଅନୁସାରେ ଗୋଟିଏ ନିୟମାବଳୀ ପ୍ରସ୍ତୁତ ହୋଇଥିଲା । ତଦନୁଯାୟୀ ମଧୁସୂଦନ ରାଓ ଏହାର ସଭାପତି ଓ ପ୍ରଧାନ ଆଚାର୍ଯ୍ୟ ଏବଂ ସାଧୁଚରଣ ରାୟ ସମ୍ପାଦକ ରୂପେ ନିର୍ବାଚିତ ହୋଇଥିଲେ । ଏପରି ସ୍ଥିର ହୋଇଥିଲା ଯେ ଏହା ଗୋଟିଏ ନିର୍ଦ୍ଦଳୀୟ ସମାଜରୂପେ ପରିଗଣିତ ହେବ । ଏଠାରେ ଆଦି, ନବବିଧାନ ଏବଂ ସାଧାରଣ ବ୍ରାହ୍ମସମାଜଭୁକ୍ତ ଯେ କୌଣସି ଅନୁଷ୍ଠାନର ବ୍ରାହ୍ମ ଏହାର ସଭ୍ୟ ହୋଇପାରିବେ ।

ସାଧୁଚରଣଙ୍କ ମୃତ୍ୟୁର ଦୁଇବର୍ଷ ପୂର୍ବରୁ ଅର୍ଥାତ୍ ୧୮୯୬ରୁ ବିଶ୍ୱନାଥ କର ସମ୍ପାଦକ ପଦରେ ମନୋନୀତ ହୋଇ ୧୯୨୫ ପର୍ଯ୍ୟନ୍ତ ଏହି ପଦରେ ଅଧିଷ୍ଠିତ ଥିଲେ ।

୧୮୯୩ ଖ୍ରୀଷ୍ଟାବ୍ଦରେ ଆଚାର୍ଯ୍ୟ କେଶବଚନ୍ଦ୍ରଙ୍କ ସମସାମୟିକ ବ୍ରାହ୍ମଭକ୍ତ ବ୍ରଜମୋହନ ବସୁ ସପରିବାର କଟକ ଆସି ବାସ କଲେ । ୧୯୧୨ରେ ମଧୁସୂଦନଙ୍କ ମୃତ୍ୟୁ ପରେ ବସୁ ମହାଶୟ, ମୃତ୍ୟୁ ପର୍ଯ୍ୟନ୍ତ (୫-୧୨ ୧୯୨୨) ଉତ୍କଳ ବ୍ରାହ୍ମସମାଜର ସଭାପତି ଓ ଆଚାର୍ଯ୍ୟର କାର୍ଯ୍ୟ କରୁଥିଲେ । ତାଙ୍କ ମୃତ୍ୟୁ ପରେ ୧୯୨୩ରୁ ୩-୭-୨୭ ତାରିଖ ପର୍ଯ୍ୟନ୍ତ ରାମକୃଷ୍ଣ ରାଓ ହୋର ସଭାପତି କାର୍ଯ୍ୟ କଲେ । ତତ୍ପରେ ବିଶ୍ୱନାଥ କର ୩-୭-୨୭ରୁ ମୃତ୍ୟୁ ପର୍ଯ୍ୟନ୍ତ (୧୯-୧୦-୩୪) ଏହାର ସଭାପତି ଥିଲେ ।

୧୯୨୫ ଖ୍ରୀଷ୍ଟାବ୍ଦରେ ବିଶ୍ୱନାଥ କର ସମ୍ପାଦକ ପଦ ତ୍ୟାଗ କରିବାରୁ ରାୟସାହେବ ରଘୁନାଥ ରାଓ (ମଧୁସୂଦନଙ୍କ ବୈମାତ୍ରେୟ ଭ୍ରାତା) ସମ୍ପାଦକ ନିର୍ବାଚିତ ହୋଇ ୪-୭-୪୪ ପର୍ଯ୍ୟନ୍ତ ନିଷ୍ଠାର ସହିତ ସମ୍ପାଦକ କାର୍ଯ୍ୟ ପରିଚାଳନା କଲେ । ବିଶ୍ୱନାଥ କରଙ୍କ ମୃତ୍ୟୁ ପରେ ୧୯-୧୦-୩୪ ତାରିଖରେ ପୁନରାୟ ରାମକୃଷ୍ଣ ରାଓ ସଭାପତି ଓ ପ୍ରଧାନ ଆଚାର୍ଯ୍ୟ ରୂପେ ମନୋନୀତ ହୋଇ ୨୯-୮-୪୯ ପର୍ଯ୍ୟନ୍ତ ଏହି ପଦରେ ଅଧିଷ୍ଠିତ ଥିଲେ, ଯଦିଓ ସେ ବାର୍ଦ୍ଧକ୍ୟ ପୀଡ଼ିତ ଶେଷ କେତେବର୍ଷ ନିୟମିତ ଭାବେ ସମାଜର କାର୍ଯ୍ୟ କରିବାକୁ ଅସମର୍ଥ ହୋଇପଡ଼ିଥିଲେ । ବ୍ରଜମୋହନ ବସୁ ମହାଶୟଙ୍କ ଦ୍ୱିତୀୟ ପୁତ୍ର ପ୍ରଫୁଲ୍ଲ ଚନ୍ଦ୍ର ବସୁ ଅର୍ଦ୍ଧକାଳ ଉତ୍କଳ ବ୍ରାହ୍ମସମାଜର ସହକାରୀ ସମ୍ପାଦକ ରୂପେ କାର୍ଯ୍ୟ କରିଥିଲେ । ୨୯-୮-୪୯ ତାରିଖ ଠାରୁ ଡାକ୍ତର ଶ୍ରୀଯୁକ୍ତ ଜୟନ୍ତ ରାଓ ବ୍ରାହ୍ମ ସମାଜର ସଭାପତି ପଦରେ ନିର୍ବାଚିତ ହୋଇଥିଲେ ।

ଉତ୍କଳ ବ୍ରାହ୍ମସମାଜ ଓ ବାଲେଶ୍ୱର ବ୍ରାହ୍ମସମାଜ ପ୍ରାୟ ଏକ ସମୟରେ ଆଦି ବ୍ରାହ୍ମସମାଜ ଭାବେ ପ୍ରତିଷ୍ଠିତ ହୋଇଥିଲା । ଉଭୟ ସ୍ଥାନରେ ପରବର୍ତ୍ତୀ କାଳରେ ଆଦି ବ୍ରାହ୍ମସମାଜଭୁକ୍ତ ବ୍ରାହ୍ମମାନେ ସୌହାର୍ଦ୍ଦ୍ୟର ସହିତ ନବ୍ୟ ବ୍ରାହ୍ମଦଳଙ୍କ ସଙ୍ଗେ ମିଳିତ ହୋଇଥିଲେ ।

ଉତ୍କଳ ବ୍ରାହ୍ମସମାଜ ମଣ୍ଡଳୀ ଓ ବାଲେଶ୍ୱର ବ୍ରାହ୍ମମଣ୍ଡଳୀ ଘନିଷ୍ଠ ପ୍ରୀତିଯୋଗରେ ଯୁକ୍ତ ଥିଲେ । ମୋର ବାଲ୍ୟସ୍ମୃତିରେ ତାହାର ଉଜ୍ଜ୍ୱଳ ଛବି ଜାଗ୍ରତ ଅଛି । ନନ୍ଦଲାଲ ବନ୍ଦ୍ୟୋପାଧ୍ୟାୟ ମହାଶୟ ୧୮୮୮ ଖ୍ରୀଷ୍ଟାବ୍ଦରେ ମୋ ଅପା ବାସନ୍ତୀ ଦେବୀଙ୍କ ବିବାହରେ ଆଚାର୍ଯ୍ୟ ହୋଇଥିଲେ । ସେ, ପଦ୍ମଲୋଚନ ଦାସ, ଭଗବାନ ଦାସ, ଉଦୟଚନ୍ଦ୍ର ଦେ, କାଳନ୍ଦୀ କାମିଲା,

ପ୍ରସନ୍ନ କୁମାର ମିତ୍ର, ଭବଗ୍ରାହୀ ଦାସ, ଗୋବିନ୍ଦ ପଣ୍ଡା, ଅର୍ଜ୍ଜୁନ ପାଢ଼ୀ ପ୍ରଭୃତି ମୋ' ପିତୃଗୃହର ବିବାହାଦି ଉତ୍ସବରେ ଓ ଉତ୍କଳ ବ୍ରାହ୍ମସମାଜର ବାର୍ଷିକ ଉତ୍ସବ ପ୍ରଭୃତିରେ ଯୋଗଦାନ କରିବାକୁ ଆସୁଥିଲେ। ସେମାନଙ୍କ ସହିତ ମୋ ପିତୃଗୃହର ଆତ୍ମୀୟତା ମୋର ମନକୁ ଏବେ ସୁଦ୍ଧା କେତେ ପ୍ରୀତିରସରେ ପୂର୍ଣ୍ଣ କରେ।

ବାଲେଶ୍ୱରବାସୀ ପ୍ରସନ୍ନ କୁମାର ମିତ୍ର ବାଳବିଧବା ସରସ୍ୱତୀ ଦେବୀଙ୍କୁ ବିବାହ କଲେ। ଏ ବିବାହ ଅନୁଷ୍ଠାନ ମୋ ପିତୃଗୃହରେ ସମ୍ପନ୍ନ ହୋଇଥିଲା। ଏହି ବିବାହରେ ମୋର ଭଗିନୀପତି ବିଜୟଚନ୍ଦ୍ର ମଜୁମଦାର ଆଚାର୍ଯ୍ୟ ଓ ମୋର କାକା ଜଗନ୍ନାଥ ଗୁପ୍ତ କନ୍ୟାକର୍ତ୍ତା ହୋଇଥିଲେ। ତଦବଧି ଏହି ସରସ୍ୱତୀ ଅପା ମୋ ପିତୃଗୃହରେ କନ୍ୟାତୁଲ୍ୟ ସମାଦୃତା ଥିଲେ। ନନ୍ଦକୁମାର ବନ୍ଦୋପାଧ୍ୟାୟ ମହାଶୟଙ୍କ କନ୍ୟା ରାଜକୁମାରୀ ଦେବୀଙ୍କ ସହିତ କଟକ ନିବାସୀ ଡାକ୍ତର ରାମକୃଷ୍ଣ ସାହୁଙ୍କର ବ୍ରାହ୍ମମତରେ ବିବାହ ହୋଇଥିଲା। ରାଜକୁମାରୀ ଦେବୀ ମଧ୍ୟ ଆମ୍ଭମାନଙ୍କର ଅପାସ୍ଥାନୀୟା ଥିଲେ। ପଦ୍ମଲୋଚନ ଦାସ ମହାଶୟ ମଧ୍ୟ ମଝିରେ ମଝିରେ କଟକ ସହରକୁ ଆସିଅଛନ୍ତି। ତେଣୁ ବ୍ରାହ୍ମ ପରିବାରଗୁଡ଼ିକ ସହିତ ସେମାନଙ୍କ ଆତ୍ମୀୟତା ବର୍ଦ୍ଧିତ ହୋଇଥିଲା।

୧୮୭୩ ଖ୍ରୀଷ୍ଟାବ୍ଦରେ ମଧୁସୂଦନ ଗୁପ୍ତ ଜିଲ୍ଲା-ସ୍କୁଲର ଶିକ୍ଷକତା କାର୍ଯ୍ୟରେ ଦେଢ଼ବର୍ଷ ବାଲେଶ୍ୱରରେ ଥିଲେ। ଏହି ସମୟରେ ଫକୀର ମୋହନ ସେନାପତି ପ୍ରମୁଖ ସ୍ଥାନୀୟ ବ୍ରାହ୍ମମାନଙ୍କ ସହିତ ତାଙ୍କର ଯେଉଁ ଘନିଷ୍ଠ ସଂଯୋଗ ହେଲା ତାହା ଆଜୀବନ ଅକ୍ଷୁର୍ଣ୍ଣ ରହିଥିଲା।

ଓଡ଼ିଶା ବଙ୍ଗଦେଶ ସହିତ ଯୁକ୍ତ ଥିବାରୁ ବହୁ ବଙ୍ଗାଳୀ ବ୍ରାହ୍ମ କାର୍ଯ୍ୟୋପଲକ୍ଷ୍ୟରେ ଓଡ଼ିଶାକୁ ଆସି ବାସ କରିବା ଦ୍ୱାରାରେ ଉତ୍କଳ ବ୍ରାହ୍ମ-ସମାଜ ଓ ବ୍ରାହ୍ମମଣ୍ଡଳୀ ସେମାନଙ୍କର ଉପାସନା, ସଙ୍ଗୀତ ଓ ସମାଲୋଚନା ପ୍ରଭୃତି ଦ୍ୱାରା ଉପକୃତ ହୋଇଅଛନ୍ତି। ସାର୍ କେ. ଜି. ଗୁପ୍ତ ଆଇ-ସି-ଏସ୍, ତାଙ୍କ ଜାମାତା ବି. ସି. ସେନ୍ ଆଇ-ସି-ଏସ୍, ବି. ଏଲ୍. ଗୁପ୍ତ ଆଇ-ସି-ଏସ୍, ଏ. ସି. ସେନ୍—ଏମାନେ ଉଚ୍ଚପଦସ୍ଥ ରାଜକର୍ମଚାରୀ ଥିଲେ। ସାର୍ କେ. ଜି. ଗୁପ୍ତଙ୍କ ସହଧର୍ମିଣୀଙ୍କ ଯତ୍ନରେ ତାଙ୍କ ଭବନରେ ଗୋଟିଏ ମହିଳା ସମାଜ ପ୍ରତିଷ୍ଠିତ ହୋଇଥିଲା। ବ୍ରାହ୍ମମହିଳା ଓ ସ୍ଥାନୀୟ ଅନେକ ଭଦ୍ରମହିଳା ମଧ୍ୟ

ଏଥିରେ ଯୋଗ ଦେଉଥିଲେ । ମାସରେ ଦୁଇବାର ଏହାର ଅଧିବେଶନ ହେଉଥିଲା । ଧର୍ମ ଓ ଅନ୍ୟାନ୍ୟ ବିଷୟରେ ଆଲୋଚନା ହେଉଥିଲା । ପରସ୍ପର ମଧ୍ୟରେ ଘନିଷ୍ଠତା ବର୍ଦ୍ଧିତ ହେଉଥିଲା । ସାର୍ କେ. ଜି. ଗୁପ୍ତ ବଦଳି ହୋଇ ଅନ୍ୟତ୍ର ଚାଲିଯିବାରୁ ମଧୁସୂଦନଙ୍କ ଗୃହରେ କିଛିକାଳ ଏହି ମହିଳା ସମାଜର କାର୍ଯ୍ୟ ଚାଲିବା ପରେ ଏହା ବନ୍ଦ ହୋଇଗଲା । ସାର୍ କେ. ଜି. ଗୁପ୍ତ ଓଡ଼ିଶା ବିଭାଗର କମିଶନର ରୂପେ କଟକରେ ଅବସ୍ଥାନ କରୁଥିବା ସମୟରେ ତାଙ୍କ ପିତା ସାଧୁ ଭକ୍ତ କାଳୀନାରାୟଣ ଗୁପ୍ତ ମଧ୍ୟ କଟକ ଆସି ବ୍ରହ୍ମମନ୍ଦିରରେ ଉପାସନା କରିଅଛନ୍ତି । ବି. ଏଲ୍. ଗୁପ୍ତ ଡିଷ୍ଟ୍ରିକ୍ଟ-ଓ-ସେଶନ୍ସ ଜଜ୍ ରୂପେ କଟକରେ ଥିବା ସମୟରେ ତାଙ୍କ ସହଧର୍ମିଣୀ ସୌଦାମିନୀ ଗୁପ୍ତ ଏହି ବ୍ରାହ୍ମସମାଜରେ ନିୟମିତ ଭାବେ ଯୋଗ ଦେଉଥିଲେ ଓ ଏହାର ଉନ୍ନତି ପାଇଁ ବହୁ ଚେଷ୍ଟା କରୁଥିଲେ । ଡିଷ୍ଟ୍ରିକ୍ଟ-ଓ-ସେଶନ୍ସ ଜଜ୍ ଏ. ସି. ସେନ୍ ଜଣେ ଧର୍ମପରାୟଣ ବ୍ୟକ୍ତି ଥିଲେ । ସେ କଟକରେ ଥିବା ସମୟରେ ବହୁ ସମୟ ଏହି ସମାଜର ସାପ୍ତାହିକ ଉପାସନା ଓ ମାଘୋତ୍ସବ ଉପାସନାରେ ଆଚାର୍ଯ୍ୟର କାମ କରୁଥିଲେ । ରବୀନ୍ଦ୍ରନାଥ ଠାକୁର ତାଙ୍କ ଭ୍ରାତୁଷ୍ପୁତ୍ର ବଳେନ୍ଦ୍ରନାଥଙ୍କୁ ନେଇ ଅନୁମାନ ୧୮୯୩ ଖ୍ରୀଷ୍ଟାବ୍ଦରେ ଓଡିଶାରେ ସେମାନଙ୍କ ଜମିଦାରୀ ପରିଦର୍ଶନ କରିବା ପାଇଁ କଟକ ଆସିଥିଲେ । ସେ ମଧ୍ୟ ଦିନେ ଏହି ମନ୍ଦିରରେ ସାପ୍ତାହିକ ଉପାସନାର ଭାର ନେଇଥିଲେ; ସେଦିନ ସେ ପ୍ରଥମ ଗୀତଟି ଗାଇଥିଲେ—"କି ଗାବ ଆମି, କି ଶୁନାବ ଆଜି ଆନନ୍ଦଧାମେ, ପୁରବାସୀଜନେ ଏନେଛି ଡେକେ ତୋମାରି ଅମୃତ ନାମେ ।" ଏ. ସି. ସେନ ମହାଶୟଙ୍କ ସହଧର୍ମିଣୀ ସୁଦକ୍ଷିଣା ସେନ ସ୍ୱାମୀଙ୍କ ସହିତ ଦୀର୍ଘକାଳ କଟକରେ ରହି ସ୍ଥାନୀୟ ବ୍ରାହ୍ମ ପରିବାର-ଗୁଡ଼ିକ ସଙ୍ଗେ ଗଭୀର ପ୍ରୀତିଯୋଗରେ ଯୁକ୍ତ ଥିଲେ । ମାଘୋତ୍ସବ ସମୟରେ ମହିଳା-ଉତ୍ସବ ପ୍ରାୟ ତାଙ୍କ ଘରେ ହେଉଥିଲା । ତାଙ୍କ ଭକ୍ତି ଗଦ୍‌ଗଦ କଣ୍ଠର ସଙ୍ଗୀତ —"ଡେକେଛେନ ପ୍ରିୟତମ, କେ ରହିବେ ଘରେ ? ଡାକିତେ ଏସେଛି ତାଇ, ଚଲ ତ୍ୱରା କରେ"-ଏବେ ସୁଦ୍ଧା କେବେ କେବେ ମୋର ମନେପଡ଼େ ।

ବିବିଧ କାର୍ଯ୍ୟୋପଲକ୍ଷେ ଏବଂ ମଧୁସୂଦନଙ୍କ ପ୍ରତିଷ୍ଠିତ ଟାଉନ୍ ଭିକ୍ଟୋରିଆ ସ୍କୁଲର ଶିକ୍ଷକ ଭାବେ ବହୁ ବିଶିଷ୍ଟ ବ୍ରାହ୍ମ କଟକରେ ବାସ କରିଯାଇଛନ୍ତି । ସେମାନଙ୍କ ନାମ, ଯେତେଦୂର ମନେଅଛି, ନିମ୍ନରେ ଲିପିବଦ୍ଧ କଲି :—

**ଟାଉନ୍ ଭିକ୍ଟୋରିଆ ସ୍କୁଲର ଶିକ୍ଷକବୃନ୍ଦ**

ବିଜୟଚନ୍ଦ୍ର ମଜୁମଦାର (ପ୍ରଧାନ ଶିକ୍ଷକ)
ଅମୃତାନନ୍ଦ ଗୁପ୍ତ
ଧୀରେନ୍ଦ୍ରନାଥ ଚୌଧୁରୀ (ପ୍ର. ଶି.)
ବିପିନବିହାରୀ ଚକ୍ରବର୍ତ୍ତୀ ,,
ରସରଞ୍ଜନ ସେନ ,,
ଅବିନାଶ ଚନ୍ଦ୍ର ଲାହିଡ଼ୀ ,,
ସତ୍ୟକିଙ୍କର ମୁଖୋପାଧ୍ୟାୟ
କୃଷ୍ଣପ୍ରସାଦ ବସାକ ,,
କଶୋରୀ ମୋହନ ଜୋୟାରଦାର (ପ୍ର.ଶି.)
ଶ୍ରୀ ନଗେନ୍ଦ୍ରନାଥ ଚଟ୍ଟୋପାଧ୍ୟାୟ ,,
ଶ୍ରୀ ଅମିତାଭ ଗୁହ
ଜ୍ଞାନେନ୍ଦ୍ର କୁମାର ହାଲଦାର (ପ୍ର. ଶି.)
ଶ୍ରୀ ଗୋକୁଳ ଚନ୍ଦ୍ର ପାଇନ ,,

**ଅନ୍ୟାନ୍ୟ**

ଅଧ୍ୟାପକ ଶଶିଭୂଷଣ ଦତ୍ତ
,, ନଳିନୀ କୁମାର ଦତ୍ତ
,, କ୍ଷୀରୋଦ ଚନ୍ଦ୍ର ଗୁପ୍ତ ଚୌଧୁରୀ
,, ନଗେନ୍ଦ୍ରନାଥ ମିତ୍ର
ରାଇ ପ୍ରିୟନାଥ ମଲ୍ଲିକ
ଲାଲମୋହନ ଚଟ୍ଟୋପାଧ୍ୟାୟ
ତ୍ରୈଲୋକନାଥ ଚକ୍ରବର୍ତ୍ତୀ
ଡା. ପ୍ରେମାନନ୍ଦ ଦାସ
କୃଷ୍ଣ ବିହାରୀ ଗୁହ
ଇନ୍ଦୁବାଳା ଘୋଷାଲ
ଶ୍ରୀ ହରମୋହନ ଘୋଷାଲ
ଶ୍ରୀ ଶ୍ରୀଶଚନ୍ଦ୍ର ମଜୁମଦାର
ରଜନୀକାନ୍ତ ଘୋଷ
ରାଧାକାନ୍ତ ବନ୍ଦ୍ୟୋପାଧ୍ୟାୟ
ଅଧ୍ୟାପକ ଶ୍ରୀ ନିରଞ୍ଜନ ନିୟୋଗୀ
ଗିରିଶ ଚନ୍ଦ୍ର ଚକ୍ରବର୍ତ୍ତୀ
ଶ୍ରୀ ସତ୍ୟଭୂଷଣ ଦାସଗୁପ୍ତ
ଶ୍ରୀ ସୁଧାଂଶୁ ମୋହନ ଚଟ୍ଟୋପାଧ୍ୟାୟ

ରେଭେନ୍ସା ବାଳିକା ବିଦ୍ୟାଳୟର ଅଧ୍ୟାପିକା ଓ ଶିକ୍ଷୟିତ୍ରୀଗଣ :—

ଜ୍ୟୋତିର୍ମୟୀ ଗାଙ୍ଗୁଲି
ସରୋଜିନୀ ଦତ୍ତ
ଭକ୍ତିଲତା ଚନ୍ଦ
ଅମରବାଳା ପାଲ
ଅମିୟବାଳା ପାଲ
ସୁବାଳା ଗୁପ୍ତ
ସୁଫଳା ଗୁପ୍ତ

ଏମାନଙ୍କ ମଧ୍ୟରେ ଅନେକେ ସପରିବାର ବାସ କରୁଥିଲେ । ଏହି ସମସ୍ତ ବ୍ରାହ୍ମ-ବ୍ରାହ୍ମିକାମାନଙ୍କ ସଙ୍ଗ ଓ ସାହାଯ୍ୟ, ବିଶେଷତଃ ଅଧ୍ୟାପକ ଶ୍ରୀ ନିରଞ୍ଜନ ନିୟୋଗୀ ମହାଶୟଙ୍କ ଉଚ୍ଚଭାବ ଓ ଭକ୍ତିପୂର୍ଣ୍ଣ ଉପାସନା ଏବଂ ଉପଦେଶ, ଦୀର୍ଘକାଳ ଉତ୍କଳ ବ୍ରାହ୍ମସମାଜକୁ ନାନା ଭାବରେ ସମୃଦ୍ଧ କରିଅଛି । ସ୍ୱର୍ଗୀୟା ଚଞ୍ଚଳାଦେବୀ (ଲାଲମୋହନ ଚଟ୍ଟୋପାଧ୍ୟାୟଙ୍କ ଶ୍ୱଶ୍ରୂଦେବୀ) ମଧ୍ୟ ସମୟ ସମୟରେ କଟକ ଆସି କନ୍ୟା ଓ ଜାମାତାଙ୍କ ସଙ୍ଗରେ କିଛିଦିନ କଟାଇ ଯାଉଥିଲେ । ଏହି ଧର୍ମପ୍ରାଣା ମହିଳାଙ୍କ ସଙ୍ଗ ଓ ସାହଚର୍ଯ୍ୟ ସ୍ଥାନୀୟ ବ୍ରାହ୍ମ-ବ୍ରାହ୍ମିକାମାନଙ୍କ ଜୀବନରେ କଲ୍ୟାଣକର ହୋଇଥିଲା । ଭକ୍ତିଭାଜନ ଶ୍ରୀନାଥ ଚନ୍ଦ୍ର ମହାଶୟ ମଧ୍ୟ ଜଳବାୟୁ ପରିବର୍ତ୍ତନ ଲାଗି ମୟମନସିଂହରୁ କଟକ ଆସି କେତେ ମାସ ତାଙ୍କ ଅଧ୍ୟାପିକା କନ୍ୟା ପାଖରେ ଥିଲେ ।

ମଧୁସୂଦନଙ୍କର କନିଷ୍ଠ ସହୋଦର ଜଗନ୍ନାଥ ରାଓଙ୍କ ଦ୍ୱିତୀୟା କନ୍ୟା ସରସ୍ୱତୀଙ୍କ ସହିତ ନବବିଧାନ ବ୍ରାହ୍ମସମାଜର ଉପାଧ୍ୟାୟ ଗୌରଗୋବିନ୍ଦ ରାୟ ମହାଶୟଙ୍କ ଜ୍ୟେଷ୍ଠପୁତ୍ର ଅମୃତାନନ୍ଦଙ୍କ ବିବାହ ୧୮୯୧ ଖ୍ରୀଷ୍ଟାବ୍ଦରେ କଟକରେ ହୋଇଥିଲା । ଏହି ଉପଲକ୍ଷେ ନବବିଧାନ ସମାଜର ବହୁ ବିଶିଷ୍ଟ ଆଚାର୍ଯ୍ୟ ପ୍ରଚାରକ ଓ ଉଚ୍ଚଶିକ୍ଷିତ ଯୁବକ ଅଧ୍ୟାପକ କଟକ ଆସିଥିଲେ । ସେମାନଙ୍କ ଉପାସନା ସଙ୍ଗୀତ, ବକ୍ତୃତା ପ୍ରଭୃତି ଦ୍ୱାରା ଉତ୍କଳ ବ୍ରାହ୍ମମଣ୍ଡଳୀର ବହୁ ଉନ୍ନତି ସାଧନ ହୋଇଥିଲା ।

ପଣ୍ଡିତ ଶିବନାଥ ଶାସ୍ତ୍ରୀ ମହାଶୟଙ୍କ ପୁତ୍ର ପ୍ରିୟନାଥଙ୍କ ବିବାହ ୧୯୦୮ ଖ୍ରୀଷ୍ଟାବ୍ଦ ଏପ୍ରିଲ ୪ ତାରିଖରେ ମଧୁସୂଦନଙ୍କ ଦ୍ୱିତୀୟା କନ୍ୟା ଅବନ୍ତୀଙ୍କ ସହିତ ସମ୍ପନ୍ନ ହେଲା । ସେହି ଉପଲକ୍ଷେ ଶାସ୍ତ୍ରୀ ମହାଶୟ, ଆଚାର୍ଯ୍ୟ ନଗେନ୍ଦ୍ରନାଥ ଚଟ୍ଟୋପାଧ୍ୟାୟ, ଉପେନ୍ଦ୍ର କିଶୋର ରାୟଚୌଧୁରୀ, ଡାକ୍ତର ବିପିନ ବିହାରୀ ସରକାର, କୃଷ୍ଣଲାଲ ଘୋଷ, "ବିଦ୍ୟାସାଗର ଚରିତ" ରଚୟିତା ଚଣ୍ଡୀଚରଣ ବନ୍ଦ୍ୟୋପାଧ୍ୟାୟ ପ୍ରଭୃତି ବିଶିଷ୍ଟ ବ୍ରାହ୍ମମାନେ କଟକ ଯାଇଥିଲେ । ଏମାନଙ୍କ ଆଗମନରେ ସେମାନଙ୍କ ଉପାସନା ଆଲୋଚନାଦିରେ ଯୋଗଦାନ କରି ସ୍ଥାନୀୟ ବ୍ରାହ୍ମମାନେ ଉପକୃତ ହୋଇଥିଲେ । ବିବାହର ପରଦିନ ପଣ୍ଡିତ ଶିବନାଥ ଶାସ୍ତ୍ରୀ ମହାଶୟଙ୍କ ଓଜସ୍ୱିନୀ ବକ୍ତୃତା ଶ୍ରବଣ କରି ସ୍ଥାନୀୟ ବହୁ ଶିକ୍ଷିତ ଭଦ୍ରମଣ୍ଡଳୀ ଚମତ୍କୃତ ହୋଇଥିଲେ । ପରେ ଶାସ୍ତ୍ରୀ

ମହାଶୟ ଜଳବାୟୁ ପରିବର୍ତ୍ତନ ନିମିତ୍ତ କଟକ ଓ ଭୁବନେଶ୍ୱରକୁ ମଧ୍ୟେ ମଧ୍ୟେ ଆସି ବାସ କରୁଥିଲେ । ସାପ୍ତାହିକ ଉପାସନା ମଧ୍ୟ ମନ୍ଦିରରେ ମନ୍ଦିରରେ କରୁଥିଲେ । ତାଙ୍କ କଟକ ଅବସ୍ଥାନ ସମୟରେ ସ୍ଥାନୀୟ ବ୍ରାହ୍ମମାନେ ପ୍ରାୟ ପ୍ରତିଦିନ ସନ୍ଧ୍ୟାରେ ତାଙ୍କ ଗୃହରେ ମିଳିତ ହେଉଥିଲେ, ବହୁପ୍ରକାର ସମାଲୋଚନା ହେଉଥିଲା । ସାଧାରଣ ବ୍ରାହ୍ମସମାଜର ଏବଂ ଭାରତବର୍ଷୀୟ ବ୍ରାହ୍ମସମାଜର ବହୁ ପ୍ରଚାରକ ଓ ବିଶିଷ୍ଟ ବ୍ୟକ୍ତିଙ୍କ ଆଗମନରେ ଉତ୍କଳ ବ୍ରାହ୍ମସମାଜ ବହୁଭାବରେ ଉପକୃତ ହୋଇଅଛି ।

ବେଣୀମାଧବ ଦାସ ମହାଶୟ ରେଭେନ୍‌ସା ସ୍କୁଲର ପ୍ରଧାନଶିକ୍ଷକ ରୂପେ କଟକରେ କେତେବର୍ଷ ବାସ କରିଥିଲେ । ଏହି ସାଧୁ ଭକ୍ତ ଜ୍ଞାନୀ ବ୍ରାହ୍ମଙ୍କ ଜୀବନପ୍ରଭାବ ଓଡ଼ିଶାର ଛାତ୍ର ଓ ଜନସମାଜର ପ୍ରଭୂତ କଲ୍ୟାଣ କରିଥିଲା । ଉତ୍କଳ ବ୍ରାହ୍ମସମାଜ ସହିତ ଏହାଙ୍କର ଗଭୀର ସଯୋଗ ଥିଲା । ଏ ମଧ୍ୟ ସ୍ଥାନୀୟ ମନ୍ଦିରରେ ଉପାସନା କରୁଥିଲେ । ନେତାଜୀ ସୁଭାଷଚନ୍ଦ୍ର ବସୁ ରେଭେନ୍‌ସା କଲେଜିଏଟ୍ ସ୍କୁଲରେ ଏହାଙ୍କର ଛାତ୍ର ଥିଲେ । ସେ ମୁକ୍ତ କଣ୍ଠରେ ବେଣୀମାଧବ ଦାସଙ୍କ ପ୍ରତି ଶ୍ରଦ୍ଧା ଜ୍ଞାପନ କରିଅଛନ୍ତି ।

ଶଶୀଭୂଷଣ ମଜୁମ୍‌ଦାର୍ ଓଡ଼ିଶାର ସାଧାରଣ ପୂର୍ତ୍ତ ବିଭାଗରେ (P. W. D ) ଦୀର୍ଘକାଳ ଇଞ୍ଜିନିୟର କାର୍ଯ୍ୟ କରିଥିଲେ । ଉତ୍କଳ ବ୍ରାହ୍ମ-ସମାଜରେ ପୂର୍ବେ ଗୋଟିଏ କାଷ୍ଠନିର୍ମିତ ବେଦୀରେ ଆଚାର୍ଯ୍ୟ ବସି ଉପାସନା କରୁଥିଲେ ଓ ମାଟିରେ ସତରଞ୍ଜି ବା ଚଟେଇ ଉପରେ ବସି ଉପାସକମାନେ ଉପାସନାରେ ଯୋଗ ଦେଉଥିଲେ । ଶଶୀଭୂଷଣ ମଜୁମଦାର ମହାଶୟଙ୍କ ଉଦ୍ୟୋଗରେ ଆଚାର୍ଯ୍ୟଙ୍କ ବସିବା ପାଇଁ ଇଷ୍ଟକନିର୍ମିତ ବେଦୀ ଓ ଉପାସକମାନଙ୍କ ପାଇଁ ବେଞ୍ଚର ବ୍ୟବସ୍ଥା କରାଗଲା । ପରେ ଏହି ଇଷ୍ଟକନିର୍ମିତ ବେଦୀ ଭଙ୍ଗାଯାଇ ବର୍ତ୍ତମାନର କାଷ୍ଠନିର୍ମିତ ବେଦୀଟି ସ୍ଥାପନ କରାଯାଇଛି । ଶଶୀବାବୁଙ୍କ ସହଧର୍ମିଣୀ ଜ୍ଞାନଦା ମଜୁମଦାରଙ୍କ ଚେଷ୍ଟାରେ ଗୋଟିଏ ନୀତି ବିଦ୍ୟାଳୟ ସ୍ଥାପିତ ହୋଇ-ଥିଲା । ପ୍ରତି ରବିବାର ସକାଳେ ବାଳକ ବାଳିକାମାନଙ୍କୁ ଧର୍ମ ଓ ନୀତିଶିକ୍ଷା ଦିଆହେଉଥିଲା । ଶଶୀବାବୁ କଟକରୁ ବଦଳି ହୋଇ ଅନ୍ୟତ୍ର ଚାଲିଯିବା ବେଳେ ଏହି ବିଦ୍ୟାଳୟର ଛାତ୍ରଛାତ୍ରୀମାନେ ସେମାନଙ୍କୁ ବିଦାୟ ଅଭିନନ୍ଦନ ଦେଇଥିଲେ । ଏହି ଉପଲକ୍ଷେ ମଧୁସୂଦନଙ୍କ ରଚିତ ଗୋଟିଏ କବିତା

ବିମଳ ଦାସ (ବେଣୀମାଧବ ଦାସ ମହାଶୟଙ୍କ ଜ୍ୟେଷ୍ଠପୁତ୍ର ଏବଂ ଏହି ମିଶନ ବିଦ୍ୟାଳୟର ଛାତ୍ର) ଆବୃତ୍ତି କରିଥିଲେ । ଆବୃତ୍ତିଟି ଏପରି ମର୍ମସ୍ପର୍ଶୀ ହୋଇ-ଥିଲା ଯେ, ଜ୍ଞାନଦା ଦେବୀ ତାହା ଶୁଣି ଅଶ୍ରୁ ସମ୍ବରଣ କରିପାରି ନ ଥିଲେ । ଆବୃତ୍ତିର କବିତାଟି ନିମ୍ନରେ ଉଦ୍ଧୃତ ହେଲା ।

ପୂଜନୀୟା

ଶ୍ରୀମତୀ ଜ୍ଞାନଦା ମଜୁମଦାର ମହାଶୟା—

ଶ୍ରୀଚରଣକମଳେଷୁ ।

ମାତୃସମା ସ୍ନେହମୟୀ ! ଯାଇଛେଛ ଚଲେ<br>
ବିଧିର ନିର୍ଦ୍ଦେଶେ, ପତିସନେ ଅନ୍ୟସ୍ଥଳେ ।<br>
ତବ ସ୍ନେହ-ପୁଣ୍ୟ-ସୁଧା ଆମାଦେର ପ୍ରାଣ<br>
କତ ସୁଖେ ଏତକାଲ କରିୟାଛେ ପାନ ।<br>
କତ ଯତ୍ନ ଆମାଦେର ମଙ୍ଗଲେର ତରେ<br>
କରିୟାଛ ଦୟାମୟି, ପ୍ରଫୁଲ୍ଲ ଅନ୍ତରେ ।<br>
କ୍ଷମିୟାଛ କତ ଦୋଷ, ହରିୟାଛ ବ୍ୟଥା<br>
ଶିଖାୟେଛ କତ ଭାଲ କତ ପୁଣ୍ୟ କଥା ।<br>
ତବ ପତିଦେବ ଆହା କତଇ ଯତନ<br>
କରେଛେନ ଆମାଦେର ହିତେର କାରଣ ।<br>
କରୁଣା ଆପନାଦେର ସ୍ମରି ଭକ୍ତିଭରେ<br>
ନମି ଶ୍ରୀଚରଣେ ଆଜ ବିଦାୟ ବାସରେ ।

ଜୁଲାଇ ୭ ତାରିଖ, ୧୯୦୫, ରିବିବାସରୀୟ ମିଶନବିଦ୍ୟାଳୟର<br>
କଟକ ଭୂତପୂର୍ବ ଏବଂ ବର୍ତ୍ତମାନ ଛାତ୍ରଛାତ୍ରୀଗଣ

## (୨) ବାଲେଶ୍ୱର ବ୍ରାହ୍ମସମାଜ

ଓଡ଼ିଶା ଦୀର୍ଘକାଳ ମୋଗଲବନ୍ଦୀ ଓ ଗଡ଼ଜାତ ଏହି ଦୁଇଭାଗରେ ବିଭକ୍ତ ଥିଲା । କଟକ, ପୁରୀ ଓ ବାଲେଶ୍ୱର ଏହି ତିନୋଟି ଜିଲ୍ଲା ମୋଗଲ-ବନ୍ଦୀର ଅନ୍ତର୍ଗତ । ବାଲେଶ୍ୱର ବଙ୍ଗଦେଶର ନିକଟବର୍ତ୍ତୀ । ବାଲେଶ୍ୱର ପର୍ବତ ନଦୀ ସମୁଦ୍ର ଓ ବନଜଙ୍ଗଲର ସମ୍ପଦରେ ପୂର୍ଣ୍ଣ । ଏହା ଏକ ସମୟରେ ବ୍ୟବସାୟ ବାଣିଜ୍ୟରେ ମଧ୍ୟ ସମୃଦ୍ଧ ଥିଲା ।

୧୮୭୩ ବା ୧୮୭୫ ଖ୍ରୀଷ୍ଟାବ୍ଦରେ ଆଦି ବ୍ରାହ୍ମସମାଜର ପ୍ରଚାରକ ଇଶାନ ଚନ୍ଦ୍ର ବସୁ ବ୍ରାହ୍ମଧର୍ମ ପ୍ରଚାର କରିବାକୁ ବାଲେଶ୍ୱର ଆସିଲେ । ସେ ସନ୍ଧ୍ୟା ସମୟରେ ଫକୀର ମୋହନ ସେନାପତି, ଗୋବିନ୍ଦ ଚନ୍ଦ୍ର ପଟ୍ଟନାୟକ ପ୍ରଭୃତିଙ୍କୁ ଘେନି ଧର୍ମାଲୋଚନା କରୁଥିଲେ । କିଛିଦିନ ପରେ କମିଶନରଙ୍କ ଅଫିସର କିରାଣୀ କର୍ମରେ ପ୍ରସନ୍ନ କୁମାର ଚଟ୍ଟୋପାଧ୍ୟାୟ ବାଲେଶ୍ୱର ଆସିବାରୁ ରବିବାର ସନ୍ଧ୍ୟାରେ ତାଙ୍କ ବସାରେ ଏମାନେ ମିଳିତ ହୋଇ ଉପାସନା କରୁଥିଲେ । ତତ୍‌ପରେ ୧୮୮୭ ଖ୍ରୀଷ୍ଟାବ୍ଦରେ ଏମାନେ ରାଜକୋଠା ଉଦ୍ୟାନସ୍ଥିତ ଭଗ୍ନ ଦ୍ୱିତଳ ଗୃହରେ ଉପାସନାର ବ୍ୟବସ୍ଥା କଲେ । ସେତେବେଳେ ଏହା ଦେଶବାସୀଙ୍କ ଦୃଷ୍ଟି ଆକର୍ଷଣ କଲା, ଏମାନେ ଏହାକୁ ହିନ୍ଦୁଧର୍ମ ଓ ଜାତିଭେଦର ବିରୋଧୀ ଦେଖି ଘୋର ଆନ୍ଦୋଳନ ଆରମ୍ଭ କଲେ । ଯୁବକମାନେ ତତ୍ପରେ ଗୋଟିଏ ମାଟିର କୁଟୀରଘର ନିର୍ମାଣ କରି ସେଠାରେ ଉପାସନା କରୁଥିଲେ ।

ଈଶ୍ୱରଙ୍କ କୃପାରୁ ସ୍ଥାନୀୟ ଉଚ୍ଚ ଇଂରାଜୀ ବିଦ୍ୟାଳୟର କେତୋଟି ବିପଥଗାମୀ ଛାତ୍ରଙ୍କ ହୃଦୟ ବ୍ରାହ୍ମମାନଙ୍କ ଜୀବନ ପ୍ରଭାବରେ ପରିବର୍ତ୍ତିତ ହେଲା ଏବଂ ସେମାନେ ବ୍ରାହ୍ମଧର୍ମ ପ୍ରତି ଆକୃଷ୍ଟ ହେଲେ । ଏମାନଙ୍କ ମଧ୍ୟରେ ଥିଲେ ଭଗବାନ ଚନ୍ଦ୍ର ଦାସ, ରମାନାଥ ଦାସ, ଉଦୟ ଚନ୍ଦ୍ର ଦେ, ରାଧାମୋହନ ସେନାପତି ଓ ସୁଦର୍ଶନ ଦାସ । ଭଗବାନ ଚନ୍ଦ୍ର ଦାସ । ଶୈଶବରେ ମାତୃହୀନ ହୋଇଥିଲେ, ପିତା ମଦନ-ମୋହନ ବୈଷୟିକ କାର୍ଯ୍ୟରେ ବ୍ୟସ୍ତ ଥିବାରୁ ପୁତ୍ର ପ୍ରତି ଦୃଷ୍ଟି ରଖିପାରୁ-ନଥିଲେ । ଧନୀର ସନ୍ତାନ ଭଗବାନ ଦାସ ଏହି ସୁଯୋଗରେ କୁସଙ୍ଗରେ ମିଶୁଥିଲେ । ଦିନେ ପିତାଙ୍କ ତିରସ୍କାରରେ ରାଗି ଘରୁ ପଳାଇ କଲିକତାଭିମୁଖେ ଯାତ୍ରା କଲେ । ପଦବ୍ରଜରେ ତାଙ୍କୁ ରାସ୍ତାରେ ଚାଲିବାର ଦେଖି ଫକୀରମୋହନ ସେନାପତି ତାଙ୍କୁ ନିଜ ଗାଡ଼ିରେ ଉଠାଇ ନେଲେ । ସେ ମଧ୍ୟ କଲିକତା ଯାଉଥିଲେ, ସେତେବେଳେ ରେଳପଥ ନଥିଲା । ଫକୀର ମୋହନ ସେନାପତି ଭଗବାନ ଚନ୍ଦ୍ରଙ୍କୁ ଅନେକ ବୁଝାଇଲେ । କଲିକତା ଯାଇ ଭଗବାନବାବୁ ସେମାନଙ୍କ ତତ୍ତ୍ୱାବଧାନରେ ରହିଲେ । ଫକୀର ମୋହନ ତାହାଙ୍କୁ ବ୍ରହ୍ମାନନ୍ଦ କେଶବଚନ୍ଦ୍ରଙ୍କ ଉପାସନାକୁ ନେଇଯିବା ପାଇଁ ଚେଷ୍ଟା କରୁଥିଲେ । ଏଥି-ମଧ୍ୟରେ ଦିନେ ରାସ୍ତାରେ ଖଣ୍ଡିଏ ଦୁଇପଇସା ଦାମ୍‌ର ଉପାସନା ପ୍ରଣାଳୀ ପୁସ୍ତକ ଭଗବାନଚନ୍ଦ୍ରଙ୍କ ହସ୍ତଗତ ହେଲା । ସେ ତାହା ବାରମ୍ବାର ପାଠ କଲେ ଏବଂ

ନିଜ ଜୀବନ କଥା ଭାବି ଅନୁତପ୍ତ ହେଲେ । ପରେ ବ୍ରହ୍ମାନନ୍ଦ ଉପାସନାରେ ଯୋଗଦେଇ ସତେଯେପରି ସେ ନବଜୀବନ ଲାଭ କଲେ । ଭଗବାନ ଚନ୍ଦ୍ର ବାଲେଶ୍ୱର ଫେରି ବାରବାଟୀସ୍ଥ ସ୍ୱୀୟ ଗୃହରେ ୧୨୭୬ ବଙ୍ଗାବ୍ଦରେ (୧୮୬୯ ଖ୍ରୀଷ୍ଟାବ୍ଦ) ଆଷାଢ଼ ୨୯ ତାରିଖ, ଶନିବାର ଦିନ ରମାନାଥ ଦାସ, ଉପେନ୍ଦ୍ର ଚନ୍ଦ୍ର ଦେ ପ୍ରଭୃତି କେତେକ ବନ୍ଧୁଙ୍କୁ ନେଇ ବ୍ରହ୍ମୋପାସନା ଆରମ୍ଭ କଲେ । ଉପାସନା ପଦ୍ଧତି ସମ୍ବନ୍ଧରେ ତାଙ୍କର ଅଭିଜ୍ଞତା ନଥିଲା । ସମସ୍ତେ ଏକତ୍ର ବସୁଥିଲେ—ନିଜର ଅତୀତ ଜୀବନ କଥା ସ୍ମରଣ କରି ଅନୁତପ୍ତ ହୋଇ କାନ୍ଦି କାନ୍ଦି ଈଶ୍ୱରଙ୍କର ଚରଣରେ ପ୍ରାର୍ଥନା କରୁଥିଲେ । ରାଜା ରାମମୋହନ ରାୟଙ୍କ ରଚିତ ସଙ୍ଗୀତ ଗାଉଥିଲେ । ଉପାସନା ଦ୍ୱାରା ସେମାନେ ପ୍ରାଣରେ ସାନ୍ତ୍ୱନା ଓ ବଳ ଲାଭ କରିବାକୁ ଲାଗିଲେ ।

ସାଧାରଣ ଲୋକେ ଏମାନଙ୍କୁ ବିଧର୍ମୀ ବୋଲି ରଟନା କରି ଏମାନଙ୍କ ବିରୁଦ୍ଧରେ ସମସ୍ତଙ୍କୁ ଉତ୍ତେଜିତ କରିବାକୁ ଲାଗିଲେ । ବିଶେଷତଃ ଭଗବାନ-ବାବୁଙ୍କ ପିତା ମଦନବାବୁଙ୍କ ନିକଟକୁ ଯାଇ ପୁତ୍ର ବିରୁଦ୍ଧରେ ଅଭିଯୋଗ କରିବାକୁ ଲାଗିଲେ କିନ୍ତୁ ମଦନବାବୁ କହିଲେ ଯେଉଁ ଧର୍ମ ମଣିଷକୁ କୁପଥରୁ ସୁପଥକୁ ଆଣିପାରେ ତାହା କଦାପି ମନ୍ଦ ନୁହେଁ ।

ବାଲେଶ୍ୱରରେ ଇତିପୂର୍ବେ ଯେଉଁ ଆଦି ବ୍ରାହ୍ମସମାଜ ସ୍ଥାପିତ ହୋଇଥିଲା, ଏହି ଯୁବକ ଦଳ ସେହି ଆଦି ବ୍ରାହ୍ମସମାଜର ଉପାସନା ଗୃହରେ ଉପାସନା କରିବା ପାଇଁ ଅନୁମତି ଭିକ୍ଷାକରି ତାହା ପାଇବାରୁ ପ୍ରତି ଶନିବାର ଦିନ ଏମାନେ ସେହି ଗୃହରେ ଉପାସନା କରିବାକୁ ଲାଗିଲେ । ଆଦି ବ୍ରାହ୍ମ-ସମାଜଭୁକ୍ତ ବାଲେଶ୍ୱରର ସଭ୍ୟମାନେ ରବିବାରରେ ଉପାସନା କରୁଥିଲେ । ପରେ ଏମାନେ ସେହି ଗୃହରେ ଗୋଟିଏ ବ୍ରାହ୍ମବିଦ୍ୟାଳୟ ସ୍ଥାପନ କଲେ । ୧୮୭୦ ଖ୍ରୀଷ୍ଟାବ୍ଦରେ ଏହି ଯୁବକମାନେ ଅତି ସମାରୋହରେ ବାର୍ଷିକ ଉତ୍ସବ ସମ୍ପନ୍ନ କଲେ । ସେଥିରେ ସହରର ଗଣ୍ୟମାନ୍ୟ ବ୍ୟକ୍ତିଗଣ ଏପରିକି ସ୍ଥାନୀୟ ଆମେରିକାନ୍ ଖ୍ରୀଷ୍ଟୀୟ ବ୍ୟାପ୍‌ଟିଷ୍ଟ ମିଶନାରୀମାନେ ମଧ୍ୟ ଯୋଗ ଦେଇଥିଲେ ।

ଆଦି ବ୍ରାହ୍ମସମାଜର ଆଚାର୍ଯ୍ୟ ଜଗବନ୍ଧୁ ଘୋଷ କଟକ ବଦଳି ହୋଇଯିବାରୁ ଏହି ସମାଜଭୁକ୍ତ ସଭ୍ୟମାନେ ସେମାନଙ୍କ କାଗଜପତ୍ର ଓ ପୁସ୍ତକାଦି ସମେତ ସମାଜ ଗୃହକୁ ନବ୍ୟଦଳଙ୍କ ହସ୍ତରେ ଅର୍ପଣ କରି

ସେମାନଙ୍କ ସହିତ ମିଳିତ ହେଲେ । ତଦବଧି ଏହି ମିଳିତ ସମାଜର ନାମ "ବାଲେଶ୍ୱର-ବ୍ରାହ୍ମସମାଜ" ହେଲା । ନୂତନ ନିୟମାବଳୀ ଗଠିତ ହେଲା ଓ ଶନିବାର ପରିବର୍ତ୍ତେ ରବିବାରରେ ଉପାସନା ହେବାକୁ ଲାଗିଲା ।

୧୮୭୧ ଖ୍ରୀଷ୍ଟାବ୍ଦରେ ସାଧୁ ଅଘୋରନାଥ ଗୁପ୍ତ ବାଲେଶ୍ୱର ଆସିଲେ । ସେ ଏଠାରେ ଭାରତବର୍ଷୀୟ ବ୍ରାହ୍ମସମାଜର ଉପାସନା ପ୍ରଣାଳୀ ପ୍ରଚଳନ କଲେ । ସେହି ସମୟରେ ବାଲି ନିବାସୀ, ନୀଳମଣିକାନ୍ତ କୁଅଁର ବାଲେଶ୍ୱର ଜିଲ୍ଲାର ସାଧାରଣ ପୂର୍ତ୍ତ ବିଭାଗରେ କାର୍ଯ୍ୟ କରୁଥିଲେ । ପ୍ରତି ରବିବାର ୧୮ ମାଇଲ ଦୂରବର୍ତ୍ତୀ ସ୍ଥାନରୁ ଆସି ସେ ଉପାସନାରେ ଯୋଗ ଦେଉଥିଲେ; ବ୍ରାହ୍ମ ଆଦର୍ଶରେ ଅନୁପ୍ରାଣିତ ଏହାଙ୍କର ଜୀବନଚର୍ଯ୍ୟା ପ୍ରଭାବରେ ସ୍ଥାନୀୟ ବ୍ରାହ୍ମମାନେ ଉପକୃତ ହେଉଥିଲେ ।

ଏହି ସମୟରେ ବ୍ରାହ୍ମମାନଙ୍କ ଦ୍ୱାରା କେତୋଟି ଜନହିତକର ପ୍ରତିଷ୍ଠାନ– ଯଥା, ମଧ୍ୟ ଇଂରାଜୀ ବିଦ୍ୟାଳୟ, ନୈଶବିଦ୍ୟାଳୟ, ବାଳିକା ବିଦ୍ୟାଳୟ, ଅନାଥାଶ୍ରମ, ତତ୍ତ୍ୱବୋଧିନୀ ସଭା, ସଙ୍ଗୀତ ବିଦ୍ୟାଳୟ ପ୍ରଭୃତି ପ୍ରତିଷ୍ଠିତ ହୋଇଥିଲା । ଗୋଟିଏ ମାସିକ ପତ୍ରିକା ମଧ୍ୟ ପ୍ରକାଶିତ ହୋଇଥିଲା ।

୧୮୭୨ ଖ୍ରୀଷ୍ଟାବ୍ଦରେ ଝଡ଼ରେ ମାଟିର ଉପାସନା ଗୃହଟି ଭାଙ୍ଗିଗଲା । ସେହି ସମୟରୁ ଗୋଟିଏ ଇଷ୍ଟକ ନିର୍ମିତ ଉପାସନା ଗୃହ ନିର୍ମାଣ କରିବା ପାଇଁ ଧନୀ, ଦରିଦ୍ର ନିର୍ବିଶେଷରେ ସମସ୍ତଙ୍କ ନିକଟରୁ ଚାନ୍ଦା ସଂଗ୍ରହ ହେଲା । କୁମାର (ପରେ ମହାରାଜା) ବୈକୁଣ୍ଠନାଥ ଦେ, ନିଜେ ହିନ୍ଦୁ ହେଲେହେଁ, ଏହି ମନ୍ଦିର ନିର୍ମାଣ କାର୍ଯ୍ୟରେ ଅର୍ଥ ଓ ସାମର୍ଥ୍ୟ ଦେଇ ବହୁ ସାହାଯ୍ୟ କରିଥିଲେ । ରାଣୀ ସ୍ୱର୍ଣ୍ଣମୟୀ ଓ ଲକ୍ଷ୍ମଣନାଥର ତତ୍କାଳୀନ ଜମିଦାର ରାୟ ମହାଶୟଙ୍କର ଦାନ ମଧ୍ୟ ଉଲ୍ଲେଖଯୋଗ୍ୟ । ଯଥେଷ୍ଟ ଅର୍ଥ ସଂଗୃହୀତ ହେଲେ ମଧ୍ୟ ନିର୍ମାଣର ଉପଯୁକ୍ତ ଜମି ମିଳିଲା ନାହିଁ । ୧୮୮୦ ଖ୍ରୀଷ୍ଟାବ୍ଦରେ ବାଲେଶ୍ୱରର ପୁରାତନ ଜିଲ୍ଲା ସ୍କୁଲର ନିକଟବର୍ତ୍ତୀ ଗୋଡ଼ପୋଖରୀସ୍ଥିତ ରମଣୀୟ ସ୍ଥାନଟି ନିର୍ବାଚିତ ହେଲା ଏବଂ ନୂତନ ମନ୍ଦିର-ଗୃହ ନିର୍ମିତ ହୋଇ ୧୮୮୨ ଖ୍ରୀଷ୍ଟାବ୍ଦ ଜୁଲାଇ ମାସରେ (ଆଷାଢ଼) ମହାସମାରୋହରେ ନୂତନ ମନ୍ଦିରରେ ଗୃହ ପ୍ରବେଶ ଉତ୍ସବ ସମ୍ପନ୍ନ ହେଲା ।

୧୮୭୨ ଖ୍ରୀଷ୍ଟାବ୍ଦରୁ ୧୮୮୨ ଖ୍ରୀଷ୍ଟାବ୍ଦର ପର୍ଯ୍ୟନ୍ତ ନିର୍ଦ୍ଦିଷ୍ଟ ଉପାସନାଗୃହ ନଥିଲେ ମଧ୍ୟ ବ୍ରାହ୍ମମଣ୍ଡଳୀ ଭଗବତ୍ କୃପାରୁ ଆଧ୍ୟାତ୍ମିକ ଜୀବନରେ ବିଶେଷ ଉନ୍ନତିଲାଭ କରିଥିଲେ । ସେ ସମୟରେ ଯୁବକ-ବ୍ରାହ୍ମ ଦ୍ୱିଜଦାସ ଦତ୍ତ ମହାଶୟ ସ୍ଥାନୀୟ ଉଚ୍ଚ ଇଂରାଜୀ ବିଦ୍ୟାଳୟରେ ପ୍ରଧାନଶିକ୍ଷକ ଥିଲେ । ପଣ୍ଡିତ ରାମକୁମାର ବିଦ୍ୟାରତ୍ନ ଓ ସାଧୁ ଅଘୋରନାଥ ଗୁପ୍ତ ଧର୍ମପ୍ରଚାର ନିମିତ୍ତ କେତେଥର ବାଲେଶ୍ୱର ଆସିଥିଲେ । ପ୍ରତିବର୍ଷ ମାଘ ଓ ଆଷାଢ଼ ମାସରେ ସ୍ଥାନୀୟ ଜମିଦାରମାନଙ୍କ ବାଡ଼ିବଗିଚାରେ ସମାରୋହ ସହିତ ଉତ୍ସବ ସମ୍ପନ୍ନ ହେଉଥିଲା । ଉତ୍ସବର ଉପାସନା ନଗରକୀର୍ତ୍ତନ ଓ ବକ୍ତୃତା ସମସ୍ତଙ୍କୁ ମୁଗ୍ଧ କରୁଥିଲା । ରାସ୍ତାରେ ପ୍ରକାଶ୍ୟ ସ୍ଥାନରେ ବ୍ରାହ୍ମଧର୍ମ ସମ୍ବନ୍ଧରେ ବକ୍ତୃତା ହେଉଥିଲା । ଏହି ଉପାସନା ଏବଂ କୀର୍ତ୍ତନାଦିରେ ଯୋଗଦେବା ପାଇଁ ବହୁ ଲୋକ ସହର ଓ ମଫସଲରୁ ଆସି ବ୍ରାହ୍ମମାନଙ୍କ ସହିତ ଯୋଗ ଦେଉଥିଲେ । କ୍ରମେ ବିଭିନ୍ନ ସ୍ଥାନରେ ଶାଖା ସମାଜ ମଧ୍ୟ ସ୍ଥାପିତ ହୋଇଥିଲା ।

ପତିତପାବନ ପରମେଶ୍ୱରଙ୍କ କୃପାରୁ କୁପଥଗାମୀ କେତେଗୁଡ଼ିଏ ଯୁବକଙ୍କର ଜୀବନ ବ୍ରାହ୍ମଧର୍ମର ପ୍ରଭାବରେ ପରିବର୍ତ୍ତିତ ହୋଇଥିଲା । ସେମାନଙ୍କ ମଧ୍ୟରେ କାଳନ୍ଦୀ କମିଲା ନାମକ ଜଣେ ଦୁଷ୍କ୍ରିୟାସକ୍ତ ଯୁବକର ଜୀବନରେ ଆଶ୍ଚର୍ଯ୍ୟ ଭାବରେ ବ୍ରାହ୍ମଧର୍ମର ପ୍ରଭାବ ପରିଲକ୍ଷିତ ହୋଇଥିଲା । ଦସ୍ୟୁ ରତ୍ନାକରଙ୍କ ଜୀବନ ପରିବର୍ତ୍ତିତ ହୁଅନ୍ତେ ସେ ଋଷି ବାଲ୍ମୀକି ହୋଇଥିଲେ । ଏ କାହାଣୀ ରାମାୟଣରେ ସମସ୍ତେ ପଢ଼ିଛନ୍ତି । କାଳନ୍ଦୀ କମିଲାଙ୍କ ଜୀବନରେ ତଦନୁରୂପ ପରିବର୍ତ୍ତନ ସେତେବେଳେ ବାଲେଶ୍ୱରବାସୀ ପ୍ରତ୍ୟକ୍ଷ କରିଅଛନ୍ତି । ନାନା ପ୍ରକାର ନିଶାରେ ଆସକ୍ତ କାଳନ୍ଦୀ କମିଲା ଦିନେ ମାତାଲ ହୋଇ ନର୍ଦ୍ଦମାରେ ପଡ଼ିଥିଲେ । ଶେଷ ରାତ୍ରିରେ କାଳୀପ୍ରସାଦ ଦାସ ନାମକ ଜନୈକ ବ୍ରାହ୍ମ ଉପାସନାନ୍ତେ—"ଓହେ ଦୀନନାଥ, କର ଆଶୀର୍ବାଦ ଏହି ଦୀନହୀନ ଦୁର୍ବଳ ସନ୍ତାନେ"—ତ୍ରୈଲୋକ୍ୟନାଥ ସାନ୍ୟାଲଙ୍କ ରଚିତ ଏହି ଗୀତଟି ଗାଉଥିଲେ । ଶୁଭକ୍ଷଣରେ କାଳନ୍ଦୀ କମିଲାଙ୍କ କର୍ଣ୍ଣରେ ଏହି ଗୀତଟି ପ୍ରବେଶ କଲା । ଏହି ଗୀତଟି ଯେତେ ଶୁଣିବାକୁ ଲାଗିଲେ ସେତେ ତାଙ୍କର ହୃଦୟ ଅନୁତାପରେ ଦଗ୍‌ଧ ହେବାକୁ ଲାଗିଲା । ପରେ ସେ କାଳୀବାବୁଙ୍କ ନିକଟକୁ ଯାଇ ସଙ୍ଗୀତଟି ସମ୍ପୂର୍ଣ୍ଣ ଲେଖାଇ ଆଣିଲେ :—

ଓହେ ଦୀନନାଥ କର ଆଶୀର୍ବାଦ ଏଇ ଦୀନହୀନ ଦୁର୍ବଳ ସନ୍ତାନେ
ଯେନେ ଏ ( ସନା କରେ ହେ ଘୋଷଣା, ସତ୍ୟେର ମହିମା
ଜୀବନେ ମରଣେ ।

ତୋମାର ଆଦେଶ ସଦା ଶିରେ ଧରି, ଚିର ଭକ୍ତ ହୟେ ରବ
ଆଜ୍ଞାକାରୀ
ନିର୍ଭୟ ଅନ୍ତରେ ବଲ୍‌ବ ଦ୍ୱାରେ ଦ୍ୱାରେ, ମହାପାପୀ ତରେ
ଦୟାଲ ନାମେର ଗୁଣେ
ଅକପଟ ହୃଦେ ତୋମାୟ ସେବିବ, ପାପେର କୁମନ୍ତ୍ରଣା
ଆର ନା ଶୁନିବ;
ଯା ହବାର ତାଇ ହବେ, ଯାୟ ପ୍ରାଣ ଯାବେ, ତବ ଇଚ୍ଛା
ପୂର୍ଣ୍ଣ ହଉକ ଏ ଜୀବନେ ।
ନିତ୍ୟ ସତ୍ୟବ୍ରତ କରିବ ପାଳନ, ମନ୍ତ୍ରେର ସାଧନ କି ଶରୀର ପତନ,
ଭୟ ବିପଦକାଳେ ଡାକ୍‌ବ ପିତା ବଲେ, ଲଇବ ଶରଣ ଏଇ
ଅଭୟ ଚରଣେ ।

ଅନୁତାପରେ ଜର୍ଜରିତ କାଳନ୍ଦୀ ଦୃଢ଼ପ୍ରତିଜ୍ଞ ହୋଇ ଅଭ୍ୟସ୍ତ ସକଳ ପାପ ବିରୁଦ୍ଧରେ ପ୍ରତିନିୟତ ଦାରୁଣ ସଂଗ୍ରାମ କରି ଜୟଲାଭ କଲେ ଏବଂ ନବଜୀବନ ପଥରେ ଅଗ୍ରସର ହେବାକୁ ଲାଗିଲେ । ଏହି ସଂଗ୍ରାମରେ ତାଙ୍କର ଦେହ ଭଗ୍ନ ହୋଇପଡ଼ିଲା, ଆତ୍ମୀୟ ବନ୍ଧୁଗଣ ଚିନ୍ତିତ ହୋଇ-ପଡ଼ିଲେ; କେହି କେହି ଏତେଦିନର ଅଭ୍ୟସ୍ତ ମାଦକଦ୍ରବ୍ୟ ଏକେବାରେ ପରିତ୍ୟାଗ କଲେ ବଞ୍ଚିବ ନାହିଁ ବୋଲି ଅଳ୍ପ ପରିମାଣରେ ସେବନ କରିବାକୁ କହିଲେ; କିନ୍ତୁ କାଳନ୍ଦୀ ଅଟଳ; ସଙ୍ଗୀତରେ ଯାହା ଉକ୍ତ ହୋଇଅଛି "ନିର୍ଭୟ ଅନ୍ତରେ ବଲ୍‌ବ ଦ୍ୱାରେ ଦ୍ୱାରେ, ମହାପାପୀ ତରେ ଦୟାଲ ନାମେର ଗୁଣେ"—ଏହା ତାଙ୍କ ଜୀବନରେ ଜୀବନ ଦେବତାଙ୍କ କୃପାରୁ ପ୍ରମାଣିତ ହୋଇଥିଲା ।

କାଳନ୍ଦୀ ଜଣେ ପ୍ରତିଭାଶାଳୀ ବ୍ୟକ୍ତି ଥିଲେ । ଚିକିତ୍ସାବିଦ୍ୟା ଶିକ୍ଷା ନକଲେ ମଧ୍ୟ, ଏହାଙ୍କର ପିତା, ପିତାମହ ପ୍ରଭୃତିଙ୍କ ଚିକିତ୍ସା ବିଷୟରେ ସ୍ୱାଭାବିକ ଜ୍ଞାନ ଥିଲା । କାଳନ୍ଦୀ ମଧ୍ୟ ସେ ବିଷୟରେ ଆଶ୍ଚର୍ଯ୍ୟ ଦକ୍ଷତା

ଦେଖାଇଥିଲେ । କାରାଗାର ବିଦ୍ୟାରେ ମଧ୍ୟ ତାଙ୍କର ଆଶ୍ଚର୍ଯ୍ୟ ପଟୁତା ଥିଲା । ନବବିଧାନ ପତାକାରେ ଧର୍ମ ସମନ୍ୱୟର ଯେଉଁ ପ୍ରତୀକ ବ୍ୟବହୃତ ହୁଏ ତାହା କାଳନ୍ଦୀବାବୁଙ୍କ ଚିନ୍ତାପ୍ରସୂତ ।

ପଣ୍ଡିତ ପଦ୍ମଲୋଚନ ଦାସ ସସ୍ତ୍ରୀକ ସ୍ୱୀୟ ଜମିଦାରୀ ଓ ବାସସ୍ଥାନ ଉତଙ୍ଗ ଗୁଡ଼ ନଗରର ଆରପାରରେ ସିନ୍ଧିଆ ଗ୍ରାମରେ ଯୋଗାଶ୍ରମ ସ୍ଥାପନ କରିଥିଲେ । ଏମାନଙ୍କ ଚେଷ୍ଟାରେ ମଫସଲରେ ଶାଖା-ସମାଜମାନ ପ୍ରତିଷ୍ଠିତ ହେଲା । ଭଗବାନ ଦାସ ଏବଂ କାଳନ୍ଦୀ କମିଲା ବିଦେଶରେ ମଧ୍ୟ ପ୍ରଚାର ଯାତ୍ରା କରିଥିଲେ । ୧୮୮୨ ଖ୍ରୀଷ୍ଟାବ୍ଦରେ ମୃଦଙ୍ଗ୍ରାମର କୃଷ୍ଣବିହାରୀ ଦେବଙ୍କ କନ୍ୟା ସୁଶୀଳାଙ୍କ ସହିତ ରମାନାଥ ଦାସଙ୍କର ବିବାହ ହେଲା । ଏହା ୧୮୭୨ ଖ୍ରୀଷ୍ଟାବ୍ଦର ତିନ ଆଇନ ଅନୁସାରେ ରେଜିଷ୍ଟ୍ରୀ କରାହୋଇଥିଲା । ଏହାହିଁ ଓଡ଼ିଶାରେ ପ୍ରଥମ ବ୍ରାହ୍ମ ବିବାହ ।

ଅମରଗଡ଼ର ଫକୀରଦାସ ରାୟ, ଆଶୁତୋଷ ରାୟ, ଅଖିଳ ଚନ୍ଦ୍ର ରାୟ, ହରଲାଲ ରାୟ, ନନ୍ଦଲାଲ ବନ୍ଦୋପାଧ୍ୟାୟ ପ୍ରଭୃତି ଓ କେଶବଚନ୍ଦ୍ରଙ୍କ ଅନୁଗାମୀ କଲିକତାବାସୀ ନବବିଧାନ ସମାଜର ଭକ୍ତଗଣ ଅନେକ ସମୟରେ ବାଲେଶ୍ୱର ଆସି ସମାଜ କାମରେ ଯୋଗଦାନ କରୁଥିଲେ । ପରେ ଭଗବାନ ଚନ୍ଦ୍ର ଦାସ ନନ୍ଦଲାଲବାବୁଙ୍କୁ ବାଲେଶ୍ୱରରେ ବ୍ରାହ୍ମସମାଜର ସ୍ଥାୟୀ ପ୍ରଚାରକ ରୂପେ ଆହ୍ୱାନ କରି ଆଣିଲେ । ବାଲେଶ୍ୱର ବ୍ରାହ୍ମସମାଜର ନୂତନ ନାମକରଣ ସମ୍ବନ୍ଧରେ ନନ୍ଦଲାଲ ପ୍ରମୁଖ କେତେକଙ୍କ ସହିତ ଅନ୍ୟ ବ୍ରାହ୍ମମାନଙ୍କର ମତବିରୋଧ ହେବାରୁ ନନ୍ଦଲାଲ ପୃଥକ ଭାବରେ ବର୍ତ୍ତମାନ "ଉତ୍କଳ ନବବିଧାନ ମନ୍ଦିର"ଟି ନିର୍ମାଣ କରିବାକୁ ଯତ୍ନବାନ ହେଲେ । ସର୍ବପ୍ରଥମେ ରାଜାକେଠାରେ ଯେଉଁ ଉଦ୍ୟାନର ଭଗ୍ନ ଗୃହରେ ଆଦି ବ୍ରାହ୍ମସମାଜ ସ୍ଥାପିତ ହୋଇଥିଲା, ସେହି ଉଦ୍ୟାନଟି ନନ୍ଦବାବୁ ମୟୂରଭଞ୍ଜର ତତ୍କାଳୀନ ମହାରାଜା ରାମଚନ୍ଦ୍ର ଭଞ୍ଜଦେଓଙ୍କ ନିକଟରୁ ସନନ୍ଦ ସୂତ୍ରରେ ପାଇଲେ ଓ ରାମଚନ୍ଦ୍ର ଭଞ୍ଜ ପ୍ରମୁଖ ଗଡ଼ଜାତର ଅନ୍ୟାନ୍ୟ ରାଜାମାନଙ୍କ ନିକଟରୁ ପ୍ରଭୂତ ଅର୍ଥ ଓ କାଷ୍ଠ ସଂଗ୍ରହ କରି ସେ ନବବିଧାନ ମନ୍ଦିରର ନିର୍ମାଣ କାର୍ଯ୍ୟ ଆରମ୍ଭ କଲେ । ଅର୍ଦ୍ଧନିର୍ମିତ ଉପାସନା ଗୃହରେ ନନ୍ଦଲାଲବାବୁ ଉପାସନା କରୁଥିଲେ । ସେଠାରେ ହୋମିଓପ୍ୟାଥିକ ଚିକିତ୍ସାଳୟ ଓ ଔଷଧ ବିତରଣ କାର୍ଯ୍ୟ ମଧ୍ୟ କରୁଥିଲେ । ନନ୍ଦଲାଲଙ୍କ ପୁତ୍ର ନଗେନ୍ଦ୍ରନାଥଙ୍କ ସହିତ ପଦ୍ମଲୋଚନ

ଦାସଙ୍କ କନ୍ୟା ଇନ୍ଦୁଙ୍କ ଶୁଭପରିଣୟ ହୋଇଥିଲା ଏବଂ ଉକ୍ତର୍ଣୀପୁ ଡାକ୍ତର ରାମକୃଷ୍ଣ ସାହୁଙ୍କ ସହିତ ଏହାଙ୍କର କନ୍ୟା ରାଜକୁମାରୀର ବିବାହ ହୋଇଥିଲା ।

ନନ୍ଦଲାଲବାବୁଙ୍କ ମୃତ୍ୟୁ ପରେ ୧୯୦୮ ଖ୍ରୀଷ୍ଟାବ୍ଦରେ ବାଲେଶ୍ୱର ବ୍ରାହ୍ମସମାଜ ଓ ଉତ୍କଳ ନବବିଧାନ ବ୍ରହ୍ମମନ୍ଦିରର ସଭ୍ୟମାନେ ମିଳିତ ସମାଜର ନାମ ରଖିଲେ "ବାଲେଶ୍ୱର ଉତ୍କଳ ନବବିଧାନ ବ୍ରହ୍ମମନ୍ଦିର" । ଉଭୟ ସମାଜର ସଭ୍ୟମାନେ ମିଳିତ ହୋଇ ସେତେବେଳେ ଅର୍ଦ୍ଧନିର୍ମିତ ମନ୍ଦିରରେ ଉପାସନା କରୁଥିଲେ ।

ଏହି ସମୟରେ କଲିକତାରୁ ଭାଇ ବିହାରୀଲାଲ ସେନ ବାଲେଶ୍ୱର ଆସି କିଛିଦିନ ବାସ କଲେ । ତାଙ୍କର, ନରେନ୍ଦ୍ରନାଥଙ୍କର ଓ ଭଗବାନ ଚନ୍ଦ୍ରଙ୍କର ଚେଷ୍ଟାରେ ଅର୍ଦ୍ଧନିର୍ମିତ ମନ୍ଦିରଟିର ନିର୍ମାଣ କାର୍ଯ୍ୟ ସମ୍ପୂର୍ଣ୍ଣ କରାହେଲା ।

ପାଞ୍ଚ ବର୍ଷ ପରେ ପୁନରାୟ ଉତ୍କଳ ନବବିଧାନ ମଣ୍ଡଳୀ ଓ ବାଲେଶ୍ୱର ବ୍ରାହ୍ମସମାଜର ସଭ୍ୟମାନେ ସେତେବେଳେ ବାଧ୍ୟ ହୋଇ ଭୂମିକମ୍ପରେ ବିପର୍ଯ୍ୟସ୍ତ ସେମାନଙ୍କ ମନ୍ଦିରଟିକୁ ମରାମତି କରି ସେଥିରେ ୧୯୧୩-୧୯୧୪ ଖ୍ରୀଷ୍ଟାବ୍ଦରୁ ଉପାସନା ଆରମ୍ଭ କଲେ । ମନ୍ଦିରଟି ମରାମତି ନହେବା ପର୍ଯ୍ୟନ୍ତ ରବିବାସରୀୟ ଉପାସନା ଭଗବାନ ଚନ୍ଦ୍ରଙ୍କ ଗୃହରେ ହେଉଥିଲା । ଦୁଇଟି ବ୍ରାହ୍ମସମାଜ ପୃଥକ୍ ହେଲେ ମଧ୍ୟ ଏଠାରେ ସାମ୍ପ୍ରଦାୟିକତାର ଭାବ କାହାରି ମନକୁ ଆଚ୍ଛନ୍ନ କରିପାରି ନାହିଁ । ପ୍ରସନ୍ନ କୁମାର ମିତ୍ର ଓ ବରଦାକାନ୍ତ ବର୍ଦ୍ଧନ ସାଧାରଣ ବ୍ରାହ୍ମସମାଜରେ ଦୀକ୍ଷିତ ହେଲେ ମଧ୍ୟ ଦୁଇ ସମାଜରେ ଆଜୀବନ ଉପାସନା ଓ ସମ୍ପାଦକ କାର୍ଯ୍ୟ କରିଅଛନ୍ତି । ଶ୍ୟାମସୁନ୍ଦର ବିଶ୍ୱାଳ ଓ ଗୋବିନ୍ଦ ଚନ୍ଦ୍ର ପଣ୍ଡା, ରମାନାଥ ଦାସଙ୍କ ଭ୍ରାତା ବୈକୁଣ୍ଠନାଥ ଦାସ ଆଜୀବନ ନିଷ୍ଠାର ସହିତ ବ୍ରାହ୍ମସମାଜର ସେବା କରିଅଛନ୍ତି । ବାଲେଶ୍ୱର ବ୍ରାହ୍ମସମାଜର ସଭ୍ୟଗଣ ବରାବର ନବବିଧାନ ମନ୍ଦିରରେ ଯୋଗଦେଇଛନ୍ତି ଓ ଶ୍ରଦ୍ଧା ଦେଇଛନ୍ତି ।

ଏଠାରେ ଉପାସନା-କୀର୍ତ୍ତନରେ ଆକୃଷ୍ଟ ହୋଇ ଯେଉଁମାନେ ବ୍ରାହ୍ମସମାଜରେ ଯୋଗ ଦେଇଥିଲେ, ସେମାନଙ୍କ ମଧ୍ୟରୁ କେତେଜଣଙ୍କର ବାସସ୍ଥାନ ସହ ନାମୋଲ୍ଲେଖ କରାଗଲା । କାଳନ୍ଦୀ କାମିଲ୍ୟ (ନୂଆପୁର),

ସୋମନାଥ ସାମନ୍ତ (ଆଜମାବାଦ୍), ଅର୍ଜୁନ ପାକଳ (ଅମରା), ସୀତାରାମ ଦାସ, ବୈଦ୍ୟନାଥ ପାକଳ (ସରିଷାକୋଠା), କାଳୀପ୍ରସାଦ ଦାସ (ମାଣିକଖମ୍ବ), ବଂଶୀଧର (ଉମରଦସ୍ଥ), ଧ୍ରୁବ କର (ଉମରଦେଇ), ବୈଷ୍ଣବ ମାଝି (ନଳକୂଳ), ଗ୍ରବଗ୍ରାହୀ ଦାସ (କଟକ) ।

ନନ୍ଦଲାଲବାବୁଙ୍କ ଏକମାତ୍ର ପୁତ୍ର ନଗେନ୍ଦ୍ରନାଥ ବନ୍ଦ୍ୟୋପାଧ୍ୟାୟ ସରକାରୀ ଓ୍ୱର୍କସର୍ ଅବସର ଗ୍ରହଣ କରି ଆଜୀବନ ବ୍ରାହ୍ମସମାଜ ଓ ଦେଶର ସେବା କରିଅଛନ୍ତି ।

ବିଭିନ୍ନ ସମୟରେ ବହୁ ବ୍ରାହ୍ମ ବାଲେଶ୍ୱର ଆସି ଏଠା ବ୍ରାହ୍ମସମାଜରେ ଯୋଗ ଦେଇଛନ୍ତି ଏବଂ ଉତ୍ସବରେ ଉପାସନା ଓ ବକ୍ତୃତାଦି ଦ୍ୱାରା ଏହି ସମାଜକୁ ଶକ୍ତିଶାଳୀ କରିଅଛନ୍ତି । ସେମାନଙ୍କ ମଧ୍ୟରୁ ଅଧିକାଂଶଙ୍କ ନାମ ଉଲ୍ଲିଖିତ ହେଲା :—ଦ୍ୱିଜଦାସ ଦତ୍ତ, ଗିରୀନ୍ଦ୍ରନାଥ ବସୁ, ନୀଳମଣୀକାନ୍ତ କୋଙ୍ଗାର, ମଧୁସୂଦନ ରାଓ, ଲକ୍ଷ୍ମୀନାରାୟଣ ପଟ୍ଟନାୟକ, ମନୋରଞ୍ଜନ ଖାସ୍ତଗୀର, ହେମେନ୍ଦ୍ରଲାଲ ଖାସ୍ତଗୀର, ଡାକ୍ତର ଶ୍ରୀ ଜୟନ୍ତ ରାଓ, ସଚ୍ଚିଦାନନ୍ଦ ବସୁ, ଶ୍ରୀ ସୁଧାଂଶୁ ମୋହନ ଚଟ୍ଟୋପାଧ୍ୟାୟ, ରମଲାଲ ବ୍ୟାନାର୍ଜୀ, ବରଦାପ୍ରସନ୍ନ ବସୁ, କୃଷ୍ଣକୁମାର ମିତ୍ର, ନବଦ୍ୱୀପଚନ୍ଦ୍ର ଦାସ, କାଶୀମୋହନ ଘୋଷାଲ, ହରିମୋହନ ଘୋଷାଲ, ଦେବୀପ୍ରସନ୍ନ ରାୟ ଚୌଧୁରୀ, ହେମଚନ୍ଦ୍ର ସରକାର, ଅଖିଳ ଚନ୍ଦ୍ର ବସୁ, ପ୍ରେମସୁନ୍ଦର ବସୁ, ପ୍ରେମେନ୍ଦ୍ର ରାୟ, ଗୌରଗୋବିନ୍ଦ ରାୟ ଉପାଧ୍ୟାୟ, ଅମୃତଲାଲ ଗୁପ୍ତ, ଭାଇ ପ୍ରିୟନାଥ ମଲ୍ଲିକ, ରସିକଲାଲ ରାୟ, ବ୍ରଜଗୋପାଳ ନିୟୋଗୀ, ଅନୁକୂଳ ମିତ୍ର, ଆଶୁତୋଷ ରାୟ, କାନ୍ତଚନ୍ଦ୍ର ମିତ୍ର, ରାଜକୁମାର ଘୋଷ, ବିଶ୍ୱନାଥ କର, ପିଠାପୁରର ପ୍ରିନସ୍‌ପାଲ ଡ. ରାମକୃଷ୍ଣ ରାଓ, ଅଧ୍ୟାପକ ଶ୍ରୀ ନିରଞ୍ଜନ ନିୟୋଗୀ, ଶଶୀଭୂଷଣ ଦାସଗୁପ୍ତ, ଭାଇ ଅକ୍ଷୟ କୁମାର ଲଧ ପ୍ରଭୃତି ।

୭୦ ବର୍ଷ ପୂର୍ବେ ପୂର୍ବବଙ୍ଗର ତତ୍କାଳୀନ ବ୍ରାହ୍ମବନ୍ଧୁମାନଙ୍କ ଦ୍ୱାରା ପ୍ରତିଷ୍ଠିତ ବ୍ରାହ୍ମ ସମ୍ମିଳନୀ ଯାହା ପ୍ରତ୍ୟେକ ବର୍ଷ ଶାରଦୀୟ ଅବକାଶ ସମୟରେ ପୂର୍ବବଙ୍ଗ, ପଶ୍ଚିମବଙ୍ଗ, ଆସାମ ଓ ବିହାରର ନାନା ସ୍ଥାନରେ ଅନୁଷ୍ଠିତ ହୋଇଆସୁଅଛି—ତାହାର ୭୧ତମ ଅଧିବେଶନ ଗତ ୧୯୬୧ ଖ୍ରୀଷ୍ଟାବ୍ଦ

ଅକ୍ଟୋବର ୨୧ ତାରିଖରୁ ୨୪ ତାରିଖ ପର୍ଯ୍ୟନ୍ତ ଓଡ଼ିଶାର ବାଲେଶ୍ୱର ସହରରେ ଅନୁଷ୍ଠିତ ହୋଇଅଛି । ଡକ୍ଟର କାଳିଦାସ ନାଗ ଏହି ଅଧିବେଶନରେ ସଭାପତି ଓ ବାଲେଶ୍ୱରବାସୀ ପ୍ରବୀଣ ବ୍ରାହ୍ମ ଶ୍ରୀ ପୂର୍ଣ୍ଣଚନ୍ଦ୍ର ଦାସ ଅଭ୍ୟର୍ଥନା ସମିତିର ସଭାପତି ଥିଲେ । ପୂର୍ଣ୍ଣଚନ୍ଦ୍ର ଦାସ ମହାଶୟଙ୍କ ସହଧର୍ମିଣୀ ଶ୍ରୀଯୁକ୍ତା ସୁପ୍ରଭାମୟୀ ଦାସଙ୍କ ଉତ୍ସାହ ଏବଂ ଅଧିବେଶନର ଆୟୋଜନ ଠାରୁ ଆରମ୍ଭ କରି ଅଧିବେଶନଟି ସୁଚାରୁ ରୂପେ ସମ୍ପନ୍ନ ହେବା ପର୍ଯ୍ୟନ୍ତ ସମସ୍ତ କାର୍ଯ୍ୟ ମୂଳରେ ତାଙ୍କ ଚେଷ୍ଟା ଓ ଯତ୍ନ ଆଶ୍ଚର୍ଯ୍ୟ ଭାବରେ ସଫଳ ହୋଇଅଛି । ଈଶ୍ୱରଙ୍କ କୃପାରୁ ଏହି କ୍ଷୁଦ୍ର ସହରଟିରେ ଏହି ବ୍ରାହ୍ମ ସମ୍ମିଳନୀ ସ୍ଥାନୀୟ ସମସ୍ତଙ୍କ ସହଯୋଗିତାରେ, ଅପୂର୍ବ ମିଳନ କ୍ଷେତ୍ରରେ ପରିଣତ ହୋଇଥିଲା । ଓଡ଼ିଶାର ବିଭିନ୍ନ ସ୍ଥାନରୁ ଓ ଅନ୍ୟାନ୍ୟ ନାନା ପ୍ରଦେଶରୁ ବ୍ରାହ୍ମ ଓ ବ୍ରାହ୍ମିକାମାନେ ଆସି ମିଳିତ ହୋଇଥିଲେ । ଏହି ବ୍ରାହ୍ମ ସମ୍ମିଳନୀ ସେମାନଙ୍କ ପ୍ରାଣରେ ନୂତନ ଆଶା ଓ ଉତ୍ସାହ ସଞ୍ଚାର କରିଛି ।

## (୩) ବାରିପଦା ବ୍ରାହ୍ମସମାଜ :

ଓଡ଼ିଶାର ଗଡ଼ଜାତ ରାଜ୍ୟଗୁଡିକ ମଧ୍ୟରେ ମୟୂରଭଞ୍ଜ ଗୋଟିଏ ବିଶିଷ୍ଟ ଦେଶୀୟ ରାଜ୍ୟ । ଏହାର ରାଜଧାନୀର ନାମ ବାରିପଦା । ଭାରତବର୍ଷ ସ୍ୱାଧୀନ ହେବା ପରେ ଗଡ଼ଜାତର ଏହି କ୍ଷୁଦ୍ର କ୍ଷୁଦ୍ର ରାଜ୍ୟଗୁଡ଼ିକ ଆଉ ସ୍ୱତନ୍ତ୍ର ରହିନାହିଁ । ଏଗୁଡ଼ିକ ବର୍ତ୍ତମାନ ଓଡିଶା ପ୍ରଦେଶର ଅନ୍ତର୍ଭୁକ୍ତ ହୋଇଅଛି ।

ବାଲେଶ୍ୱର ବ୍ରାହ୍ମସମାଜର ସଂକ୍ଷିପ୍ତ ଇତିହାସରେ ପୂର୍ବେ ଉକ୍ତ ହୋଇଅଛି ଯେ, କେଶବଚନ୍ଦ୍ରଙ୍କ ଅନୁଗାମୀ ପ୍ରଚାରକ ନନ୍ଦଲାଲ ଉପାଧ୍ୟାୟ ମହାଶୟ ବାଲେଶ୍ୱରରେ ସ୍ଥାୟୀ ପ୍ରଚାରକ ରୂପେ କାର୍ଯ୍ୟ କରୁଥିଲେ । ତାଙ୍କ ସମ୍ବନ୍ଧରେ ତାଙ୍କ ପୌତ୍ରବଧୂ ଶ୍ରୀମତୀ ସୁଧା ବ୍ୟାନାର୍ଜୀ ଲେଖିଛନ୍ତି– "ପ୍ରଥମ ଜୀବନରେ ତାଙ୍କ ଜୀବନ ଲକ୍ଷ୍ୟହୀନ ଭାବରେ କଟୁଥିଲା । ପରେ ପ୍ରଚାରକ ଭାଇ ଅମୃତଲାଲ ବସୁଙ୍କ ଚେଷ୍ଟା ଓ ଯତ୍ନରେ କଲିକତା ଆସି ବ୍ରହ୍ମାନନ୍ଦ କେଶବଚନ୍ଦ୍ରଙ୍କ ପ୍ରଭାବରେ ନନ୍ଦଲାଲଙ୍କ ଜୀବନରେ ପରିବର୍ତ୍ତନ ହେଲା ଏବଂ ସେ ବ୍ରାହ୍ମଧର୍ମ ପ୍ରତି ଆକୃଷ୍ଟ ହେଲେ । ୧୮୮୦ ଖ୍ରୀଷ୍ଟାବ୍ଦରେ ସେ ବ୍ରାହ୍ମଧର୍ମର ପ୍ରଚାର କାର୍ଯ୍ୟ ଗ୍ରହଣ କଲେ ଏବଂ ପୂର୍ଣ୍ଣୋଦ୍ୟମରେ ଏକ ଈଶ୍ୱରଙ୍କ ପୂଜା

ପ୍ରଚଳନ କରିବା ପାଇଁ ନିଜକୁ ଉତ୍ସର୍ଗ କଲେ । ୧୮୮୭ ଖ୍ରୀଷ୍ଟାବ୍ଦରେ ଓଡ଼ିଶାକୁ ସେ ତାଙ୍କ ପ୍ରଚାରକ୍ଷେତ୍ର ରୂପେ ଗ୍ରହଣ କଲେ । ତାଙ୍କ ଅଗ୍ନିମୟ ଜୀବନ ସମ୍ପର୍କରେ ବାଲେଶ୍ୱରବାସୀ ଅନେକେ ବ୍ରାହ୍ମଧର୍ମ ପ୍ରତି ଆକୃଷ୍ଟ ହେଲେ । ତାଙ୍କ ଭକ୍ତିଭାବାପନ୍ନ ସୁଲଳିତ କଣ୍ଠରୁ ବ୍ରାହ୍ମସଙ୍ଗୀତ ଶ୍ରୋତୃବର୍ଗଙ୍କୁ ମତାଇ ଦେଉଥିଲା । ବାଲେଶ୍ୱରରୁ ଅନେକ ସମୟରେ ସେ ବାରିପଦା ଆସୁଥିଲେ । ଏଠାରେ ଧର୍ମ ଦଳନିର୍ବିଶେଷରେ ସମସ୍ତଙ୍କୁ ନେଇ ସେ ବ୍ରହ୍ମୋପାସନା ଓ କୀର୍ତ୍ତନାଦି କରୁଥିଲେ । ଏଥିରେ ଅନେକ ବ୍ରାହ୍ମଧର୍ମ ପ୍ରତି ଆକୃଷ୍ଟ ହେଲେ । ମହାରାଜା ଶ୍ରୀ ରାମଚନ୍ଦ୍ର ଭଞ୍ଜ ଏହି ଉପାସନା ଓ କୀର୍ତ୍ତନରେ ଯୋଗ ଦେଉଥିଲେ । ଏହି ଭାବରେ ସେ ମଧ୍ୟ ବ୍ରାହ୍ମଧର୍ମ ପ୍ରତି ଆକୃଷ୍ଟ ହେଲେ । ସେତେବେଳେ ଉପାସନାରେ ସମସ୍ତେ ମିଳିତ ହେବା-ପାଇଁ କୌଣସି ନିର୍ଦ୍ଦିଷ୍ଟ ସ୍ଥାନ ମଧ୍ୟ ନଥିଲା । ପରେ ମହାରାଜା ବାରିପଦାର ଏକଖଣ୍ଡ ନିଷ୍କର ଜମି ଓ ଗୃହ ନିର୍ମାଣ ପାଇଁ କିଛି ଅର୍ଥ ମଧ୍ୟ ସାହାଯ୍ୟ କଲେ । ଗୋଟିଏ ଗୃହ ନିର୍ମିତ ହେଲା କିନ୍ତୁ ସେତେବେଳେ ଏହା ସମ୍ପୂର୍ଣ୍ଣ ହୋଇପାରିଲା ନାହିଁ ।

୧୯୦୪ ଖ୍ରୀଷ୍ଟାବ୍ଦରେ କେଶବଚନ୍ଦ୍ରଙ୍କ ତୃତୀୟା କନ୍ୟା ସୁଚାରୁ ଦେବୀଙ୍କ ସହିତ ମହାରାଜା ଶ୍ରୀ ରାମଚନ୍ଦ୍ର ଭଞ୍ଜଙ୍କର ବିବାହ ହେଲା । ୮ ବର୍ଷ ପରେ ୧୯୧୨ ଖ୍ରୀଷ୍ଟାବ୍ଦରେ ଦୈବଦୁର୍ବିପାକରେ ମହାରାଜା ପରଲୋକ ଗମନ କଲେ । ତତ୍ପରେ ମହାରାଣୀ ସୁଚାରୁ ଦେବୀଙ୍କ ଇଚ୍ଛା ଓ ଅର୍ଥ ସାହାଯ୍ୟରେ ଏହି ମନ୍ଦିର ଗୃହଟିକୁ ସୁନ୍ଦର ଭାବରେ ସମ୍ପୂର୍ଣ୍ଣ କରାଗଲା ।

ବାରିପଦାର ଏହି ନବବିଧାନ ମନ୍ଦିରରେ ସମନ୍ୱୟର ପ୍ରତୀକ ନବବିଧାନ ନିଶାଣ (ପତାକା ସ୍ଥାପନ କରାଗଲା । ପ୍ରାଚୀର ବେଷ୍ଟିତ ମନ୍ଦିର ସଂଲଗ୍ନ ଜମିରେ ଅତି ସୁନ୍ଦର ଭାବରେ ଫୁଲ ବଗିଚା କରାଗଲା । ୧୯୨୫ ଖ୍ରୀଷ୍ଟାବ୍ଦ ଜୁଲାଇ ୨୭ ତାରିଖରେ ଏହି ମନ୍ଦିର ପ୍ରତିଷ୍ଠା ହେଲା । ଏହି ଉପଲକ୍ଷେ ବାଲେଶ୍ୱର ଓ କଲିକତାରୁ ବହୁ ବ୍ରାହ୍ମବନ୍ଧୁ ଆସି ଯୋଗ-ଦେଲେ । ଶ୍ରଦ୍ଧେୟ ଭାଇ ପ୍ରିୟନାଥ ମଲ୍ଲିକ ମହାଶୟ ଆଚାର୍ଯ୍ୟର କାର୍ଯ୍ୟ କଲେ । ତଦବଧି ପ୍ରତିବର୍ଷ ଜୁଲାଇ ୨୭ ତାରିଖରେ ଏହି ମନ୍ଦିରର ବାର୍ଷିକ ଉତ୍ସବ ସମ୍ପନ୍ନ ହୋଇ ଆସୁଅଛି । ସାପ୍ତାହିକ ପାଠ, ଉପାସନା ଇତ୍ୟାଦି ମଧ୍ୟ ନିୟମିତ ଭାବେ ହେଉଅଛି । ନନ୍ଦଲାଲ ବନ୍ଦ୍ୟୋପାଧ୍ୟାୟ ୧୯୦୬ ଖ୍ରୀଷ୍ଟାବ୍ଦ

ଜୁଲାଇ ୨୪ ତାରିଖରେ ବାଲେଶ୍ୱରରେ ୬୮ ବର୍ଷ ବୟସରେ ପରଲୋକ ଗମନ କରିଥିଲେ । ସୁତରାଂ ବାରିପଦା ମନ୍ଦିରଟି ସମ୍ପୂର୍ଣ୍ଣ ହେବା ସେ ଦେଖି ପାରିନାହାନ୍ତି ।

ତାଙ୍କର ସୁଯୋଗ୍ୟପୁତ୍ର ଧର୍ମପ୍ରାଣ କର୍ମବୀର ନଗେନ୍ଦ୍ରନାଥ ବନ୍ଦ୍ୟୋପାଧ୍ୟାୟ ପିତାଙ୍କ ଆଦର୍ଶର ଅନୁଗାମୀ ହୋଇ କଲିକତାରେ ଥରେ ମାଘୋତ୍ସବ ଦିନରେ (ମାଘ ୧୧ ତାରିଖ) ଯାଇ ପ୍ରିୟନାଥ ମଲ୍ଲିକଙ୍କ ନିକଟରୁ ବ୍ରହ୍ମବ୍ରତ ଗ୍ରହଣ କଲେ । ତଦବଧି ସେ ବାରିପଦାରେ ବାସ କରି ଏକନିଷ୍ଠ ସେବକ ରୂପେ ଆଜୀବନ ବ୍ରାହ୍ମସମାଜର ସେବା କରିଯାଇଅଛନ୍ତି । ନବସଂହିତା ପୁସ୍ତକ ସେ ଓଡ଼ିଆ ଭାଷାରେ ଅନୁବାଦ କରି ପୁସ୍ତକାକାରରେ ମୁଦ୍ରିତ କରିଥିଲେ । ତାଙ୍କର ପିତୃଦେବ ନନ୍ଦଲାଲ ବନ୍ଦ୍ୟୋପାଧ୍ୟାୟଙ୍କ ରଚିତ ବ୍ରାହ୍ମସଙ୍ଗୀତଗୁଡ଼ିକ ମଧ୍ୟ 'ଜୀବନ ସଙ୍ଗୀତ' ନାମରେ ସେ ମୁଦ୍ରିତ କରିଛନ୍ତି । ୨୫ ବର୍ଷ ସରକାରୀ ଚାକିରୀ କରିବା ପରେ ପେନ୍‌ସନ ନେବାର ନିର୍ଦ୍ଦିଷ୍ଟ ସମୟ ପୂର୍ବରୁ ସେ ଚାକିରୀ ପରିତ୍ୟାଗ କରି ବ୍ରାହ୍ମସମାଜର ପ୍ରଚାର କାର୍ଯ୍ୟରେ ଓ ସେବାରେ ନିଜକୁ ଉତ୍ସର୍ଗ କରିଥିଲେ । ହରିଜନମାନଙ୍କ ଉନ୍ନତି ପାଇଁ ଓ ଅସ୍ପୃଶ୍ୟତା ନିବାରଣ ପାଇଁ ସେ ବହୁ ପରିଶ୍ରମ କରୁଥିଲେ । ଦରିଦ୍ର ବାଳକ ବାଳିକା-ମାନଙ୍କ ପାଇଁ ପାଠଶାଳା ସ୍ଥାପନ କରି ସେମାନଙ୍କୁ ସେ ପଢ଼ାଉଥିଲେ ଓ ବ୍ରହ୍ମସଙ୍ଗୀତ ଶିଖାଉଥିଲେ । ୧୯୫୧ ଖ୍ରୀଷ୍ଟାବ୍ଦ ଅକ୍ଟୋବର ୧୩ ତାରିଖରେ ୯୬ ବର୍ଷ ବୟସରେ, ବାରିପଦାସ୍ଥ ନିଜ ଆବାସରେ ଜଗଜ୍ଜନନୀଙ୍କ ନାମ କରୁ କରୁ ନଗେନ୍ଦ୍ରନାଥ ସଚେତନ ଥାଇ ପରଲୋକ ଗମନ କଲେ ।

ନଗେନ୍ଦ୍ରନାଥଙ୍କ ପୁତ୍ର ସୁରେନ୍ଦ୍ରନାଥ ଅଧୁନା ଏହି ବାରିପଦା ବ୍ରାହ୍ମ ମନ୍ଦିରର ସମ୍ପାଦକ । ଏହି ମନ୍ଦିରରେ ଯେପରି ତାଙ୍କ ପୂଣ୍ୟ ସ୍ମୃତି ଅକ୍ଷୁର୍ଣ୍ଣ ରହେ ସେଥିପାଇଁ ସର୍ବଦା ସେ ଯତ୍ନ କରୁଥିଲେ । ମହାରାଣୀ ସୁଚାରୁଦେବୀ ଏହି ମନ୍ଦିର ପ୍ରତିଷ୍ଠାର ବହୁଦିନ ପରେ ବାରିପଦାକୁ ୨ଥର ଆସିଥିଲେ । ସେ ଆସି ବେଲଗଡ଼ିଆ ପ୍ରାସାଦରେ ରହିଲେ । ସେ ଏହି ମନ୍ଦିରକୁ ତୀର୍ଥସ୍ଥାନ ମନେ କରୁଥିଲେ । ମନ୍ଦିରରେ ପ୍ରବେଶ କରିବା ସମୟରେ, ଅବନତ ମସ୍ତକରେ ତାଙ୍କ ଅନ୍ତରର ଶ୍ରଦ୍ଧା ନିବେଦନ କରୁଥିଲେ । ମନ୍ଦିରର ବ୍ୟୟ ନିର୍ବାହ ପାଇଁ ସେ ନିୟମିତ ମାସିକ ଦାନର ବ୍ୟବସ୍ଥା କରିଥିଲେ । ତାଙ୍କର ପରଲୋକ

ଗମନ ଉତ୍ତାରୁ ତାଙ୍କ କନ୍ୟା ରାଣୀସାହେବା ଶ୍ରୀମତୀ ଜୟନ୍ତୀଦେବୀଙ୍କ ବ୍ୟବସ୍ଥାରେ ନିୟମିତ ମାସିକ ସାହାଯ୍ୟ ଆସୁଅଛି ।

୧୯୭୧ ଖ୍ରୀଷ୍ଟାବ୍ଦରେ ବାଲେଶ୍ୱରରେ ଯେଉଁ ୭୧ତମ ବ୍ରାହ୍ମସମ୍ମିଳନୀର ଅଧିବେଶନ ହୋଇଥିଲା ସେହି ଅଧିବେଶନ ପରେ ଅକ୍ଟୋବର ୨୮ ତାରିଖରେ ବାଲେଶ୍ୱରରୁ ପ୍ରାୟ ଶତାଧିକ ବ୍ରାହ୍ମବନ୍ଧୁ ମହିଳାମାନଙ୍କ ସହ ବାରିପଦା ଆସିଲେ । ପୁଷ୍ପ ଉଦ୍ୟାନରେ ପରିବେଷ୍ଟିତ ସୁରକ୍ଷିତ ଏହି ବ୍ରହ୍ମ ମନ୍ଦିରଟି ଦେଖି ସମସ୍ତେ ମୁଗ୍ଧ ହେଲେ । ମଧ୍ୟାହ୍ନରେ ଉପାସନା ହେଲା, ଶ୍ରୀଯୁକ୍ତ ସୁଧୀରଚନ୍ଦ୍ର ଚଟ୍ଟୋପାଧ୍ୟାୟ ଉପାସନା କଲେ । ଗୋବିନ୍ଦ ଚନ୍ଦ୍ର ପଣ୍ଡା ମହାଶୟ କୀର୍ତ୍ତନ କଲେ ଓ ଆରାଧନା ପରେ ବାରିପଦା ବ୍ରାହ୍ମସମାଜର ପ୍ରାଣସ୍ୱରୂପ, ନବବିଧାନ ଓ ବ୍ରାହ୍ମସମାଜର ପ୍ରଚାରକ ସ୍ୱର୍ଗୀୟ ନଗେନ୍ଦ୍ରନାଥ ବନ୍ଦ୍ୟୋପାଧ୍ୟାୟଙ୍କ ପରିବାରବର୍ଗଙ୍କ ସାଦର ଅତିଥି ସତ୍କାରରେ ପରିତୃପ୍ତ ହୋଇ ସମାଗତ ବ୍ରାହ୍ମବନ୍ଧୁଗଣ ସ୍ୱ ସ୍ୱ ସ୍ଥାନକୁ ଫେରିଗଲେ ।

## (୪) ଗଞ୍ଜାମ ବ୍ରାହ୍ମସମାଜ

ଗଞ୍ଜାମ ଅଞ୍ଚଳରେ ଯେଉଁମାନେ ଡାଃ ହେମଚନ୍ଦ୍ର ସରକାର ମହାଶୟଙ୍କ ଅନୁପ୍ରେରଣାରେ ବ୍ରାହ୍ମଧର୍ମ ପ୍ରଚାରରେ ଉଦ୍ୟୋଗୀ ହୋଇଥିଲେ, ସେମାନଙ୍କ ନାମ ଆର୍ ବାଳକୃଷ୍ଣ ରାଓ, ଏନ୍ ଜଗନ୍ନାଥ ରାଓ, ଜୟମଙ୍ଗଳ ରଥ, କୃପାସିନ୍ଧୁ ପଣ୍ଡା, ମାଷ୍ଟର ସନ୍ନ୍ୟାସୀ ପାତ୍ରଲୁ, ଶ୍ରୀ ଶରତ ଚନ୍ଦ୍ର ମହାପାତ୍ର, ଶ୍ରୀ ମହେନ୍ଦ୍ର ପଟ୍ଟନାୟକ ଓ ଶ୍ରୀ ଈଶ୍ୱର ସାହୁ ପ୍ରଭୃତି । ବର୍ତ୍ତମାନ ଶ୍ରୀ ଉଦ୍ଧବ ଚନ୍ଦ୍ର ଏହି ଅଞ୍ଚଳରେ ପ୍ରଚାର କାର୍ଯ୍ୟରେ ନିଯୁକ୍ତ ଅଛନ୍ତି ।

## ବରହମପୁର (ବ୍ରହ୍ମପୁର) ବ୍ରାହ୍ମସମାଜ

ପ୍ରଧାନତଃ ଆର୍. ବାଳକୃଷ୍ଣ ରାଓ ଓ ଏନ୍. ଜଗନ୍ନାଥ ରାଓ ଏହି ବ୍ରାହ୍ମସମାଜର ଉଦ୍ୟୋକ୍ତା କର୍ମୀ ଥିଲେ । ଏ ଦୁଇଜଣ କଲିକତା ସାଧନାଶ୍ରମରେ କିଛୁଦିନ ରହି ଶିକ୍ଷାଲାଭ କରିଥିଲେ । ପରିଶେଷରେ ପରିବ୍ରାଜକ ବ୍ରତ ଗ୍ରହଣ କରି ସାଧାରଣ ବ୍ରାହ୍ମସମାଜର କର୍ମୀ ହିସାବରେ ଏହି ଅଞ୍ଚଳରେ ପ୍ରଚାର କର୍ମରେ ନିଯୁକ୍ତ ହେଲେ । ବ୍ରାହ୍ମମନ୍ଦିର କେବେ

ପ୍ରତିଷ୍ଠିତ ହୋଇଥିଲା ତାହା ସଠିକ ଜଣାନାହିଁ । ତେବେ ଉଲ୍ଲିଖିତ ବ୍ୟକ୍ତି-ମାନଙ୍କ ସମୂହ ପ୍ରଚେଷ୍ଟାରେ ମନ୍ଦିର ପ୍ରତିଷ୍ଠା ସମ୍ଭବ ହେଲା । ବାଳକୃଷ୍ଣ ରାଓ ତ୍ୟାଗୀ ଓ ସାଧକ ଥିଲେ । ତାଙ୍କର ମୃତ୍ୟୁ ପରେ ତାଙ୍କର ପତ୍ନୀ ଶ୍ରୀଯୁକ୍ତା ସୁନ୍ଦରାମ୍ମା ବ୍ରାହ୍ମସମାଜର ସଂଲଗ୍ନ ଗୃହରେ ତାଙ୍କ ପୁତ୍ର ସହ ଅବସ୍ଥାନ କରୁଛନ୍ତି ଓ ମନ୍ଦିର କାର୍ଯ୍ୟ ଚଳାଉଛନ୍ତି । ତାଙ୍କର କାମ ତେଲଗୁ ଭାଷାଭାଷୀ-ମାନଙ୍କ ମଧ୍ୟରେ ଆବଦ୍ଧ । ଓଡ଼ିଆ ଭାଷୀମାନଙ୍କ ସଙ୍ଗେ ବିଶେଷ ତାଙ୍କର କୌଣସି ଯୋଗ ନାହିଁ । ସେ ସାଧାରଣ ବ୍ରାହ୍ମସମାଜରୁ ବୃତ୍ତି ପାଉଥାନ୍ତି ।

ବ୍ରହ୍ମପୁରରେ, ଧାନମେଣ୍ଡସାହି ଓ ମୃଦଙ୍ଗା ସାହିରେ ଆହୁରି ଦୁଇଟି କେନ୍ଦ୍ର ଗଢ଼ିଉଠିଥିଲା ସନ୍ନ୍ୟାସୀ ମାଷ୍ଟରଙ୍କ ଚେଷ୍ଟାରେ । ସେ ସାଧୁ ଓ ଦେଶପ୍ରେମିକ ଥିଲେ; ସ୍ୱାଧୀନତା ଆନ୍ଦୋଳନରେ ସକ୍ରିୟ ଅଂଶ ଗ୍ରହଣ କରିବା ଫଳରେ ସେ କାରାରୁଦ୍ଧ ହୋଇଥିଲେ ଏବଂ ସେଠାରେ ତାଙ୍କର ମୃତ୍ୟୁ ହୋଇଥିଲା । ତାଙ୍କର ସ୍ତ୍ରୀ ମଧ୍ୟ ମହାତ୍ମା ଗାନ୍ଧୀଙ୍କ ହତ୍ୟାର ସମ୍ବାଦ ଶୁଣିବା ମାତ୍ରକେ ଦେହତ୍ୟାଗ କଲେ । ସନ୍ନ୍ୟାସୀ ପାତ୍ରଙ୍କ ସାଧନାଶ୍ରମରେ କିଛିଦିନ ରହି ଶିକ୍ଷାଲାଭ କରିଥିଲେ ।

ସୁରଡାକୁ କେନ୍ଦ୍ର କରି ଜୟମଙ୍ଗଳର ଅସୁରଡା, ବଡ଼ସାହି, କୌରିଣୀ (ବର୍ତ୍ତମାନ କବିସୂର୍ଯ୍ୟନଗର) ନୂଆଗ୍ରାମ ପ୍ରଭୃତି ଗ୍ରାମେ ଗ୍ରାମେ ବୁଲି ପ୍ରଚାର କରୁଥିଲେ । ସେ ସୁଗାୟକ ଏବଂ ସଙ୍ଗଠନ କାର୍ଯ୍ୟରେ ଦକ୍ଷ ଥିଲେ । ହରିଜନମାନଙ୍କ ସେବାପାଇଁ ସେ 'ପତିତପାବନ ମିଶନ' ପ୍ରତିଷ୍ଠା କରିଥିଲେ ଓ ଅସୁରଡାରେ ଏହାର କେନ୍ଦ୍ର ସ୍ଥାପନ କରିଥିଲେ । ହରିଜନମାନଙ୍କ ଉନ୍ନୟନର ନାନା ପ୍ରଚେଷ୍ଟାରେ ସେମାନଙ୍କ ପାଇଁ ବିଦ୍ୟାଳୟ, ଚିକିତ୍ସାଳୟ ଇତ୍ୟାଦି ମଧ୍ୟ ସେ ପ୍ରତିଷ୍ଠା କରିଥିଲେ । ତାଙ୍କ ଚେଷ୍ଟାରେ ବହୁ ସ୍ଥାନରେ ନିୟମିତ ଉପାସନାଦି ହେଉଥାଏ । ତାଙ୍କ ଅବର୍ତ୍ତମାନରେ ସମସ୍ତ କାର୍ଯ୍ୟ ନିସ୍ତେଜ ହୋଇଯାଇଛି । ଏହି ଅଞ୍ଚଳର କେତେଜଣ ଯୁବକଙ୍କୁ ସେ ବ୍ରାହ୍ମଧର୍ମ ଆଡ଼କୁ ଆକୃଷ୍ଟ କରିଥିଲେ; ଯେଉଁମାନେ ତାଙ୍କ ଶିକ୍ଷାଗୁଣରେ ଏବେ ବିଶିଷ୍ଟ ସମାଜସେବକ ରୂପେ ପରିଗଣିତ ହୋଇଅଛନ୍ତି ।

ଗୋପାଳପୁର—ଜୟମଙ୍ଗଳ ରଥଙ୍କ ଚେଷ୍ଟାରେ ଏଠାରେ ମଧ୍ୟ ଗୋଟିଏ ଉପାସକମଣ୍ଡଳୀ ପ୍ରଥମେ ପ୍ରତିଷ୍ଠିତ ହୋଇଥିଲା । ପରେ ଏହା

ଉଠିଗଲା । କିଛିଦିନ ପରେ କଲିକତା ସାଧାରଣ ବ୍ରାହ୍ମସମାଜର ପ୍ରାକ୍ତନ ସମ୍ପାଦକ ହରକାନ୍ତ ବସୁ ମହାଶୟ, ସାଗରକୂଳରେ ନିର୍ଜନ ସାଧନ ନିମିତ୍ତ ଗୋଟିଏ ସାଧନାଶ୍ରମ ଗୃହ ନିର୍ମାଣ କରି ସେଠାରେ ବହୁଦିନ ବାସ କଲେ । ସେ ଏହି ଗୃହଟିକୁ ପରେ ବ୍ରାହ୍ମସମାଜ ହସ୍ତରେ ବ୍ରାହ୍ମ ସାଧନାର୍ଥୀମାନଙ୍କ ପାଇଁ ଗୋଟିଏ ଟ୍ରଷ୍ଟ ଅର୍ପଣ କରି ଯାଇଛନ୍ତି ।

ବର୍ତ୍ତମାନ ଗଞ୍ଜାମ ଅଞ୍ଚଳରେ ଡା. ଉଦ୍ଧବ ଚରଣ ବ୍ରାହ୍ମଧର୍ମ ପ୍ରଚାରରେ ସେବା କାର୍ଯ୍ୟରେ ନିଯୁକ୍ତ ଅଛନ୍ତି । ସେ ହଜାରିବାଗ ବ୍ରାହ୍ମସମାଜ ଓ ଅଡ଼ପ୍ପାଦଡ଼ ସାଧନାଶ୍ରମ ସଂଲଗ୍ନ ଦାତବ୍ୟ ହୋମିଓପ୍ୟାଥିକ ଚିକିତ୍ସାଳୟରେ ଘରପ୍ରାପ୍ତ ଚିକିତ୍ସକ ରୂପେ କେତେବର୍ଷ ଶ୍ରୀ ମନ୍ମଥନାଥ ଦାସଗୁପ୍ତ (ହଜାରିବାଗ) ଓ ଶ୍ରୀ ଅମରଚନ୍ଦ୍ର ଭଟ୍ଟାଚାର୍ଯ୍ୟଙ୍କ (ଆଡ଼ପ୍ପାଦଡ଼) ସଙ୍ଗେ ବାସ କରିଥିଲେ । ପରେ ସେ ସପରିବାର ବ୍ରାହ୍ମଧର୍ମରେ ଦୀକ୍ଷିତ ହେଲେ । ବର୍ତ୍ତମାନ ତାଙ୍କ ଚେଷ୍ଟାରେ ମୃଦଙ୍ଗାସାହି ଓ ବଡ଼ସାହିରେ ନିୟମିତ ଉପାସନା ହେଉଅଛି ।

ନିମଖଣ୍ଡିରେ ମଧ୍ୟ ଗୋଟିଏ ନୂତନ କେନ୍ଦ୍ର ସ୍ଥାପିତ ହୋଇଅଛି । ଧାନମେରିସାହିର ଉପାସନା ଗୃହ ଭାଙ୍ଗିଯିବାରୁ ନୂତନ ଗୃହ ନିର୍ମିତ ହେବାର ଚେଷ୍ଟା ଚାଲୁଛି । ଏହା ବ୍ୟତୀତ ଅନ୍ୟାନ୍ୟ ଗ୍ରାମରେ ମଧ୍ୟ ସେ ପ୍ରଚାର ଯାତ୍ରା କରୁଛନ୍ତି ଓ ପୁନର୍ବାର ଉପ ସକମଣ୍ଡଳୀ ପ୍ରତିଷ୍ଠା କରିବାର ପ୍ରୟାସ ପ୍ରାପ୍ତ ହେଉଛନ୍ତି । ଏହା ବ୍ୟତୀତ ସେ ରଉଡୋପେନ୍ସାହିସ୍ଥ ନିଜ ବାସଗୃହରେ ଗୋଟିଏ ଦାତବ୍ୟ ଚିକିତ୍ସାଳୟ ହଜାରିବାଗର ମନ୍ମଥବାବୁଙ୍କ ସାହାଯ୍ୟରେ ଚଳାଉଛନ୍ତି ।

## (୫) ପୁରୀ ବ୍ରାହ୍ମସମାଜ

ଡା. ପ୍ରେମାନନ୍ଦ ଦାସ ପୁରୀର ସିଭିଲସର୍ଜନ ଥିଲେ । ସେ ୧୯୨୭ ସାଲ ମେ ମାସରେ ପରଲୋକ ଗମନ କଲେ । ତାଙ୍କ ଅନ୍ତ୍ୟେଷ୍ଟିକ୍ରିୟା ଉପଲକ୍ଷେ ଶ୍ମଶାନରେ ସ୍ଥାନୀୟ ଓ କଲିକତାରୁ ଆଗତ କେତେଜଣ ବ୍ରାହ୍ମ ଏକତ୍ରିତ ହେଲେ । ସେମାନେ ପୁରୀରେ ବ୍ରାହ୍ମସମାଜ ସ୍ଥାପନର ପ୍ରସ୍ତାବ ପ୍ରଥମେ ଉତ୍ଥାପନ କଲେ ।

ସେତେବେଳେ ସ୍ଥାନୀୟ ବ୍ରାହ୍ମମାନଙ୍କ ମଧ୍ୟରେ ଥିଲେ ମି. ବି. ସି. ସେନ୍ (ଓଡ଼ିଶା କମିଶନର), ମି. ଏନ୍. ସେନାପତି (ପୁରୀର କଲେକ୍ଟର) ମି. ଲକ୍ଷ୍ମୀନାରାୟଣ ପଟ୍ଟନାୟକ (ପୁରୀର ସବ୍‌ଜଜ୍), ଡା ମିସ୍ ଯାମିନୀ ସେନ୍ ଓ ତାଙ୍କ ଭଗିନୀ ମିସେସ୍ କାମିନୀ ରାୟ, ଭାଇ ପ୍ରିୟନାଥ ମଲ୍ଲିକ ଓ ଡା. ପାନକର ରାଓ । ଏମାନେ ଡା. ଯାମିନୀ ସେନ୍‌ଙ୍କ ଗୃହରେ ବାରମ୍ବାର ମିଳିତ ହୋଇ ଏ ବିଷୟରେ ଅନେକ ଆଲୋଚନା କଲେ ଏବଂ ପରେ ସ୍ଥିର କଲେ ଯେ, ପୁରୀରେ ସମାଜମନ୍ଦିର ପ୍ରତିଷ୍ଠା ପାଇଁ ଖଣ୍ଡିଏ ନିଷ୍କର ଜମି ଓଡ଼ିଶା ସରକାରଙ୍କ ନିକଟରେ ପ୍ରାର୍ଥନା କରିହେବ । ଏହି ସମୟରେ ସ୍ଥାନୀୟ ଓ କଲିକତାସ୍ଥ କେତେଜଣ ବ୍ରାହ୍ମଙ୍କୁ ନେଇ ଗୋଟିଏ କମିଟି ଗଠନ କରାଗଲା ।

ଏହି ଜମି ପାଇଁ କଟକର ରାୟସାହେବ ରଘୁନାଥ ରାଓ ଓ ବିଶ୍ୱନାଥ କର ମହୋଦୟଗଣ ବହୁ ଚେଷ୍ଟା କଲେ ଏବଂ ପରେ ଜମି ମିଳିଗଲା । ତାପରେ Universal Religious Mission of the New Dispensation ନାମ ଦେଇ ଖ୍ରୀ: ୧୫ । ୧୦ । ୩୦ ତାରିଖରେ ସମ୍ପାଦିତ ହେଲା । ଭାଇ ପ୍ରିୟନାଥ ମଲ୍ଲିକ ମହାଶୟ ଏହି ଜମିରେ ଖଣ୍ଡିଏ ଛୋଟ କୁଡ଼ିଆଘର କରି ବାସ କରୁଥାଆନ୍ତି । ପ୍ରତି ରବିବାର ଦିନ ସେ ଉପାସନାଦି କରୁଥାଆନ୍ତି । ତାପରେ ଡା. ଡ଼. ଏନ୍. ବ୍ୟାନାର୍ଜୀ (କଲିକତା) ତାଙ୍କ ଏକମାତ୍ର ମୃତସନ୍ତାନର ନାମାନୁସାରେ 'ପ୍ରେମାଶ୍ରମ' ନାମରେ ଏହି ସ୍ଥାନରେ ଖଣ୍ଡିଏ ଦେଢ଼ତାଲା ଘର କରାଇ ଦେଲେ । ସେଥିରେ ଗୋଟିଏ ପାଠାଗାର ହେଲା ।

ଏଠାକୁ ପ୍ରାୟ ଗ୍ରୀଷ୍ମକାଳରେ ଏବଂ ଅନ୍ୟାନ୍ୟ ଛୁଟିରେ ବହୁ ବ୍ରାହ୍ମ ବାହାରୁ ଅବସର ଯାପନ ନିମିତ୍ତ ଆସୁଥିଲେ । ସେ ସମୟରେ ନିୟମିତ ଭାବରେ ଏଠାରେ ଉପାସନାଦି ହେଉଥିଲା । ମହାତ୍ମା ରାଜା ରାମମୋହନ ରାୟଙ୍କ ଶତବାର୍ଷିକୀ ଏଠାରେ ଖୁବ୍ ସୁନ୍ଦର ଭାବରେ ସମ୍ପନ୍ନ ହୋଇଥିଲା ।

ଏଥି ଉତ୍ତାରୁ ସ୍ଥାନୀୟ ବ୍ରାହ୍ମ ଯେଉଁମାନେ ଥିଲେ ସେମାନେ ଜଣ ଜଣ କରି ସବୁ ଚାଲିଗଲେ – ମାତ୍ର ୨।୧ ଘର ରହିଲେ । ମଧ୍ୟେ ମଧ୍ୟେ ପୂର୍ଣ୍ଣଚନ୍ଦ୍ର ଚକ୍ରବର୍ତ୍ତୀ (ଯାଦବପୁର) ଓ ଅଖିଳଚନ୍ଦ୍ର ରାୟ (କଲିକତା) ଏବଂ ଅନ୍ୟ ବ୍ରାହ୍ମମାନେ ଆଶ୍ରମରେ ଆସି ରହୁଥିଲେ । ସେତେବେଳେ ରବିବାରରେ

ଉପାସନାଦ ହେଉଥିଲା । ଅନ୍ୟାନ୍ୟ ସମୟରେ ଡା. ଘନକର ରାଓ ଓ ତାଙ୍କ ପତ୍ନୀ 'ପ୍ରେମାଶ୍ରମ'କୁ ଯାଇ ସଙ୍ଗୀତ ଓ ପାଠାଦ କରିଆସନ୍ତି । ଏମାନଙ୍କ ଛଡ଼ା ପୁରୀରେ ବର୍ତ୍ତମାନ ଆଉ କୌଣସି ବ୍ରାହ୍ମ ପରିବାର ନାହାନ୍ତି ।

ବହୁକାଳ ପରେ ୧୯୬୧ ସାଲରେ 'ପ୍ରେମାଶ୍ରମ' ସମ୍ପୂର୍ଣ୍ଣ ଭାବେ ମରାମତ କରାହୋଇଛି । ୧୯୬୧ ସାଲରେ ବାଲେଶ୍ୱରରେ ବ୍ରାହ୍ମ କନ୍‌ଫରେନ୍‌ସ ଆହୂତ ହେବା ପରେ କେତେଜଣ ବ୍ରାହ୍ମ ଏଠାରେ ଆସି ରହୁଥିଲେ ଓ କୀର୍ତ୍ତନ ଉପାସନାଦ କରୁଥିଲେ । ତାପରେ ବର୍ତ୍ତମାନ ଏଠାରେ ବିଶେଷ କାମ ହେଉନାହିଁ ।

## ଭଗବତୀଚରଣ ଚଟ୍ଟୋପାଧ୍ୟାୟ ଓ ବିପ୍ରଚରଣ ଚଟ୍ଟୋପାଧ୍ୟାୟ :

ବଙ୍ଗ ଦେଶର ଚବିଶ ପରଗଣା ଅନ୍ତର୍ଗତ ରାମନଗର ଗ୍ରାମରେ ଏମାନଙ୍କର ଜନ୍ମ । ଏମାନଙ୍କ ପିତା ରାମକୃଷ୍ଣ ଚଟ୍ଟୋପାଧ୍ୟାୟ ଅତିଶୟ ଧର୍ମପ୍ରାଣ ଲୋକ ଥିଲେ । ପୁତ୍ର ଦୁହିଁଙ୍କର ଶୈଶବ କାଳରେ (ଭଗବତୀ ଚରଣଙ୍କ ବୟସ ସେତେବେଳେ ୭ ବର୍ଷ) ତାଙ୍କର ସ୍ତ୍ରୀ ବିୟୋଗ ହେଲରୁ ସେ ଗୃହସ୍ଥାଶ୍ରମ ତ୍ୟାଗ କରି ବାରଣାସୀରେ ସନ୍ନ୍ୟାସ ଜୀବନଯାପନ କଲେ । ସେତେବେଳେ ସେ ରାମାନନ୍ଦ ସ୍ୱାମୀ ନାମରେ ସୁପରିଚିତ ଥିଲେ । ଏମାନଙ୍କ ବଡ଼ମାମୁଁ ଗୋପାଳଚନ୍ଦ୍ର ମୁଖୋପାଧ୍ୟାୟ ପୁରୀ ଜିଲ୍ଲା ସ୍କୁଲରେ ଶିକ୍ଷକ ଥିଲେ । କିଛିକାଳ ପରେ ଗୋପାଳବାବୁଙ୍କ ମୃତ୍ୟୁ ହେବା ପରେ ଅନ୍ୟ ମାମୁଁ ଦୀନନାଥ ମୁଖୋପାଧ୍ୟାୟ ଏମାନଙ୍କ ଭାର ଗ୍ରହଣ କଲେ । ସେ କଟକରେ ରହୁଥିଲେ । କଟକରେ ମାତୁଳ ଗୃହରେ ରହି ଦୁଇଭାଇ ଲେଖାପଢ଼ା ଆରମ୍ଭ କଲେ । କଟକ ସରକାରୀ ଉଚ୍ଚ ବିଦ୍ୟାଳୟରୁ ଏଣ୍ଟ୍ରାନ୍‌ସ ପାସ୍ କରି ଏମାନେ ଯେତେବେଳେ ଏଫ୍. ଏ. ପଢ଼ିବାକୁ ଆରମ୍ଭ କଲେ ସେତେବେଳେ (୧୮୬୯ ଖ୍ରୀଷ୍ଟାବ୍ଦ) ପୁରୀ ଜିଲ୍ଲା ସ୍କୁଲରୁ ମଧୁବାବୁ ମଧ୍ୟ ପ୍ରବେଶିକା ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ କଟକରେ ଆସି ଏମାନଙ୍କ ସହପାଠୀ ହେଲେ । ତଦବଧି ଏମାନଙ୍କର ବନ୍ଧୁତା କ୍ରମଶଃ ଗଭୀରତା ଲାଭ କରି ଆଜୀବନ ସ୍ଥାୟୀ ହେଲା ।

ଭଗବତୀଚରଣ ଆଜୀବନ ଶିକ୍ଷା ବିଭାଗରେ କାମ କରିଯାଇଛନ୍ତି । ପ୍ରଥମେ ସେ ବଙ୍ଗ ଦେଶର ଶିକ୍ଷା ବିଭାଗରେ କାର୍ଯ୍ୟାରମ୍ଭ କଲେ । କିଛିକାଳ

ପରେ ମାନ୍ଦ୍ରାଜ ସରକାର ଗଞ୍ଜାମରେ ଜଣେ ଓଡ଼ିଆ ସ୍କୁଲପରିଦର୍ଶକଙ୍କ ପ୍ରୟୋଜନ ବୋଧ କରି ଭଗବତୀଚରଣଙ୍କୁ ଡାକି ନେଇବାରୁ ବଙ୍ଗୀୟ ସରକାରଙ୍କ ଅନୁମତିକ୍ରମେ ଭଗବତୀଚରଣ ୧୮୭୮ ଖ୍ରୀଷ୍ଟାବ୍ଦରେ ମାନ୍ଦ୍ରାଜରେ ଶିକ୍ଷା ବିଭାଗରେ ଯୋଗଦାନ କଲେ। ବହୁବର୍ଷ ଡେପୁଟୀ ଇନସପେକ୍ଟର କାର୍ଯ୍ୟ କରି ପରେ ସେ ଆସିଷ୍ଟାଣ୍ଟ ଇନସପେକ୍ଟର ପଦକୁ ଉନ୍ନୀତ ହେଲେ ଏବଂ ଅବଶେଷରେ ଅସ୍ଥାୟୀ ଭାବରେ କିଛିଦିନ "ଇନସ୍‌ପେକ୍ଟର ଅଫ୍ ସ୍କୁଲସ୍"ର କାର୍ଯ୍ୟ ମଧ୍ୟ କଲେ। ପ୍ରାଥମିକ ବିଦ୍ୟାଳୟର ଉପଯୋଗୀ ବହୁ ଓଡ଼ିଆ ପାଠ୍ୟପୁସ୍ତକ ମଧ୍ୟ ସେ ରଚନା କରିଥିଲେ। ଉଦାର ଓ ଉଚ୍ଚମନା ବ୍ୟକ୍ତି ରୂପେ ସେ ସମସ୍ତଙ୍କର ପ୍ରିୟ ଓ ଶ୍ରଦ୍ଧାଭାଜନ ଥିଲେ। ଗଞ୍ଜାମ ଜିଲ୍ଲାର ବହୁ ଅପ୍ରାପ୍ତ ବୟସ୍କ ଜମିଦାର ପୁତ୍ରମାନଙ୍କର ସେ ଶିକ୍ଷକ ଓ ଅଭିଭାବକ ଥିଲେ।

ଭଗବତୀଚରଣ ମାନ୍ଦ୍ରାଜ ସରକାରରେ କାର୍ଯ୍ୟ ଗ୍ରହଣ କରିବା ଉତ୍ତାରୁ ବିପ୍ରଚରଣଙ୍କୁ ମାନ୍ଦ୍ରାଜ ପଠାଇ ଆଇନ ପଢ଼ାଇ ଆଣିଲେ। ବିପ୍ରଚରଣ ଜ୍ୟେଷ୍ଠଭ୍ରାତାଙ୍କ ନିକଟରେ ରହି ବ୍ରହ୍ମପୁରରେ ଆଇନ୍ ବ୍ୟବସାୟ ଆରମ୍ଭ କଲେ। ଅଳ୍ପକାଳ ମଧ୍ୟରେ ସେ ତତ୍ରତ୍ୟ ଓକିଲମାନଙ୍କ ମଧ୍ୟରେ ଶ୍ରେଷ୍ଠସ୍ଥାନ ଅଧିକାର କଲେ। ଚରିତ୍ର ଗୁଣରେ ସେ ଏତେ ଲୋକପ୍ରିୟ ହୋଇଥିଲେ ଯେ, ସେ କିଛି ବର୍ଷ ବ୍ରହ୍ମପୁର ପୌରସଭାର ଅଧ୍ୟକ୍ଷ (ଚେୟାରମ୍ୟାନ) ଏବଂ ଖଲିକୋଟ ରାଜ କଲେଜର ଉପସଭାପତି (ଭାଇସ୍ ପ୍ରେସିଡେଣ୍ଟ) ହୋଇଥିଲେ।

୧୯୦୫ ଖ୍ରୀଷ୍ଟାବ୍ଦ ଡିସେମ୍ବର ମାସରେ ନିମୋନିଆ ରୋଗଗ୍ରସ୍ତ ହୋଇ ବିପ୍ରଚରଣ କେତେଦିନ ମଧ୍ୟରେ ମୃତ୍ୟୁମୁଖରେ ପତିତ ହେଲେ। ସେତେ-ବେଳେ ଭଗବତୀଚରଣ ବିଶେଷ ଅସୁସ୍ଥ ଥିଲେ। ଉଭୟ ଭ୍ରାତାଙ୍କ ମଧ୍ୟରେ ଏପରି ସୌହାର୍ଦ୍ଦ୍ୟ ଥିଲା ଯେ କନିଷ୍ଠର ମୃତ୍ୟୁ ସମ୍ବାଦ ସେତେବେଳେ ଭଗବତୀଚରଣଙ୍କୁ କେହି ଦେବାକୁ ସାହସ କଲେ ନାହିଁ। ଗୋପନରେ ଶ୍ରାଦ୍ଧର ଆୟୋଜନ ଚାଲିଥିଲା। ଅସୁସ୍ଥ ଭଗବତୀଚରଣ କନିଷ୍ଠର କେତେଦିନ ଅନୁପସ୍ଥିତିରେ ବ୍ୟାକୁଳ ହୋଇ "ବିପ୍ର କାହିଁ, ବିପ୍ର କେଉଁଠି, ତାକୁ ଦେଖୁନାହିଁ କାହିଁକି ?" ବୋଲି ଶିଥିଳ ଚରଣରେ କୌଣସିମତେ ଘରର ବାହାରକୁ ଆସି ସମସ୍ତ ବୁଝିପାରିଲେ ଏବଂ ଏହି ଆଘାତରେ କେତେ

ଘଣ୍ଟା ମଧ୍ୟରେ ତାଙ୍କର ପ୍ରାଣବାୟୁ ବାହାରିଗଲା । ଏହି ଦୁଇ ଭ୍ରାତାଙ୍କର ଅପୂର୍ବ ଭ୍ରାତୃପ୍ରେମ କଥା ଗଞ୍ଜାମରେ ଆଜି ସୁଦ୍ଧା ବହୁ ଗୃହରେ ଜନଶ୍ରୁତି ରୂପେ ରହିଅଛି ।

## ଶଶୀଭୂଷଣ ଦତ୍ତ ଓ ପାର୍ବତୀନାଥ ଦତ୍ତ

ଢାକା ଜିଲ୍ଲା ଅନ୍ତର୍ଗତ ବହ୍ରମପୁରର ବେଦଗାଁଓ ଗ୍ରାମର ବିଖ୍ୟାତ ଦତ୍ତଗୁପ୍ତ ବଂଶରେ ଏମାନଙ୍କର ଜନ୍ମ । ଏମାନଙ୍କର ପିତାଙ୍କ ନାମ ବୈଦ୍ୟନାଥ ଦତ୍ତଗୁପ୍ତ ଓ ମାତା କୁମାରୀ ଦେବୀ । ଗୁରି ପୁତ୍ର ଓ ଦୁଇକନ୍ୟା ରଖି ବୈଦ୍ୟନାଥ କର୍ମସ୍ଥଳରେ ବିଦେଶରେ ୪୦ ବର୍ଷ ବୟସରେ ଦେହ-ରକ୍ଷା କଲେ । ତଦବଧି ଏମାନଙ୍କର ପିତୃବ୍ୟ ଚନ୍ଦ୍ରନାଥ ଦତ୍ତଗୁପ୍ତ ପିତୃହୀନ ସନ୍ତାନଗୁଡ଼ିକର ଅଭିଭାବକତା ଗ୍ରହଣ କଲେ । ଗୁରି ଭ୍ରାତାଙ୍କ ମଧ୍ୟରେ ଦ୍ୱିତୀୟ ଶଶୀଭୂଷଣ ଓ କନିଷ୍ଠ ପାର୍ବତୀନାଥ ପରେ ଜୀବନରେ ବ୍ରାହ୍ମଧର୍ମ ଗ୍ରହଣ କଲେ ।

ପିତାଙ୍କ ମୃତ୍ୟୁ ପରେ ପିତୃବ୍ୟ ଚନ୍ଦ୍ରନାଥ ଶଶୀଭୂଷଣଙ୍କୁ ସ୍ୱୀୟ କର୍ମସ୍ଥଳ କୁମିଲ୍ଲାକୁ ନେଇଗଲେ । ସେଠାରୁ ଶଶୀଭୂଷଣ ଛାତ୍ରବୃତ୍ତି ପରୀକ୍ଷାରେ ପ୍ରଥମ ସ୍ଥାନ ଅଧିକାର କରି ୪ ଟଙ୍କା ବୃତ୍ତିଲାଭ କଲେ । ଏହି ସମୟରେ ବେଦଗାଁଓ ନିବାସୀ ମହାନୁଭବ ଭଗବାନ ଦେଓୟାନଜୀ ଢାକାରେ ବାସ କରୁଥିଲେ; ତାଙ୍କ ବସାରେ ରହି ଅନେକ ବାଳକ ପଢ଼ାଶୁଣା କରୁଥିଲେ । ବୃତ୍ତିଲାଭ କରି ଶଶୀଭୂଷଣ ମଧ୍ୟ ଆସି ଢାକାରେ ଦେଓୟାନଜୀଙ୍କ ବସାରେ ରହି କଲେଜିଏଟ୍ ସ୍କୁଲରେ ପଢିବାକୁ ଆରମ୍ଭ କଲେ ।

ଏଣ୍ଟ୍ରାନ୍ସ ପରୀକ୍ଷାରେ ବୃତ୍ତିଲାଭ କରି ଢାକା କଲେଜରୁ ଏଫ୍. ଏ. ପରୀକ୍ଷା ଦେଇ ବୃତ୍ତିଲାଭ କରିବା ପରେ ଶଶୀଭୂଷଣ କଲିକତା ଆସି ପ୍ରେସିଡେନ୍ସି କଲେଜରେ ବି. ଏ. ପଢିଲେ ଏବଂ ସେଠାରୁ ୧୮୮୩ ସାଲରେ ଦର୍ଶନଶାସ୍ତ୍ରରେ ପ୍ରଥମ ଶ୍ରେଣୀରେ ପ୍ରଥମ ହୋଇ ଏମ୍. ଏ. ପାସ୍ କଲେ । କଲିକତାରେ ଅଧ୍ୟୟନ କରୁଥିବା ବେଳେ ଶଶୀଭୂଷଣ ଓ ପାର୍ବତୀନାଥ ଅନ୍ୟ କେତେକ ଛାତ୍ରଙ୍କ ସହିତ ମୁସଲମାନପଡ଼ା ଲେନ୍ ଗୋଟିଏ ମେସ୍‌ରେ ବାସ କରୁଥିଲେ । ମଧୁସୂଦନ ଏଫ୍. ଏ. ପରୀକ୍ଷା ଦେବାପାଇଁ କଲିକତା ଆସି

ଏହି ମେସ୍‌ରେ ଅବସ୍ଥାନ କରି ଏମାନଙ୍କ ସହିତ ବନ୍ଧୁତାସୂତ୍ରରେ ଆବଦ୍ଧ ହୋଇଥିଲେ ।

ଏମ୍. ଏ. ପାଶ୍ କରିବା ପରେ ଶଶୀଭୂଷଣ କଟକ ହାଇସ୍କୁଲରେ ଏଫ୍. ଏ. ଶ୍ରେଣୀର ଅଧ୍ୟାପକ ରୂପେ ନିଯୁକ୍ତ ହୋଇଆସିଲେ ଏବଂ ସେଠାରେ ଥିବା ସମୟରେ ଢାକା କାଓରାଇଦର ଜମିଦାର ସାଧୁ କାଳୀନାରାୟଣ ଗୁପ୍ତ ମହାଶୟଙ୍କ (ସାର୍ କେ: ଜି: ଗୁପ୍ତଙ୍କ ପିତା) ଦ୍ୱିତୀୟା କନ୍ୟା ଚପଳା ଦେବୀଙ୍କ ସହିତ ତାଙ୍କର ବିବାହ ହେଲା ।

ଏହାପରେ ଶଶୀଭୂଷଣ ବେଥୁନ୍ କଲେଜ, ଢାକା ଜଗନ୍ନାଥ କଲେଜ ଓ ପ୍ରେସିଡେନ୍‌ସି କଲେଜରେ ସୁଖ୍ୟାତି ସହିତ ଅଧ୍ୟାପନା କରି ଅବଶେଷରେ କୃଷ୍ଣନଗର କଲେଜର ଅଧ୍ୟକ୍ଷ ହେଲେ ଏବଂ ସେଠାରୁ ସରକାରୀ କର୍ମରୁ ଅବସର ଗ୍ରହଣ କଲେ ।

ଅବସର ଗ୍ରହଣ ପରେ ମଧ୍ୟ ସେ ନାନା ସତ୍‌କର୍ମରେ ବ୍ୟାପୃତ ରହି ବିବିଧ ପ୍ରକାର ସମାଜସେବା କରି ୧୯୩୭ ଖ୍ରୀଷ୍ଟାବ୍ଦ ଡିସେମ୍ବର ୧୭ ତାରିଖରେ ଦେହରକ୍ଷା କଲେ ।

## ପାର୍ବତୀନାଥ ଦତ୍ତ :

୧୮୫୮ ଖ୍ରୀଷ୍ଟାବ୍ଦ ଫେବୃୟାରୀ ୧୨ ତାରିଖରେ ବେଦଗାଁଓ ଗ୍ରାମରେ ପାର୍ବତୀନାଥଙ୍କ ଜନ୍ମ ହୋଇଥିଲା । ତାଙ୍କୁ ଦୁଇ ବା ଅଢ଼େଇବର୍ଷ ହେବା-ବେଳେ ତାଙ୍କ ପିତାଙ୍କର ମୃତ୍ୟୁ ହେଲା । ଗ୍ରାମ ପାଠଶାଳାରେ ଆଠ ବର୍ଷ ପର୍ଯ୍ୟନ୍ତ ପଢ଼ି ସେ ଭାଇ ଶଶୀଭୂଷଣ ଦତ୍ତଙ୍କ ନିକଟକୁ ଢାକା ଗଲେ । ସେତେବେଳେ ଶଶୀଭୂଷଣ ଢାକା କଲେଜରେ ଏଫ୍: ଏ: ପଢୁଥିଲେ । ପାର୍ବତୀନାଥ ସେଠାରେ ବ୍ରାହ୍ମନେତା ବ୍ରଜସୁନ୍ଦର ମିତ୍ର ମହାଶୟଙ୍କ ସ୍ଥାପିତ ବ୍ରାହ୍ମ ବିଦ୍ୟାଳୟରେ କେତେମାସ ପଢ଼ିବା ପରେ ଜ୍ୟେଷ୍ଠ ସହୋଦର ଦୁର୍ଗାପ୍ରସାଦଙ୍କ ନିକଟକୁ ବରିଶାଲ ଗମନ କଲେ । ଦୁର୍ଗାପ୍ରସାଦ ସେତେ-ବେଳେ, ବରିଶାଲ ବଙ୍ଗ ବିଦ୍ୟାଳୟର ପ୍ରଧାନ ପଣ୍ଡିତର କାର୍ଯ୍ୟ କରୁଥିଲେ । ଏହି ବିଦ୍ୟାଳୟରୁ ୧୮୭୦ ଖ୍ରୀଷ୍ଟାବ୍ଦରେ ଛାତ୍ରବୃତ୍ତି ପରୀକ୍ଷା ଦେଇ ପାର୍ବତୀନାଥ ପୂର୍ବ ବଙ୍ଗଳା ମଧ୍ୟରେ ପ୍ରଥମ ସ୍ଥାନ ଅଧିକାର କଲେ ଓ ମାସିକ ୪ ଟଙ୍କା

ବୃତ୍ତି ପାଇଲେ । ବୃତ୍ତିଲାଭ ପରେ ସେ ଦ୍ୱିତୀୟ ସହୋଦର ଶଶୀଭୂଷଣଙ୍କ କଲିକତା ମୁସଲମାନପଡ଼ା ଲେନ୍ ମେସ୍‌ରେ ରହି ହିନ୍ଦୁ ସ୍କୁଲରେ ପାଠ ଆରମ୍ଭ କଲେ ।

୧୮୭୪ ଖ୍ରୀଷ୍ଟାବ୍ଦରେ ଏଠାରୁ ଏଣ୍ଟ୍ରାନ୍‌ସ ପରୀକ୍ଷା ଦେଇ ପ୍ରମଥନାଥ ୧୫ ଟଙ୍କା ବୃତ୍ତିଲାଭ କଲେ । ୧୮୭୬ ଖ୍ରୀଷ୍ଟାବ୍ଦରେ ପ୍ରେସିଡ଼େନ୍‌ସି କଲେଜରୁ ଏଫ୍: ଏ: ପରୀକ୍ଷାରେ ପ୍ରଥମ ଶ୍ରେଣୀରେ ପାଶ୍ କରି ୨୦ଟଙ୍କା ବୃତ୍ତି ପାଇ ମେଡିକାଲ କଲେଜର ତୃତୀୟ ବାର୍ଷିକ ଶ୍ରେଣୀରେ ପଢ଼ୁଥିବା ବେଳେ ସେ ଗିଲକ୍ରାଇଷ୍ଟ ବୃତ୍ତି ଲାଭକରି ସେ ଏହି ବର୍ଷ ବିଲାତ ଗମନ କଲେ । ସେଠାରେ ସେ ଚିକିତ୍ସାଶାସ୍ତ୍ର ଓ ଭୂତତ୍ତ୍ୱ ବିଦ୍ୟାରେ (ଜିଓଲୋଜି) ବି ଏସ୍. ସି. ଏକସଙ୍ଗରେ ଅଧ୍ୟୟନ କରୁଥାଆନ୍ତି । କିନ୍ତୁ ଅତିରିକ୍ତ ପରିଶ୍ରମ ହେତୁ ଏବଂ ପୁଷ୍ଟିକର ଖାଦ୍ୟର ଅଭାବରେ ତାଙ୍କ ସ୍ୱାସ୍ଥ୍ୟ ଭଗ୍ନ ହୋଇଗଲା । ଡାକ୍ତରମାନେ କ୍ଷୟ-ରୋଗ ସନ୍ଦେହ କରି ଚିକିତ୍ସା ପାଇଁ ତାଙ୍କୁ ସୁଇଜରଲଣ୍ଡ ଯିବାକୁ କହିଲେ । କିଛିକାଳ ଚିକିତ୍ସା ପରେ ସେ ସୁସ୍ଥ ହୋଇ ଲଣ୍ଡନ ବିଶ୍ୱବିଦ୍ୟାଳୟର ବି: ଏସ୍: ସି: ପରୀକ୍ଷାରେ ପ୍ରଥମ ଶ୍ରେଣୀରେ ଅନର୍ସ ଲାଭ କରି ପ୍ରଥମ ହୋଇ ଉତ୍ତୀର୍ଣ୍ଣ ହେଲେ । ୧୮୮୮ ସାଲ ଏପ୍ରିଲ ମାସରେ ସେ ସେକ୍ରେଟାରୀ ଅବ୍‌ଷ୍ଟେଟ୍‌ଙ୍କ ନିକଟରୁ "ଜିଓଲୋଜିକାଲ ସର୍ଭେ ଅଫ୍ ଇଣ୍ଡିଆ"ର ଆସିଷ୍ଟାଣ୍ଟ ସୁପରିନ୍-ଟେଣ୍ଡେଣ୍ଟ ରୂପେ ନିଯୁକ୍ତ ହୋଇ ସ୍ୱଦେଶକୁ ପ୍ରତ୍ୟାବର୍ତ୍ତନ କଲେ । ୧୮୯୮ ସାଲରେ ପାବନା ଜିଲ୍ଲା ଅନ୍ତର୍ଗତ ଏନାଇଗାଛି ନିବାସୀ କୈଳାସ ଚନ୍ଦ୍ର ବାଗ୍‌ଚୀ ମହାଶୟଙ୍କ ଦ୍ୱିତୀୟା କନ୍ୟା ଶିଶିରକୁମାରୀ ଦେବୀଙ୍କ ସହିତ ତାଙ୍କର ବିବାହ ହେଲା । ଏହି ବିବାହରୁ ତିନୋଟି କନ୍ୟା ଓ ଗୋଟିଏ ପୁତ୍ର ଜନ୍ମ ହେଲେ ।

ସେ ଯୁଗରେ ଜିଓଲଜିକାଲ ସର୍ଭେ ବିଭାଗରେ ଭାରତୀୟ ଅଫିସରମାନଙ୍କ ମଧ୍ୟରେ ପ୍ରଥମ ଥିଲେ ସୁନାମଧନ୍ୟ ପ୍ରମଥନାଥ ବସୁ ତପୂର୍ବେ ଦ୍ୱିତୀୟ ଅଫିସର ହେଲେ ପ୍ରମଥନାଥ । ଭାରତୀୟ ବୋଲି ସେମାନଙ୍କ ଉପରେ ବାରମ୍ବାର ଅନ୍ୟାୟ ନିର୍ଯ୍ୟାତନାର ଚେଷ୍ଟା ହେଉଥିଲା; ପ୍ରମଥନାଥ ବରାବର ତେଜସ୍ୱୀତାର ସହିତ ସେ ସମସ୍ତ ଅନ୍ୟାୟର ପ୍ରତିବାଦ ଓ ସଂଶୋଧନର ଚେଷ୍ଟା କରୁଥିଲେ । ଏହିପରି ସୁଖ୍ୟାତି ସହିତ କାର୍ଯ୍ୟକାଳ

ସମାପନାନ୍ତେ ସେ ସରକାରୀ କର୍ମରୁ ଅବସର ଗ୍ରହଣ କଲେ । ଅବସର ଗ୍ରହଣର ପୂର୍ବରୁ ଭାରତୀୟମାନେ ଯେପରି ଏହି ବିଭାଗରେ ଅଧିକ ସଂଖ୍ୟାରେ ଯୋଗଦାନ କରି କର୍ମକ୍ଷେତ୍ରରେ ସୁଯୋଗ ସୁବିଧା ଲାଭ କରିପାରନ୍ତି, ସେହି ଉଦ୍ଦେଶ୍ୟରେ ପାର୍ବତୀନାଥ ଭାରତୀୟ Geological and Metalurgical Society ସ୍ଥାପନ କଲେ । ସେ ତାହାର ପ୍ରଥମ ସଭାପତି ଏବଂ ଆଜୀବନ ସଭ୍ୟ ଥିଲେ । କର୍ମୋପଲକ୍ଷେ ଯଦ୍ୟପି ତାଙ୍କୁ ଅଧିକାଂଶ ସମୟ ବିଦେଶରେ କଟାଇବାକୁ ପଡ଼ୁଥିଲା, ତଥାପି ସେ ଜନ୍ମସ୍ଥାନ କଥା ଭୁଲିନାହାନ୍ତି । ସୁବିଧା ପାଇବା ମାତ୍ରେ ସେ ଗ୍ରାମକୁ ଯାଇଛନ୍ତି ଓ ତାହାର ମଙ୍ଗଳ ନିମିତ୍ତ ଚିନ୍ତା କରିଛନ୍ତି । ସ୍ୱଗ୍ରାମର ବାଳକ ବାଳିକାମାନଙ୍କ ଶିକ୍ଷାର ଅସୁବିଧା ଦୂରୀ-କରଣାର୍ଥେ ସେ ସେଠାରେ ବେହଗାଁଓ ଉଚ୍ଚ ଇଂରାଜୀ ବିଦ୍ୟାଳୟ ସ୍ଥାପନ କଲେ । ପ୍ରଥମତଃ ତାଙ୍କ ଅର୍ଥରେ ବିଦ୍ୟାଳୟ ଦୁଇଟି ସ୍ଥାପିତ ଓ ପରିଚାଳିତ ହେଲା ଏବଂ ଜୀବନର ଶେଷ ନିଶ୍ୱାସ ପର୍ଯ୍ୟନ୍ତ ସେ ତାହାର ସଭାପତି ଥିଲେ । ମାତାଙ୍କ ମୃତ୍ୟୁ ପରେ ତାଙ୍କର ପବିତ୍ର ନାମ ସ୍ମରଣ କରି ପାର୍ବତୀନାଥ ବସ୍ତ୍ର ଗ୍ରାମବାସୀମାନଙ୍କୁ ବସ୍ତ୍ର ବିତରଣ କରୁଥିଲେ ।

ଏହିପରି ଜୀବନର ସୁଦୀର୍ଘ ୮୭ ବର୍ଷ ନାନା ପ୍ରକାର ସତ୍‌କାର୍ଯ୍ୟ ଓ ସମାଜ ସେବାରେ କଟାଇ ୧୯୪୪ ଖ୍ରୀଷ୍ଟାବ୍ଦ ସେପ୍‌ଟେମ୍ବର ୨ ତାରିଖରେ ସେ କଲିକତାର ସ୍ୱଗୃହରେ ପରଲୋକ ଗମନ କଲେ ।

ଢାକାରେ ଅବସ୍ଥାନ କରୁଥିବା ବେଳେ ଛାତ୍ରାବସ୍ଥାରେ ଶଶୀଭୂଷଣ ଓ ପାର୍ବତୀନାଥ ଉଭୟେ ବ୍ରାହ୍ମସମାଜ ଆଡ଼କୁ ଆକୃଷ୍ଟ ହେଲେ । ସେହି ସମୟରେ ଆରମାନ-ଟୋଲରେ ବ୍ରଜସୁନ୍ଦର ମିତ୍ର ମହାଶୟଙ୍କ ଗୃହରେ ନିୟମିତ ଉପାସନା ହେଉଥିଲା । ସେଠାରେ ଶଶୀଭୂଷଣଙ୍କ ସଙ୍ଗରେ ପାର୍ବତୀନାଥ ମଧ୍ୟ ଉପାସନାରେ ଯୋଗ ଦେଉଥିଲେ । କ୍ରମେ କ୍ରମେ ଉଭୟେ ବ୍ରାହ୍ମସମାଜଭୁକ୍ତ ହୋଇପଡ଼ିଲେ । କେବଳ ମାତ୍ର ବୃତ୍ତିର କେତୋଟି ଟଙ୍କା ଉପରେ ନିର୍ଭର କରି କଲିକତା ମେସ୍‌ରେ ରହି ଶିକ୍ଷାବ୍ୟୟ ନିର୍ବାହ କରିବା ପାଇଁ ଉଭୟ ଭ୍ରାତାଙ୍କୁ ଯେ କି ସଂଗ୍ରାମ ଓ କୃଚ୍ଛ୍ର ସାଧନା କରିବାକୁ ପଡୁଥିଲା ତାହା ବର୍ତ୍ତମାନର ଛାତ୍ରମାନଙ୍କ ନିକଟରେ ଅବିଶ୍ୱାସ୍ୟ କାହାଣୀ ବୋଲି ବିବେଚିତ ହେବା ସ୍ୱାଭାବିକ୍ । ମେଧାବୀ, ଦୃଢ଼ ସଂକଳ୍ପ ଓ ସାହସୀ ଥିଲେ ବୋଲି ସମସ୍ତ ଦୁଃଖ କ୍ଲେଶକୁ ଅଗ୍ରାହ୍ୟ କରି ଉଭୟ ଭ୍ରାତା ବିଭିନ୍ନ ଶାସ୍ତ୍ରରେ

କୃତବିଦ୍ୟ ହେବାକୁ ଓ ଜୀବନ ସଂଗ୍ରାମରେ ଜୟଲାଭ କରିବାକୁ ସମର୍ଥ ହୋଇଥିଲେ । ଏମାନଙ୍କ ର ସୌଭ୍ରାତ୍ର ଯେ କୌଣସି କାଳର ଆଦର୍ଶ ରୂପେ ଗ୍ରହଣ ହେବା ଯୋଗ୍ୟ ।

ଶଶୀଭୂଷଣଙ୍କ ଜ୍ୟେଷ୍ଠ ଜାମାତା ଡାକ୍ତର ଏନ୍. ମୈତ୍ର ତାଙ୍କ ଶ୍ୱଶୁର ମହାଶୟଙ୍କ ପ୍ରତି ଶ୍ରଦ୍ଧାର୍ଘ୍ୟ ନିବେଦନ ବେଳେ ଶ୍ରାଦ୍ଧଦିବସରେ ଯେଉଁ ଉକ୍ତି ପ୍ରକାଶ କରିଥିଲେ, ସେଥିରେ ଅମ୍ଭମାନଙ୍କ ପ୍ରାଣ ସାନ୍ତ୍ୱନା ପାଏ— "ଶଶୀଭୂଷଣ ଥିଲେ ଅଟଳ, ଶାନ୍ତ; ଏକଦିଗରେ ଭଗବାନଙ୍କ ଉପରେ ତାଙ୍କର ଗଭୀର ବିଶ୍ୱାସ ଓ ନିର୍ଭରତା ଅନ୍ୟ ଦିଗରେ ତାଙ୍କ ଦର୍ଶନ-ଜ୍ଞାନ ତାଙ୍କୁ ଶକ୍ତି ଓ ଶାନ୍ତି ଦେଇଥିଲା । ସେ ଯେ ପ୍ରକୃତ ମହାନ୍ ପୁରୁଷ ଥିଲେ — ଜଣେ ମୃଦୁଭାଷୀ ଲୋକ ଥିଲେ— ତାର ପରିଚୟ ପାଇଛୁ, ଯେତେବେଳେ ଦେଖିଛୁ ସେ ଦୁଃଖରେ ଅନୁଦ୍ୱିଗ୍ନମନା, ସୁଖରେ ବିଗତସ୍ପୃହ, ବୀତରାଗ-ଭୟ-କ୍ରୋଧ ଏବଂ ସ୍ଥିତଧୀର ଶଶୀଭୂଷଣ କହିଲେ ଯେଉଁ ଛବି ଆମ୍ଭମାନଙ୍କ ଆଖି ସାମନାକୁ ଆସେ, ସେ ଏକ ଦୀର୍ଘକାୟ ଋଜୁଦେହ, ଗୌରବର୍ଣ୍ଣ, ଧୀରପଦ, ସ୍ନେହ-ପ୍ରେମପୂର୍ଣ୍ଣ, କାରୁଣ୍ୟ-ସହାନୁଭୂତି-ମଣ୍ଡିତ ଅନ୍ତରିକତାରେ ଉଦ୍ଭାସିତ, ସୁମିଷ୍ଟ ହାସ୍ୟ-ଶ୍ରୀ ଭୂଷିତ ଏକ ଦରଦୀ ପ୍ରେମିକ ଜ୍ଞାନୀ ଉଦାର ଧାର୍ମିକ ଓ ସୁସଜ୍ଜିତ ଗୋଟିଏ ଛବି ।"

ପାର୍ବତୀନାଥ ମଧ୍ୟ ଥିଲେ ତାଙ୍କ ଜ୍ୟେଷ୍ଠଭ୍ରାତାଙ୍କ ଭଳି ଧୀର, ଶାନ୍ତ ଓ ଗମ୍ଭୀର ପ୍ରକୃତିର ମଣିଷ । ତାଙ୍କ ଦୈନନ୍ଦିନ ଜୀବନର ଯେଉଁ ବସ୍ତୁଟି ସହଜରେ ଆଖିରେ ପଡୁଥିଲା, ସେ ହେଉଛି ତାଙ୍କ ନିରଳସ ଆତ୍ମ-ନିର୍ଭରଶୀଳତା । ନିଜ ଲୁଗା ଧୋଇବାକୁ ବା ନିଜ ଜୋତା ପରିଷ୍କାର କରିବାକୁ କୌଣସି ଦିନ ସେ ଚାକରକୁ ମୁଖାପେକ୍ଷା କରିନାହାନ୍ତି । ଯଦିଓ ସେ ଭାରତ ସରକାରଙ୍କ ଉଚ୍ଚପଦସ୍ଥ କର୍ମଚାରୀ ଥିଲେ, ତଥାପି ସେ ବରାବର ଥିଲେ ସହଜ, ସରଳ ଓ ଅନାଡ଼ମ୍ବର ଜୀବନଯାତ୍ରାର ପକ୍ଷପାତୀ । ଦୀର୍ଘ ୯ ବର୍ଷ କାଳ ବିଲାତରେ ବାସ କରି ମଧ୍ୟ ସେ ଯୁଗର ସାହେବ ହୋଇ-ନାହାନ୍ତି । ତାଙ୍କ ଜୀବନର 'ମଟୋ' ଥିଲା—'ପ୍ଲେନ୍ ଲିଭିଂ ଆଣ୍ଡ ହାଇ ଥିଂକିଂ' ସରଳ ଜୀବନ ଓ ମହତ୍ୱ ଚିନ୍ତା । ତାଙ୍କର ସଂଯମ ଶକ୍ତି ମଧ୍ୟ ଥିଲା ଅସାଧାରଣ । ଆହାରରେ ସଂଯମ, ବାକ୍ୟରେ ସଂଯମ, ବସନଭୂଷଣରେ

ସଂଯମ, ବ୍ୟବହାରରେ ସଂଯମ—ତାଙ୍କ ଜୀବନର ପ୍ରତ୍ୟେକ କାର୍ଯ୍ୟ ଶାନ୍ତ, ସଂଯତ ଓ ନିୟମିତ ଥିଲା । ସେ ଯେ ଦୀର୍ଘଜୀବନ ଲାଭ କରିଥିଲେ, ତାହା ତାଙ୍କର ଏହି ଜୀବନବ୍ୟାପୀ ସଂଯମ ସାଧନାର ଫଳ ।

ଈଶ୍ୱରଙ୍କ ଠାରେ ଭକ୍ତି ଓ ଅଟଳ ବିଶ୍ୱାସ ସେ ଆଜୀବନ ରକ୍ଷା କରିଥିଲେ । ଜୀବନର ପ୍ରତ୍ୟେକ କାର୍ଯ୍ୟରେ ପ୍ରତ୍ୟେକ ବାକ୍ୟରେ ଓ ବିଶେଷ ଘଟଣାରେ ସେ ଭଗବାନଙ୍କର ଶରଣ ନେଉଥିଲେ । ଦେଶରେ-ବିଦେଶରେ ସୁସ୍ଥତାରେ-ଅସୁସ୍ଥତାରେ, ମଙ୍ଗଳମୟଙ୍କ ନିର୍ଦ୍ଦେଶ ପାଇବା ଲାଗି ସେ ବ୍ୟାକୁଳ ରହୁଥିଲେ । ପାରିବାରିକ ଜୀବନରେ ସେ ବ୍ରାହ୍ମଧର୍ମର ଆଦର୍ଶ ଅକ୍ଷୁର୍ଣ୍ଣ ରଖିଥିଲେ । ତାଙ୍କ ଜୀବନ-ମନ୍ତ୍ର ଥିଲା—"ପ୍ରଣମି ତୋମାରେ ଚଲିବ, ନାଥ ସଂସାର କାଜେ ।" ଭଗବାନଙ୍କ ନାମ ନେଇ ସେ ଦୈନନ୍ଦିନ କାର୍ଯ୍ୟ ଆରମ୍ଭ କରୁଥିଲେ ଏବଂ ଦିନାନ୍ତେ ଦିନଯାକର ସବୁ କାର୍ଯ୍ୟ ଧୀର-ଶାନ୍ତ-ଭାବରେ ପରମପିତାଙ୍କ ପଦରେ ନିବେଦନ କରୁଥିଲେ ।

—o—

## ରାୟ ବାହାଦୁର ନନ୍ଦକିଶୋର ଦାସ

(ରାୟ ବାହାଦୁର ନନ୍ଦକିଶୋର ଦାସ ମହାଶୟଙ୍କ ପୌତ୍ର

ଶ୍ରୀ ନିକୁଞ୍ଜ କିଶୋର ଦାସ କର୍ତ୍ତୃକ ଲିଖିତ)

କଟକ ଜିଲ୍ଲାର ଜୟପୁର ଗ୍ରାମରେ ଏକ ମଧ୍ୟବିତ୍ତ କରଣ ପରିବାରରେ ୧୮୪୫ ଖ୍ରୀଷ୍ଟାବ୍ଦରେ ନନ୍ଦକିଶୋର ଜନ୍ମଗ୍ରହଣ କରିଥିଲେ, ତାଙ୍କ ପିତାଙ୍କ ନାମ ନୃସିଂହ ଚରଣ ଦାସ । ନନ୍ଦକିଶୋର, ନୃସିଂହ ଚରଣଙ୍କ ଦ୍ୱିତୀୟା ପତ୍ନୀଙ୍କର ଏକମାତ୍ର ପୁତ୍ର । ନୃସିଂହଚରଣ ଫାର୍ସି ଭାଷାରେ ବ୍ୟୁତ୍ପନ୍ନ ଥିଲେ ଏବଂ ଓଡ଼ିଶାରେ ଇଂରେଜ ଶାସନର ପ୍ରଥମାବସ୍ଥାରେ ସେ ହିଁ ପ୍ରଥମ ଡେପୁଟୀ କାର୍ଯ୍ୟରେ ନିଯୁକ୍ତ ହୋଇଥିଲେ । ସେ ବଦାନ୍ୟ ଓ ସ୍ୱଜନବତ୍ସଳ ଥିଲେ । ତାଙ୍କର ବହୁ ଆତ୍ମୀୟ ସ୍ୱଜନଙ୍କୁ ସେ ନିଜ ଗ୍ରାମକୁ ଆଣି ଜମି, ବାଡ଼ି, ଘର ପ୍ରଭୃତି ଦେଇ ଏହି ଗ୍ରାମରେ ବାସ କରାଇଥିଲେ । ନୃସିଂହଚରଣଙ୍କର ଜଣେ ଧର୍ମ ବନ୍ଧୁ ଜୟପୁର ନିକଟବର୍ତ୍ତୀ ଏକ ଗ୍ରାମରେ ବାସ କରୁଥିଲେ । ସେ ନୃସିଂହଚରଣଙ୍କୁ ନିଜ ପ୍ରଚୁର ସମ୍ପତ୍ତି ଦେଖାଇ ନୃସିଂହଚରଣଙ୍କ ବିଷୟ ସମ୍ପତ୍ତି କେତେ ପ୍ରଶ୍ନ କରିବାରୁ, ସେ ଏହି ଧର୍ମବନ୍ଧୁଙ୍କୁ ନିଜ ଘରକୁ ଘେନି ଆସିଲେ । ତାଙ୍କ ଘରର ପଛପଟେ ଯେଉଁଠାରେ ଗୋଟିଏ ଖାତରେ ଉଚ୍ଛିଷ୍ଟ କଦଳୀପତ୍ର ପଡ଼ିଥିଲା, ସେଠାକୁ ଘେନିଆସି ସେ ସେହି ସ୍ଥାନଟିକୁ ଓ ସ୍ତ୍ରୀପୁତ୍ର ଦ୍ୱୟଙ୍କୁ ଦେଖାଇ କହିଥିଲେ, ମୁଁ ଯାହା ଭବିଷ୍ୟତ ଲାଗି ରଖିଅଛି ତାହା ଏତିକି, ଆଉ କୌଣସି ସଞ୍ଚୟ ମୋର ନାହିଁ । ନୃସିଂହ ଚରଣଙ୍କ ଗୃହରେ ବହୁ ଲୋକଙ୍କର ଅନ୍ନସଂସ୍ଥାନ ହେଉଥିଲା ।

ନନ୍ଦକିଶୋର ୧୮୬୦ ଖ୍ରୀଷ୍ଟାବ୍ଦରେ କଟକ ଜିଲ୍ଲା ହାଇସ୍କୁଲରୁ ଏଣ୍ଟ୍ରାନ୍ସ ପାଶ୍ କରିଥିଲେ । ୨୦ ବର୍ଷ ବୟସରେ ସେ ସ୍କୁଲ ଇନସପେକ୍ଟରଙ୍କ ଅଫିସରେ କିରାଣି ହୋଇ କାମ ଆରମ୍ଭ କଲେ । କିନ୍ତୁ ଶିକ୍ଷା ବିଭାଗର କାମ ତାଙ୍କର ପସନ୍ଦ ନ ହେବାରୁ ସେ ସ୍ୱ ଇଚ୍ଛାରେ ଶାସନ ବିଭାଗର କାର୍ଯ୍ୟ ଗ୍ରହଣ କଲେ । ଏହି ବିଭାଗରେ ୨।୩ ବର୍ଷ ମାତ୍ର କାମ କରିବା ପରେ ସେ ନିଜ ଯୋଗ୍ୟତା ବଳରେ ଡେ଼ପୁଟୀ ମାଜିଷ୍ଟ୍ରେଟ୍ ପଦକୁ ଉନ୍ନୀତ ହେଲେ । ସେ ଅଧ୍ୟବସାୟୀ, କର୍ମତତ୍ପର ଓ ବିଚକ୍ଷଣ ଥିବାରୁ ଅଳ୍ପକାଳ ମଧ୍ୟରେ

ଗଡ଼ଜାତ ମାହାଲର ସୁପରିନ୍‌ଟେଣ୍ଡେଣ୍ଟ ପଦରେ, କମିଶନର ସାହେବଙ୍କ ଆସିଷ୍ଟାଣ୍ଟ ହୋଇଥିଲେ । ତାଙ୍କର ସମସାମୟିକ କମିଶନର T. E. Ravenshaw ସାହେବ ଏହାଙ୍କର କର୍ମକୁଶଳତା ଦେଖି ଅତ୍ୟନ୍ତ ପ୍ରୀତ ହୋଇଥିଲେ ।

୧୮୬୬ ଖ୍ରୀଷ୍ଟାବ୍ଦରେ ଓଡ଼ିଶାରେ ଯେଉଁ ଭୀଷଣ (ନ-ଅଙ୍କ) ଦୁର୍ଭିକ୍ଷ ପଡିଥିଲା, ତହିଁରେ ନନ୍ଦକିଶୋରଙ୍କ କର୍ମତତ୍ପରତା ଓ ବୁଦ୍ଧି ବିବେଚନା ଫଳରେ ସହସ୍ର ସହସ୍ର ଲୋକ ଆସନ୍ନ ମୃତ୍ୟୁ ମୁଖରୁ ରକ୍ଷା ପାଇଥିଲେ ।

ଗୁଣମୁଗ୍ଧ ଇଂରେଜ ସରକାର ତାହାଙ୍କୁ ରାୟ ବାହାଦୁର ଉପାଧିରେ ଭୂଷିତ କଲେ ଏବଂ ତାଙ୍କୁ ଡେପୁଟୀ ପଦରୁ କମିଶନର ପଦକୁ ଉନ୍ନୀତ କରି ଅନୁଗୁଳରେ ଅବସ୍ଥାପିତ କଲେ । ତାଙ୍କର ରାୟବାହାଦୁର ଖେତାବରେ ଉଲ୍ଲେଖ ଥିଲା "For excellent serv ces rendered during the great famine of Orissa in 1866."

ନନ୍ଦକିଶୋର ଅନୁଗୁଳରେ କାର୍ଯ୍ୟ କରିବା ସମୟରେ Annual Regulation ନାମକ ଏକ ବହି ଲେଖିଥିଲେ । ଅନୁଗୁଳ ଏହି ରେଗୁଲେସନ ଅନୁଯାୟୀ ବହୁକାଳ ଶାସିତ ହୋଇଥିଲା ଏବଂ ବର୍ତ୍ତମାନ ସୁଦ୍ଧା ଜଙ୍ଗଲ ରକ୍ଷଣାବେକ୍ଷଣ ଇତ୍ୟାଦିରେ ସେହି ଆଇନ ପ୍ରଚଳିତ ରହିଅଛି । ସେ କନ୍ଧ ଓ ଯୁଆଙ୍ଗ ପ୍ରଭୃତି ଆଦିବାସୀମାନଙ୍କ କଥିତ ଭାଷାର ବହୁ ଶବ୍ଦ ସଂଗ୍ରହ କରି ଇଂରାଜୀରେ ତାହାର ଯଥାତଥ ପ୍ରତିଶବ୍ଦ ଦେଇ ପୁସ୍ତକ ଲେଖିଥିଲେ । ସେ ପୁସ୍ତକ ବର୍ତ୍ତମାନ ମିଳୁଛି କି ନା ସନ୍ଦେହ । ଅନୁଗୁଳରେ କାର୍ଯ୍ୟ କରିବା ବେଳେ ସେ "ପରିଶ ସର୍‌ଓ୍ୱାଲ" ନାମକ ଖଣ୍ଡିଏ ପୁସ୍ତିକା ପ୍ରଣୟନ କରିଥିଲେ । ସେଥିରେ ଓଡ଼ିଶାର ଗଡ଼ଜାତ ରଜାମାନଙ୍କ ପ୍ରଚଳିତ ସ୍ୱତ୍ୱ ଓ ଉତ୍ତରାଧିକାରିତ୍ୱ ସମ୍ବନ୍ଧରେ ଶଗଚଶତ ପ୍ରଥା ପ୍ରଭୃତିର ଉଲ୍ଲେଖ ଥିଲା । ଅନୁଗୁଳରେ ବୃକଷି କରିବାର ଶେଷ ଆଡ଼କୁ ଇଂରେଜ ସରକାର ତାଙ୍କର ଯୋଗ୍ୟତା ଦେଖି ତାଙ୍କୁ ସିଭିଲ ସର୍ଭିସ୍‌କୁ ଉନ୍ନୀତ କରି ପୁରୀର କଲେକ୍ଟର ପଦରେ ନିଯୁକ୍ତ କଲେ । କିନ୍ତୁ ଦୁର୍ଭାଗ୍ୟବଶତଃ ସେ ହଠାତ୍ ବାତ ରୋଗରେ ଆକ୍ରାନ୍ତ ହେଲେ, ଏବଂ ପୁରୀର କାର୍ଯ୍ୟଭାର ଗ୍ରହଣ କରିବା ପାଇଁ ତାଙ୍କର ଅନୁକୂଳରୁ ଯାଧା କରିବା

ଯେଉଁଦିନ ସ୍ଥିର ହୋଇଥିଲା, ସେହିଦିନ ୧୮୯୭ ଖ୍ରୀଷ୍ଟାବ୍ଦର ଶୀତକାଳରେ ସେ ପରଲୋକ ଗମନ କଲେ । ସେତେବେଳେ ତାଙ୍କର ବୟସ ମାତ୍ର ୭୯ ବର୍ଷ ହୋଇଥିଲା ।

ଓଡ଼ିଶାର ତତ୍କାଳୀନ କମିଶନର ତାହାଙ୍କୁ ବିଶେଷ ସ୍ନେହ କରୁଥିଲେ ଓ ବହୁ ବିଷୟରେ ତାଙ୍କର ପରାମର୍ଶ ନେଉଥିଲେ । ନନ୍ଦକିଶୋରଙ୍କ ଜ୍ୟେଷ୍ଠପୁତ୍ର ବ୍ରଜକିଶୋର ରେଭେନ୍ସା କଲେଜରୁ ପ୍ରଥମ ଶ୍ରେଣୀର ଅନର୍ସ ଧାରି ଯେତେବେଳେ ବି. ଏ. ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଲେ, ସେତେବେଳେ ରେଭେନ୍ସା ସାହେବ ନନ୍ଦକିଶୋରଙ୍କୁ ଅଭିନନ୍ଦନ ଜଣାଇ ଲେଖିଥିଲେ "Welldone, Orissa."

ସ୍ୱର୍ଗୀୟ ମଧୁସୂଦନ ଦାସ ତାଙ୍କର ଘନିଷ୍ଠ ବନ୍ଧୁ ଥିଲେ । ମିଷ୍ଟର ଦାସ ଯେତେବେଳେ କଲିକତାରେ ଓକିଲାତି କରୁଥିଲେ, ସେତେବେଳେ ନନ୍ଦକିଶୋର ତାହାଙ୍କୁ ନାନା ପ୍ରକାର ପ୍ରବର୍ତ୍ତନା ଦେଇ ଏବଂ ଓଡ଼ିଶାରେ ତାଙ୍କର ପ୍ରାକ୍ଟିସରେ ଯଥେଷ୍ଟ ଆୟ ହେବ ଏହି ଆଶା ଦେଇ ଓଡ଼ିଶାକୁ ଆଣିଥିଲେ ।

ନନ୍ଦକିଶୋର ଦେହତ୍ୟାଗ କରିବା ପୂର୍ବରୁ ନିଜର ଆରୋଗ୍ୟଲାଭ ସମ୍ବନ୍ଧରେ ସନ୍ଦିହାନ ହୋଇ ମିଷ୍ଟର ଦାସଙ୍କ ପାଖକୁ ଖଣ୍ଡିଏ ପତ୍ରରେ ଲେଖିଥିଲେ—"At a better place and under better Circumstances I might perhaps have recovered, but here seems to be no hope, ଇତ୍ୟାଦି ।" ନନ୍ଦକିଶୋରଙ୍କ ମୃତ୍ୟୁ ପରେ ରାୟବାହାଦୁର ସୁଦାମ ଚରଣ ନାୟକ 'ଉତ୍କଳ ଦୀପିକା'ରେ ନନ୍ଦକିଶୋରଙ୍କ ବହୁ ଗୁଣାବଳୀର ଉଲ୍ଲେଖ କରି ଗୋଟିଏ ବଡ଼ ପ୍ରବନ୍ଧ ଲେଖିଥିଲେ । ଓଡ଼ିଶାର ବ୍ୟାସକବି ଫକୀର ମୋହନ ସେନାପତି ତାଙ୍କର 'ଉତ୍କଳ ଭ୍ରମଣ' ପୁସ୍ତକରେ ଲେଖିଅଛନ୍ତି—

"ହେ ନନ୍ଦକିଶୋର, ସର୍ବଗୁଣରେ ନିପୁଣ,
ଗାଇବାକୁ କ୍ଷମ ଯଶ ନାହିଁ ମୋର ଗୁଣ,

ଗଡଜାତ ରଜାଙ୍କର ରଖିବାକୁ ମାନ
କରିବ ମୁଁ କାହା ସଙ୍ଗେ ତୁମ୍ଭଙ୍କୁ ସମାନ ।

× × ×

ସାପ ନ ମରିବ ପୁଣି ବାଡ଼ି ନ ଭାଙ୍ଗିବ,
ଏ କୌଶଳ ତୁମ୍ଭ ଛଡ଼ା କେ ଅବା ଜାଣିବ
ସିଭିଲ ସର୍ଭେଣ୍ଟ ଏ୍ୟାଣ୍ଡ ପଲିଟି ଏଜେଣ୍ଟ
ଜୟ ଜୟ ଜୟ ଓଡ଼ିଶାର ମନୁମେଣ୍ଟ ।"

ନନ୍ଦକିଶୋର ଅନେକ ଗୁଣରେ ଭୂଷିତ ଥିଲେ । ଶାସନ କାର୍ଯ୍ୟରେ ପାରଦର୍ଶିତା, ସର୍ବସାଧାରଣଙ୍କ ସଙ୍ଗେ ବ୍ୟବହାରରେ ଅମାୟିକତା ଓ ସୌଜନ୍ୟ, ଆତ୍ମୀୟ ବନ୍ଧୁଗଣଙ୍କ ସମ୍ବନ୍ଧରେ ଆନ୍ତରିକତା ଆଦି ତାଙ୍କର ବୈଶିଷ୍ଟ୍ୟ ଥିଲା । ତାଙ୍କ ପିତା ନୃସିଂହଚରଣଙ୍କ ଭଳି ସେ ମିତବ୍ୟୟୀ ହେଲେ ମଧ୍ୟ ଦାନଶୀଳ ଥିଲେ । ଜାତିଧର୍ମ ନିର୍ବିଶେଷରେ ଅନେକ ମେଧାବୀ ଛାତ୍ରଙ୍କୁ ଅର୍ଥ ସାହାଯ୍ୟ ଦେଇ ସେ ସେମାନଙ୍କ ପଢ଼ାର ବ୍ୟବସ୍ଥା କରି ଦେଉଥିଲେ ଏବଂ ଅନେକଙ୍କର କର୍ମସଂସ୍ଥାନ ମଧ୍ୟ କରିଦେଉଥିଲେ ।

ଘୋଡ଼ାରେ ଚଢ଼ିବା ଓ ଶିକାର କରିବାରେ ତାଙ୍କର ଖୁବ୍ ଉତ୍ସାହ ଥିଲା । କଟକରେ ନିଜ ଗୃହରେ ରହୁଥିବା ବେଳେ ସେ ଅତି ପ୍ରତ୍ୟୁଷରେ ଉଠି ସହରସ୍ଥ ତାଙ୍କ ବନ୍ଧୁମାନଙ୍କ ସହିତ ଦେଖା ସାକ୍ଷାତ କରୁଥିଲେ ।

'ଉତ୍କଳ-ସାହିତ୍ୟ' ପତ୍ରିକାର ୧୩୨୧ ସାଲ ମାଘ ସଂଖ୍ୟାରେ ବିବିଧ ପ୍ରସଙ୍ଗରୁ ନିମ୍ନ ଦୁଇଟି ଅନୁଚ୍ଛେଦ ଗୃହୀତ ।

## (୧) ସ୍ୱର୍ଗୀୟ ମହାରାଜା ବୈକୁଣ୍ଠନାଥ ଦେ ବାହାଦୁର :

ପ୍ରଥିତଯଶା ମହାରାଜା ବୈକୁଣ୍ଠନାଥ ଦେଙ୍କ ପରଲୋକ ଗମନରେ ଆମ୍ଭେମାନେ ଗଭୀର ଦୁଃଖ ପ୍ରକାଶ କରୁଅଛୁ । ଦୀର୍ଘକାଳ ବ୍ୟାପୀ ମହାରାଜା ଉତ୍କଳ ଭୂମିରେ ଏକ ବିଶିଷ୍ଟ ସ୍ଥାନ ଅଧିକାର କରିଥିଲେ । ସ୍ୱଦେଶର ଉନ୍ନତିକଳ୍ପେ ମହାରାଜା ଯୌବନ କାଳରୁ ନିଜକୁ ନିୟୋଜିତ କରି ଖ୍ୟାତି

ଓ ପ୍ରତିପତ୍ତି ଅର୍ଜନ କରିଥିଲେ । ଦେଶର ସକଳ ପ୍ରକାର ସଦନୁଷ୍ଠାନ ସହିତ ତାଙ୍କର ସହାନୁଭୂତି ଓ ଯୋଗ ଥିଲା । ସେ ନିଜେ ସାହିତ୍ୟିକ ନଥିଲେ । ସେପରି ଅନୁଚିତ ଦାବୀ ମଧ୍ୟ ସେ କଦାପି କରିନାହାନ୍ତି, କିନ୍ତୁ ଉତ୍କଳ ସାହିତ୍ୟ ତାଙ୍କ ନିକଟରେ ଯଥେଷ୍ଟ ଋଣୀ । ସେ ଚିରଦିନ ସାହିତ୍ୟର ଜଣେ ବିଶିଷ୍ଟ ଉତ୍ସାହଦାତା ଥିଲେ । ବିପନ୍ନର ସାହାଯ୍ୟ ପାଇଁ ସେ ସର୍ବଦା ଉନ୍ମୁଖ ରହୁଥିଲେ । ତାଙ୍କ ମୃତ୍ୟୁରେ ବହୁ ଲୋକ ଗୋଟିଏ ବଡ ଭରସାସ୍ଥଳ ହରାଇଛନ୍ତି—ସେଥିରେ ସନ୍ଦେହ ନାହିଁ । ଆତିଥ୍ୟ ଓ ସୌଜନ୍ୟ ତାଙ୍କର ସ୍ୱଭାବସିଦ୍ଧ ଗୁଣ ଥିଲା । ତାଙ୍କୁ ହରାଇ ଉତ୍କଳ ଆଜି ଯଥାର୍ଥରେ ଅଧିକ ଦରିଦ୍ର ହୋଇପଡ଼ିଲା ।

## (୨ ସ୍ୱର୍ଗୀୟ ଜଗମୋହନ ଲାଲ

ଗୋଟିଏ ପ୍ରାଚୀନ ଶ୍ରେଣୀ ଉତ୍କଳରୁ କ୍ରମେ ବିଲୁପ୍ତ ହୋଇଯାଉଛି । ଶିକ୍ଷାର ପ୍ରସାର ହେଉଛି, ସଭା ସମିତିର ଅନୁଷ୍ଠାନ ମଧ୍ୟ ଚାଲୁଛି, କିନ୍ତୁ ସେ ଶ୍ରେଣୀର ଲୋକ ଆଉ ଦେଖାଯାଉ ନାହାନ୍ତି । ସ୍ୱର୍ଗୀୟ ଜଗମୋହନ ଲାଲ ଏହି ଶ୍ରେଣୀର ଲୋକ ଥିଲେ । ଆମ୍ଭେମାନେ ସୁଦୀର୍ଘକାଳ ତାଙ୍କ ସଙ୍ଗେ ପରିଚିତ ଥିଲୁ । ବହୁଭାବରେ ତାଙ୍କ ସମ୍ପର୍କଲାଭର ସୁଯୋଗ ଆମେ ପାଇଛୁ । ତାଙ୍କ ଚରିତ୍ରରେ ଯେଉଁସବୁ ସଦ୍‌ଗୁଣ ପ୍ରତ୍ୟକ୍ଷ କରିଛୁ, ସେଥିରେ ତାଙ୍କ ସହଜ ସୁନ୍ଦର ସତେଜ ମନୁଷ୍ୟତ୍ୱର ପରିଚୟ ଆମେ ପାଉଛୁ । ତାଙ୍କଠାରେ ନିର୍ଭୀକତା ମନସ୍ୱୀତା, ସ୍ପଷ୍ଟବାଦୀତା ଓ କର୍ମଠତାର ଯେଉଁ ଉନ୍ନତ ଦୃଷ୍ଟାନ୍ତ ଦେଖିଛୁ, ତାହା ଆଧୁନିକ ଉତ୍କଳରେ ବଡ଼ ବିରଳ ..... । ଲାଲାସାହେବ ଜଣେ ଯଥାର୍ଥ କର୍ମୀପୁରୁଷ ଥିଲେ, କର୍ତ୍ତବ୍ୟକୁ ଦେବତାଙ୍କ ଆସନରେ ରଖି ସେ ପୂଜା କରି ଆସିଅଛନ୍ତି । ତାଙ୍କ ଜୀବନରେ ବାକ୍ୟ ଓ କାର୍ଯ୍ୟର ସମତା ଥିଲା । ସେ ସତ୍ୟପଥ, ନ୍ୟାୟପଥ ଅନୁସରଣ କରି ଯାଇଛନ୍ତି, କାହାର ମୁଖାପେକ୍ଷା କରିନାହାନ୍ତି । ପଲ୍ଲୀ ଗ୍ରାମରେ ପ୍ରବଳ ପ୍ରତିଦ୍ୱନ୍ଦୀମାନଙ୍କ ବିରୁଦ୍ଧାଚରଣ ସତ୍ତ୍ୱେ ସ୍ୱୀୟ ବିଧବା କନ୍ୟାର ପୁନର୍ବିବାହ କରିବାକୁ ସେ ସମର୍ଥ ହୋଇଥିଲେ । ଏହା ସାମାନ୍ୟ ବୀରତ୍ୱ ନୁହେଁ । ସାହିତ୍ୟ କ୍ଷେତ୍ରରେ ମଧ୍ୟ ତାଙ୍କର ଦାନ ସାମାନ୍ୟ ନୁହେଁ । ଉତ୍କଳର ନାଟ୍ୟ ସାହିତ୍ୟ ଏହାଙ୍କ ରଚିତ 'ବାବାଜୀ' ଓ 'ସତୀ' ନାଟକ ଅପେକ୍ଷା ଯେ ଖୁବ୍ ବେଶୀ ଉର୍ଦ୍ଧ୍ୱକୁ ଉଠିଅଛି, ତାହା ମନେହୁଏ ନାହିଁ । ହାୟ ! ଉତ୍କଳରେ ଏହିପରି ବହୁସଂଖ୍ୟକ ଖାଣ୍ଟି ମଣିଷ କେବେ ଦେଖାଦେବେ ।

# ଆଚାର୍ଯ୍ୟ ଯୋଗେଶଚନ୍ଦ୍ର ରାୟ, ବିଦ୍ୟାନିଧି

(ସୁଲେଖିକା ଶ୍ରୀମତୀ ଶାନ୍ତାଦେବୀ କର୍ତ୍ତୃକ ଲିଖିତ)

ପଣ୍ଡିତ-ପ୍ରବର ଆଚାର୍ଯ୍ୟ ଯୋଗେଶଚନ୍ଦ୍ର ରାୟ ବିଦ୍ୟାନିଧିଙ୍କର ଗୋଟିଏ ସଂକ୍ଷିପ୍ତ ଜୀବନୀ ମୋତେ ଲେଖିବାକୁ କୁହାଯାଇଅଛି । ତାଙ୍କ ଜୀବନୀ ଲେଖିବାକୁ ହେଲେ ତାଙ୍କ ସମ୍ବନ୍ଧରେ ଯେତେଟା ଜ୍ଞାନ ଥିବା ଦରକାର ତାହା ମୋର ନାହିଁ । ମୁଁ ଯେତିକି ସଂଗ୍ରହ କରିଛି ସେତିକି ଲେଖିଲି ।

ଯୋଗେଶଚନ୍ଦ୍ର ଜନ୍ମ ହେଲେ ୧୨୬୬ ବଙ୍ଗାବ୍ଦ କାର୍ତ୍ତିକ ମାସ ୪ ତାରିଖରେ ତାଙ୍କର ପୈତୃକ ନିବାସ ଥିଲା ଆରାମବାଗର ଦିଗଡ଼ା ଗ୍ରାମରେ । ଯୋଗେଶଚନ୍ଦ୍ରଙ୍କ ପୂର୍ବପୁରୁଷ ରାଜା ରଣଜିତ୍ ରାୟ ଦିଗଡ଼ା ଗ୍ରାମର ଜମିଦାର ଥିଲେ । ସେମାନେ କେତେ ପୁରୁଷ ଧରି ଶାକ୍ତ ଥିଲେ । ରଣଜିତ୍ ରାୟ ଗମ୍ଭୀର ରାତିରେ ପଞ୍ଚମୁଣ୍ଡୀଙ୍କ ଆସନରେ ବସି ଜପ କରୁଥିଲେ । ଏହି ରାଜା ତାଙ୍କର ଝିଅ ଶୁଶୁନିୟା ନିକଟସ୍ଥ ଆରାମବାଗର ଦକ୍ଷିଣରେ ଗୋଟିଏ (ଦୀଘି) ପୁଷ୍କରିଣୀ ଖନନ କରିଥିଲେ । ସେହି ପୁଷ୍କରିଣୀରେ ଆଜି ମଧ୍ୟ ଲୋକେ ବାରୁଣୀ ସ୍ନାନ କରନ୍ତି । ଆରାମବାଗ ବାଙ୍କୁଡ଼ାର ପୂର୍ବ ଦିଗରେ ହୁଗୁଳି ଜିଲ୍ଲାରେ ଅବସ୍ଥିତ ।

ଯୋଗେଶଚନ୍ଦ୍ରଙ୍କ ପିତା ଥିଲେ ସବ୍-ଜଜ୍ । ସେ ସମୟରେ ଦିଗଡ଼ା ଗ୍ରାମ ମେଲେରିଆରେ ଉଚ୍ଛନ୍ନ ହେବାକୁ ବସିଥିଲା । ଯୋଗେଶଚନ୍ଦ୍ରଙ୍କ ପିତାଙ୍କର ଇଚ୍ଛା ଥିଲା ବାଙ୍କୁଡ଼ାରେ ଚିରସ୍ଥାୟୀ ବାସର ବ୍ୟବସ୍ଥା କରିବାକୁ । ବାଙ୍କୁଡ଼ା ଜିଲ୍ଲା-ସ୍କୁଲରେ ଯୋଗେଶଚନ୍ଦ୍ରଙ୍କ ଇଂରାଜୀ ପଢ଼ାର ଖଡ଼ିଛୁଆଁ ହେଲା । ଏଠାରେ ପଢ଼ାଶୁଣାରେ ଯେତେବେଳେ ସେ ମଗ୍ନ, ସେତେବେଳେ କର୍ମରତ ଅବସ୍ଥାରେ ତାଙ୍କ ପିତାଙ୍କର ମୃତ୍ୟୁ ହେଲା । ଅଗତ୍ୟା ତାଙ୍କୁ ଦେଶକୁ ଫେରିଯିବାକୁ ପଡ଼ିଲା । ପରେ ସେ ବର୍ଦ୍ଧମାନ ରାଜ ସ୍କୁଲରେ ଭର୍ତ୍ତି ହେଲେ । ଏହି ସ୍କୁଲରୁ ଏଣ୍ଟ୍ରାନ୍ସ ପାସ୍ କରି ସେ ସ୍କଲରସିପ୍ ପାଇଲେ । ପାସ୍ କରି ହୁଗୁଳୀ କଲେଜରେ ଭର୍ତ୍ତି ହେଲେ । ବାଲ୍ୟକାଳରେ ବର୍ଷେମାତ୍ର ସେ ବାଙ୍କୁଡ଼ାରେ ଥିଲେ । ପ୍ରଥମରୁ କିଛିଦିନ ସେଠାରେ ବିଦ୍ୟାଳୟରେ ସେ ପଢିଥିଲେ ।

ଶୈଶବରେ ଯୋଗେଶଚନ୍ଦ୍ର ଗାଁ ପାଠଶାଳାରେ ପଢ଼ିଥିଲେ । ପାଠଶାଳାରେ ଚାଣକ୍ୟ ଶ୍ଳୋକ ମୁଖସ୍ଥ କରିବାକୁ ପଡ଼ୁଥିଲା । ପ୍ରତି ମାସ ଶୁକ୍ଳ ପଞ୍ଚମୀରେ ପାଠଶାଳାରେ ସରସ୍ୱତୀ ପୂଜା କରିବାର ନିୟମ ଥିଲା । ପ୍ରତିମା ସ୍ଥାପନ କରାହେଉନଥିଲା; ପୋଥିପତ୍ର ଓ କାଗଜ-କଲମ ଥିଲା ସରସ୍ୱତୀଙ୍କ ପ୍ରତୀକ । ଯୋଗେଶଚନ୍ଦ୍ର ଗୋଟିଏ ଜାଗାରେ ଲେଖିଛନ୍ତି, "ପୂଜା ପରେ କି ଆନନ୍ଦ ! ମନେ ହେଉଥିଲା ସତେଯେପରି ନୂତନ ଜନ୍ମ ହୋଇଛି ।" ବିଦ୍ୟାର ଦେବତା ଯେ ତାଙ୍କ ପ୍ରତି ବିଶେଷ ସଦୟ ହୋଇଥିଲେ ତାହା ତାଙ୍କ ଜୀବନର ସାଧନାରେ ପ୍ରକାଶ ପାଇଥିଲା । ଖୁବ୍ କମ୍ ବିଦ୍ୟା ଅଛି, ଯାହା ସେ ଆୟତ୍ତ କରିନାହାନ୍ତି ।

ଶୈଶବରେ ଅନ୍ୟାନ୍ୟ ଶିଶୁମାନଙ୍କ ପରି ସେ ମଧ୍ୟ ଗଳ୍ପ ଶୁଣିବାକୁ ଭଲ ପାଉଥିଲେ । ପିଉସୀ, ବଡ଼ମା ପ୍ରଭୃତିଙ୍କ ନିକଟରୁ କଙ୍କାବତୀଙ୍କ 'ଶୋଳକ' ଶୁଣୁଥିଲେ । ୯ ବର୍ଷ ବୟସରେ ରାମାୟଣ ନେଇ ଯୁକ୍ତିତର୍କ କରୁଥିଲେ । ପରେ ପ୍ରବଚନ ଶୁଣିବାକୁ ଭଲ ପାଉଥିଲେ । କଲେଜରେ ଯୋଗେଶଚନ୍ଦ୍ର ଅଧ୍ୟାପକ ଲାଲବିହାରୀ ଦେଙ୍କ ନିକଟରୁ ଇଂରାଜୀ ପଢ଼ିଥିଲେ । ଦେ ମହାଶୟ କହୁଥିଲେ, "ଇଂରାଜୀରେ ସ୍ୱପ୍ନ ଦେଖିପାରିବ ଓ ଚିନ୍ତା କରି ଯେତେବେଳେ ପାରିବ ସେତେବେଳେ ବୁଝିବ, ଇଂରେଜୀ ଶିଖିଅଛି ।" କଲିକତା ବିଶ୍ୱବିଦ୍ୟାଳୟରୁ ଅନର୍ସ-ସହ ଏମ୍. ଏ. ପାସ୍ କରିବା ପରେ ସେ କଟକରେ ବିଜ୍ଞାନର ଅଧ୍ୟାପକ ହେଲେ । ରେଭେନ୍ସା କଲେଜ ଥିଲା ତାଙ୍କର କର୍ମସ୍ଥାନ । କଟକରେ ତାଙ୍କ ଜୀବନର ୩୭ ବର୍ଷ କଟିଥିଲା । କଟକରେ ରହଣି ପ୍ରାୟ ନିରବଚ୍ଛିନ୍ନ ଥିଲା । ମଝିରେ ବର୍ଷେ ଛଅମାସ ପାଇଁ ଥରେ ହୁଗୁଳୀ ମାଦ୍ରାସା କଲେଜରେ ଆଉ ଥରେ ଦୁଇମାସ ପାଇଁ ଚଟ୍ଟଗ୍ରାମର ଗୋଟିଏ କଲେଜରେ କାମ କରିଥିଲେ । ୬୦ ବର୍ଷ ବୟସ ପର୍ଯ୍ୟନ୍ତ ସେ ଅଧ୍ୟାପନା କରିଥିଲେ ।

ଓଡ଼ିଶାର କେତେ ପୁଅଙ୍କୁ ଯେ ସେ ମଣିଷ କରିଛନ୍ତି ତାର ସଂଖ୍ୟା ନାହିଁ । ସେତେବେଳେ ସେଠାରେ ପ୍ରାୟ ସବୁ ପ୍ରଫେସର ଥିଲେ ବଙ୍ଗାଳୀ ।

ଶ୍ରୀ ହରେକୃଷ୍ଣ ମହତାବ, ଶ୍ରୀ ପ୍ରାଣକୃଷ୍ଣ ପରିଜା, ମୟୂରଭଞ୍ଜର ମହାରାଜା ଶ୍ରୀ ରାମଚନ୍ଦ୍ର ଭଞ୍ଜଦେଓ—ଏମାନେ ଥିଲେ ଯୋଗେଶଚନ୍ଦ୍ରଙ୍କ ଛାତ୍ର । ସେ କହୁଥିଲେ "ଚୈତନ୍ୟ ଦେବଙ୍କ ସମୟରୁ ବଙ୍ଗାଳୀ ହିଁ ଓଡ଼ିଶାକୁ ପଥ ଦେଖାଉଅଛି ।" ଯୋଗେଶଚନ୍ଦ୍ର ତାଙ୍କ ଛାତ୍ରମାନଙ୍କୁ ପୁତ୍ରବତ୍ ସ୍ନେହ କରୁଥିଲେ ଓ ସବୁ ବିଷୟରେ ସେମାନଙ୍କର ହିତଚିନ୍ତା କରୁଥିଲେ । ଯେଉଁମାନେ ତାଙ୍କର ଛାତ୍ର ନଥିଲେ, ଦେଶର ସେଭଳି ଯୁବକମାନଙ୍କର ମଧ୍ୟ ସେ ମଙ୍ଗଳ କାମନା କରୁଥିଲେ । ସେମାନଙ୍କ ସ୍ୱାସ୍ଥ୍ୟ, ଚରିତ୍ର, ବ୍ୟବହାରିକ ଜୀବନ ଓ ଭବିଷ୍ୟତ ବିଷୟରେ ତାଙ୍କର ଦୃଷ୍ଟି ଓ ଚିନ୍ତା ଥିଲା । ସୁଭାଷ ଚନ୍ଦ୍ର ବସୁ ଯେତେବେଳେ କଟକରେ ରେଭେନ୍ସା କଲେଜିଏଟ୍ ସ୍କୁଲର ଛାତ୍ର ସେତେବେଳେ ଯୋଗେଶଚନ୍ଦ୍ର ସେଠାରେ କଲେଜର ପ୍ରଫେସର । ସୁଭାଷ ମଝିରେ ମଝିରେ ତାଙ୍କ ନିକଟକୁ ଯାଉଥିଲେ । ଯୋଗେଶବାବୁ କହୁଥିଲେ, "ସେମାନଙ୍କ ଘରେ ସୁଭାଷ ପିଲାଟା ସବୁଠୁ ଶାନ୍ତ । ତାକୁ ଦେଖିଲେ ବୁଝାଯାଉଥିଲା, ଭବିଷ୍ୟତରେ ସେ ଗୋଟାଏ ଅସାଧାରଣ କିଛି ହେବ ।"

ପିତାମାତାଙ୍କ ପ୍ରଥମ ପୁତ୍ରର ମୃତ୍ୟୁ ପରେ ଯୋଗେଶଚନ୍ଦ୍ରଙ୍କ ଜନ୍ମ । ସେଥିପାଇଁ ପିତାମାତା ଏହାଙ୍କ ନାମ ରଖିଥିଲେ ହାରାଧନ । ଘରର ଗୋଟିଏ କୁକୁରର ନାମ ମଧ୍ୟ ଥିଲା ହାରାଧନ । ହାରାଧନ ବୋଲି ଡାକିଲେ ଉଭୟେ ଉତ୍ତର ଦେଉଥିଲେ । ଦଶ ବର୍ଷର ବାଳକ ଯୋଗେଶଚନ୍ଦ୍ରଙ୍କର ଏଥିରେ ଭାରି ରାଗ ହେଲା । ସେ ଖାଇବା ଛାଡ଼ିଦେଇ ନାମ ବଦଳାଇବାର ସଙ୍କଳ୍ପ କଲେ । ସ୍କୁଲର ପଣ୍ଡିତ ମହାଶୟ ଏହା ଶୁଣି ତାଙ୍କୁ ପ୍ରାୟ ୫୦ଟା ନାମର ତାଲିକା କରିଦେଲେ । ସେ ତା' ମଧ୍ୟରୁ 'ଯୋଗେଶ' ନାମଟି ପସନ୍ଦ କରି ନିଜେ ନିଜର ନାମ ଦେଲେ । ସେ ହସି ହସି କହୁଥିଲେ "ସ୍ୱନାମ ଧନ୍ୟ ପୁରୁଷ ।"

୧୯୧୨ ଖ୍ରୀଷ୍ଟାବ୍ଦରେ ଶରୀରର ଅସୁସ୍ଥତା ଯୋଗୁ ଯୋଗେଶବାବୁ ବାଙ୍କୁଡ଼ାକୁ ଜଳବାୟୁ ପରିବର୍ତ୍ତନ ପାଇଁ ଯାଇଥିଲେ । ସେଠାରେ ସେତେ-ବେଳେ ମେଲେରିଆ ନଥିଲା । ବାଙ୍କୁଡ଼ା ମୋର ପିତା ରାମାନନ୍ଦ ଚଟ୍ଟୋପାଧ୍ୟାୟଙ୍କ ଦେଶ । ସେଠାରେ ତାଙ୍କ ସହିତ ଯୋଗେଶଚନ୍ଦ୍ରଙ୍କର

ପ୍ରଥମ ସାକ୍ଷାତ ହେଲା । କିନ୍ତୁ ୧୮୯୨ ସାଲରୁ ଦୁହିଁଙ୍କର ଯୋଗାଯୋଗ ଚାଲିଥିଲା । ରାମାନନ୍ଦଙ୍କ ପରିଚାଳିତ 'ଦାସୀ' ପତ୍ରିକାରେ ଯୋଗେଶଚନ୍ଦ୍ରଙ୍କ ଛାତ୍ର ମୃଗାଙ୍କଧର ରାୟ ତାଙ୍କୁ ଲେଖିବାକୁ କହୁଥିଲେ । ଏହି ସୂତ୍ରରେ ସମ୍ପାଦକ ଓ ଲେଖକଙ୍କର ପ୍ରଥମ ପରିଚୟ । କଟକରୁ ଅବସର ନେବା ପରେ ବନ୍ଧୁ ରାମାନନ୍ଦଙ୍କ ଇଚ୍ଛାରେ ସେ ବଙ୍ଗାବ୍ଦ ୧୩୨୮ ସାଲରୁ-ବାଙ୍କୁଡ଼ାରେ ବାସ କରୁଥିଲେ । ଏଠାରେ ସେ ଘର କରିଥିଲେ ଏବଂ ଏହି ବାଙ୍କୁଡ଼ାରେ ହିଁ ୯୭ ବର୍ଷ ବୟସରେ ୧୩୬୩ ସାଲର ଶ୍ରାବଣ ମାସରେ (୧୯୫୬ ଖ୍ରୀଷ୍ଟାବ୍ଦ) ସେ ଅମରଧାମକୁ ମହାପ୍ରସ୍ଥାନ କଲେ ।

ଯୋଗେଶଚନ୍ଦ୍ର ବିଜ୍ଞାନର ଛାତ୍ର ଏବଂ ବିଜ୍ଞାନର ଅଧ୍ୟାପକ ଥିଲେ, କିନ୍ତୁ ଆହୁରି ଅନେକ ବିଦ୍ୟା ସେ ଆୟତ୍ତ କରିଥିଲେ ଏବଂ ଆୟତ୍ତ ବିଦ୍ୟାଗୁଡ଼ିକର ଫଳ ନିଜ ରଚନା ଭିତର ଦେଇ ଦେଶବାସୀଙ୍କୁ ଦାନ କରୁଥିଲେ । ବନ୍ଧୁ ରାମାନନ୍ଦଙ୍କ 'ପ୍ରବାସୀ' ପତ୍ରିକାରେ ସେ ଅନେକ ପ୍ରବନ୍ଧ ଲେଖିଛନ୍ତି । ମୃତ୍ୟୁର ୨।୩ ବର୍ଷ ଆଗରୁ ମଧ୍ୟ ସେ ଲେଖୁଥିଲେ । ତତ୍ପୂର୍ବରୁ ରମାନନ୍ଦଙ୍କ ସମ୍ପାଦିତ 'ପ୍ରଦୀପ' ଏବଂ 'ଦାସୀ'ରେ ମଧ୍ୟ ଲେଖୁଥିଲେ । 'ନବ୍ୟଭାରତ', 'ଭାରତବର୍ଷ' ପ୍ରଭୃତି ଅନ୍ୟାନ୍ୟ ପତ୍ରିକାରେ ମଧ୍ୟ ତାଙ୍କ ରଚନା ପ୍ରକାଶିତ ହେଉଥିଲା । ଏହି ସମସ୍ତ ପ୍ରବନ୍ଧ ପରେ 'ବେଦେର ଦେବତା ଓ କୃଷ୍ଟିକାଳ', ପୌରାଣିକ ଉପାଖ୍ୟାନ 'ପୂଜାପାର୍ବଣ', 'ଆମାଦେର ଜ୍ୟୋତିଷୀ ଓ ଜ୍ୟୋତିଷ' 'Vedic Antiquity' ପ୍ରଭୃତି ଗ୍ରନ୍ଥରେ ପରିଣତ ହେଲା । ତାଙ୍କର ଇଂରାଜୀ ରଚନା ମଧ୍ୟ ଖୁବ୍ ସୁଖ ପାଠ୍ୟ ଥିଲା । 'Ancient-Indian Life' ପ୍ରଭୃତି ଗ୍ରନ୍ଥ ପାଠ କଲେ ତାହା ବୁଝାଯାଏ । ସେ ସଂସ୍କୃତ, ବଙ୍ଗଳା, ଇଂରେଜୀ, ହିନ୍ଦୀ, ମରାଠୀ, ଗୁଜରାଟୀ ଇତ୍ୟାଦି ବହୁ ଭାଷା ଜାଣିଥିଲେ । ସେଥିଯୋଗୁ ତାଙ୍କ ମନୀଷା ଏତେ ବିଶାଳତା ପ୍ରାପ୍ତ ହୋଇଥିଲା । କେହି କେହି କହନ୍ତି, ବୈଦିକ କୃଷ୍ଟିର ପ୍ରାଚୀନତା ନିର୍ଣ୍ଣୟ ବିଦ୍ୟାନିଧି ମହାଶୟଙ୍କ ଶ୍ରେଷ୍ଠ କୀର୍ତ୍ତି । ବୈଦିକ କୃଷ୍ଟିର ପ୍ରାଚୀନତା ପ୍ରମାଣ କରିବା ପାଇଁ ସେ ଜ୍ୟୋତିଷ ଶିକ୍ଷା କରିଥିଲେ । ସେ ସ୍ୱୟଂ କହିଥିଲେ, "ମୁଁ ଯେତେବେଳେ କଟକ କଲେଜର ପ୍ରଫେସର, ସେତେବେଳେ ଦୈବ କ୍ରମେ ଦିନେ ଖଣ୍ଡପଡ଼ା ରାଜ୍ୟର ଜଣେ ଜ୍ୟୋତିଷୀଙ୍କ ସଙ୍ଗେ ମୋର ପରିଚୟ ହେଲା । ତାଙ୍କ ନାମ ଚନ୍ଦ୍ରଶେଖର ସିଂହ-ସାମନ୍ତ । ଜ୍ୟୋତିର୍ବିଦ୍ୟାରେ ତାଙ୍କର ପାଣ୍ଡିତ୍ୟ ଥିଲା ଅସାଧାରଣ ।

ସେ ନୀରବରେ ସାଧନା କରିଚାଲିଥିଲେ । କାହାରି ନିକଟରେ ଆତ୍ମପ୍ରକାଶ କରିନଥିଲେ । କହିବାକୁ ଗଲେ ମୁଁ ତାଙ୍କୁ ଆବିଷ୍କାର କଲି । ସେ ଇଂରାଜୀ ଜାଣିନଥିଲେ କେବଳ ଓଡ଼ିଆ ଓ ସଂସ୍କୃତ ଜାଣିଥିଲେ । ସଂସ୍କୃତ ଭାଷାରେ ଲିଖିତ ତାଙ୍କ "ସିଦ୍ଧାନ୍ତ ଦର୍ପଣ" ଗ୍ରନ୍ଥର ପାଣ୍ଡୁଲିପି ପଢ଼ି ମୁଁ ଅବାକ୍ ହୋଇଗଲି । ମୁଁ ତାହା ସମ୍ପାଦନା କଲି ଏବଂ ଇଂରାଜୀରେ ଭୂମିକା ଲେଖି ଗ୍ରନ୍ଥଟିର ପ୍ରକାଶର ବ୍ୟବସ୍ଥା କଲି । ଇଙ୍ଗଲେଣ୍ଡର ବିଖ୍ୟାତ ଜ୍ୟୋତିର୍ବିଦ୍‌ମାନଙ୍କ ପାଖକୁ ଗ୍ରନ୍ଥଟିକୁ ପଠାଇଥିଲି; ତାହାର ଖୁବ୍ ସମାଦର ହୋଇଥିଲା । ଚନ୍ଦ୍ରଶେଖରଙ୍କୁ ସେଥିପାଇଁ F. R. A. S. ଉପାଧି ଦିଆହୋଇଥିଲା । ଚନ୍ଦ୍ରଶେଖରଙ୍କ ନିକଟରୁ ଭାରତୀୟ ଜ୍ୟୋତିଷ ଶିକ୍ଷା କରି ମୁଁ ବଙ୍ଗଳାରେ "ଆମାଦେର ଜ୍ୟୋତିଷୀ ଓ ଜ୍ୟୋତିଷ" ବହିଟି ଲେଖିଲି । ତାପରେ ବୈଦିକ କୃଷ୍ଟିର କାଳ ନିର୍ଣ୍ଣୟରେ ଜ୍ୟୋତିଷର ପ୍ରୟୋଗ କରିବାକୁ ଲାଗିଲି ।"

ଇତିହାସରେ ଦେଖାଯାଏ, ଖ୍ରୀଷ୍ଟ ଜନ୍ମର ଦୁଇ ହଜାର ବର୍ଷ ପୂର୍ବରୁ ଆର୍ଯ୍ୟମାନେ ଭାରତକୁ ଆସିଥିଲେ । କିନ୍ତୁ ବିଦ୍ୟାନିଧି ମହାଶୟ କହୁଥିଲେ, "ମୁଁ ପ୍ରମାଣ କରିଛି ଓ କରିବ ଯେ ଭାରତରେ ଆର୍ଯ୍ୟ କୃଷ୍ଟିର ସମୟ ଦଶ ହଜାର ବର୍ଷରୁ କମ୍ ନୁହେଁ ।"

ବିଦ୍ୟାନିଧି ମହାଶୟଙ୍କ ସକଳ ସୃଷ୍ଟି ଜ୍ଞାନର ବିଷୟ । ସେ ବଡ଼ୁଚଣ୍ଡୀ ଦାସଙ୍କ ଶ୍ରୀକୃଷ୍ଣକୀର୍ତ୍ତନ, କବି କଙ୍କଣଙ୍କର ଚଣ୍ଡୀମଙ୍ଗଳ, ଧର୍ମମଙ୍ଗଳ ଗାନ ଇତ୍ୟାଦି ନେଇ ବିସ୍ତୃତ ଆଲୋଚନା କରିଛନ୍ତି । ସେ ଅସାଧାରଣ ପାଣ୍ଡିତ୍ୟ ସାହାଯ୍ୟରେ ଚଣ୍ଡୀଦାସ, ବିଦ୍ୟାପତି, କୃତ୍ତିବାସ, କାଶୀରାମ ଦାସ, ମାଣିକ ଗାଙ୍ଗୁଲି, ରୂପରାମ ଇତ୍ୟାଦି କବିମାନଙ୍କର ଗ୍ରନ୍ଥ ରଚନା କାଳ ନିର୍ଣ୍ଣୟ କରିଛନ୍ତି । ପ୍ରାଚୀନ କବିମାନଙ୍କର କାଳ ନିର୍ଣ୍ଣୟ ତାଙ୍କର ଗୋଟିଏ କୀର୍ତ୍ତି । ଚଣ୍ଡୀଦାସ ବାଙ୍କୁଡ଼ା ଜିଲ୍ଲାର ଛାତନାର କବି ଥିଲେ କି ନାହିଁ, ଏ ବିଷୟରେ ସେ ଅନେକ ଆଲୋଚନା କରିଛନ୍ତି । ତାଙ୍କ ମତରେ ଛାତନାର ବାସୁଲୀ ସେବକ ବଡ଼ୁ ଚଣ୍ଡୀଦାସ ଜଣେ ଥିଲେ । ସେ ମନେ କରୁଥିଲେ ନାନ୍ନୁରର ମଠରେ ଏବଂ ଛାତନା ଗ୍ରାମରେ ତାଙ୍କର କିଛିକାଳ କଟିଥିବ । ତାଙ୍କ ମତରେ ଚଣ୍ଡୀଦାସ ୧୩୨୫ ଖ୍ରୀଷ୍ଟାବ୍ଦରେ ଜନ୍ମଗ୍ରହଣ କରିଥିଲେ । ସାମନ୍ତ ଭୂମିର

ରାଜା ହାମୀର ଉତ୍ତରରାୟ ଚଣ୍ଡୀଦାସଙ୍କୁ ବାସୁଳୀ ଦେବୀଙ୍କ ବଣ୍ଟୁ କାର୍ଯ୍ୟରେ ନିଯୁକ୍ତ କରିଥିଲେ ।

ଏହି ସମସ୍ତ ପ୍ରବନ୍ଧ ମାଧ୍ୟମରେ ତାଙ୍କ ଅଗୋଚରରେ ବଙ୍ଗଳା ଭାଷାତତ୍ତ୍ୱର ମୂଳ ପତ୍ତନ ହୋଇଯାଇଥିଲା । ସେ ଯେ ବଙ୍ଗଳା ଭାଷାତତ୍ତ୍ୱର ଜଣେ ପଥିକୃତ୍, ସେ ବିଷୟରେ କୌଣସି ସନ୍ଦେହ ନାହିଁ । ସେ ବଙ୍ଗଳା ଅକ୍ଷର ମଧ୍ୟ ସଂସ୍କାର କରିବାକୁ ଚାହିଁଥିଲେ । ଅନେକ ପତ୍ରିକା-ସମ୍ପାଦକ ତାଙ୍କ ମତ ବୁଝୁନଥିଲେ । ଅନେକଙ୍କ ପ୍ରେସ୍‌ରେ ତାଙ୍କ ପ୍ରସ୍ତାବିତ ଟାଇପ୍‌ର ଅଭାବ ଥିଲା । ସେ କହିଛନ୍ତି ଏପରି ଅବସ୍ଥାରୁ ମୋତେ ରକ୍ଷା କଲେ ମୋର ବନ୍ଧୁ ରାମାନନ୍ଦ ଚଟ୍ଟୋପାଧ୍ୟାୟ । ସେ ମୋର ଅକ୍ଷର-ସଂସ୍କାର ମତରେ ଆସ୍ଥାବାନ୍ ଥିଲେ । ନୂତନ ଟାଇପ୍ ତିଆରି କରାଇ ସେ ମୋର ପ୍ରବନ୍ଧଗୁଡ଼ିକ 'ପ୍ରବାସୀ'ରେ ଛାପିବାକୁ ଆରମ୍ଭ କଲେ । ଯୋଗେଶଚନ୍ଦ୍ରଙ୍କ ଅକ୍ଷର-ସଂସ୍କାରର ମୂଳମତ ବର୍ତ୍ତମାନ ପ୍ରାୟ ସମସ୍ତ ପ୍ରେସ୍‌ରେ ବ୍ୟାପକ ଭାବେ ଗୃହୀତ ହୋଇଅଛି । ଓଡ଼ିଶାରୁ ଯେତେବେଳେ ସେ ବଙ୍ଗଳା ଭାଷା ସମ୍ବନ୍ଧରେ ପ୍ରବନ୍ଧ ଲେଖି 'ପ୍ରବାସୀ' ପ୍ରଭୃତିରେ ଛାପୁଥିଲେ, ସେତେବେଳେ କେହି-କେହି ବିଦ୍ରୂପ କରି କହୁଥିଲେ, "ଜଣେ ଓଡ଼ିଆ ଆମ୍ଭମାନଙ୍କୁ ବଙ୍ଗଳା ଶିଖାଉଛନ୍ତି ।"

ଓଡ଼ିଶାରେ ଯୋଗେଶଚନ୍ଦ୍ରଙ୍କର ସମସ୍ତ ଯୌବନକାଳ କଟିଥିଲା । ସେ ସ୍ୱଦେଶୀ ଆନ୍ଦୋଳନର ଆଗରୁ ଓଡ଼ିଶାରେ ବସି ଚରଖାର ଉନ୍ନତି ଚିନ୍ତା କରିଛନ୍ତି, ସ୍ୱଦେଶୀ ପ୍ରତିଷ୍ଠାନ ଖୋଲିଛନ୍ତି । କେତେ କେତେ ସପ୍ତାହରେ College Extension Lectureର ବ୍ୟବସ୍ଥା କରି ସେ ସାଧାରଣ ମନୁଷ୍ୟଙ୍କ ମଧ୍ୟରେ ପ୍ରଚାରରେ ଉଦ୍ୟୋଗୀ ହୋଇଥିଲେ । ସେ ଓଡ଼ିଶାର ମଧୁସୂଦନ ଦାସ, ଭକ୍ତକବି ମଧୁସୂଦନ ରାଓ, ଗୋପବନ୍ଧୁ ଦାସ ପ୍ରଭୃତିଙ୍କ ସଙ୍ଗେ ଯୋଗ ଦେଇ ଓଡ଼ିଶାର କଲ୍ୟାଣରେ ବ୍ରତୀ ହୋଇଥିଲେ । ଓଡ଼ିଶା ମଧ୍ୟ ତାହାଙ୍କୁ ଭଲ ପାଇଥିଲା, ଓଡ଼ିଆ କବିମାନେ କବିତାରେ ତାଙ୍କର ସ୍ତବ କରିଛନ୍ତି । ଓଡ଼ିଆ ପଣ୍ଡିତ ସମାଜ ତାଙ୍କୁ 'ବିଦ୍ୟାନିଧି' ଉପାଧି ଦେଇଛନ୍ତି । ଉତ୍କଳ ବିଶ୍ୱବିଦ୍ୟାଳୟ ତାଙ୍କୁ ଡ଼.ଲିଟ୍ ଉପାଧିରେ ଭୂଷିତ କରିଛନ୍ତି ଓଡ଼ିଶାରେ ବସି ସେ ବଙ୍ଗଳା ଶବ୍ଦକୋଷ ଓ ବଙ୍ଗଳା ବ୍ୟାକରଣ ରଚନା

କରିଛନ୍ତି । ଯୋଗେଶଚନ୍ଦ୍ର କହୁଥିଲେ, "ସାର୍ ଜେ. ସି. ବୋସ ମୋର ପ୍ରତ୍ୟେକ କାମ 'appreciate' କରୁଥିଲେ । ତେବେ ମୁଁ ସବୁଠାରୁ ବେଶୀ ଉତ୍ସାହ ଯାହାଙ୍କଠାରୁ ପାଇଛି ସେ ହେଉଛନ୍ତି "ପ୍ରବାସୀ" ସମ୍ପାଦକ ରାମାନନ୍ଦବାବୁ । ତାଙ୍କ ଉତ୍ସାହ ନ ପାଇଥିଲେ ମୁଁ ଅଗ୍ରସର ହୋଇପାରି-ଥାଆନ୍ତି କି ନା ସନ୍ଦେହ ।"

ଯୋଗେଶଚନ୍ଦ୍ରଙ୍କ ରଚନାର ଗୋଟିଏ ବିଶେଷ ଷ୍ଟାଇଲ ଅଛି । ଡକ୍ଟର ସୁକୁମାର ସେନ୍ ଏହାଙ୍କୁ 'ବଙ୍କିମ ଗୋଷ୍ଠୀ'ର ଶ୍ରେଷ୍ଠ ଗଦ୍ୟ ଲେଖକ ବୋଲି କହିଛନ୍ତି । କିଛି ସାଦୃଶ୍ୟ ଥିଲେ ମଧ୍ୟ ଏହାଙ୍କ ରଚନାର ଏକ ସ୍ୱତନ୍ତ୍ର ବିଶେଷତ୍ୱ ଅଛି । ଏହାଙ୍କ ରଚନା ପଦ୍ଧତି ସରଳ ଓ ଆଧୁନିକ, କିନ୍ତୁ ଏହା ଆଧୁନିକ ଅନ୍ୟ ଲେଖକମାନଙ୍କ ପରି ନୁହେଁ । ଏହି ଆଧୁନିକତା ତାଙ୍କର ନିଜସ୍ୱ । ସେ ଜଟିଳ କରିବା ଷ୍ଟାଇଲ ଦେଖାଇବା ପାଇଁ ଘୁରାଇ ଫେରାଇ ଲେଖୁନଥିଲେ । ତାଙ୍କ ଲେଖା ଅତି ସହଜରେ ବୋଧଗମ୍ୟ ହେଉଥିଲା । ଯୋଗେଶଚନ୍ଦ୍ରଙ୍କ ପରେ ଯେଉଁମାନେ ବଙ୍ଗଳା ବ୍ୟାକରଣ ଓ ଶବ୍ଦକୋଷ ରଚନା କରିଛନ୍ତି, ସେମାନେ ଅନେକ ଏହାଙ୍କ ନିକଟରେ ଋଣୀ ଏବଂ ଏହି ଋଣ ସ୍ୱୀକାର କରିଛନ୍ତି ।

ଯୋଗେଶଚନ୍ଦ୍ର ପ୍ରାୟ ସବୁ ବିଷୟରେ ଲେଖିଥିଲେ— ଭାଷା ଓ ସାହିତ୍ୟ, ଶିଳ୍ପ ଓ କଳା, ଅର୍ଥନୀତି ଓ ସମାଜନୀତି, ପଦାର୍ଥ ବିଦ୍ୟା ଓ ଉଦ୍ଭିଦବିଦ୍ୟା, ଜ୍ୟୋତିଷ ଓ ରସାୟନ, ବେଦ ଓ ପୁରାଣ, ଶିକ୍ଷା ଓ ସଂସ୍କୃତି ଇତ୍ୟାଦି ନାନା ବିଷୟରେ ତାଙ୍କର ଚିନ୍ତା ଧାବିତ ହେଉଥିଲା ଏବଂ ତାହାର ଫଳ ପ୍ରବନ୍ଧାକାରରେ ଲୋକସମାଜକୁ ସେ ଉପହାର ଦେଉଥିଲେ । ସାଧାରଣ ଲୋକାଚାର, ଦେଶର ସ୍ୱାସ୍ଥ୍ୟ ଓ ଦାରିଦ୍ର୍ୟ ମେଲେରିଆ ବାଟଘାଟ ଇତ୍ୟାଦି କୌଣସି ବିଷୟ ତାଙ୍କ ଚକ୍ଷୁ ଓ ମନକୁ ଫାଙ୍କି ଦେଉନଥିଲା । ଯେତେ-ବେଳେ ସେ ଦୃଷ୍ଟିଶକ୍ତିର କ୍ଷୀଣତା ଯୋଗୁଁ ସ୍ୱୟଂ ଲେଖିପାରୁନଥିଲେ, ସେତେବେଳେ ମଧ୍ୟ ତାଙ୍କ ଶିଷ୍ୟମାନଙ୍କ ସାହାଯ୍ୟରେ ସେ ଅନେକ କାମ କରିଯାଇଛନ୍ତି ।

ବଙ୍ଗାବ୍ଦ ୧୩୦୧ ସାଲରେ ବିଦ୍ୟାନିଧି ମହାଶୟ ବାଙ୍କୁଡ଼ା ଜିଲ୍ଲାର ପୁରା-କୃତି ଅର୍ଥାତ୍ ପ୍ରାଚୀନ ପ୍ରସ୍ତର ମୂର୍ତ୍ତି, ଧାତୁ ମୂର୍ତ୍ତି, ସୀସା ବା ଧାତୁ

ତଥାର ଅପ୍ରକାଶ, ପ୍ରାଚୀନ ପୋଥି ପ୍ରଭୃତି ସଂଗ୍ରହ କରି ରକ୍ଷା କରିବା ନିମିତ୍ତ ବାଙ୍କୁଡ଼ା ସହରରେ ଗୋଟିଏ ମିଉଜିୟମ୍ ସ୍ଥାପନର ବ୍ୟବସ୍ଥା କରିଥିଲେ । ତାଙ୍କ ମୃତ୍ୟୁ ପରେ ୧୩୬୭ ସାଲ ବୈଶାଖ ୨୧ ତାରିଖରେ ଏହି ମିଉଜିୟମ୍‌ର ଭିତ୍ତି ପ୍ରତିଷ୍ଠା ହେଲା, ଆଚାର୍ଯ୍ୟ ଯୋଗେଶଚନ୍ଦ୍ର ପୁରସ୍କୃତ ଭବନ ନାମରେ । ଏହା ବଙ୍ଗୀୟ ସାହିତ୍ୟ ପରିଷଦର ବିଷ୍ଣୁପୁର ଶାଖା ଓ ତଦୀୟ ସଂଗ୍ରହଶାଳା ।

ବିଦ୍ୟାନିଧି ମହାଶୟ ଜୀବିତ ଥିବା କାଳରେ କାର୍ତ୍ତିକ ଚତୁର୍ଥୀ ୧୩୫୭ ବଙ୍ଗାବ୍ଦରେ ସାହିତ୍ୟ ପରିଷଦର ସଭାପତି ରୂପେ ତାଙ୍କ ୯୧ ବର୍ଷର ପୂର୍ତ୍ତିର ଜନ୍ମଦିନରେ ବାଙ୍କୁଡ଼ାରେ ତାହାଙ୍କୁ ସମ୍ବର୍ଦ୍ଧନା କରିହୋଇଥିଲା ।

ସେ ବୋଧହୁଏ ଓଡ଼ିଶାରେ 'ବିଜ୍ଞାନ ଭୂଷଣ' ଉପାଧି ପାଇଥିଲେ । ତାଙ୍କ ପ୍ରିୟ ସ୍ଥାନ ମଧ୍ୟରେ ଆରମବାଗ, କଟକ ଓ ବାଙ୍କୁଡ଼ାର କଥା ତାଙ୍କ ରଚନାବଳୀରେ ବାରମ୍ବାର ଉଲ୍ଲିଖିତ ହୋଇଅଛି । ଗୋଟିଏ ଜନ୍ମଭୂମି, ଗୋଟିଏ କର୍ମଭୂମି ଓ ତୃତୀୟଟି ଶେଷ ଜୀବନର ବାସଭୂମି ।

—o—

# କ୍ଷୀରୋଦଚନ୍ଦ୍ର ରାୟଚୌଧୁରୀ

(କ୍ଷୀରୋଦଚନ୍ଦ୍ରଙ୍କ ଅନ୍ୟତମ ପୁତ୍ର
ଶ୍ରୀ ପ୍ରଣବଚନ୍ଦ୍ର ରାୟଚୌଧୁରୀ କର୍ତ୍ତୃକ ଲିଖିତ)

ଭକ୍ତକବି ମଧୁସୂଦନ ରାଓ ମହାଶୟଙ୍କ ଅନ୍ୟତମ ପ୍ରିୟବନ୍ଧୁ ଥିଲେ କ୍ଷୀରୋଦଚନ୍ଦ୍ର ରାୟ ଚୌଧୁରୀ ମହାଶୟ କଟକ ତୁଳସୀପୁରରେ କ୍ଷୀରୋଦ ଚନ୍ଦ୍ରଙ୍କ 'ହାର୍ମିଟେଜ୍' ନାମକ ଗୃହସଂଲଗ୍ନ ବଗିଚାରେ ଗୋଟିଏ ବଡ଼ ହରିତକୀ ବୃକ୍ଷ ଥିଲା । କ୍ଷୀରୋଦଚନ୍ଦ୍ର ପ୍ରାୟ ସେହି ହରିତକୀ ବୃକ୍ଷତଳେ ବସି ନିଜ କାର୍ଯ୍ୟ ସମାଧାନ କରୁଥିଲେ । ବର୍ତ୍ତମାନ ସୁଦ୍ଧା ଆଖି ଆଗରେ ନାଚି ଉଠେ ହରିତକୀ ବୃକ୍ଷର ତଳେ ଭକ୍ତକବି ମଧୁସୂଦନ ଓ କ୍ଷୀରୋଦଚନ୍ଦ୍ରଙ୍କ ଗମ୍ଭୀର ଆଳାପନ ।

କ୍ଷୀରୋଦଚନ୍ଦ୍ରଙ୍କ ଜୀବନ କର୍ମମୟ ଥିଲା । ଚବିଶ ପରଗଣାର ବଡ଼ିଶା ଗ୍ରାମରେ କାଳୀଘାଟ ମନ୍ଦିରର ପ୍ରତିଷ୍ଠାତା ସାବର୍ଣ୍ଣି ଗୋତ୍ରୀୟ ରାୟ ଚୌଧୁରୀ ବଂଶରେ ୧୮୫୦ ଖ୍ରୀଷ୍ଟାବ୍ଦ ସେପଟେମ୍ବର ମାସ ୧୬ ତାରିଖରେ କ୍ଷୀରୋଦଚନ୍ଦ୍ର ଜନ୍ମଗ୍ରହଣ କରିଥିଲେ । ତାଙ୍କ ପିତା କାଳୀକୁମାର ରାୟଚୌଧୁରୀଙ୍କ ମୃତ୍ୟୁ ୧୮୫୮ ସାଲରେ ହେବାରୁ ବାଳକ କ୍ଷୀରୋଦଚନ୍ଦ୍ରଙ୍କ ବାଲ୍ୟଜୀବନ ଦୁଃଖ-କଷ୍ଟ ମଧ୍ୟରେ ଅତିବାହିତ ହେଲା । ବାଲ୍ୟକାଳରୁ ସେ ଅତ୍ୟନ୍ତ ମେଧାବୀ ଛାତ୍ର ଥିଲେ ଏବଂ ବରାବର ଛାତ୍ରବୃତ୍ତି ପାଉଥିଲେ । ପ୍ରତ୍ୟହ ୧୦।୧୫ ମାଇଲ ଚାଲି ଚାଲି ତାହାଙ୍କୁ ହିନ୍ଦୁ ସ୍କୁଲକୁ ଯାତାୟାତ କରିବାକୁ ପଡୁଥିଲା । ପ୍ରେସିଡେନ୍‌ସି କଲେଜରୁ ପ୍ରଥମ ଏଫ୍. ଏ. ଓ ପ୍ରଥମ ଶ୍ରେଣୀରେ ଅନର୍ସ ସହ ବି. ଏ. ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ କ୍ଷୀରୋଦଚନ୍ଦ୍ର ୧୮୭୪ ଖ୍ରୀଷ୍ଟାବ୍ଦରେ କୃତିତ୍ୱ ସହିତ ଏମ୍. ଏ. ପାସ୍ କଲେ ।

ଏଠାରେ ଉଲ୍ଲେଖଯୋଗ୍ୟ ଯେ, ସେ ଯୁଗରେ ନବ୍ୟଶିକ୍ଷିତ ସମ୍ପ୍ରଦାୟଙ୍କ ଉପରେ ବ୍ରହ୍ମାନନ୍ଦ କେଶବଚନ୍ଦ୍ର ସେନ ମହାଶୟଙ୍କର ଅତୁଳନୀୟ ପ୍ରଭାବ ଥିଲା । ତାଙ୍କ ଧର୍ମ ଜୀବନର, ଆଦର୍ଶ, ଅନୁପ୍ରେରଣା ଓ ସଂସ୍କାର-ପ୍ରଚେଷ୍ଟାରେ ଉଦ୍‌ବୁଦ୍ଧ ହୋଇ ବିଶ୍ୱବିଦ୍ୟାଳୟର ବହୁ କୃତୀଛାତ୍ର ସେହି ସମୟରେ ବ୍ରାହ୍ମସମାଜ ଆଡ଼କୁ ଆକୃଷ୍ଟ ହୋଇଥିଲେ । ୧୮୬୯ ଖ୍ରୀଷ୍ଟାବ୍ଦର ଅଗଷ୍ଟ ୨୨ ତାରିଖରେ (ବଙ୍ଗାବ୍ଦ ଭାଦ୍ର ୭ ତାରିଖ) ଭାରତବର୍ଷୀୟ ବ୍ରହ୍ମମନ୍ଦିରର ପ୍ରତିଷ୍ଠା

ଦିବସରେ କୃଷ୍ଣବିହାରୀ ସେନ, ଆନନ୍ଦ ମୋହନ ବସୁ, ଶିବନାଥ ଭଟ୍ଟାଚାର୍ଯ୍ୟ (ପରେ ଶାସ୍ତ୍ରୀ), ମୋହିନୀ ମୋହନ ବସୁ, ରଜନୀନାଥ ରାୟ, ଶ୍ରୀନାଥ ଦତ୍ତ ପ୍ରଭୃତି ଯେଉଁ ୨୧ଜଣ ଯୁବକ କେଶବଚନ୍ଦ୍ରଙ୍କ ନିକଟରେ ଶପଥ ଗ୍ରହଣ ପୂର୍ବକ ବ୍ରାହ୍ମସମାଜରେ ଯୋଗଦାନ କଲେ ତନ୍ମଧ୍ୟରେ କ୍ଷୀରୋଦଚନ୍ଦ୍ର ଅନ୍ୟତମ । ବୋଲିବା ବାହୁଲ୍ୟ, କେଶବଚନ୍ଦ୍ରଙ୍କ ଜୀବନାଦର୍ଶ ସମସ୍ତଙ୍କୁ ବିଶେଷ ଭାବରେ ପ୍ରଭାବାନ୍ୱିତ କରିଥିଲା ।

କର୍ମଜୀବନରେ ସେ ପ୍ରଥମେ ଉଚ୍ଚ ଇଂରାଜୀ ବିଦ୍ୟାଳୟର ହେଡ଼ମାଷ୍ଟର ଓ ପରେ ଗଭର୍ଣ୍ଣମେଣ୍ଟ କଲେଜର ଅଧ୍ୟାପକ ଏବଂ ପ୍ରିନ୍‌ସିପାଲ ମଧ୍ୟ ହୋଇଥିଲେ । ସେ ପୁରୀ, କଟକ, ଭାଗଲପୁର ଓ ଛାପରା ସ୍କୁଲର ହେଡମାଷ୍ଟର ଥିଲେ । ଛାପରା ସ୍କୁଲରେ ରାଜେନ୍ଦ୍ର ପ୍ରସାଦ (ପରବର୍ତ୍ତୀ କାଳରେ ସ୍ୱାଧୀନ ଭାରତର ପ୍ରଥମ ରାଷ୍ଟ୍ରପତି) ତାଙ୍କର ଛାତ୍ର ଥିଲେ । ରାଜେନ୍ଦ୍ର ପ୍ରସାଦ ସ୍ୱୀୟ 'ଆତ୍ମ ଜୀବନୀରେ' ମଧ୍ୟ ଲେଖିଛନ୍ତି —"ଉନ ଦିନୋ ସ୍କୁଲକେ ହେଡ଼ମାଷ୍ଟର ଥେ ଶ୍ରୀ କ୍ଷୀରୋଦଚନ୍ଦ୍ର ରାୟ ଚୌଧୁରୀ; ଓହ ବଡ଼ୀ ନାମୀ ଓ ବିଦ୍ୱାନ ହେଡ଼ମାଷ୍ଟର ସମଝେ ଜାତେ ଥେ । ସ୍କୁଲ ମେ ଇନ୍‌କା ରୋବ ବହୁତ ଥା । କେବଲ ଲଡ଼କେ ହୀ ନହିଁ, ମାଷ୍ଟର ଲୋକ ଭୀ କାଁପତେ ଥେ ।" ତାଙ୍କର ଛାତ୍ର ବତ୍ସଳତା ବିଷୟରେ ମଧ୍ୟ ରାଜେନ୍ଦ୍ର ପ୍ରସାଦ୍ ବିଶେଷ କରି ଲେଖିଛନ୍ତି ।

କର୍ମଜୀବନର ଶେଷ ପ୍ରାନ୍ତରେ ସେ ରେଭେନ୍‌ସା କଲେଜ ଓ ଚଟ୍ଟଗ୍ରାମ କଲେଜରେ ପ୍ରିନସିପାଲ୍‌ର କାର୍ଯ୍ୟ କରିଥିଲେ । ଚଟ୍ଟଗ୍ରାମ କଲେଜରେ ଥିବା ସମୟରେ ସେ ପାଲି ଶିକ୍ଷାର ପ୍ରବର୍ତ୍ତନ କରିଥିଲେ । ଇତିପୂର୍ବେ କଲିକତା ବିଶ୍ୱବିଦ୍ୟାଳୟର କୌଣସିଠାରେ ପାଲି ପଢ଼ା ହେଉନଥିଲା । ଯେତେଦିନ ପାଲି ଭାଷା ଭାରତରେ ସଜୀବ ରହିବ, ସେତେ-ଦିନ ତାଙ୍କର ଏହି କୀର୍ତ୍ତିଗାଥା ନଗରେ-ନଗରେ, ଗ୍ରାମେ-ଗ୍ରାମେ ବିଘୋଷିତ ହେବ ।

ସରକାରୀ କାର୍ଯ୍ୟରୁ ଅବସର ଗ୍ରହଣ କରି ସେ କଟକରେ ସ୍ଥାୟୀଭାବେ ବସବାସ କରୁଥିଲେ । ବଙ୍ଗଳାରେ ଲେଖକ ହିସାବରେ କ୍ଷୀରୋଦଚନ୍ଦ୍ରଙ୍କ ସ୍ଥାନ ଅତି ଉଚ୍ଚରେ । ପୁରାତନ ନବ୍ୟଭାରତ, ସାହିତ୍ୟ, ବଙ୍ଗବାଣୀ,

ସାଧନା, ବଙ୍ଗଦର୍ଶନ ପ୍ରଭୃତି ପତ୍ରିକାରେ ତାଙ୍କର ବହୁ ଚିନ୍ତାଶୀଳ ପ୍ରବନ୍ଧ ପ୍ରକାଶିତ ହେଉଥିଲା । ବୈଷ୍ଣବ ଧର୍ମ, ବୌଦ୍ଧ ଧର୍ମ, ଉପନିଷଦ, ଚଣ୍ଡୀଦାସ ପ୍ରଭୃତି ସମ୍ବନ୍ଧରେ ତାଙ୍କ ଗବେଷଣାମୂଳକ ପ୍ରବନ୍ଧର ବହୁ ସମାଦର ହୋଇଥିଲା । କ୍ରମବିକାଶ ବାଦ (Evolution of Life) ସମ୍ବନ୍ଧରେ ତାଙ୍କ ପୁସ୍ତକ "ମାନବ ପ୍ରକୃତି" ବଙ୍ଗଳାରେ ପ୍ରକାଶିତ ହେବାପରେ, ଭାରତବର୍ଷର ନଅଟି ଭାଷାରେ ଏହା ଅନୁବାଦ ହୋଇଥିଲା । କଟକରେ ଅବସ୍ଥାନ କାଳରେ ସେ "ମୃଣ୍ମୟୀ" ନାମକ ମାସିକ ପତ୍ରିକାର କେତେ ବର୍ଷ ସମ୍ପାଦକ ଥିଲେ । ପ୍ରତ୍ନତତ୍ତ୍ୱ ଓ ପୁରାତତ୍ତ୍ୱରେ ସେ ସୁପଣ୍ଡିତ ଥିଲେ । ରାଜେନ୍ଦ୍ରଲାଲ ମିତ୍ରଙ୍କ 'Orissa' ଓ ଲକ୍ଷଣ ସ୍ୱରୂପ ମହାଶୟଙ୍କ 'Konark' ପୁସ୍ତକରେ ତାଙ୍କର ଋଣ ସ୍ୱୀକୃତ ଅଛି ।

ଓଡ଼ିଶାର ରାଜନୈତିକ ଇତିହାସରେ ଶ୍ରୀଗୋପବନ୍ଧୁଙ୍କ ଅବଦାନ ଇଂରାଜୀ ଭାଷାରେ ପ୍ରଥମ ସାମ୍ବାଦିକ ରୂପେ । ୧୯୦୩ ସାଲରେ ସେ Star of Utkal ନାମରେ ଏକ ସାପ୍ତାହିକ ସମ୍ବାଦପତ୍ର ସ୍ଥାପନ କଲେ । ସେହି ପତ୍ରରେ ସମ୍ପୂର୍ଣ୍ଣ ଏକାକୀ ସମ୍ପାଦକ ହିସାବରେ ତାଙ୍କର ବହୁ ପ୍ରତିଷ୍ଠା ହୋଇଥିଲା । ଓଡ଼ିଶାର ଏହି ପ୍ରଥମ ଇଂରାଜୀ ସମ୍ବାଦପତ୍ର କେତେବର୍ଷ ପରେ ସପ୍ତାହରେ ଦୁଇବାର (Bi weekly) ଓ ତାଙ୍କ ମୃତ୍ୟୁର କେତେ ବର୍ଷ ପୂର୍ବରୁ ସପ୍ତାହରେ ୩ ବାର (Tri-weekly) ପ୍ରକାଶିତ ହେଉଥିଲା । ୧୯୧୫ ସାଲରେ ଶ୍ରୀଗୋପବନ୍ଧୁ 'ଷ୍ଟାର ଅଫ୍ ଉତ୍କଳ'କୁ ଦୈନିକ ପତ୍ରିକାରେ ରୂପାନ୍ତରିତ କରିବାକୁ ମନସ୍ଥ କଲେ ।

ନିର୍ଭୀକ ଶ୍ରୀଗୋପବନ୍ଧୁ Star of Utkalରେ ଇଂରେଜଶାସନର ତୀବ୍ର ସମାଲୋଚନା କରୁଥିଲେ । ଉତ୍କଳର ସର୍ବପ୍ରକାର ଉନ୍ନତି ଆଡ଼କୁ ତାଙ୍କର ଲକ୍ଷ୍ୟ ଥିଲା । ଓଡ଼ିଆ ଭାଷାଭାଷୀମାନେ ଗୋଟିଏ ଶାସନରେ ଆସି ବା ବଙ୍ଗ ଦେଶ ସହିତ ଯୁକ୍ତ ହୋଇ ଯେପରି ଉନ୍ନତି ଲାଭ କରନ୍ତୁ, ସେଥିପାଇଁ ସେ ନିର୍ଭୀକ ଭାବରେ ପ୍ରାୟ ଲେଖୁଥିଲେ । ତାଙ୍କର ଏଭଳି ତୀବ୍ର ସମାଲୋଚନା ନିମନ୍ତେ ସରକାରଙ୍କ ପକ୍ଷରୁ ତାଙ୍କୁ କେତେଥର ସତର୍କ କରାହୋଇଥିଲା । ଷ୍ଟାର୍ ଅଫ୍ ଉତ୍କଳ ଯେପରି ଏକ ଦିଗରେ ଜନପ୍ରିୟ ହୋଇଥିଲା, ଅନ୍ୟ ଦିଗରେ ସେହିପରି ରାଜରୋଷରେ ପଡ଼ିଥିଲା । Bihar and Orissa

Administrative Reportରେ କେତେ ବର୍ଷ ଏହି ପତ୍ରିକାର ନାମ ସମ୍ମାନ ସହିତ ଉଲ୍ଲେଖ କରାହୋଇଥିଲା । ଏଥି ଉତ୍ତାରୁ କେତେ ବର୍ଷ ଆଡ଼ମିନିଷ୍ଟ୍ରେଟିଭ୍ ରିପୋର୍ଟରେ ଲେଖାହେଲା ଯେ, ଏହି ଅବସରପ୍ରାପ୍ତ (Pensioner) ଶିକ୍ଷକଙ୍କ ରାଜଶାସନ ସମ୍ବନ୍ଧୀୟ ସମାଲୋଚନା ବିଶେଷ ତୀବ୍ର ହେଉଅଛି । କିନ୍ତୁ କର୍ତ୍ତବ୍ୟ-ପରାୟଣ ଶ୍ରୀରାମଚନ୍ଦ୍ର, ନିଜ ସାମ୍ବାଦିକତାର ଆଦର୍ଶ ଓ ଉତ୍କଳର ମଙ୍ଗଳସାଧନା ବ୍ରତରୁ ନିବୃତ୍ତ ରହିବାକୁ ସମ୍ମତ ହେଲେନାହିଁ । ଏହି ସମୟରେ ଓଡ଼ିଶାର ରାଜନୀତି କ୍ଷେତ୍ରରେ ଦୁଇଜଣ ପ୍ରତିଭାଶାଳୀ ଲୋକ ଥିଲେ— ଜଣେ ମଧୁସୂଦନ ଦାସ, C. I. E. ଏବଂ ଅନ୍ୟଜଣକ ଶ୍ରୀରାମଚନ୍ଦ୍ର ।

ମଧୁସୂଦନ ଦାସ ବିଚକ୍ଷଣ ବ୍ୟବହାରଜୀବୀ ଥିଲେ ଏବଂ ଓଡ଼ିଶାର କରଦ ରାଜାମାନଙ୍କ ଉପରେ ତାଙ୍କର ବିଶେଷ ପ୍ରତିପତ୍ତି ଥିଲା । ଖ୍ରୀଷ୍ଟ-ଧର୍ମାବଲମ୍ବୀ ମଧୁସୂଦନ ଜଣେ ବଙ୍ଗ ମହିଳାଙ୍କୁ ନିଜ କନ୍ୟା ରୂପେ ଗ୍ରହଣ କଲେ । ଶିକ୍ଷା କ୍ଷେତ୍ରପରି ମଧ୍ୟ ମଧୁସୂଦନଙ୍କର ବିଶେଷ ଅନୁରାଗ ଥିଲା । ଓଡ଼ିଶାର ନାନା ଶିଳ୍ପକୁ ସେ ପୁନରୁଜ୍ଜୀବିତ କରିଥିଲେ । ମଧୁସୂଦନଙ୍କ ରାଜନୈତିକ ସ୍ୱପ୍ନ ଥିଲା ଓଡ଼ିଆ ଭାଷାଭାଷୀମାନଙ୍କୁ ଏକ ସ୍ୱତନ୍ତ୍ର ରାଜଶାସନର ଅନ୍ତର୍ଭୁକ୍ତ କରିବା । ଆଜି ମଧୁସୂଦନଙ୍କ ସେହି ସ୍ୱପ୍ନ ସଫଳ ହୋଇଛି । ମଧୁସୂଦନ ଦାସ ଓ ଶ୍ରୀରାମଚନ୍ଦ୍ରଙ୍କ ଚେଷ୍ଟାରେ ଓଡ଼ିଶାର ବହୁ କଲ୍ୟାଣ ସାଧିତ ହୋଇଥିଲା । ଉତ୍କଳର ଘରେ ଘରେ ୫୦ ବର୍ଷ ପୂର୍ବେ ଦୁହିଁଙ୍କ ନାମ ସୁପରିଚିତ ଥିଲା । ଦୁହିଁଙ୍କ ଗୃହରେ ପ୍ରତି ସନ୍ଧ୍ୟାରେ ବହୁ ଲୋକଙ୍କର ସମାଗମ ହେଉଥିଲା । ସଭା ସମିତିରେ ଏହି ଦୁଇଜଣ ଉପସ୍ଥିତ ନ ରହିଲେ, ସଭା କାର୍ଯ୍ୟ ସଚରାଚରର ଅସମ୍ପୂର୍ଣ୍ଣ ରହୁଥିଲା । ଉଭୟଙ୍କ ମଧ୍ୟରେ ନାନା ରାଜନୈତିକ ମତର ବିଭିନ୍ନତା ଥିଲେ ମଧ୍ୟ ଶେଷ ପର୍ଯ୍ୟନ୍ତ ପ୍ରୀତି ଅକ୍ଷୁର୍ଣ୍ଣ ଥିଲା ।

୧୯୧୫ ଖ୍ରୀଷ୍ଟାବ୍ଦର ମଧ୍ୟଭାଗରେ Bihar and Orissa Government, ଷ୍ଟାର ଅଫ୍ ଉତ୍କଳର ନାନା ସମାଲୋଚନାରେ ବିରକ୍ତ ହୋଇ ଦୁଇ ହଜାର ଟଙ୍କା ଜାମିନ (Security) ଦାବୀ କଲେ । ଶ୍ରୀରାମଚନ୍ଦ୍ର ଏହି ଜାମିନ ଦେଇ ନିଜ ଗଳାରେ ଫାଶି ଲଗାଇ କାଗଜ ଚଳାଇବାକୁ ଅସ୍ୱୀକୃତ

ହେଲେ । ସେ 'ଷ୍ଟାର ଅଫ୍ ଉତ୍କଳ' କାଗଜ ବନ୍ଦ କରିଦେଲେ । କାଗଜର ଶେଷ ସଂଖ୍ୟାରେ (Adieu) ପ୍ରବନ୍ଧରେ ସେ ଲେଖିଥିଲେ, "We would rather drown the paper in the waters of the Bay of Bengal than work with a halter round the neck."

"ଷ୍ଟାର-ଅଫ୍-ଉତ୍କଳ" ବନ୍ଦ କରିବାର ପର ସପ୍ତାହରୁ କ୍ଷୀରୋଦଚନ୍ଦ୍ର ତାଙ୍କ ପ୍ରିୟବନ୍ଧୁ, ଉତ୍କଳବ ମଧୁସୂଦନ ରାଓଙ୍କ ପ୍ରତିଷ୍ଠିତ ଭକ୍ତୋରିଆ ହାଇସ୍କୁଲରେ ଅଧ୍ୟାପନା ଆରମ୍ଭ କଲେ । କିଛିଦିନ ପରେ ସେ ହିନ୍ଦୁ କଲେଜ ନାମରେ ଗୋଟିଏ ସ୍ୱତନ୍ତ୍ର ହାଇସ୍କୁଲ ପ୍ରତିଷ୍ଠା କଲେ । ଶିକ୍ଷାବ୍ରତୀ କ୍ଷୀରୋଦଚନ୍ଦ୍ର ଏହି ସ୍କୁଲ ପ୍ରତିଷ୍ଠାରେ ନିଜର ପ୍ରଚୁର ଅର୍ଥ ବ୍ୟୟ କରିଥିଲେ । ସ୍ୱଳ୍ପ ଗୋଟିଏ ଛାତ୍ର ନେଇ ସେ ଏହି ସ୍କୁଲ ଆରମ୍ଭ କରିଥିଲେ, କେତେ ମାସ ମଧ୍ୟରେ ଏଥିରେ ପ୍ରାୟ ୩୦୦ ଛାତ୍ର ହୋଇଗଲେ । ୧୯୧୭ ଖ୍ରୀଷ୍ଟାବ୍ଦ ଜୁନ୍ ୨୭ ତାରିଖରେ ସେ ସନ୍ନ୍ୟାସ ରୋଗରେ ଆକ୍ରାନ୍ତ ହୋଇ ଜୁନ୍ ୩୦ ତାରିଖ ପ୍ରାତଃକାଳରେ ପରଲୋକ ଗମନ କଲେ ।

କ୍ଷୀରୋଦଚନ୍ଦ୍ରଙ୍କ ଦେହାବସାନ ପରେ ଇଂରାଜୀ, ବଙ୍ଗଳା ଓ ଓଡ଼ିଆ କାଗଜରେ ତାଙ୍କ କର୍ମମୟ ଜୀବନର ଉଲ୍ଲେଖ କରି ନାନା ପ୍ରବନ୍ଧ ବାହାରିଲା । ବାଙ୍ଗାଲୀ, ବେଙ୍ଗଲୀ, ହିନ୍ଦୁପେଟ୍ରିୟଟ୍, ସଞ୍ଜୀବନୀ, ତତ୍ତ୍ୱବୋଧିନୀ, ରତ୍ନାକର, ବଙ୍ଗବାସୀ, ହିତବାଦୀ, ବୌଦ୍ଧବନ୍ଧୁ, ଅମୃତବଜାର, ଷ୍ଟେଟ୍ସମ୍ୟାନ, ଉତ୍କଳ ଦୀପିକା, ଉତ୍କଳ ସାହିତ୍ୟ ପ୍ରଭୃତି ପତ୍ରରେ କ୍ଷୀରୋଦ ଚନ୍ଦ୍ରଙ୍କ ସମ୍ବନ୍ଧରେ ବହୁ ପ୍ରବନ୍ଧ ପ୍ରକାଶିତ ହୋଇଥିଲା । ମୃତ୍ୟୁ ଅବସରରେ କ୍ଷୀରୋଦଚନ୍ଦ୍ରଙ୍କ ଅନ୍ୟତମ ପ୍ରିୟଛାତ୍ର, ବରିଶାଲ ବ୍ରଜମୋହନ ଇନଷ୍ଟି-ଚିଉଶନ୍‌ର ହେଡ୍‌ମାଷ୍ଟର କର୍ମବୀର ଶ୍ରୀଯୁକ୍ତ ଜଗଦୀଶଚନ୍ଦ୍ର ମୁଖୋପାଧ୍ୟାୟ ଲେଖିଥିଲେ—"ସେ ସମୟର ଛାତ୍ରମଣ୍ଡଳୀରେ ଅନେକ ବ୍ରାହ୍ମମାନଙ୍କର ନିନ୍ଦା କରୁଥିଲେ, ମୁଁ ମଧ୍ୟ ସେମାନଙ୍କ ମୁହଁରୁ ଶୁଣି ଶୁଣି ବ୍ରାହ୍ମମାନଙ୍କୁ କିମ୍ଭୂତକିମାକାର ପଦାର୍ଥ ମନେକରିବାକୁ ଶିଖିଥିଲି । ଯେତେବେଳେ ଶୁଣିଲି, ଆମ୍ଭମାନଙ୍କ ପ୍ରବୀଣ ଶିକ୍ଷକ ବ୍ରାହ୍ମ, ସେତେବେଳେ ଅବାକ୍ ହୋଇ ଭାବୁଥାଏ, ଯଦି ଏହିପରି ପୂତ ଚରିତ୍ର ଓ ସହୃଦୟତା ବ୍ରାହ୍ମଧର୍ମ ସାଧନର ଫଳ ହୁଏ, ତେବେ ସେ ଧର୍ମତଃ ସମସ୍ତଙ୍କର ନମସ୍ୟ । ପ୍ରଭାତରେ ଶଯ୍ୟାରୁ

ଉଠ୍ ନ ଉଠୁଣୁ ଶୁଣୁଥିଲି, ଶିକ୍ଷକ ମହାଶୟଙ୍କ ଗୃହରୁ ଭଗବାନଙ୍କ ଗୁଣଗାନ ଓ ସ୍ତୋତ୍ର ଧ୍ୱନିତ ହେଉଅଛି ।”

ନବ୍ୟଭାରତ, ୧୯୨୪ ସାଲ ପ୍ରକାଶ ।

ମଧୁସୂଦନ ରାଓଙ୍କ ଯୁଗ ଉତ୍କଳର ସ୍ୱର୍ଣ୍ଣଯୁଗ (Golden Age) ବୋଲିଯାଇପାରେ । ଏକଦିଗରେ ମଧୁସୂଦନ ରାଓ, ପ୍ୟାରୀମୋହନ ଆଚାର୍ଯ୍ୟ, କ୍ଷୀରୋଦଚନ୍ଦ୍ର ରାୟଚୌଧୁରୀ, ସୁଭାଷଚନ୍ଦ୍ରଙ୍କ ପିତା ଜାନକୀନାଥ ବସୁ, ବୈଜ୍ଞାନିକ ଯୋଗେଶଚନ୍ଦ୍ର ରାୟ, କବି ରାଧାନାଥ ରାୟ, ଗଣିତଜ୍ଞ ବିପିନ ବିହାରୀ ଗୁପ୍ତ, ଓଡ଼ିଆ ସମ୍ପାଦକ—ଗୌରୀଶଙ୍କର ରାୟ ଓ ବିଶ୍ୱନାଥ କର; ଅନ୍ୟ ଦିଗରେ ଏମାନଙ୍କର ଶିଷ୍ୟଗଣ— ଯଥା, ଗୋପବନ୍ଧୁ ଦାସ, ନୀଳକଣ୍ଠ ଦାଶ, ଗୋଦାବରୀଶ ମିଶ୍ର, ବିଶ୍ୱନାଥ ଦାସ, ବ୍ରଜସୁନ୍ଦର ଦାସ, ଲକ୍ଷ୍ମୀନାରାୟଣ ସାହୁ ପ୍ରଭୃତି । ଏମାନଙ୍କ ମଧ୍ୟରେ ଯେଉଁ ବିଶିଷ୍ଟ ପ୍ରେମର ସମ୍ବନ୍ଧ ଥିଲା, ତାହା ଅତୁଳନୀୟ— ଧର୍ମ, ଜାତି ବା ପ୍ରାଦେଶିକତା ସେହି ଦୃଢ଼ପ୍ରେମ-ସମ୍ବନ୍ଧକୁ କୌଣସି ପ୍ରକାରେ କ୍ଷୁଣ୍ଣ କରିପାରି ନାହିଁ । ସେମାନଙ୍କର ସ୍ୱ-ସ୍ୱୀକୃତ ପୃଷ୍ଠଭୂମିକା ଅତି ବିସ୍ତୃତ ଥିଲା । କର୍ତ୍ତବ୍ୟନିଷ୍ଠା, ସତ୍ୟତା, ନୈତିକ ଦୃଢତା ଓ ଭଗବାନଙ୍କଠାରେ ବିଶ୍ୱାସ ସେମାନଙ୍କର ପାଥେୟ ଥିଲା । ଓଡ଼ିଶାର ବର୍ତ୍ତମାନ ଯୁଗର ଲୋକମାନେ ହୁଏତ ଅନେକେ ଜାଣନ୍ତିନାହିଁ ଯେ, ଓଡ଼ିଶାର ସେହି ସ୍ୱର୍ଣ୍ଣଯୁଗର (Golden Age) ସାଧନାର ଫଳ ସେମାନେ ଉପଭୋଗ କରୁଅଛନ୍ତି । ଏହି ଯୁଗରେ ସାହିତ୍ୟରେ, ରାଜନୀତି କ୍ଷେତ୍ରରେ, ଶିକ୍ଷାଜଗତରେ, ଆଧ୍ୟାତ୍ମିକତାରେ ଓଡ଼ିଶାରେ ଯେଉଁ ବିଶେଷ ଜାଗୃତି ହୋଇଥିଲା, ସେହି ଜାଗୃତିମୂଳରେ ଥିଲା ଏହି ମହାପୁରୁଷମାନଙ୍କର ଆପ୍ରାଣ ଚେଷ୍ଟା— ସେମାନେ କେହି ଅର୍ଥ ବଳରେ ବଳୀୟାନ ନଥିଲେ, ତେବେ ସେମାନଙ୍କ ଚରିତ୍ରବଳ ଏବଂ କର୍ତ୍ତବ୍ୟପରାୟଣତା ସେମାନଙ୍କର ପ୍ରଧାନ ସମ୍ବଳ ଥିଲା । ସେହି ଯୁଗର ଏହି ସାଧକମାନେ ନାନା ଭାବରେ ଓଡ଼ିଶାର ଯେଉଁ କଲ୍ୟାଣ ସାଧନ କରିଥିଲେ, ତାହା ସ୍ମରଣ କରି ବର୍ତ୍ତମାନ କାଳର ଲୋକମାନେ ନିଜକୁ କୃତାର୍ଥ ମନେକରିବା ଉଚିତ । ଏକ ହିସାବରେ ଭକ୍ତକବି ମଧୁସୂଦନ ରାଓଙ୍କୁ କେନ୍ଦ୍ରକରି ଏହି ବୃହତ୍ତର ଉତ୍କଳୀୟ ପରିବାର ଉତ୍କଳରେ ନବଯୁଗ ସୃଷ୍ଟି କରିଥିଲେ । ଉତ୍କଳ ବ୍ରାହ୍ମସମାଜ ଏମାନଙ୍କ ଜୀବନରେ ବହୁ ଭାବରେ ଆଲୋକପାତ କରିଥିଲା । ସୁଭାଷ ଚନ୍ଦ୍ର ବସୁଙ୍କ ପିତା ଜାନକୀନାଥ ବସୁ

ଉତ୍କଳ ବ୍ରାହ୍ମସମାଜର ନାନା ସଭାରେ ସଭାପତିତ୍ୱ କରୁଥିଲେ । ଏହି ନବଯୁଗର କର୍ମୀମାନଙ୍କ ଭିତରେ ଗୋଟିଏ ଅଧ୍ୟାତ୍ମିକତାର ପ୍ରେରଣା ଥିଲା । ସେହି ପ୍ରେରଣା ନଥିଲେ ସେମାନେ ହସ ହସ ମୁହଁରେ ଅର୍ଥାଭାବ ମଧ୍ୟରେ ଏହିପରି ବୃହତ୍ କର୍ମ ସମ୍ପାଦନ କରିପାରିନଥାନ୍ତେ ।

ଶ୍ରୀରେବତୀଚନ୍ଦ୍ର ଆଜୀବନ ସ୍ତ୍ରୀ-ଶିକ୍ଷାର ପକ୍ଷପାତୀ ଥିଲେ । ତାଙ୍କ କନ୍ୟାମାନଙ୍କୁ ସେ ଉଚ୍ଚଶିକ୍ଷା ଦେଇଥିଲେ । ଗୋଟିଏ କନ୍ୟା ବଙ୍ଗଦେଶର ସରକାରୀ ବିଦ୍ୟାଳୟରେ ଶିକ୍ଷୟିତ୍ରୀ ଥିଲେ । ଶ୍ରୀରେବତୀଚନ୍ଦ୍ରଙ୍କର ଦ୍ୱିତୀୟ-ବାର ବିବାହ ହୋଇଥିଲା । ଆସାମର ଉଚ୍ଚ ରାଜକର୍ମୀ ଓ ଐତିହାସିକ ରାୟବାହାଦୁର ଗୁଣାଭିରାମ ବରୁଆଙ୍କ ବିଧବା କନ୍ୟା ସହିତ । ବିଧବା ମହିଳା ବିବାହ କରି ସେ ଓଡ଼ିଶାର ଭଦ୍ରସମାଜ ସମ୍ମୁଖରେ ଏକ ଆଦର୍ଶ ସ୍ଥାପନ କରିଥିଲେ । କଟକରେ ମହିଳାମାନଙ୍କ ପାଇଁ ଯେତେବେଳେ କଲେଜ ସ୍ଥାପିତ ହେଲା ସେତେବେଳେ ଶ୍ରୀରେବତୀଚନ୍ଦ୍ରଙ୍କ ସହିତ ତତ୍କାଳୀନ ବିହାର ଓ ଓଡ଼ିଶାର ଡ଼ିରେକ୍ଟର ଅଫ୍ ପବ୍ଲିକ୍ ଇନଷ୍ଟ୍ରକ୍ସନଙ୍କ ସହିତ ବହୁ ପତ୍ର ବିନିମୟ ହୋଇଥିଲା । ଏପରିକି ଶ୍ରୀରେବତୀଚନ୍ଦ୍ର ତାଙ୍କୁ ଲେଖିଥିଲେ ଯେ, ସେ ଅବୈତନିକ ଭାବରେ Girl's Collegeରେ ଅଧ୍ୟାପନା କରିବାକୁ ସମ୍ମତ ଅଛନ୍ତି । ଶ୍ରୀରେବତୀଚନ୍ଦ୍ରଙ୍କ ପ୍ରଦତ୍ତ ମହିଳା କଲେଜର ପରିକଳ୍ପନା ଖୁବ୍ କାର୍ଯ୍ୟକାରୀ ହୋଇଥିଲା ।

ଏହି ପ୍ରସଙ୍ଗରେ ଓଡ଼ିଶାର ସ୍ତ୍ରୀ-ଶିକ୍ଷା ସମ୍ବନ୍ଧରେ କେତେକ କଥା କୁହାଯାଇପାରେ । ସ୍ତ୍ରୀ-ଶିକ୍ଷା ପ୍ରଚଳନର ପ୍ରଥମ ଦୃଷ୍ଟାନ୍ତ କଟକର ସରକାରୀ ଝିଅମାନଙ୍କ ସ୍କୁଲ—ରେଭେନ୍ସା ବାଳିକା ବିଦ୍ୟାଳୟ । ସେଠାରେ ତତ୍ପୂର୍ବରୁ ବଙ୍ଗଳା ଓ ଓଡ଼ିଆ ଦୁଇ ଭାଷାରେ, ଛାତ୍ରବୃତ୍ତି ପର୍ଯ୍ୟନ୍ତ ପଢ଼ା ହେଉଥିଲା । ଉତ୍କଳଭକ୍ତ ମଧୁସୂଦନ ରାଓଙ୍କ ପ୍ରଥମା କନ୍ୟା ବାସନ୍ତୀ ଓ ରାୟବାହାଦୁର ନନ୍ଦକିଶୋର ଦାସଙ୍କ କନ୍ୟା ହିରାମଣି ୧୮୮୭ ଖ୍ରୀଷ୍ଟାବ୍ଦରେ ଏହି ସ୍କୁଲରୁ ପ୍ରଥମ ଛାତ୍ରବୃତ୍ତି ପରୀକ୍ଷା ପାସ୍ କଲେ ।

ତାହାର ବର୍ଷେ ଦୁଇବର୍ଷ ପରେ ଜଗନ୍ନାଥ ରାଓଙ୍କ କନ୍ୟା ରେବା (ଭକ୍ତକବିଙ୍କ ଭ୍ରାତୃଷ୍ପୁତ୍ରୀ) ଓ କଟକର ପ୍ରଖ୍ୟାତ ଉକିଲ ପ୍ରିୟନାଥ ଚଟାର୍ଜୀଙ୍କ କନ୍ୟା ବସୁମତୀ ଏହି ସ୍କୁଲରୁ ଛାତ୍ରବୃତ୍ତି ପାସ୍ କଲେ ।

ମଧୁସୂଦନଙ୍କ ଅନ୍ୟତମା କନ୍ୟା ଶ୍ରୀମତୀ ଅବନ୍ତୀ ଦେବୀ (ଏହି ଗ୍ରନ୍ଥର ଲେଖିକା) ୧୮୯୨ ଖ୍ରୀଷ୍ଟାବ୍ଦରେ ରେଭେନ୍‌ସା ବାଳିକା ବିଦ୍ୟାଳୟରୁ ଛାତ୍ରବୃତ୍ତି ପରୀକ୍ଷା ପାସ୍ କଲେ । ତହିଁ ଉତ୍ତାରୁ ଉକ୍ତ ବିଦ୍ୟାଳୟର ଅବସ୍ଥା ଖରାପ ହୋଇପଡ଼ିଲା । ୧୯୦୫ ଖ୍ରୀଷ୍ଟାବ୍ଦରେ ଶ୍ରୀମତୀ ରେବା ରାୟ ଝିଅମାନଙ୍କ ପାଇଁ "ମଡ଼େଲ ଗାର୍ଲସ୍ ସ୍କୁଲ୍" ନାମକ ଗୋଟିଏ ଉଚ୍ଚ ଇଂରାଜୀ ବିଦ୍ୟାଳୟ କଟକରେ ସ୍ଥାପନ କଲେ । ଏଥିପାଇଁ ଶ୍ରୀମତୀ ରେବା ରାୟଙ୍କୁ ଅର୍ଥ ଓ ସାମର୍ଥ୍ୟ ଦ୍ୱାରା ପ୍ରାଣପଣେ ଚେଷ୍ଟା କରିବାକୁ ପଡ଼ିଥିଲା । ଏହି ସ୍କୁଲରୁ ଚନ୍ଦ୍ରମୁଖୀ ଷଡ଼ଙ୍ଗୀ ନାମରେ ଗୋଟିଏ ଓଡ଼ିଆ-ଖ୍ରୀଷ୍ଟାନ ବାଳିକା ଏବଂ ଜ୍ୟୋତିର୍ମୟୀ ଘୋଷ ପରେ ଡାକ୍ତର ସୁବୋଧ ରାୟଙ୍କ ସ୍ତ୍ରୀ-ପ୍ରବେଶିକା (Entrance) ପରୀକ୍ଷା ପାସ୍ କଲେ । ରେବା ରାୟ ତାଙ୍କ ସ୍କୁଲ ପାଇଁ ବଙ୍ଗଦେଶରୁ କେତୋଟି ବ୍ରାହ୍ମ ଶିକ୍ଷକ ଓ ଶିକ୍ଷୟିତ୍ରୀ ଆଣିଥିଲେ ।

ମଧୁସୂଦନ ଦାସ ମହାଶୟଙ୍କ ପାଳିତା କନ୍ୟା ଶୈଳବାଳା ଦାସ ବିଲାତରୁ ଫେରି ଏହି ସମୟରେ କଟକ ଆସିଲେ ଏବଂ ଓଡ଼ିଶାରେ ସ୍ତ୍ରୀ-ଶିକ୍ଷାକୁ ଦୃଢ଼ୀଭୂତ ଓ ପ୍ରସାରିତ କରିବା ପାଇଁ ପ୍ରଭୂତ ଚେଷ୍ଟା କରିଥିଲେ । ତାଙ୍କ ପ୍ରଚେଷ୍ଟାରେ ଓ କର୍ମକୁଶଳତାରେ ରେଭେନ୍‌ସା ବାଳିକା ବିଦ୍ୟାଳୟ ଏକ ଉଚ୍ଚ ଇଂରାଜୀ ସ୍କୁଲରେ ପରିଣତ ହେଲା । ରେବା ରାୟଙ୍କ ଆଦର୍ଶ ବାଳିକା ବିଦ୍ୟାଳୟ (Model Girl's School) ଏହି ସ୍କୁଲ ସହିତ ମିଳିତ ହୋଇଗଲା ଏବଂ ଅବିନାଶଚନ୍ଦ୍ର ଲହିଡ଼ୀ, ଇନ୍ଦ୍ରବାଳା ଘୋଷାଲ ପ୍ରଭୃତି ଆଦର୍ଶ ବିଦ୍ୟାଳୟର ଶିକ୍ଷକମାନେ ରେଭେନ୍‌ସା ଗାର୍ଲସ୍ ହାଇସ୍କୁଲର ଶିକ୍ଷକ ପଦରେ ନିଯୁକ୍ତ ହେଲେ । ସ୍ତ୍ରୀ-ଶିକ୍ଷାର ଉନ୍ନତି ଓ ବିସ୍ତାର ନିମନ୍ତେ ଏହି ଦୁଇ ମହିଳା (ସ୍ୱର୍ଗୀୟା ରେବା ରାୟ ଓ ଶୈଳବାଳା ଦାସ) ଯାହା କରିଥିଲେ ତାହାହିଁ ପରୋକ୍ଷ-ଭାବରେ ବର୍ତ୍ତମାନ ଓଡ଼ିଶାର ବହୁ ଗ୍ରାମ ଓ ସହରରେ ବହୁ ବାଳିକା ବିଦ୍ୟାଳୟରେ ରୂପାନ୍ତର ଲାଭ କରିଅଛି । ସମ୍ମିଳିତ ରେଭେନ୍‌ସା ବାଳିକା ବିଦ୍ୟାଳୟକୁ ଓଡ଼ିଶାର ସ୍ତ୍ରୀ-ଶିକ୍ଷା ଇତିହାସରେ ପ୍ରଧାନ ସୋପାନ କୁହାଯାଇପାରେ ।

ଏ ସ୍ଥଳରେ ଉଲ୍ଲେଖଯୋଗ୍ୟ ଯେ ଶ୍ରୀରାଧାଚରଣ୍ଙ୍କ ଦେହତ୍ୟାଗ ପରେ ତାଙ୍କ ପୁତ୍ରକନ୍ୟାମାନେ ତାଙ୍କ ସଂଗୃହୀତ ପାଞ୍ଚ ହଜାର ପୁସ୍ତକ ରେଭେନ୍‌ସା କଲେଜକୁ ଦାନ କରିଛନ୍ତି । —ଗ୍ରନ୍ଥକର୍ତ୍ତ୍ରୀ]

# ପରିସମାପ୍ତି

ଉତ୍କଳର ନବଯୁଗର ସୂଚନାରେ, ବିଭିନ୍ନ କର୍ମକ୍ଷେତ୍ରରେ ଯେଉଁସବୁ ବ୍ୟକ୍ତି ବିଶିଷ୍ଟ ଅବଦାନ ରଖି ଯାଇଛନ୍ତି, ସେମାନଙ୍କ ସମ୍ବନ୍ଧରେ ସଂକ୍ଷିପ୍ତ ବିବରଣ ଏହି ପୁସ୍ତକରେ ଅନ୍ତର୍ଭୁକ୍ତ କରିବା ପାଇଁ ମୋର ବିଶେଷ ଆକାଂକ୍ଷା ଥିଲା; କିନ୍ତୁ ବାର୍ଦ୍ଧକ୍ୟ ହେତୁ ମୋର ସେ ଇଚ୍ଛା ପୂର୍ଣ୍ଣ କରିବା ସମ୍ଭବ ହୋଇନାହିଁ । ମାତ୍ର କେତେ ଜଣଙ୍କର ସଂକ୍ଷିପ୍ତ ବିବରଣ ପୁସ୍ତକରେ ଅନ୍ତର୍ଭୁକ୍ତ ହୋଇଅଛି । ଅନ୍ୟାନ୍ୟ ଯେଉଁସବୁ ବିଶିଷ୍ଟ ବ୍ୟକ୍ତିମାନଙ୍କ ସମ୍ବନ୍ଧରେ ମୋର କିଛି କହିବାର ଇଚ୍ଛାଥିଲା ନିମ୍ନରେ ସେମାନଙ୍କ ନାମ ଉଲ୍ଲେଖ କରାହେଲା । ପ୍ରସଙ୍ଗକ୍ରମେ ସେମାନଙ୍କ ମଧ୍ୟରୁ କାହା କାହାର ନାମ ମଧ୍ୟ ପୁସ୍ତକ ମଧ୍ୟରେ ସ୍ଥାନେ ସ୍ଥାନେ ଲେଖା ହୋଇଅଛି । ଭବିଷ୍ୟତରେ ଯଦି ଉତ୍କଳର କୌଣସି ସୁସନ୍ତାନ ମୋର ଏହି ତ୍ରୁଟି ସଂଶୋଧନରେ ପ୍ରୟାସୀ ହୁଅନ୍ତି, ତେବେ ତାହା ମୋର ଆନନ୍ଦର କାରଣ ହେବ :—

୧ । କର୍ମବୀର ଗୌରୀଶଙ୍କର ରାୟ—ଓଡ଼ିଆ 'ଉତ୍କଳ-ଦୀପିକା' ପତ୍ରିକାର ସମ୍ପାଦକ - ଓଡ଼ିଶାର ପ୍ରଥମ ସାମ୍ବାଦିକ;

୨ । ଉତ୍କଳବନ୍ଧୁ ଟି. ଇ. ରେଭେନ୍ସା ସାହେବ, ଆଇ. ସି. ଏସ୍., ଓଡ଼ିଶାର ବିଭାଗୀୟ କମିଶନର;

୩ । ଜନ୍ ବୀମ୍ସ ସାହେବ;

୪ । ଭୂଦେବ ଚନ୍ଦ୍ର ମୁଖୋପାଧ୍ୟାୟ, ସି. ଆଇ. ଇ., ଇନସ୍‌ପେକ୍ଟର ଅଫ୍ ସ୍କୁଲସ୍, (ବଙ୍ଗ, ବିହାର ଓ ଓଡ଼ିଶା)

୫ । ରମେଶଚନ୍ଦ୍ର ଦତ୍ତ, ଆଇ. ସି. ଏସ୍ ଓଡ଼ିଶାର ବିଭାଗୀୟ କମିଶନର;

୬ । କୁଳବୃଦ୍ଧ ମଧୁସୂଦନ ଦାସ, ସି. ଆଇ. ଇ.;

୭ । ରାଜା ସାର୍ ବାସୁଦେବ ସୁଢଳ ଦେବ (ବାମଣ୍ଡା);

୮ । ମହାରାଜା ଶ୍ରୀରାମଚନ୍ଦ୍ର ଭଞ୍ଜଦେବ (ମୟୂରଭଞ୍ଜ);

୯ । ସଚ୍ଚିଦାନନ୍ଦ ତ୍ରିଭୁବନ ଦେବ—ବାମଣ୍ଡାର ଯୁବରାଜ, ପରେ ରାଜା;

୧୦ । ନୀଳମଣି ବିଦ୍ୟାରତ୍ନ—'ସମ୍ବଲପୁର ହିତୈଷିଣୀ' ପତ୍ରିକାର ସମ୍ପାଦକ;

୧୧ । ଗଙ୍ଗାଧର ମେହେର, କବି;

୧୨ । ପଣ୍ଡିତ ମୃତ୍ୟୁଞ୍ଜୟ ରଥ—ବାଣୀଭୂଷଣ, କାବ୍ୟତୀର୍ଥ-
'ବ୍ରହ୍ମଙ୍କ ମଧୁସୂଦନ'ର ଲେଖକ;
୧୩ । ରାମଶଙ୍କର ରାୟ—ଓଡ଼ିଆ ନାଟକ ରଚୟିତା;
୧୪ । ଗୋବିନ୍ଦ ଚନ୍ଦ୍ର ପଟ୍ଟନାୟକ— 'ସମ୍ବାଦ ବାହିକା' ପତ୍ରିକାର ସମ୍ପାଦକ;
୧୫ । ସାମନ୍ତ ଚନ୍ଦ୍ରଶେଖର (ପଠାଣି ସାମନ୍ତ)—ସୁବିଜ୍ଞ ଜ୍ୟୋତିର୍ବିଦ;
୧୬ । ରାଣୀ କାଞ୍ଚନ ମଞ୍ଜରୀ ଦେବୀ (ଖଲ୍ଲିକୋଟ)—ରେଭେନ୍ସା କଲେଜକୁ
ଏକ ଲକ୍ଷ ଟଙ୍କା ଦାନ କରିଥିଲେ ।
୧୭ । ଶଶୀଭୂଷଣ ରାୟ— ରାଧାନାଥ ରାୟଙ୍କ ଜ୍ୟେଷ୍ଠପୁତ୍ର;
୧୮ । ନନ୍ଦକିଶୋର ବଳ—ଓଡ଼ିଆ ଭାଷାର ବିଶିଷ୍ଟ ସାହିତ୍ୟିକ ଓ କବି;
୧୯ । ଇୟଂ ସାହେବ—ଖ୍ରୀଷ୍ଟଧର୍ମାବଲମ୍ବୀ ଇଂରେଜ ମିଶନାରୀ;
୨୦ । ଡାକ୍ତର ଷ୍ଟୁୟାର୍ଟ ସାହେବ;
୨୧ । ମହିଳା କବି—ସୁଲକ୍ଷଣା ଦେବୀ;
୨୨ । ଜାନକୀନାଥ ବସୁ—କଟକର ବିଶିଷ୍ଟ ଉକିଲ ଓ
ନେତାଜୀ ସୁଭାଷଚନ୍ଦ୍ରଙ୍କ ପିତା;
୨୩ । ଗୋପବନ୍ଧୁ ଦାସ—ଜାତୀୟ ନବଜାଗରଣର ପୁରୋଧା, ସତ୍ୟବାଦୀ
ବିଦ୍ୟାଳୟ ଏବଂ 'ସମାଜ' ଦୈନିକ ପତ୍ରିକାର ପ୍ରତିଷ୍ଠାତା;
୨୪ । ସୁଦାମ ଚରଣ ନାଏକ;
୨୫ । ତ୍ୟାଗବ୍ରତ ଦେଶକର୍ମୀ—ଗୋପବନ୍ଧୁ ଚୌଧୁରୀ;
୨୬ । ବଳରାମ ଦାସ—ଭକ୍ତକବିଙ୍କ ସହପାଠୀ "ବାଳବୋଧ ରାମାୟଣ"
ପ୍ରଭୃତିର ଲେଖକ;
୨୭ । ଲକ୍ଷ୍ମୀନାରାୟଣ ପଟ୍ଟନାୟକ—ଓଡ଼ିଶାର ବିଶିଷ୍ଟ ବ୍ରାହ୍ମ ଓ
ସମାଜ ସଂସ୍କାରକ;
୨୮ । ଐତିହାସିକ ଯଦୁନାଥ ସରକାର—କେତେ ବର୍ଷ ରେଭେନ୍ସା
କଲେଜରେ ଅଧ୍ୟାପନା କରିଥିଲେ;
୨୯ । ରତନ ଏଷ୍ଟେଟ୍‌ର ଜମିଦାର ଯୋଗୀନ୍ଦ୍ରନାଥ ବସୁ— ବଙ୍ଗର
ଆଡ଼ଭୋକେଟ୍ ଜେନେରାଲ ସାର୍ ଏସ୍. ଏମ୍. ବସୁଙ୍କ ପିତା—
ଯେ କଟକରେ ବାସ କରି ଓଡ଼ିଶାବାସୀଙ୍କର ସର୍ବପ୍ରକାର ଉନ୍ନତି-
ଚେଷ୍ଟା ସହିତ ଆଜୀବନ ଘନିଷ୍ଠ ଯୋଗ ରକ୍ଷା କରିଥିଲେ ।

—o—